ଶୁଦ୍ରମୁନି ୰ ଶାରଳା ଦାସଙ୍କ କୃତ

# ମହାଭାରତ



ପ୍ରକାଶକ- ଧର୍ମଗ୍ରନ୍ଥ ଷ୍ଟୋର ଅଲିଶା ବଜାର, କଟକ-୨

ଶୂଦ୍ର ମୁନି ୰ ଶାରଳାଦାସଙ୍କ କୃତ




# ବିରାଟପର୍ବ

(ନୂତନ ମୁଦ୍ରଣ)

ପ୍ରକାଶକ : **ଧର୍ମଗ୍ରନ୍ଥ ଷ୍ଟୋର**




ପ୍ରାପ୍ତିସ୍ଥାନ - ଧର୍ମଗ୍ରନ୍ଥ ଷ୍ଟୋର

ପରିଚାଳକ - ଶ୍ରୀ ବିଦ୍ୟାଧର ସାହୁ

ଅଲିଶାବଜାର, କଟକ-୨

ଫୋନ୍ : ୦୬୭୧-୨୫୦୮୨୯୬

ମୂଲ୍ୟ : ଅଶୀ ଟଙ୍କା ମାତ୍ର

# ବିଜ୍ଞାପନ

## ଚିର ଚରିତାର୍ଥୀ ବିଜ୍ଞସମାଜ

ଦ୍ୱିତୀୟ ଶ୍ରୀକ୍ଷେତ୍ର ପାପୀ ପାବନ ପବିତ୍ର ଭୂମି ଓଡ଼ଗ୍ରାମରେ ବିଜୟ ଶ୍ରୀ ଶ୍ରୀରଘୁନାଥଜୀଉଙ୍କର ବିଗ୍ରହବନ୍ତ ଦାରୁ ଉପରେ ତଥ୍ୟ ସଂଗ୍ରହ ପୂର୍ବକ ରଘୁନାଥ ପୁରାଣଟି ଲିଖିତ । ଯେଉଁ ଧାମ ମହାତପା ଅତ୍ରିଙ୍କର ଲାଗି ପ୍ରତିଷ୍ଠା । ପରମ କାରୁଣିକ କୋଶଳକିଶୋର ମର୍ଯ୍ୟାଦା ପୁରୁଷୋତ୍ତମ ରଘୁନାଥଙ୍କର ନାନାଦି ଲୀଳାର ଯାତ୍ରାସ୍ଥଳି । ଉତ୍କଳର ଏକ୍ଷେତ୍ର ଦ୍ୱିତୀୟ ଅଯୋଧ୍ୟା କହିଲେ ମଧ୍ୟ ଅତ୍ୟୁକ୍ତି ନୁହେଁ । ଅନୁସୂୟାବନ ପବିତ୍ର ପାଦଦେଶ ଓଡ଼ଗ୍ରାମରେ ଅତିଯଜ୍ଞ ବେଦିକା ଉପରେ ସିଂହାସନ ଓ ମନ୍ଦିର ସ୍ଥାପିତ । ଏଠାରେ ପ୍ରଭୁ ରଘୁନାଥଙ୍କର ନାନାଦି ମହିମା ଲୀଳା ବିଦ୍ୟମାନ । ନୟାଗଡ଼ ରାଜବଂଶର ଏହା ହେଲା ପବିତ୍ର କୀରତ୍ତି ଭକ୍ତଲାଗି ରଘୁନାଥଙ୍କର ବ୍ୟାଘ୍ର ରୂପ ଧାରଣ, ପାଇକ ବେଶରେ, ଶାରଙ୍ଗୀ ଦୁର୍ଗକୁ ଯୁଦ୍ଧକରିବାକୁ ଗମନ, ଭକ୍ତ ସାଧୁଆ ଦାସ ଠାରୁ ଅନ୍ନଭକ୍ଷଣ, ରାତ୍ରରେ ଭକ୍ତ ସହିତ ଯାଇ ତାଳ ଫଳ ଭକ୍ଷଣ, ବେଲ ଗୁଣ୍ଡିଆଣୀଠାରୁ କଦଳୀ ଭକ୍ଷଣ, ଦ୍ୱାଦଶ ଯାତ୍ରା ବିନୋଦ, ଶ୍ରୀରାମ ନବମୀ ଯାତ୍ରାରେ ନବଦିନ ବେଶ ନିର୍ଣ୍ଣୟ, ସାଧୁ ସଙ୍ଗ ଲୀଳା, ରାମସାଗର ସୀତାକୁଣ୍ଡ ମାହାତ୍ମ୍ୟ ଇତ୍ୟାଦି ଏହି ରଘୁନାଥ ପୁରାଣରେ ବର୍ଣ୍ଣିତ କବିସମ୍ରାଟ ଉପେନ୍ଦ୍ରଭଞ୍ଜ ଏହି ପୀଠରେ ବସି ବରପାଇ କବିତ୍ୱ ପ୍ରାପ୍ତି ହୋଇଥିବା ପ୍ରସଙ୍ଗ, ଯେଉଁ ଧାମକୁ ଚିଟଉଲେଖି କଦଳୀ କାନ୍ଧି ଉପରେ ବାନ୍ଧି ଭକ୍ତମାନେ ଦୂର ବିଦେଶରୁ ପଠାଉଛନ୍ତି । ଅନେକ କାମନା ସିଦ୍ଧିର ଯେଉଁ ପୀଠ ପରିଚୟ ଦିଏ, ସେହି କରୁଣା ବରୁଣାଳୟ ରଘୁନାଥଙ୍କର ଏସବୁ ଚରିତକୁ ଏକତ୍ର କରି, ବାଣୀ ସୌରଭ ଉପାଧି ପ୍ରାପ୍ତ କବି ଅର୍ଜୁନ ବାରିକ ବିଦ୍ୟାଭୂଷଣ, ଶ୍ରୀରଘୁନାଥ ପୁରାଣ ଲେଖିଛନ୍ତି ।

ରଘୁନାଥ ପୁରାଣକୁ ପାଠକେ ପାଠକରି ସମସ୍ତେ ପୂର୍ବ ଇତିହାସର କୌତୁକ ପୂର୍ଣ୍ଣ ତଥ୍ୟ ବୁଝିପାରିବେ । ଉତ୍କଳର ଏହି ରୂପାୟନ ଅମୂଲ୍ୟ ଗ୍ରନ୍ଥକୁ ଧର୍ମଗ୍ରନ୍ଥ ଷ୍ଟୋର ଆପଣମାନଙ୍କୁ ଉପହାର ଦେଇ ଅଭିନନ୍ଦନ ଜଣାଉଛି ।

**ପ୍ରାପ୍ତି ସ୍ଥାନ - ଧର୍ମଗ୍ରନ୍ଥଷ୍ଟୋର, ଅଲିଶାବଜାର, କଟକ - ୨**

ପର୍ଶୁରାମ ପୁରାଣ ମୂଲ୍ୟ - ୮୫/-, ସଂଙ୍କୀର୍ତନ ମଣିମାଳା ମୂଲ୍ୟ - ୩୦/-, ଯିଏ ଖୋଜେ ସିଏ ପାଏ ବା ବ୍ରହ୍ମଜ୍ଞାନ ସଞ୍ଚୟନ ମୂଲ୍ୟ - ୨୦/-, ଆତ୍ମଜ୍ଞାନ ହିଁ ମୁକ୍ତିର ମାର୍ଗ ମୂଲ୍ୟ - ୩୫/-, ତୁଳସୀ ଦାସ ବା ରାମଚରିତ ମାନସ ଚଉଦ ଅକ୍ଷରି ମୂଲ୍ୟ - ୨୦୦/

# ଶ୍ରୀ ଶୁଦ୍ରମୁନି ଶାରଳାଦାସଙ୍କ

# ମହାଭାରତ

## ବିରାଟପର୍ବ

### ସୂଚୀପତ୍ର

# ମହାଭାରତ

## ବିରାଟପର୍ବ

ନାରାୟଣ ନମସ୍କୃତ୍ୟଂ ନରଂ ଚୈବ ନରୋତ୍ତମଂ
ଦେବୀଂ ସରସ୍ୱତୀଂ ବ୍ୟାସଂ ତତୋଜୟ ମୁଦୀରୟେତ୍ ।
ବେଦେ ରାମାୟଣେ ଚୈବ ପୁରାଣେ ଭାରତେ ତଥା
ଆଦୌ ଚାନ୍ତେ ଚ ମଧ୍ୟେ ଚ ହରିଃ ସର୍ବତ୍ର ଗୀୟତେ ।

ତଂ ବେଦଶାସ୍ତ୍ରପରିନିଷ୍ଠିତ ଶୁଦ୍ଧବୁଦ୍ଧିଂ
ଚର୍ମାମ୍ବରଂ ସୁରମୁନିନ୍ଦ୍ର ନୂ୍ୟତଂ କବୀନ୍ଦ୍ରଂ ।
କୃଷ୍ଣତ୍ୱିଷଂ କନକପିଙ୍ଗଜଟାକଳାପଂ
ବ୍ୟାସଂ ନମାମି ଶିରସା ତିଳକଂ ମୁନୀନାମ୍ ।

ଆଦୌ ତଦ୍ଧୃତରାଷ୍ଟ୍ରପଣ୍ଡୁ ଜନନଂ ଲାକ୍ଷାଗୃହେ ଦାହନ
ଦ୍ୟୁତେ ସ୍ତ୍ରୀହରଣଂ ବନେ ବିଚରଣଂ ମତ୍ସ୍ୟାଳୟେ ଗୋପନଂ ।
ଲୀଳାଗୋହରଣଂ ହ୍ୟନେନ ତରଣଂ ସନ୍ଧିକ୍ରିୟା ଜୃମ୍ଭଣଂ
ଭୀଷ୍ମ ଦ୍ରୋଣ ଦୁର୍ଯ୍ୟୋଧନାଦି ଦହନଂ ଏତନ୍ମହାଭାରତଂ ।
ଭୀଷ୍ମ ଦ୍ରୋଣ ତଟ୍ଟା ଜୟଦ୍ରଥଜଳା ଗାନ୍ଧାରନୀଳୋତ୍ପଳା
ଶାଲ୍ୟଗ୍ରାହବତୀ କୃପେଣ ବହନୀ କର୍ଣ୍ଣେନ ବେଳାକୁଳା ।
ଅଶ୍ୱତ୍ଥାମାବିକର୍ଣ୍ଣ ଘୋର ମକରା ଦୁର୍ଯ୍ୟୋଧନା ବର୍ତ୍ତିନୀ
ସୋଽତ୍ତୀର୍ଣ୍ଣା ଖଳୁ ପାଣ୍ଡବୈଃ ରଣନଦୀ ଯତ୍କକର୍ଣ୍ଣୋଧାରୋ ହରିଃ ।
ଆଦ୍ୟପର୍ବଂ ସଭାପର୍ବଂ ପର୍ବମାରଣ୍ୟକଂ ତଥା
ବିରାଟପର୍ବଂ ବିଜ୍ଞେୟଂ ଚତୁର୍ଥଂ ତଦନନ୍ତରଂ ।
ଉଦ୍‌ଯୋଗଂ ପଞ୍ଚମ ପର୍ବଂ ଭୀଷ୍ମପର୍ବଂ ତତଃ ପରଂ ।
ସପ୍ତମଂ ଦ୍ରୋଣପର୍ବଂ ସ୍ୟାତ୍ କର୍ଣ୍ଣପର୍ବଂ ତଥାଷ୍ଟମଂ ।
ନବମଂ ଶଲ୍ୟପର୍ବଂ ସ୍ୟାତ୍ ଗଦାପର୍ବଂ ତତଃ ପରଂ
ଐଷିକଂ ତୁ ତଥା ପ୍ରୋକ୍ତଂ ଗର୍ଭ ନାଶମେବ ଚ ।
ତ୍ରୟୋଦଶଂ ତୁ ସ୍ତ୍ରୀ ପର୍ବଂ ପ୍ରଦାନମୁଦକସ୍ୟ ତୁ
ଶାନ୍ତିପର୍ବ ତତଃ ପ୍ରୋକ୍ତାମଶ୍ୱମେଧିକମେବ ଚ ।
ସ୍ୱର୍ଗାରୋହଣକଂ ଚୈବ ହରିବଂଶଂ ତଥୈବଚ
ଇତ୍ୟଷ୍ଟାଦଶପର୍ବାଣାଂ ସାଂଖ୍ୟଦ୍ୱୈପାୟନେରିତା ।
ହେମନ୍ତେ ପ୍ରଥମେମାସି ଶୁକ୍ଳପକ୍ଷେ ତ୍ରୟୋଦଶେ ।
ପ୍ରବୃତ୍ତଂ ଭାରତ ଯୁଦ୍ଧେଂ ନକ୍ଷତ୍ରେ ଯମଦୈବତେ ।
ଭାରତଶ୍ରୁତି ମାତ୍ରେଣ ଗଙ୍ଗାସ୍ନାନେନ ମାନବଃ ।
ବିଷ୍ଣୁ ସ୍ମରଣମାତ୍ରେଣ ସର୍ବପାପୈଃ ପ୍ରମୁଚ୍ୟତେ ।
ବ୍ୟାସଂ ବଶିଷ୍ଠନପ୍ତାରଂ ଶକ୍ତେ ପୌତ୍ରମକଲ୍ମଷଂ ।
ପରାଶରାତ୍ମଜଃ ବନ୍ଦେ ଶୁକତାତଂ ତପୋନିଧିମ୍ ।
ତତ୍ରେ ଚ ଗଙ୍ଗା ଯମୁନା ତତ୍ର ଗୋଦାବରୀ ତତ୍ର ସରସ୍ୱତୀ ଚ ।
ସର୍ବାଣି ତୀର୍ଥାନି ବସନ୍ତି ତତ୍ର ଯତ୍ର ଚୁତୋଦାରକଥା ପ୍ରସଙ୍ଗଃ

## ବନ୍ଦନା

ବନ୍ଦଇ ଶ୍ରୀ ଗଣନାଥଗଉରୀ ନନ୍ଦନ
କପାଳେ ଶୋହେ ତୁମ୍ଭର ଶ୍ରୀଖଣ୍ଡ ଚନ୍ଦନ ।
ଥୋରହସ୍ତ ଗଜଦନ୍ତ ଆଉ ଗଜକର୍ଣ୍ଣ
ପୃଥୁଳ ଶରୀର ଦିଶେ କେଡ଼େ ଶୋଭାବନ
ଦକ୍ଷିଣ ଦ୍ୱାର ଆବୋରିଥାଅ ସବୁବେଳେ
ସୁମରନ୍ତେ ବିଘ୍ନମାନ ହର ଅବହେଳେ ।
ସକଳ ଦେବଙ୍କ ଆଗେ ହୁଏ ତୁମ୍ଭ ପୂଜା
କପଟେ ଅମୃତ ଲଡୁ ନେଇ ନାଗରାଜା ।
ବେନିକରେ ପାଶାଙ୍କୁଶ ଶୋଭଇ ତୁମ୍ଭର
ଶିରରେ ମଣିମୁକୁଟ ଦିଶଇ ସୁନ୍ଦର ।
ଇନ୍ଦୁର ପିଠିରେ ବସି କର ଯେ ଗମନ
ସୁମିଷ୍ଟ ଖସା ଲଡୁରେ ସଦା ତୁଷ୍ଟ ମନ ।
ନୃତ୍ୟ ଗୀତ ବିନୋଦରେ ତୋଷିଲେଶଙ୍କର
ଅନ୍ଧକ ନାଶ ହୋଇଲା ବୁଦ୍ଧିରେ ତୁମ୍ଭର ।
ପାଦପଦ୍ମେ ଜଣାଉଛି ଆହେ ଲମ୍ବୋଦର
ଦଶଦୋଷ କ୍ଷମା କର ଅନ୍ତରୁ ମୋହର ।
ଶ୍ରୀଚଣ୍ଡୀ ଶାରଳା ମୋର ସ୍ଥିରକର ମନ
ଯେହ୍ନେ ଶେଷ ହେଉ ଏହି ଭାରତ ଆଖ୍ୟାନ ।
ପୁଣ୍ୟ ପବିତ୍ର ଏହୁ ଯେ ଗଙ୍ଗା ନଦୀ ଧାର
ବ୍ୟାସମୁଖୁ ପ୍ରକାଶିତ ସଂସାରର ସାର ।
ବିରାଟ ପର୍ବର କଥା ଅଟେ ରସ ବାଣୀ
ପବିତ୍ର ହୋଇବ ନରେ ଏହିକଥା ଶୁଣି ।
ଘୃତ ମଧୁ ଶର୍କରା ଯେ ଅଟଇ ମଧୁର
ତହିଁରୁ ଅଧିକ ଏହା ମନରେ ବିଚାର ।
ହରିଙ୍କର ନାମଗୋଟି ମୁକ୍ତି ଗତି ସାର
ସେହୁ ନାମ ଗୋଟି ସଦା ରହୁ ମୋ ଅନ୍ତର ।
ସକଳ ଜନଙ୍କ ହିତେ କହୁଛି ମୁଁ ବାଣୀ
ମନ ନିର୍ମଳ ହୋଇବ ଏହି କଥା ଶୁଣି ।
ଶୋକ ମୋହ ହିଂସା ଦ୍ୱେଷ ତମ ଆଦିକରି
ଏହାକୁ ଶୁଣିଲେ ସର୍ବେ ପଳାଇବେ ଡରି ।
ବିରାଟ ପର୍ବରେ ଯାହା ଶ୍ରୀଶାରଳା ଦାସ
ବର୍ଣ୍ଣନା କରିଛି ତାହା କରିବି ପ୍ରକାଶ ।



## ପାଣ୍ଡବଙ୍କ ଗୁପ୍ତବାସର ପରାମର୍ଶ

ଅଗସ୍ତିଙ୍କୁ ପୁଚ୍ଛାକଲେ ବୈବସ୍ୱତ ମନୁ
ବିରାଟପର୍ବର କଥା କହ ଆମ୍ଭେ ଶୁଣୁ ।
ଦ୍ୱାଦଶ ବର୍ଷ ପାଣ୍ଡବେ ବୁଲି ଘୋରବନେ
ଅଜ୍ଞାତବାସରେ କାହିଁ ରହିଲେ ଗୋପନେ ।
କେଉଁରୂପେ ବିରାଟ ଯେ ନ ଚିହ୍ନିଲା ତାଙ୍କୁ
ବର୍ଣ୍ଣ ଦେଖି ନ ଚିହ୍ନିଲେ ଭୀମ ଅର୍ଜ୍ଜୁନଙ୍କୁ
ଦ୍ରୌପଦୀ ଦେବୀ କେସନେହୋଇଲେ ଗୁପତ
ଆବର ଅଟେ ନକୁଳ ବୀର ବୁଦ୍ଧିମନ୍ତ ।
ଯୁଧିଷ୍ଠିର ସତ୍ୟବ୍ରତେ ସର୍ବଦା ନିଯୁକ୍ତ
ରୂପଗୁଣେ କେଉଁପରି ନୋହିଲେ ବ୍ୟକତ ।
ଏଥିର ଚରିତ ମୋତେ କହ ମହାମୁନି
ପବିତ୍ର ହୋଇବି ଏହି ଚରିତକୁ ଶୁଣି ।
କହନ୍ତି ଅଗସ୍ତି ହେତୁକର ପଞ୍ଚମନ
ଯାହା ପୁଚ୍ଛାକଲ ତାହା ସ୍ଥିରମନେ ଶୁଣ ।
ଅଶୀସହସ୍ର ବ୍ରାହ୍ମଣ ନିକଟେ ବସାଇ
ଆବର ଦ୍ୱାଦଶସସ୍ର ଉର୍ଦ୍ଧ୍ୱରେ ତା ଥାଇ ।
ବୋଇଲେ ଯୁଧିଷ୍ଠିଦେବ ପ୍ରଣିପାତ ହୋଇ
ଏକମନେ ଶୁଣ ମୁଁ ଯେ କଥାଏ କହଇ ।
ତୁମ୍ଭର ପ୍ରସାଦେ ଶିଖେ ବନସ୍ତେ ବୁଲିଲି
ପୁଣ୍ୟକଥା ଶୁଣି ମୁହିଁ କୃତାର୍ଥ ହୋଇଲି ।
ନାରଦ କହିଣ ଥିଲେ ଯେତେ ତୀର୍ଥମାନ
ତୁମ୍ଭ ପ୍ରସାଦେ ବୁଲିଲି ସେହି ସର୍ବସ୍ଥାନ ।
ମୋତେ କଲ୍ୟାଣ କରିଣ ଆହେ ତପୋଧନ
ଏ ସ୍ଥାନରୁ ଯେଝାସ୍ଥାନେ କରନ୍ତୁ ଗମନ ।
ଅଜ୍ଞାତବାସରେ ଏବେ ରହିବି ମୁଁ ବନେ
ତୁମ୍ଭଙ୍କୁ ଘେନି କିପରି ରହିବି ଗୋପନେ ।
ଦୁର୍ଯ୍ୟୋଧନ ଠାବେ ଠାବେ କରି ଅନ୍ୱେଷଣ
ପୁଣିହିଁ ଦ୍ୱାଦଶ ବର୍ଷେ ପଠାଇବ ବନ ।
ଯେଣୁ ମୁଁ ଜାଣଇ ତାର ଯେରୂପ ଚକ୍ରାନ୍ତ
ଅତଏବ ଯେଝାସ୍ଥାନେ ଯାଆନ୍ତୁ ତୁରିତ ।
ଆଜିଠାରୁ ବିଚ୍ଛେଦ ହେଲା ସେବାମୋର
କପାଳରେ ବିହି ଯାହା ଲେଖିଅଛି ତାର ।
ବ୍ରାହ୍ମଣ ଋଷି ଏ ଶୁଣି କରିଲେ ଆଶିଷ
ଆଜିଠାରୁ ତୁମ୍ଭ ଶତ୍ରୁ ସର୍ବେ ଯାନ୍ତୁ ନାଶ ।
ସର୍ବଦ୍ୱିଜ ଗଲେ ଧର୍ମରାଜ ଆଜ୍ଞା ପାଇ
ଧୌମ୍ୟ ପ୍ରୋହିତଙ୍କୁ ରାୟ ବୋଲନ୍ତି ଅନାଇଁ ।

କିପରି ରହିବୁ ଆମ୍ଭେମାନେ ହୋଇ ଗୋପ୍ୟ
ବିଚାରି ମୋହ ଆଗରେ କହ ହେ ସ୍ୱରୂପ ।
ବୋଲୁଛନ୍ତି ପୁରୋହିତ କଥା ଭବିଷ୍ୟତ
ବିରାଟ ରାଜ୍ୟେ ରହିବ ହୋଇଣ ଗୁପତ ।
ଆବର କଥାଏ ତୁମ୍ଭେ ଶୁଣ ଯୁଧିଷ୍ଠିର
ବନବାସଠାରୁ ଯେବା ଅତି କଷ୍ଟକର ।
ତୁମ୍ଭେ ନିଜରାଜ୍ୟେ ରାଜା ହୋଇଥିଲ ସୁଖେ
ତାର ସେବାରେ କାଟିବ ଜୀବନକୁ ଦୁଃଖେ ।
ଏ ଛାର କଥାକୁ ମନେ ନ ଧର ନୃପତି ।
ତର୍କଠାରୁ ଗୁରୁତର ଅଜ୍ଞାତର ସ୍ଥିତି ।
ପ୍ରକୃତି ପରମ ଚିତ୍ର ଜାଣିବା ନା ସମ
ବଶବର୍ତ୍ତୀ ହୋଇ କାହିଁ ପାଳିବା ନିୟମ ।
ଦିଶ ତୁମ୍ଭେ ପାଞ୍ଚଜଣ ଇନ୍ଦ୍ରର ସମାନ
ଆନଠାବରେ ରହିବ ଗୋପନେ କେସନ ।
ଗୋପ୍ୟସ୍ଥାନ ଭେଦି ଯେହ୍ନେ ନ ପାଇବଆନ
ସେହି ରୂପେ ହୋଇ ରହିଥିବ ଷଡ଼ଜଣ ।
ଧର୍ମାଧର୍ମ ସଦାକାଳେ ତୁମ୍ଭେ ପାଳୁଥିବ
ସତ୍ୟରୁ କିଞ୍ଚିତ ମାତ୍ର ବିମୁଖ ନୋହିବ ।
ଯେଉଁ ରୂପେ ନିଜ ଛିଦ୍ର ଅନ୍ୟ ନ ଜାଣିବ
ସେହି ରୂପେ ଯତନରେ ନିୟମ କରିବ ।
ଯେ ଯାହାର ଅପରୂପେ ସେବାକାରୀ ହେବ
ଚାରି ଭାଇଙ୍କୁ ନିକଟୁ କେଭେଁ ନ ଛାଡ଼ିବ ।
କାଳ ଅପେକ୍ଷା କରିଣ ଏଥୁଁ ହୁଏ ପାର
ହୋଇବ ଏକାଙ୍ଗ ଚକ୍ରବର୍ତ୍ତୀ ରାଜେଶ୍ୱର ।
ବୋଲନ୍ତି ଯୁଧିଷ୍ଠି ତୁମ୍ଭେ ଶୁଣ ପୁରୋହିତ
ମୋହର କହିବା କଥା କରିବ ନିୟତ ।
ପଞ୍ଚକୁମାରଙ୍କୁ ଘେନି ପାଞ୍ଚାଳର ଦେଶେ
ଯାଇଁ କୁଶଳେ ରହିବ ଦ୍ରୁପଦର ପାଶେ ।
ମୋହର ନିମନ୍ତେ ତୁମ୍ଭେ ଏ କଷ୍ଟ ସହିବ
ଏ ସବୁ ଯେତେକ କଥା ତାଙ୍କୁ ଜଣାଇବ ।
ମୋହର ଏତିକି ଭିକ୍ଷା ଘେନିଯାଅ ପୁର
ଅନ୍ୟକଥା ଆଉ କିଛି ମନରେ ନଧର ।
ଯୁଧିଷ୍ଠିରଙ୍କ ବଚନେ ଧୌମ୍ୟ ମହାଋଷି
ବୋଇଲେ ତୁମ୍ଭ ବଚନେ ଥିବୁ ତହିଁ ପଶି ।
ବୋଲୁଛନ୍ତି ଧର୍ମଅବା କରିବ ନିୟମ
ସ୍ୱଅର୍ଜିତ କର୍ମ ତୁମ୍ଭେ ଜାଣ ନୃପ କର୍ମ ।

ସେବା ବଡ଼ କଷ୍ଟ ମୁହିଁ ଜାଣଇ ରାଜନ
ଜ୍ଞାନ ହୁଅନ୍ତେ ନାଶଇ ସର୍ବ କର୍ମମାନ ।
ଭୀମସେନକୁ ଗୋପନ କରିବି କେଶନ
ନକୁଳ ସହଦେବ ଯେ ଆବର ଅର୍ଜୁନ ।
ଦ୍ରୌପଦୀ କିପରି ଭାବେ ହୋଇବ ଗୁପତ ।
ଦେବ ଅସୁର ମୋହିନୀ ତା ରୂପ ଅଟେ ତ ।
ଆପଣେ ଗୁପ୍ତ କେସନେ ହୋଇବ ରାଜନ
ଏଥକୁ ତୁମ୍ଭେ ବିଚାର କର ପଞ୍ଚମନ ।
ଅଜ୍ଞାତବାସରୁ ତୁମ୍ଭେ ପାରିହୁଅ ଭଲେ
ଦୁଃଖ ବୋଲିଣ ଏହାକୁ ନ ଚିନ୍ତିବ ତିଳେ ।
ଯେ ରୂପକୁ ନ ଚିହ୍ନିବେ ପୂରୁଖ ଅଜ୍ଞାନେ
ଯତନେ ତୁମ୍ଭେ ସେ ରୂପେ କର ପଞ୍ଚମନେ ।
ଏହିରୂପେ ତିଆରିଣ ଗଲେ ପୁରୋହିତ
ଦୁଃଖେ ପାଞ୍ଚଭାଇ ମନେ ହୁଅନ୍ତେ ଚିନ୍ତିତ ।
ପାଣ୍ଡବେ ପୁରୋହିତଙ୍କୁ ଛାଡ଼ି ତହିଁ ରହି
ଜଳକ୍ରୀଡ଼ା ଭୟେ ଚିନ୍ତାକଲେ ପାଞ୍ଚଭାଇ ।
ଭାଳନ୍ତି ଯେ ଯୁଧିଷ୍ଠିର ହୋଇ ଖେଦମନ
କାହିଁ ଗୁପତେ ରହିବୁ ଆମ୍ଭେ ଷଡ଼ଜଣ ।
ଏହି ଦେବ ଅସ୍ତ୍ରମାନ ଥୋଇବା ବା କାହିଁ
ଏକାନ୍ତେ ଏକତ୍ରେ ସର୍ବେ ଯିବା କେଉଁଠାଇଁ ।
ଗୁପତେ ଥାଇ କେସନେ ଦିନ କଟାଇବା
ଆପଣା ମନେ ଭାଳନ୍ତି ଯୁଧିଷ୍ଠିର ଦେବା ।
କେବଣ ଉପାୟ କରି ହରିବାଟି ଦିନ
କି ଉପାୟେ କଟାଇବା ଏକବର୍ଷ ପୁଣ ।
ମୋହର ଆଗରେ କହ ସର୍ବ ବିଚାରିଣ
ନୟନ ନ ଚିହ୍ନେ ଯେହ୍ନେରାଜା ଦୁର୍ଯ୍ୟୋଧନ ।
ଏହିରୂପେ ପାଞ୍ଚଭାଇ ଦ୍ରୌପଦୀ ସହିତ
ବନେ ବସି ଭାଳୁଛନ୍ତି ହୋଇଣ ଦୁଃଖିତ ।
ଏମାନଙ୍କ ଭାଳେଣିକୁ ଜାଣି ଶଚୀପତି
କୁବେରକୁ ରାଇ ଆଜ୍ଞା କରିଲେ ଝଟତି ।
ଯୁଧିଷ୍ଠିରଙ୍କ ନିକଟେ ଯାଅ ଯକ୍ଷପତି
ଶମୀବୃକ୍ଷର ବୃତ୍ତାନ୍ତ କହ ତାଙ୍କ କତି ।
ବ୍ରହ୍ମା ସେ ବୃକ୍ଷ ସର୍ଜନ କରିଛନ୍ତି ପୂର୍ବେ
ବୁଝାଇ କହିବ ତାଙ୍କୁ ଭାଳୁଛନ୍ତି ସର୍ବେ ।
ସେ ବୃକ୍ଷରେ ଶସ୍ତ୍ରମାନ ଯତନେ ରଖନ୍ତୁ
ଛଦ୍ମରେ ରହି ଗୁପତ ବେଶକୁ ଧରନ୍ତୁ ।

ନିଜରୂପ ଗୋପ୍ୟ କରି ସୁଖେଥାନ୍ତୁ ରହି
ଏହି ଜ୍ଞାନ ଦେଲେ ତାଙ୍କୁ ଶଚୀଦେବୀ ସାଇଁ ।
ଶୁଣି କୁବେର ଅଇଲେ ତହିଁ ଅତି ବେଗେ
କହିଲେ ସମସ୍ତ କଥା ଯୁଧିଷ୍ଠିଙ୍କ ଆଗେ ।
କିମ୍ପା ଚିନ୍ତାମଗ୍ନ ହୋଇ ବସ ଯୁଧିଷ୍ଠିର
ଅସ୍ତ୍ର ଥୁଅ ଏହି ଶମୀ ବୃକ୍ଷର କ୍ରୋଟର ।
ଏ ସର୍ବ ଅସ୍ତ୍ର ଅନ୍ୟତ୍ର ନୁହଇ ସଂହାରି
ଯତନେ ନିର୍ମାଣ ଏହା ଧାତା ଅଛି କରି ।
ଶସ୍ତ୍ର ଏ ସ୍ଥାନେ ରଖିଲ ବୋଲିବ ଅର୍ଜ୍ଜୁନ
କ୍ରୋଟରେ ରଖଇ ସହଦେବ ଅସ୍ତ୍ରମାନ ।
ଆଜ ଇନ୍ଦ୍ର ଦେବ ଆଜ୍ଞା କରିବାରୁ ମୋତେ
ଆସିଲି କହିବା ପାଇଁ ତୁମ୍ଭର ସାକ୍ଷାତେ ।
ବିରାଟ ଦେଶରେ ଯାଇ ରହ ପାଞ୍ଚଭାଇ
ନିଜ ନିଜ ସ୍ୱରୂପକୁ ବେଗେ ବଦଳାଇ ।
ଏଥକୁ ଚିନ୍ତା ନ କର ଆପଣାର ମନ
ଯତ୍ନେ ଆଜ୍ଞା କରିଛନ୍ତି ସହସ୍ର ଲୋଚନ ।
ଏହା କହିଣ କୁବେର ହେଲେ ଅନ୍ତର୍ଦ୍ଧାନ
ଶୁଣି ରଙ୍ଗେ ଗମିଲେ ଯୁଧିଷ୍ଠିରାଜନ ।
ଯୁଧିଷ୍ଠି ବୋଇଲେ ବାବୁ ଦଇବ ଲିଖନ
ପୂର୍ବର ଭିଆଣ ଯାହା କେ କରିବ ଆନ ।
ରାଜ୍ୟ ତଡ଼ିଦେଲା ଦେଇ ବହୁ ଅପମାନ
ପାର୍ଥ ତୋର ବଳେ ରାଜ୍ୟ କରିବୁ ଅର୍ଜ୍ଜନ ।
ଯହୁଁ ପ୍ରସନ୍ନ ତାହାଙ୍କୁ ହୋଇଲେ ବିଡ଼ୋଜା ।
ଗନ୍ଧର୍ବ ଆସିଲା ତାକୁ ସର୍ବେ କଲେ ପୂଜା ।
ଅପସରୀ ଜ୍ୟୋତି ଜାତ ଅର୍ଜ୍ଜୁନର ବୀର୍ଯ୍ୟେ
ପ୍ରଜଣ୍ଡଇଳି ନାମରେ ତାହାର ତନୁଜେ ।
ଅର୍ଜ୍ଜୁନ ସହିତେ ତାର ଅତ୍ୟନ୍ତ ପୀରତି
ଗନ୍ଧର୍ବ ବୋଇଲା ତହିଁ ଶୁଣ ଆହେ ନାତି ।
ମୁହିଁ ତୋରେ ବଚନେକ କହିବି ଅର୍ଜ୍ଜୁନ
ଯାହାତ ମାଗିବୁ ଦେବି ମୋ ସତ୍ୟ ବଚନ ।
ଏ କଥା ଶୁଣିଣ ତହୁଁ ବୋଇଲେ ଅର୍ଜ୍ଜୁନ
ଗୁପତ କରି ରଖିବୁ ଆମ୍ଭ ଅସ୍ତ୍ରମାନ
ବର୍ଷକଯାଏ ରଖିବୁ ତୁହି ମୋର ହିତେ
ଦିନକୁ ଯେ ତିନିରୂପ ଧରିଥିବୁ ଗାତ୍ରେ ।
ରକ୍ତ ବହି ପଡୁଥିବ ତୋ ଶରୀରୁ କ୍ଷିତି
କ୍ରୋଟେ ଶସ୍ତ୍ର ରଖି ମୋର ରଖିବୁ ପୀରତି ।
ଶୂନ୍ୟରେ ତୁ ଲମ୍ବିଥିବୁ ହୋଇ ଜାମ୍ଭଭେଦୀ
ତୋହର ପ୍ରସାଦେ ଆମ୍ଭେ ହୋଇବୁ ନିର୍ଦ୍ୱନ୍ଦୀ
ପ୍ରଚଣ୍ଡବଳୀ ବୋଇଲା ଥିବି ତୁମ୍ଭ ଅର୍ଥେ
ଯା ମୋହର ଭାଗ୍ୟ ଆଜ୍ଞାହେଲା ତୋର ଚିତ୍ତେ
ଅର୍ଜ୍ଜୁନ ବୋଇଲେ ଯେହୁ ପରଉପକାରୀ
ଦୟା ଦକ୍ଷିଣାରେ ତୋତେ କିବାଦେଇପାରି
ମଧ ବୃକ୍ଷରେ ଯେ ଥିବା ଯେଉଁ ଅସ୍ତ୍ରସାର
ତୋର ପରାକ୍ରମେ ତାକୁ କରିବୁ ସଂହାର ।
କୁବେର କହିବାମତେ ପାଣ୍ଡବେ ସକଳେ
ପ୍ରବେଶ ହୋଇଲେ ଯାଇଁ ଶମୀବୃକ୍ଷ ତଳେ ।
ସହଦେବ ଆରୋହଣ କରିଲେ ବୃକ୍ଷରେ
ସକଳ ଅସ୍ତ୍ରକୁ ନେଇ ରଖିଲେ କ୍ରୋଟରେ ।
ବଦନ୍ତି ଅଗସ୍ତି ତୁ ହୋ ଶୁଣ ରାୟ ମନୁ
କହିଲି ମୃତପିଣ୍ଡର ଚରିତ ବିଧାନୁ ।

—●—

## ଯୁଧିଷ୍ଠିରଙ୍କର ବିରାଟ ସଭାକୁ ଗମନ

ମନୁ ପୁଚ୍ଛାକଲେ ପୁଣି ଅଗସ୍ତିକୁ ବାଣୀ
ପବିତ୍ର ହୋଇଲି ମୁହିଁ ଧର୍ମ କଥା ଶୁଣି ।
ଏଥୁଅନନ୍ତରେ କି କି କଲେ ପାଞ୍ଚଭାଇ
ଆଗତ ଚରିତ ମୋତେ କହ ତପୀସାଇଁ ।
କହନ୍ତି ଅଗସ୍ତି ଶୁଣ ଆହେ ଚଇତନ
ପ୍ରତ୍ୟକ୍ଷେ ଈଶ୍ୱର ସେହି ଯୁଧିଷ୍ଠି ରାଜନ ।
ତହୁଁ ପଣ୍ଡୁ ପୁତ୍ରମାନେ ଅରଣ୍ୟରେ ପଶି
ଭାବନା କରନ୍ତି ତହିଁ ଏକାନ୍ତରେ ବସି ।
ଶୁଣ ଆହେ ଚଇତନ ବଦନ୍ତି ଅଗସ୍ତି
କୀଚକର ଭାର ଯହୁଁ ନ ସହିଲା କ୍ଷିତି ।
ବ୍ରହ୍ମାପାଶେ ଜଣାଇଲା ଯାଇ ବସୁମତୀ
ସେହି ଦେବ ପାଣ୍ଡବଙ୍କ ଏସନ ଦୁର୍ଗତି ।
ଧର୍ମ ବୋଲେ ତୁ ଯା ଭୀମ ବିରାଟ ସଭାକୁ
ବିରାଟ ଚିହ୍ନିପାରେ କି ନ ପାରେ ତୁମ୍ଭଙ୍କୁ ।
ମତ୍ସ୍ୟରାଜା ତୋତେଯେବେ ଚିହ୍ନିପାରେ ଅବା
ନଯିବା ଆଉ ସେ ରାଜ୍ୟେ ପର୍ବତେ ରହିବା ।
ଭୀମସେନ ବୋଲେଦେବ ଆଗେଯେବେଯିବି
କାହାର ମୁଖକୁ ଚାହିଁ ସମସ୍ୟା କରିବି ।
ଜାଣିକରି ମୋତେଯେବେ ନକରେ ଗୌରବ
ମୋହର କୋପରେ ସେହୁ ନିଶ୍ଚେ ନାଶଯିବ ।

ସ୍ୱାମୀ ତୁମ୍ଭେ ଆଗେ ବସ ବିରାଟ ଆସନେ
ସମସ୍ତ ସିଦ୍ଧ ହୋଇବ ତୁମ୍ଭ ଦରଶନେ ।
ଭୀମ ବଚନେସନ୍ତୋଷ ହେଲେ ଦେବକୋନ୍ତ
ସଭାପଣ୍ଡା ବେଶ ତହୁଁ ଧଇଲେ ତୁରିତ ।
ଲମ୍ବିତ କରିଣ ଜୁଡ଼ା ତ୍ରିକଚ୍ଛ ବସନ
ତାମ୍ରବର୍ଣ୍ଣ ନେତ୍ର ଶିରେ ଶ୍ରୀଖଣ୍ଡ ଚନ୍ଦନ ।
ଶଉଚ ତାମ୍ରପାତ୍ରକୁ ଧଇଲେ ସେ କରେ
ଏକବିଡ଼ା କୁଶ ନେଇ ବାନ୍ଧିଲେ ଅଣ୍ଟାରେ ।
ବେଦର ସମାନ ବିଷ୍ଣୁ ପୁରାଣର ପୋଥି
ବାମକନ୍ଧେ ଯଜ୍ଞସୂତ୍ର ଶୋଭାପାଏ ଅତି ।
ପଞ୍ଚମୁଖୀ ଦେବଶଙ୍ଖ ଧରି ଦକ୍ଷ କରେ
ଚାଲନ୍ତେ ମୋହୁଅଛନ୍ତି ଜଗତର ନରେ ।
ନିରାକାର ପୁରୁଷ ଯେ ଅଟନ୍ତି ଯୁଧିଷ୍ଠି
ଯଜ୍ଞୋପବୀତ ଦ୍ୱାଦଶ ଚିତା ଅଙ୍ଗେ କାଟି ।
ଅଗ୍ନିର ସମାନ ସେହି ଗୋପନ ଦେବତା
ଆଜ୍ଞାପାଇ ବିଜେ କିବା ପବିତ୍ର ସବିତା ।
ଏସନକ ସମୟେ ସେ ବ୍ରାହ୍ମଣଙ୍କ ମେଳେ
ପ୍ରବେଶ ହେଲେ ବିରାଟ ସଭାର ଗହଳେ ।
ପଣ୍ଡୁଙ୍କର ନନ୍ଦନ ଯେ କରନ୍ତି ଗମନ ।
ଅତ୍ୟନ୍ତ ସୁନ୍ଦର ଦିଶେ ସେ ମତ୍ସ୍ୟ ଭବନ ।
ଚିନ୍ତନ୍ତି ଦଧିବାମନ ହେ ସର୍ବ ମଙ୍ଗଳେ
ପଶ୍ଚିମ ମୁରତି ହୋଇ ବାଞ୍ଛାବଟ ତଳେ ।
ଧନୁମାସ ଶୁକ୍ଳ ତ୍ରୟୋଦଶୀ ଗୁରୁବାରେ
ପୁନର୍ବସୁ ନକ୍ଷତ୍ର ଯେ ଅଟେ ସେ ଦିନରେ ।
ତୈତିଳ ନାମେ କରଣ ପ୍ରୀତିନାମେ ଯୋଗ
ତାର ଚନ୍ଦ୍ର ବେଳରେ ରୋହିଣୀଘରେ ଭୋଗ ।
ବିଜୟେ ଧର୍ମନନ୍ଦନ ସୁବାଣୀ ସୁଠାଣୀ
ଚାଳନା କରନ୍ତି ପାଦ କଳହଂସ ଜାଣି ।
ଧର୍ମ ନନ୍ଦନଙ୍କ ଗତି ଅତି ଶୋଭାପାଏ
ମତ୍ତଗଜ ପ୍ରାୟେ ଗତି ତିନିଲୋକ ମୋହେ ।
ଦରହସିତା ହୋଇଣ ମୁଖ ବିକାଶଇ ।
ମତ୍ସ୍ୟଦେଶରେ ପ୍ରବେଶହେଲେ ଦେବ ଯାଇଁ ।
ନବରରେ ପ୍ରବେଶନ୍ତେ ଦେଖି ବୃଦ୍ଧଜନେ
ବିଚାରିଲେ ଇନ୍ଦ୍ର କିବା ଆସିଲେ ଏ ସ୍ଥାନେ ।
କେଉଁ ଦେବତା ମଧ୍ୟସ୍ଥ ପଣେ ଏଥେ ଆସେ
ମନୁଷ୍ୟର ଅବତାର ପରାୟେ ନ ଦିଶେ ।
ସମ୍ଭର୍ବେ ଆସନ ପରେ ବିଜେ ମତ୍ସ୍ୟପତି
ବାମଦେବ ପ୍ରୋହିତ ଯାଚକେଶ୍ୱର ମନ୍ତ୍ରୀ ।
ବତିଶଲକ୍ଷ ଯୋଦ୍ଧା ଯେ ତ୍ରିଦଶ ପାଦଣ୍ଡ
ଖଟନ୍ତି ଆସ୍ଥାନ ତଳେ ଧରି ଛତ୍ରଦଣ୍ଡ ।
ଲକ୍ଷେ ପାଟଛତ୍ର ବେନିଲକ୍ଷ ଯେ ଆଢ଼େଣି
ଚାରିଲକ୍ଷ ଆଲଟ ମୟୁରଚ୍ଛୁଲ ପୁଣି ।
ସାତ ଅକ୍ଷୌହିଣୀ ବଳଛନ୍ତି ପଟୁଆରୀ
ଅଗଣିତ ବୀର ତୁର ବାଜେ ଶଙ୍ଖଭେରୀ ।
ଏକଲକ୍ଷ ଶଙ୍ଖ ବାଜେ ଆସ୍ଥାନର ତଳେ
ପଣ୍ଡୁଙ୍କର ଜ୍ୟେଷ୍ଠ ସୁତ ବିଜେ ଏହିକାଳେ ।
ଦ୍ୱାରଦେଶେ ବିଜେ ହେଲେଯାଇ ଯୁଧିଷ୍ଠିର
ଦେଖିଣ ଦ୍ୱାରୀ ତାହାଙ୍କୁ ହୋଇ ତରତର ।
ଭୟେ ଦ୍ୱାର ଛାଡ଼ିଦେଲା ଯହୁଁ ଦ୍ୱାରପାଳ
ବିରାଟ ବୋଇଲେ ଏହା କେଉଁ ଦିଗପାଳ ।
ଯଶୋବନ୍ତୀପୁର ତେଜି ଆସିଲେ କି ବ୍ରହ୍ମା
କେହୁ ବୋଲଇ ସାଗର ପତି ମହାତମା ।
ଅଳକା ପୁରର ନାଥ କିବା ଏ କୁବେର
କି ଅବା ଗନ୍ଧର୍ବନାଥ କିବା ସୁନାସୀର ।
ଈଶ୍ୱର ପୁରୁଷ କି ଏ କପିଳାସବାସୀ
ବାହନ ଅଭାବେ ବିଜେ ପାଦଗତେ ଆସି ।
ବିରାଟ ଅଗ୍ରତେ ମନ୍ତ୍ରୀବର ପ୍ରକାଶଇ
ମୁର୍ଦ୍ଧାଭିଷେକୀ ପରାୟେ ପୁରୁଷ ଦିଶଇ ।
ଅଭିଷେକ ଜଳ ପାଦେ କେଭେ ନ ଚାଳଇ
ହତଶ୍ରୀ ପ୍ରାୟେକ ତନୁ ବିଚାର କରଇ ।
ଆକୁଞ୍ଚିତ କେଶ ପୁଣି ସୁସଞ୍ଚ ବଦନ
ରସଣୀ କଢ଼ି ପ୍ରାୟେକ ଲଲାଟ ଚନ୍ଦନ ।
ନୀଳରେଖା ପ୍ରାୟେ ତଥିପରେ ରୋମାବଳୀ
ହୀରା ଦର୍ପଣରେ ନୀଳରେଖା ପ୍ରାୟେ ଝଳି ।
ଖଗଚଞ୍ଚୁ ଜିଣି ନାସା ଦିଶଇ ମଞ୍ଜୁଳା
ଗୁଞ୍ଜାଫଳ ପ୍ରାୟେ ଦିଶେ ବେନିନେତ୍ର ଡୋଳା ।
ପକ୍ୱବିମ୍ବ ପରକାରେ ଦିଶଇ ଅଧର
ଡାଳିମ୍ବ ବୀଜ ପ୍ରାୟେକ ଦନ୍ତ ଶୋଭାକର ।
ଗଜ ଥୋର ହସ୍ତ ନ୍ୟାୟେ ବେନିକର ଦିଶି
ଚମ୍ପାକଢ଼ି ପ୍ରାୟେ ଦଶ ଅଙ୍ଗୁଳି ବିକାଶି ।
ଦହଉଁ ସୁବର୍ଣ୍ଣ ଜିଣି ଦିଶୁଥାଇ ତନୁ
ଉଲଟରମ୍ଭା ବୃକ୍ଷର ପ୍ରାୟେ ବେନିଯାନୁ ।
ଅଁଏଳା ପୁଷ୍ପ ପରାଏ ତଳିପାର କାନ୍ତି
ଘଟଣ ପୋଏଳା ଜିଣି ଅଙ୍ଗୁଷ୍ଠି ଦିଶନ୍ତି ।
ତଣଟ ପାଖୁଡ଼ା ପ୍ରାୟେ ତହିଁ ବରୋରୁହ
ନନ୍ଦୁରାଜାପ୍ରାୟେ ଯାଙ୍କୁ ହେଉଛି ସନ୍ଦେହ ।
ସେ ଆସ୍ଥାନଯାକ ଦେଖି ହୃଷ୍ଟମନ ହୁଏ
ଉପରେ ଉଠିଲେଯାଇ ତପୋଧନ ପ୍ରାୟେ ।
ମନ୍ତ୍ରୀ ଦେଖିଣ ବୋଇଲେ ଉଠ ହୋ ବିରାଟ
ଶୁଭେ ଏ ମହାତମାଙ୍କ ପାଇଅଛ ଭେଟ ।

ଦେବ ବିପ୍ର ତପୀ ଦେଖି କରନ୍ତି ହେ ପୂଜା
ମନ୍ତ୍ରୀଙ୍କ ବାକ୍ୟେ ଉଠିଲେ ମତ୍ସ୍ୟଦେଶ ରାଜା ।
ଉଭା ଯେ ହୋଇଲେ ରାଜା ନିଜ ସ୍ଥାନ ଛାଡ଼ି
ବିରାଟ ଆସ୍ଥାନଦେବ ବସିଲେ ଯେ ମାଡ଼ି ।
ଆସ୍ଥାନେ ବସିଲେ ଯାଇ ଧର୍ମ ପଣ୍ଡୁସୁତ
ମତ୍ସ୍ୟଦେଶ ରାଜା ଦେଖି ହେଲେ ପ୍ରଣିପାତ ।
ସମସ୍ତେ ପ୍ରଣାମ କଲେ ରାଜା ପାଦତଳେ
ସମସ୍ୟାକରି ଚାହାଁନ୍ତେ ଧର୍ମବେନି ଡ଼ୋଳେ ।
ସମସ୍ତେ ମଉନ ହେଲେ ନସ୍ଫୁରଇ ବାଣୀ
ସ୍ତମ୍ଭୀଭୂତ ହେଲେଯେହ୍ନେ ମୌନବ୍ରତ ମୁନି ।
ମନ୍ତ୍ରୀ ବୋଇଲେ ସମସ୍ୟା କର ଦେବରାୟ
ବିରାଟ ବୋଇଲେ ତୋତେ ଲାଗୁଅଛିଭୟ ।
ହେ ମୁନି ତୁମ୍ଭେ ତାହାଙ୍କୁ କହି ତୁଷ୍ଟବାଣୀ
କିସ ଉତ୍ତର ଦିଅନ୍ତି ତୁମ୍ଭବାଣୀ ଶୁଣି ।
ମନ୍ତ୍ରୀ ବୋଇଲେ ଆପଣ ରାଜ୍ୟ ଅଧିକାରୀ
ସମସ୍ୟା ବଚନ ମୁହିଁ କିସ କହିପାରି ।
ହସ୍ତ ମର୍ଦ୍ଦି ଛାମୁରେ ଯେ କହନ୍ତି ବିରାଟ
କେଉଁ ରାଜ୍ୟର ଠାକୁର ସ୍ୱାମୀ ତୁମ୍ଭେ ଅଟ ।
କେଉଁ ଦିଗପାଳ ଅବା କେଉଁ କୁଳେ ଜାତ
ମାନବ ବୋଲି ବିଶ୍ୱାସ ନୁହଇ ମୋ ଚିତ୍ତ ।
କେଉଁ ରାଷ୍ଟ୍ରେ ଘର ତୁମ୍ଭ କିଏ ବାପ ମାଏ
କହୁଛନ୍ତି ଧର୍ମସୁତ ଶୁଣ ମତ୍ସ୍ୟରାୟେ ।
ଯାହା ପଚାରିଲ ତାହା ଶୁଣ ହେ ନୃପତି
ପଶ୍ଚିମ ସୌରାଷ୍ଟ୍ରେ କୁଞ୍ଜଗଳ ଚକ୍ରବର୍ତ୍ତୀ ।
ଚନ୍ଦ୍ର ଗୋତ୍ରେ ଧର୍ମଦାସ ପଣ୍ଡା ଆମ୍ଭ ପିତା
ଭୋଜ ନନ୍ଦିନୀ ଅଟନ୍ତି ଆମ୍ଭ ନିଜ ମାତା ।
ବେଦ ବାକ୍ୟରେ ନିରତ ଶୁଚିବାକ୍ୟ ଧର୍ମ
କୂଳଜନ ଦେଇଛନ୍ତି ଜୋନ୍ତପଣ୍ଡା ନାମ ।
ହସ୍ତିନା ଦେଶ ଠାକୁର ଯୁଧିଷ୍ଠି ନୃପତି
କୌତୁକେ ପଶା ଖେଳନ୍ତେ ମାନଚକ୍ରବର୍ତ୍ତୀ ।
ପଶାଖେଳି ଯୁଧିଷ୍ଠିର ହାରି ରାଜ୍ୟଭାର
ଦ୍ୱାଦଶ ବରଷ ଗଲେ ବନସ୍ତ ଭିତର ।
ଆମ୍ଭେ ଯୁଧିଷ୍ଠିଙ୍କର ସଭାପଣ୍ଡା ହେଉ
ଧର୍ମକୁ ଆଚରି ଆମ୍ଭେ ତାଙ୍କପାଶେ ଥାଉ ।
ଏକୀଭୂତ ହୋଇ ଆମ୍ଭେ ନିରଞ୍ଜନେ ଖଟୁ
ଯେହ୍ନୁ ଯୁଧିଷ୍ଠିର ଆମ୍ଭେ ଏକ ଆତ୍ମା ଅଟୁ ।
ଏହିରୂପେ ଯେ ମହାତ୍ମା କରିଥାନ୍ତି ଦୟା
ଯୁଧିଷ୍ଠି ଦେବତା ଆମ୍ଭେ ଅଟୁ ଏକ କାୟା ।
ଆହେ ବିରାଟ ପାଣ୍ଡବ ବନସ୍ତରେ ଥିଲେ
ଶୁଣିଲି ଯୁଧିଷ୍ଠି ତୁମ୍ଭ ରାଜ୍ୟକୁ ଅଇଲେ ।
ତାହାଙ୍କର ଆସିବାର ଶବଦକୁ ପାଇ
ଖୋଜିବା ପାଇଁ ଆସିଛୁ ଆମ୍ଭେ ଏହିଠାଇଁ ।
ସାଧୁ ସାଧୁ ମହିମା ଯେ ଧର୍ମରାଜ ସୁତ
ସତ୍ୟ କରିଣ ପାଣ୍ଡବେ ହେଉଛନ୍ତି ଗୁପ୍ତ ।
ଯଦ୍ୟପି ବିଧାତା ଆଣି ବିହିଲା ଏ ଶାସ୍ତି
ଧର୍ମରାଜ କଦାଚିତେ ମିଥ୍ୟା ନ ଭାଷନ୍ତି ।
ବିରାଟବୋଇଲେ କୋନ୍ତେମୋର ଭାଗ୍ୟ ନାହିଁ
ମୋର ବଂଶ ମୁକ୍ତ ହୋନ୍ତା ତାଙ୍କ ମୁଖଚାହିଁ ।
ରାଜସ୍ୱୀୟ ଯାଗ କଲେ ସେ ଯେବଣ କାଳେ
ତୁମ୍ଭେ ଥିଲଟିକି କୋନ୍ତ ମହାସଭାସ୍ଥଳେ ।
ହେ ବିରାଟ ନ ଚିହ୍ନିଲ ଆମ୍ଭ ଚିହ୍ନ ବର୍ଣ୍ଣ
ଯୁଧିଷ୍ଠି ଦେବଙ୍କ ଆତ୍ମା ଆମ୍ଭେନୋହୁ ଭିନ୍ନ ।
ବିରାଟ ବୋଇଲେ ଆହେ କୋନ୍ତପଣ୍ଡା ଶୁଣ
ଏକଶତ ପାଞ୍ଚଭାର ସୁବର୍ଣ୍ଣ ଘେନିଣ ।
ମହାସଭା ନିକଟରେ ଉପସ୍ଥିତ ହେଲି
ଷୋଳଦିନ ଯାଏ ତାଙ୍କ ଭେଟ ନ ପାଇଲି ।
ସାତକ୍ଷୌଣୀ ବଳ ଘେନି ଭୁଞ୍ଜେ ଛତ୍ରଶାଳେ
କେହି ଶକ୍ୟ ନହୋଇଲେକେଭେସଭାତଳେ
ଦିନେ ଜଣାଇଲି ଭୀମସେନ ଠାକୁରଙ୍କୁ
ତହୁଁ ମୋର ଗ୍ରୀବା ଧରି ଟେକି ଆକାଶକୁ ।
ଏହିରୂପେ ଅନ୍ତରୀକ୍ଷେ ହେଉଁ ଭୀମସେନ
କେଉଁ ଧର୍ମେ ରହିଗଲା ଜାଣ ମୋର ପ୍ରାଣ ।
ଗଳଥା ଦେଇଣ ମୋତେ ପେଲିଦେଲେଦୂରେ
ଉଠହେବିରାଟ ବୋଲି ତୋଳିଲେସେକରେ
ବସ୍ତ୍ରମୁଦି ସହିତରେ ଠାକୁର ଅଙ୍ଗୁଷ୍ଠି ।
ବିଦ୍ୟୁତ୍ ତେଜ ପରାୟେ ଦେଖ ଏକଦୃଷ୍ଟି ।
ଆବର ଦେଖିଲି ବାମ ତଳିପାର କାନ୍ତି
ଏ ଜନ୍ମେ ମୋହର ଫିଟିଗଲା ମନୁ ଭ୍ରାନ୍ତି ।
ମୋ ଛାର ପାମର ଏହି ବେନି ଚର୍ମ ଆଖି
ଯୁଧିଷ୍ଠିଙ୍କ ଶ୍ରୀଚରଣେ ପାରିବ କି ଦେଖି ।
ହେ କୋନ୍ତେ ଏଜନ୍ମେ ତୀର୍ଥକରିଗଲେକୋଟି
ତେବେ ସିନା ମୋରାଜ୍ୟକୁ ଆସନ୍ତେ ଯୁଧିଷ୍ଠି
ଏ ପରମ ଭାଗ୍ୟ କରି ନାହିଁ ମୋର ରାଜ୍ୟ
ଏ ରାଜ୍ୟେ ପଡ଼ିବ କାହିଁ ତାଙ୍କ ପାଦରଜ ।
ଏ ରାଜ୍ୟକୁ କିଏ ତାଙ୍କୁ ପାରନ୍ତା କି ଆଣି
ପଞ୍ଚରତ୍ନ ଭଣ୍ଡାର ମୁଁ ଦ୍ୟନ୍ତି ଏହିକ୍ଷଣି ।
କୋନ୍ତବୋଇଲେହେଦେଖାକରାଇବାତୋତେ
ଆମ୍ଭେ ଆସିଲୁଣି ସେହୁ ଆସିବେ ତୁରିତେ ।
ତୁ ମହାଧାର୍ମିକ ପୁଣି ଅଟୁ ଗୁଣବନ୍ତ
ଅତିପୁଣ୍ୟେ ଆମ୍ଭେ ଆସି ହୋଇଲୁ ପ୍ରାପତ ।

ଦେବତା ବ୍ରାହ୍ମଣଙ୍କର ଅଟ ତୁମ୍ଭେ ଭକ୍ତ
ମିଷ୍ଟଭାଷୀ ସୁପଣ୍ଡିତ ଅଟ ଗୁଣବନ୍ତ ।
ବନ୍ଧୁ ବାନ୍ଧବ ବତ୍ସଳ ଦୂତର ବତ୍ସଳ
ମାଗିବା ଲୋକର ପ୍ରତି ଅଟ ଦୟାଶୀଳ ।
ଏସବୁ ଅଟେ ପ୍ରତ୍ୟକ୍ଷ ଜାଣ ବିଷ୍ଣୁକଳା
ଯେପରି ଅଟଇ ତୋର ଚିତ୍ତଟି ମୁକୁଳା ।
ଶିବଙ୍କୁ କରିଲେ ନିନ୍ଦା ହୁଏ ହୃଦେ ବ୍ୟାଧି
ବିଷ୍ଣୁଙ୍କୁ କରିଲେ ନିନ୍ଦା ନର୍କରେ ସମାଧି ।
ବ୍ରହ୍ମାଙ୍କୁ କରିଲେ ନିନ୍ଦା ହୁଏ ବଂଶହାନି
ଗୁରୁନିନ୍ଦା କଲେ ହୁନ୍ତି ମୂରୁଖ ଅଜ୍ଞାନୀ ।
ଲକ୍ଷ୍ମୀଙ୍କୁ କରିଲେ ନିନ୍ଦା ମିଳେ ଅନ୍ନଶାସ୍ତି
ମାତାଙ୍କୁ କରିଲେ ନିନ୍ଦା ପଡ଼ଇ ଦୁର୍ଗତି ।
ଦେବୀ ନିନ୍ଦା କଲେ ଦିନ ନଯାଇ ସମାନେ
ଶାସ୍ତ୍ର ନିନ୍ଦା କଲେ ଦୁଃଖ ପାଇ ସର୍ବଦିନେ ।
ଆଦିତ୍ୟଙ୍କୁ କଲେ ନିନ୍ଦା ଛେଦ ହୁଏ କନ୍ଧ
ଗୃହକୁ ନିନ୍ଦା କରିଲେ ହୁଏ ଜନ୍ମ ଅନ୍ଧ ।
ସ୍ତ୍ରୀ ନିନ୍ଦା କରିଲେ ହୁଏ ଚଣ୍ଡାଳ ଉତ୍ପତ୍ତି
ଜାତି ନିନ୍ଦାକଲେ ସେହୁ ପାଏ ବହୁ ଶାସ୍ତି
ଜଳକୁ ନିନ୍ଦାକରିଲେ ହୁଏ ଗର୍ଭ ରୋଗୀ
ଅଗ୍ନିକୁ କରିଲେ ନିନ୍ଦା ହୁଅଇ ଅଭୋଗୀ ।
ସୁତ ନିନ୍ଦାକରେ ଯେହୁ ନୁହେଁ ଗର୍ଭବାସ
ବହୁଜନ ନିନ୍ଦାକଲେ ତୁଟଇ ଆୟୁଷ ।
ମନ୍ତ୍ରୀକି କରିଲେ ନିନ୍ଦା ନାଶଯାଇ ଦେଶ
ଏ କଥା ନିଶ୍ଚୟ ଜାଣ ହେ ବିରାଟ ଈଶ ।
ଯୋଗକୁ ନିନ୍ଦା କରିଲେ ହେବ କର ଛେଦ
ତପକୁ କରିଲେ ନିନ୍ଦା ନିଶ୍ଚେ ହେବ ବଧ ।
ଭୋଜନକୁ ନିନ୍ଦାକଲେ ନ ମିଳଇ ଅନ୍ନ
ବିପ୍ରଙ୍କୁ କରିଲେ ନିନ୍ଦା ନୁହଇ ସନ୍ତାନ ।
ଆତ୍ମାକୁ କରିଲେ ନିନ୍ଦା ହୁଏ ମହାଦୁଃଖୀ
ପରନାରୀ ନିନ୍ଦା କଲେ ଜନ୍ମେଜନ୍ମେ ଦୁଃଖୀ ।
ରାଜାଙ୍କୁ ନିନ୍ଦା କରିବା ନୁହଇ ସଙ୍ଗତ
ନିନ୍ଦିଲେ ଅବଶ୍ୟ ଶୋକ ହୁଅଇ ବହୁତ ।
ସୁଜନ ନିନ୍ଦିଲେ ମୁଖେ ବସଇ କରତ
ଭଲ ନିନ୍ଦାକଲେ ଭଲ ନୁହଇ ପ୍ରାପତ ।
ରତ୍ନ ନିନ୍ଦା କଲେ ଦୁଃଖ ହୁଏ ଅପ୍ରମିତ
ସାତଜନ୍ମଯାଏ ତାକୁ ନ ମିଳଇ ବିତ୍ତ ।
ସୁଖ ନ ମିଳଇ ଏହିସବୁ ନିନ୍ଦାକଲେ
ଶାରଳାଦାସ ମୁନି ଯେ ପୁରାଣେ କହିଲେ ।

—●—

## ଯୁଧିଷ୍ଠିରଙ୍କର ଶାଢ଼ୀ ଗ୍ରହଣ

ଏ ବଚନମାନ ଶୁଣି ବୋଇଲା ବିରାଟ
ହେକୋନ୍ତ ତୁମ୍ଭେ ଅତ୍ୟନ୍ତ ଧାର୍ମିକତ ଅଟ ।
କୋନ୍ତ ତୁମ୍ଭେ ଆଉ କେଉଁ ଗୁଣରେ ଶକତା
ଧର୍ମ ବିଚାରେ ଜାଣିଲି ପୂର୍ଣ୍ଣ ସର୍ବ କଥା ।
ରାଜସଭା ମଧ୍ୟେ ଆମ୍ଭେ ସଭାରେ ବିଚାରି
ରାଜାର ଶରଧା ହେଲେ ପଶାକ୍ରୀଡ଼ା କରି ।
ଶୁଣି ରାଜନ ପ୍ରତିଜ୍ଞା ଯୁଧିଷ୍ଠିରଙ୍କର
ସମସ୍ତେ ପୂରି ଅଛନ୍ତି ସଭାର ମଧର ।
ବିରାଟ ବୋଇଲେ ତୁମ୍ଭେ ସଭାପଣ୍ଡା ମୋର
ତୁମ୍ଭେ ଶିକ୍ଷାଦିଅ ପଶାକ୍ରୀଡ଼ାର ବେଭାର ।
କୋନ୍ତବୋଇଲେ ଯେତୁମ୍ଭେ ହାରିବଟିଯାହା
ବିଳମ୍ବ ନ କରି ମୋତେ ଆଣିଦେବ ତାହା ।
ଶୁଣ ହେ ମନୁ ପ୍ରତିଜ୍ଞା ଯୁଧିଷ୍ଠିରଙ୍କର
ଆପେ ହାରିବେ ବୋଲି ନ ବୋଲନ୍ତି ସଭାର
ସତ ସ୍ୱରୂପରେ ସେହୁ କହୁଛନ୍ତି ବାଣୀ
ତଥାପିହିଁ ବିରାଟ ଯେ ନ ପାରିଲା ଜାଣି ।
ଯାଚକେଶ୍ୱର ମନ୍ତ୍ରୀ ହେ ବୋଲେ ଶୁଣ ରାଜ
ଯୁଧିଷ୍ଠି ସମାନ ଏହି ଅଟନ୍ତି ଯେ ପୂଜ୍ୟ ।
ଯୁଧିଷ୍ଠି ସମାନ ଯାଙ୍କ ଖଟିବା ପୟର
ମନ୍ତ୍ରୀ ବଚନେ ସାନନ୍ଦ ହେଲେ ଦଣ୍ଡଧର ।
ଆପଣେ କରି ବିରାଟ ଘେନିଣ ଯେ ଶାଢ଼ୀ
ଯୁଧିଷ୍ଠିଙ୍କ ରାଜ୍ୟେ ଥିଲି ଯେଉଁରୂପେ ବଢ଼ି ।
ଯୁଧିଷ୍ଠିଙ୍କ ରାଜ୍ୟେ ତୁମ୍ଭେ ଯେଉଁ ସୁଖେ ଥିଲ
ଏ ମୋହରରାଜ୍ୟେ ତୁମ୍ଭେ ସଭାପଣ୍ଡା ହେଲ ।
ଶାଢ଼ୀ ତୋଳି ବିରାଟ ଯେ ଯାଚଇ ଶ୍ରୀହସ୍ତେ
ଏ ମୋହର ରାଜ୍ୟେଅଧିକାର ଘେନ କୋନ୍ତେ ।
ଧର୍ମସୁତ ବିରାଟଙ୍କ ହସ୍ତେ ଶାଢ଼ୀ ଦେଖି
ବିଷମ ପ୍ରମାଦେ କଲେ ଶ୍ରୀକୃଷ୍ଣଙ୍କୁ ସାକ୍ଷୀ ।
ମୁହିଁ ଶାଢ଼ୀ ନ ଘେନିବି ଯେବେ ତଳ ହସ୍ତେ
ଶିରେ ନ ବାନ୍ଧିଲେ କୋପକରିବ ଏମୋତେ
ଅଥବା କୋପ ନ କରେ ଯଦ୍ୟପି ବିରାଟ
ବିଚାରି ଚିହ୍ନିବ ତୁମ୍ଭେ ଯୁଧିଷ୍ଠିର ଅଟ ।
ମୁହିଁ ଏହି ଶାଢ଼ୀ ତଳ ହସ୍ତେ ନ ଘେନିଲେ
ଭୃତ୍ୟ ହେବିସିନା ମୁହିଁ ଯାଶାଢ଼ୀ ବାନ୍ଧିଲେ ।
ମସ୍ତକେ ନ ବାନ୍ଧିଲେ ଯେ ହୋଇବ ଜାଣତା
ପରମ ପୁରୁଷ ହରି ମୋର ରକ୍ଷାକର୍ତ୍ତା ।
ଦୁସ୍ତର କଷଣୁ ମୋତେ ଏବେ କର ପାର

ଏସନ ଯୁଧିଷ୍ଠି ମନେ କରନ୍ତି ବିଚାର ।
ଭୋ ଦଇବ ପୁରୁଷ ଏ କଷ୍ଟୁ କର ପାରି
ତୁମ୍ଭେ ନ ଶୁଣିଲେ କାରେ କରିବି ଗୁହାରି ।
ମନେ ବିଚାରି ବିରାଟ ହସ୍ତୁ ଶାଢ଼ୀ ଆଣି
ବୋଲେ କୋନ୍ତେ ଯାଚିଲଇଁ ମୁଁ ଶାଢ଼ୀ ନଜାଣି ।
ଯୁଧିଷ୍ଠିର ଦେବ ସମ ଯାରେ କରେ ସେବା
ଉପରହସ୍ତେ କେମନ୍ତେ ତାଙ୍କୁ ଶାଢ଼ୀଦେବା ।
ଆହେ କୋନ୍ତ ଅଧିକାରୀ ହେବ ଏ ଦେଶରେ
ତୁମ୍ଭେ ମୋତେ ଶାଢ଼ୀଦିଅ ତବ ଶ୍ରୀହସ୍ତରେ ।
ମୁହିଁ ଅବା ଯୁଧିଷ୍ଠିର ଦେଖିବଇଁ କାହିଁ
ଯୁଧିଷ୍ଠିରଙ୍କ ସମାନ ତୁମ୍ଭେତ ଗୋସାଇଁ ।
ଏହା କହିଣ ଛାମୁରେ ରହେ ଶାଢ଼ୀ ଧରି
ଆଜିଠାରୁ ଏ ରାଜ୍ୟରେ ହେଲ ଅଧିକାରୀ ।
ନାରାୟଣ ସ୍ମରି ଶାଢ଼ୀ ଧଇଲେ ଯୁଧିଷ୍ଠି
ଦକ୍ଷିଣ ମୁଖେ ଶାଢ଼ୀକୁ କଲେ ପଶାକାଠି ।
ବେନି ଅକ୍ଷର ଭେଦିଲେ ନିଜ ନାମଗୋଟି
ଅତ୍ୟନ୍ତ ଶୋଭନ ହେଲା ଦ୍ୱାଦଶଟି କୋଠି
ଅଶ୍ୱମେଧ ଯଜ୍ଞ ଫଳ ଯହିଁରୁ ଉତ୍ପତ୍ତି
ଦେଖି ଆନନ୍ଦିତ ହେଲେ ମତ୍ସ୍ୟ ଅଧିପତି ।
ବିରାଟ ନୃପତି ଘେନି କୋନ୍ତକୁ ସଙ୍ଗରେ
ଦୁହେଁ ବସିଲେ ଯାଇଣ ରତ୍ନ ଆସନରେ
ଏକସ୍ଥାନେ ବିଜେକଲେ ଯହୁଁ ଦେବ ବେନି
ଅମର ତେଜି ଆସିଲେ କିବା ପଦ୍ମଯୋନି ।
ଶାରଳା ଦାସ ଶାରଳା ପାଦେ ଦେଇ ଚିତ୍ତ
କହିଲେ ବିରାଟ ପର୍ବ ଭାରତ ଚରିତ ।



## ଭୀମଙ୍କର ବିରାଟ ସଭାରେ ପ୍ରବେଶ

ଏଥୁଅନନ୍ତରେ ଶୁଣ ମନୁ ନୃପରାଣ
ପଣ୍ଡୁଙ୍କ ତୃତୀୟ ପୁତ୍ର ଭୀମ ବିବରଣ ।
ପଞ୍ଚବଟୀ କାନନରୁ ଆସି ଭୀମସେନ
ବିରାଟ ନଗର ମଧ୍ୟେ କରନ୍ତି ଗମନ ।
କେଶ ଯାଙ୍କର ଉର୍ଦ୍ଧ୍ୱରେ ଲମ୍ବିଛି ଜଡ଼ାଟି
ସ୍ଥୂଳ ଶରୀର ଚନ୍ଦନ ଦିଶୁଅଛି ଫୁଟି ।
କାନ୍ଧରେ ପଇତା କାଖେ ବେଦପୋଥିଖଣ୍ଡି
ତ୍ରିକଚ୍ଛ ବସନ ଖୋସିଛନ୍ତି କୁଶବିଡ଼ି ।
ବିକ୍ରମ ସିଂହ ଯେସନେ ସୁମଞ୍ଚ ସୁଦେବା
ହିରଣ୍ୟ ପର୍ବତ କାୟ ଜଳଧର ଆଭା ।
କନ୍ଧଦେଶେ ଉତ୍ତରୀୟ ମେଖଳା ବସନ
ଏହି ବେଶେ ବୃକୋଦର କରନ୍ତି ଗମନ ।
ଅଗସ୍ତି ମୁନି ବୋଇଲେ ଶୁଣ ନରବର
ଅପୂର୍ବ କଳା ଅଟଇ ଯୁଧିଷ୍ଠିରଙ୍କର ।
ସଭାପଣ୍ଡା ରୂପେ ପଶା କ୍ରୀଡ଼ା ରଙ୍ଗରସେ
ବସିଲେ ଧର୍ମନନ୍ଦନ ମତ୍ସ୍ୟ ରାଜା ପାଶେ ।
ଆନନ୍ଦରେ ମାନ୍ୟ କଲେ ପାତ୍ର ମନ୍ତ୍ରୀମାନେ
ପୂଜାପାଇ ବସିଲେ ସେ ବିରାଟ ଆସ୍ଥାନେ ।
କୋନ୍ତପଣ୍ଡା ବୋଇଲେ ହେ ଶୁଣ ଦଣ୍ଡଧାରୀ
ତତ୍‌କ୍ଷଣେ ଦେବ ପଶାରେ ଯାହା ଯିବହାରି
ବିରାଟ ବୋଇଲେ ଏହା ଅଟଇ ଯୁକତ
ମୋହର ଦେବାର କଥା ଅଟଇ ନିଶ୍ଚିତ ।
ବିଜୟ ଧର୍ମନନ୍ଦନ ପଶାର ବିଷାଦେ
ହସ୍ତେ ଖଡ଼ି ଘେନି ଘର କାଟନ୍ତି ଆନନ୍ଦେ ।
ଏମନ୍ତ ସମୟେ ଦିଶେ ତେଜ ଅନର୍ଗଳା
ବୃକୋଦର ପ୍ରବେଶିଲେ କୁନ୍ତୀଦେବୀ ବଳା ।
ଆଣକ କାଠି ହସ୍ତରେ ସେହୁଛନ୍ତି ଧରି
ଗଜକୁ ଆକର୍ଷୁଥାଇ ଯେସନେ କେଶରୀ ।
ମହାସମ୍ଭର୍ବେ ଆସନେ ବିଜୟେ ବିରାଟ
ଭୀମସେନ ପ୍ରବେଶିଲେ ତାହାଙ୍କ ନିକଟ ।
ଦେଖି ପଚାରିଲେ ମତ୍ସ୍ୟଦେବ ସଭାଜନେ
ଡଗର ବାରତା ଯାଇଁ କହିଲା ଆସ୍ଥାନେ ।
ଅବଧାନ ମହାରାଜା କେଉଁ ଦିଗପାଳ
ଅଜାଣରୁ ଆସି ବିଜେ ଏ ମହୀମଣ୍ଡଳ ।
ଆସ୍ଥାନେ ଥାଇ ବିରାଟ ଚାହିଁଲେ ଲେଉଟି
ମହା ତେଜୋମୟ ଦେଖି ବୁଜିଲେ ସେଦୃଷ୍ଟି
ଅଗ୍ନିକି ଅଇଲେ ଏଥେ ବ୍ରାହ୍ମଣ ସ୍ୱରୂପେ
କାମଦେବ ଉପେକ୍ଷିଲେ କିବା ଏହି ରୂପେ ।
ବିରାଟବୋଇଲେ ଦେଖଦେଖ ଆହେକୋନ୍ତେ
ଏମନ୍ତ ପୁରୁଷ ଦେଖିନାହିଁ ମୁଁ ଜଗତେ ।
ଦେଖି କରିଣ ସଇନ୍ୟ ହେଲେ ବେନିଭାଗ
ଭୀମ ଆସ୍ଥାନତଳକୁ ତହୁଁ ଯାଇ ବେଗ ।
ଦେଖିଦୂର ହୋଇଗଲେ ସେ ଅମାତ୍ୟମାନେ
କେହି ନ ବସିଲେ ଆଉ ନିଜର ଆସ୍ଥାନେ
ଭୟ ପାଇଣ ସମସ୍ୟା ନ କରିଲେ କିଛି
ଯୁଧିଷ୍ଠିର ଦେବଙ୍କର ଦୃଷ୍ଟି ତହିଁ ଅଛି ।
ପ୍ରଣାମ କରିଲା ଭୀମ ଧର୍ମ ପାଦତଳେ
ଧର୍ମର ନନ୍ଦନ ତାହା ଦେଖି ବେନି ଡୋଳେ ।
ବହୁ ଶୋକ କଲେ ଭୀମ ନମସ୍କାର ଦେଖି
ଜଳି କିମ୍ପାଇଁ ନଯାଏ ମୋର ବେନି ଆଖି ।

କ୍ଷତ୍ରିବର ସୁନ୍ଦର ଏ ସଂଗ୍ରାମରେ ଜିତା
ଏହା ବଳେ ନାଶ ଗଲା ହିଡିମ୍ବା ଦଇତା ।
ଲକ୍ଷେକ ନୃପତି ଯାହା ପାଦତଳେ ବନ୍ଦେ
ଜପିଲାସେ ଶିବ ଭୋଗପାଇ ଯା ପ୍ରସାଦେ
ବାବୁ ଦ୍ୱାରକାର ଛଳେ କୁରୁ ଦର୍ପ ଭଞ୍ଜା
ବିଷଲଡୁ ପାଇକରି ନାଗଦର୍ପ ଗଞ୍ଜା ।
ବାବୁ ବାଲ୍ୟକାଳୁ ଯାଇ ହରି ପ୍ରାଣବନ୍ଧୁ
ଏ ତିନି ଭୁବନେ ଯାର ମହିମାଟି ସାଧୁ ।
ବାବୁ କେଉଁ ପୁଣ୍ୟଥିଲା ବିରାଟର ପୂର୍ବେ
ଏହାର ଆସ୍ଥାନ ତଳେ ମିଳିଲୁ ତୁ ଏବେ ।
ଦେଖି ମୋହର ହୃଦୟ ହେଉଛି ଦହିର୍ଯ୍ୟ
ଏ ତୁମ୍ଭର କଷ୍ଟ ଯାହା ଦେଖୁଛି ନିର୍ଲ୍ଲଜ ।
ହାତର ସୁଖେ ବାବୁରେ ଖେଳିଲି ମୁଁ ପଶା
ପଞ୍ଚରାଜ୍ୟ ହାରି ଭୃତ୍ୟପଣେ କଲି ଆଶା ।
ତ୍ରୈଲୋକ୍ୟ ଜିଣିବାକୁ ତୁ ସମର୍ଥରେ ଭାଇ
କାହାର ନିମନ୍ତେ ଏବେ ଏତେ କଷ୍ଟ ପାଇ ।
ବଚନେ ଦରିଦ୍ର ମୁଁ ଯେ କାର୍ଯ୍ୟ ନାଶ କଲି
କୌରବ ମାରିବା ପାଇଁ ଅନୁଜ୍ଞାନ ହେଲି ।
ଫୁଟି କହି ନ ପାରନ୍ତେ ହୃଦୟ ବିକଳେ
ବୃକୋଦର ଛିଡ଼ା ହୋଇଛନ୍ତି ସଭାତଳେ ।
ବିରାଟ ବୋଇଲେ ଶୁଣ ଆହେ ଦ୍ୱିଜବର
ଉଠିଆସି କେଉଁକଥା ବୋଲ ମୋ ଆଗର ।
ଭୀମସେନ ବିରାଟର ବଚନେ ନ ଉଠି
ଦେଖି ମନେ ବିଚାରିଲେ ଧରମ ଯୁଧିଷ୍ଠି ।
ଆମ୍ଭ ନିକଟକୁ ଏହୁ ଆଜ୍ଞା ନ ପାଇଲେ
କେବେହେଁ ନ ଉଠିବ ଏ ବିରାଟର ବୋଲେ ।
କୋନ୍ତ ବୋଇଲେ ହୋ ଉଠ ଉଠ ଦ୍ୱିଜବର
ଠାକୁର ଆଜ୍ଞାରେ କହ କି କାର୍ଯ୍ୟ ତୁମ୍ଭର ।
ବିରାଟ ବଚନେ କିଛି କହିଣ ନ ଥିଲେ
କୋନ୍ତଙ୍କ ବଚନେ ସେହୁ ଉପରେ ଉଠିଲେ
ବିରାଟ କତିକି ତାର ଅଙ୍ଗ ଢ଼ାଳିଦେଇ
ମସ୍ତକରେ ହାତ ଦେଲେ କୋନ୍ତ ମୁଖଚାହିଁ ।
ବିରାଟ ବୋଇଲେ ଆହେ ଶୁଣିବା ବ୍ରାହ୍ମଣ
ନିଜ ଶାସନ ତୁମ୍ଭର ଅଟେ କେଉଁ ସ୍ଥାନ ।
କେଉଁ ପାଠ ଶାସ୍ତ୍ର ଜାଣ କି ଗୁଣେ କୁଶଳ
ସ୍ୱରୂପ ଦେଖି ଜାଣୁଛି ତୁମ୍ଭେ ଦିଗପାଳ ।
ଅନେକ ବିନୟ ହୋଇ ମୋତେ କଥା କହ
ମୁହିଁ ତୁମ୍ଭଙ୍କୁ ଦେଖିଲି ନର ଜନ୍ମ ନୁହଁ ।
କୋନ୍ତ ବୋଇଲେ ହେ ତୁମ୍ଭେ ଶୁଣ ଦ୍ୱିଜବର
ତୁମ୍ଭର କି କଥା କହ ଠାକୁର ଛାମୁର ।

ଶୁଣ ଆହୋ ମତ୍ସାଧିପ ବଦନ୍ତି ବଲ୍ଲଭ
ପଶ୍ଚିମରେ ସୋମରାଷ୍ଟ୍ର ଜାଣ କିନା ଦେବ ।
ଗଙ୍ଗା ଯମୁନା ଏ ଦୁଇ ନଦୀଙ୍କର ମଧ୍ୟେ
କୁଞ୍ଜଗଳଦେଶ ବୋଲି କୁରୁକ୍ଷେତ୍ର ଯୁଦ୍ଧେ ।
ଇନ୍ଦ୍ରପ୍ରସ୍ଥ ଯମପ୍ରସ୍ଥ ଆବର ବାରୁଣା
ପୁଣିହିଁ ଜୟନ୍ତୀପ୍ରସ୍ଥ ନାମରେ ହସ୍ତିନା ।
ଯୁଧିଷ୍ଠିରଙ୍କ ଅନୁଜ ନାମ ଭୀମସେନ
ତାହାର କଥାକି ତୁମ୍ଭେ ନ ଶୁଣିଛ କର୍ଣ୍ଣ ।
ତିନିଷଠି ପୌଟି ଅନ୍ନେ ତାଙ୍କର ତୃପତି
ମୁହିଁ ତାଙ୍କ ସୂପକାର ଶୁଣ ମତ୍ସ୍ୟପତି ।
ବିରାଟ ପୁଚ୍ଛିଲେ ତୁମ୍ଭ ନାମ କିସ ଭେଣ୍ଡା
ଭୀମ ବୋଇଲେ ବିଦିତ ମୁଁ ବଲ୍ଲଭ ପଣ୍ଡା ।
ଶୁଣ ଆହେ ମନୁ ରାଜା କହୁଛନ୍ତି ଭୀମ
ରାନ୍ଧଣା ଜାଣିବାରୁ ମୁଁ ସୂପକାର ନାମ ।
ପଶାଖେଳେ ଯୁଧିଷ୍ଠିର ସମସ୍ତ ହାରିଲେ
ରାଜ ସିଂହାସନ ଛାଡ଼ି ବନବାସ କଲେ ।
ଧର୍ମଦେବ ତୁମ୍ଭ ରାଜ୍ୟେ ଆସିବା ଶୁଣିଲି
ତେଣୁକରି ତୁମ୍ଭ ରାଜ୍ୟେ ଗୋଡ଼ାଇ ଆସିଲି
ବିରାଟ ବୋଇଲେ ବାଇ ହେଲ ଦ୍ୱିଜବର
ତାଙ୍କ ନାମ ଧଇଲେ ଯେ ତ୍ରୈଲୋକ୍ୟଠାକୁର
ଏକଶତ ପଞ୍ଚଭାର ସ୍ୱର୍ଣ୍ଣ ଘେନି ଗଲି
ଷୋଳଦିନ ଯାଏ ଧର୍ମ ଦେଖା ନ ପାଇଲି ।
ତାଙ୍କ ଭାଇ ବୃକୋଦର ଗଳେ ହାତ ଦେଇ
ସେ ସ୍ୱାମୀଙ୍କ ପାଦତଳେ ପକାଇଲେ ନେଇ ।
ଅଶ୍ୱମେଧ ଯଜ୍ଞ ଫଳ ପାଇଲି ମୁଁ ଯାଇ
ବିରାଟ ବୋଇଲେ କୋନ୍ତ ମୋକ୍ଷହେଲି ମୁହିଁ ।
କୋନ୍ତ ବୋଇଲେ ଶୁଣିମା ହେଉ ମତ୍ସ୍ୟରାୟ
ଏ ବଲ୍ଲଭ ଅଟେ ଭୀମସେନଙ୍କ ପରାୟ ।
ଯେମନ୍ତ ପ୍ରକାର ଶ୍ରଦ୍ଧା କରିଥାଏ ଭୀମା ।
ତେଣୁ ଏ ଦ୍ୱିଜ ପ୍ରତ୍ୟକ୍ଷ ଅଟେ ଭୀମ ଆତ୍ମା ।
ବିରାଟ ବୋଇଲେ ଯେବେ ଭୀମଙ୍କ ସୁଆର
ତୋ ଆର୍ଦ୍ଧୋଳି ସହିବାକୁ ଶକ୍ୟ କି ମୋହର ।
ରହଯାବୋଇଲେ ଭକ୍ତି ହୋଇବକି ତୋତେ
ଯାଅ ବୋଇଲେକ କୋପ ନକରିବୁ ମୋତେ ।
କୋନ୍ତ ବୋଇଲେ ଯେ ଭୟ ନକର ନୃପତି
ପରୀକ୍ଷା କରି ବୁଝିବା ଏହା ରୀତି ନୀତି ।
ବଲ୍ଲଭ ବୋଇଲେ ଶୁଣ ମତ୍ସ୍ୟ ଅଧିପତି
ଏକା ହୋଇ ରାନ୍ଧିବି ମୁଁ ସମସ୍ତଙ୍କ ନୀତି ।
ସାତକ୍ଷୌଣୀ ବଳ ଯେ ଭୁଞ୍ଜିବେ ତୁମ୍ଭତୁଲେ
ଷଡ଼ରସ ଯୋଗାଡ଼ ମୁଁ ଯୋଗାଇବି ଭଲେ ।

ଏହି ପ୍ରକାରେ କହିଲେ ଯହୁଁ ଦ୍ୱିଜବର
ସମସ୍ତ ଜନ ଶୁଣିଣ ହେଲେ ଚମତ୍କାର ।
ଲକ୍ଷେ ସୁଆର ରାନ୍ଧନ୍ତି ମୋହର ଗୃହରେ
ଯୋଦ୍ଧା ଅମାତ୍ୟ ଭୁଞ୍ଜନ୍ତି ମୋହର ଗୃହରେ
ଯୋଦ୍ଧା ଅମାତ୍ୟ ଭୁଞ୍ଜନ୍ତି ମୋହର ଛାମୁରେ
ଏ କଥା କି ସହଜେ ତୁ ପାରିବୁ ଯୋଗାଇ
ଦୁଃସାଧ କଥା କହୁଛୁ ଦ୍ୱିଜବର ତୁହି ।
ଶୁଣି ଭୀମ ବୋଇଲେ ହେ ଶୁଣ ନୃପବର
ପ୍ରତ୍ୟକ୍ଷେ ଦେଖିବ ତୁମ୍ଭେ ମୋର କହିବାର
ପ୍ରଭୁ ତହିଁ ଦିଅ ଥିବା ଲକ୍ଷେ ସୁପକାର
ମୋତେ ଦିଅ ଯେବେ ପଡ଼ି ମିଳଇ ତାଙ୍କର ।
ସୁବର୍ଣ୍ଣର କୁଣ୍ଡ ଥିବ ରୋଷଘର ପାଶ
ତହିଁରେ ଥୋଇବ ନେଇ ଯୋଗାଡ଼ ଜିନିଷ
ଆବର କଥାଏ ନୃପ ଶୁଣିବା ମୋହର
ରାଜ୍ୟସାଜ ଭୁଞ୍ଜାଇବ ସଙ୍ଗତେ ତୁମ୍ଭର ।
ଶୁଣି ସନ୍ତୋଷ ହୋଇଲେ ମତ୍ସ୍ୟ ଦଣ୍ଡଧାରୀ
ଆପନ୍ତୁ ଉଠିଲେ ନିଜ ହସ୍ତେ ଶାଢ଼ୀ ଧରି ।
ଘେନ ହେ ବ୍ରାହ୍ମଣ ବୋଲି ଯାଚିଲେ ରାଜନ
ତାହା ଦେଖି ଭୀମସେନ ହେଲା କୋପମନ ।
ଭୀମସେନ ମାନସକୁ ଜାଣିଣ ଯୁଧିଷ୍ଠି
ହୃଦୟରେ ଚିନ୍ତା କଲେ କୃଷ୍ଣ ନାମଗୋଟି ।
ନୃପ ଶାଢ଼ୀ ନ ଘେନିବ ଏ ତଳ ହସ୍ତରେ
ପ୍ରଣିପାତ ହେବ ନାହିଁ ବାନ୍ଧିଲେ ମଥାରେ ।
ରାଗ ହୋଇ ଶରୀରକୁ କମ୍ପାଏ ମାରୁତି
ରାଜାକୁ ଚାପୋଡ଼େ ପୁଣି ନ ମାରଇ ଧାତି ।
ଅଜ୍ଞାତେ ବଞ୍ଚିବି ବୋଲି ଏ ରାଜ୍ୟେ ଅଇଲି
ସମୂଳେ ଏ ସ୍ଥାନେ ମୁହିଁ ଏବେ ନାଶଗଲି ।
ଏ ମହାକଷଣୁ ହରି ମୋତେ କର ପାର
ଶ୍ରୀକୃଷ୍ଣ ଶୁଣିଲେ ଦୁଃଖ ଯୁଧିଷ୍ଠିରଙ୍କର ।
କି ବିଚାରି ହସ୍ତ କାଢ଼ି ନେଲେ ମତ୍ସ୍ୟେଶ୍ୱର
ଶାଢ଼ୀ ନେଇ ଥୋଇଲେ ସେ କୋନ୍ତଙ୍କ ଆଗର
ସଭାପଣ୍ଡା ଶାଢ଼ୀ ଦିଅ ଯାଙ୍କୁ ତୁମ୍ଭେ ନେଇ
ଆସ୍ଥାନେ ବସିଲେ ରାଜା ଏହି କଥା କହି ।
ଯୁଧିଷ୍ଠିର ପ୍ରାୟକରେ ତୁମ୍ଭଙ୍କୁ ମୁଁ ସେବା
ଏ ବଲ୍ଲଭ ସୂପକାରେ ତୁମ୍ଭେ ଶାଢ଼ୀ ଦେବା ।
ଶ୍ରୀଜଗନ୍ନାଥଙ୍କ ନାମ ଧରି ହୃଦଗତେ
ତୋହର ସେ ପ୍ରତିକାର ଅଛି ସ୍ୱାମୀ ମୋତେ
ଆପଣେ ଶାଢ଼ୀ ତୋଳିଣ ଦେଲେ ଧର୍ମରାୟେ
ଦେଖି ସନ୍ତୋଷ ହୋଇଲେ ଭୀମ ମହାକାୟେ ।
ମସ୍ତକରେ ଶାଢ଼ୀ ବାନ୍ଧି ପ୍ରଣିପାତ ହେଲେ
ରାଜାଙ୍କ ମଣୋହି ରାନ୍ଧି ସଭାପଣ୍ଡା ବୋଲେ ।
ଧର୍ମଙ୍କୁ ସୁମରି ତହୁଁ ପବନର ବାଳ
ପ୍ରବେଶ ହୋଇଲେ ଯାଇ ଯଥା ରୋଷଶାଳ
ଦେଖିଣ ହରଷ ହେଲେ ସର୍ବ ସୂପକାର
ରୋଷ ଛାଡ଼ି ଉଭା ହେଲେ ଦୂରେ ଦ୍ୱିଜବର
ଆପଣେ ସେ ବୃକୋଦର ପଶି ରୋଷଘରେ
ଚୁଲୀ ପାରିଲେ ସେ ତହିଁ ବହୁତ ଗୃହରେ ।
ଶତପଖା ହୋଇ ତହିଁ ଏକ ଚୁଲୀ ଥିଲା
ସହସ୍ର ପଖାରେ ଭୀମ ତାହା ସମ୍ପାଦିଲା ।
ଏମନ୍ତ ଉପାୟ କରି ସେହି ମତ୍ସ୍ୟରାଜ୍ୟେ
ରାନ୍ଧଣା ଯୋଗାଡ଼ କଲେ ଆପଣାର ସାଜେ
କଞ୍ଚା ଦାରୁ ନେଇଣ ସେ ପକାଇଲେ ଚୂଲୀ
ଦୋହରା ପ୍ରସାଦେ ଜଳି ଏହି କଥା ବୋଲି ।
ଅକଟା ଅବଟା ନେଇ ଯୋଗାଡ଼ଇ ପାଗେ
ଲୁଣ ସହିତେ ବେଶର ଦେଲା ସେହିଲାଗେ ।
ଦୋହରା ପ୍ରସାଦେ ସେହୁ ଅମୃତର ସଞ୍ଚା ।
ଯେ ତପ ଜାଳ ଜଳଇ ସବୁ କାଠ କଞ୍ଚା ।
ଏ କଥା ଦେଖି ଆଶ୍ଚର୍ଯ୍ୟ ହେଲେ ସର୍ବଜନେ
ଡଗର କହିଲା ଯାଇ ବିରାଟ ଆସ୍ଥାନେ ।
ଶୁଣ ହେ ବିରାଟେଶ୍ୱର ଦେବ ନରପତି ।
ବଡ଼ ଆଶ୍ଚର୍ଯ୍ୟ ଦେଖିଲି ବ୍ରାହ୍ମଣର ରୀତି ।
ପରିବା ନ କାଟି କିବା ବେଶର ନ ବାଟି
ଚୂଲୀରେ ନେଇ ଭରିଲା କଞ୍ଚା ଦାରୁ ଗୋଟି ।
ଯୋଗାଡ଼କୁ ବସାଇଣ ଓହ୍ଲାଇଲା ବେଗ
ବିଚାରି ବୁଝିବା ହେଉ ହେଲା କେଉଁ ପାଗ ।
ଶୁଣି ବିରାଟ ଚାହିଁଲେ କୋନ୍ତଙ୍କ ବଦନ
ତହୁଁ କୋନ୍ତ ବୋଇଲେକ ଶୁଣନ୍ତୁ ରାଜନ ।
ବହୁ ଗୁଣବନ୍ତ ତୁମ୍ଭେ ଅଟ ଭାଗ୍ୟଧର
ଆବର ଧାର୍ମିକପଣେ ଅଟ ଯଶସ୍କର ।
ଆଦ୍ୟ ତୁମ୍ଭେ ଏହିପରି ବିଚାରୁଛ ରାୟ
ସେ ବଲ୍ଲବ ନ ଦିଶଇ ସୂପକାର ପ୍ରାୟ ।
ତୁମ୍ଭେ ମହାରାଜା ଅଟ ସର୍ବଜ୍ଞ ପଣ୍ଡିତ
ତୁମ୍ଭ କଥା ଭାଙ୍ଗିବାକୁ କାହାର ଆୟତ୍ତ ।
କୋନ୍ତଙ୍କ ବଚନ ଶୁଣି ବୋଲେ ରାୟ ମତ୍ସ୍ୟ
ଏହିକ୍ଷଣି ମଣୋହିର ଜାଣିବା ପ୍ରତ୍ୟକ୍ଷ ।
ତୁମ୍ଭେ ମଧ ମଣୋହିକି ଯିବ ମୋର ତୁଲେ
ସୂପକାର କରିଅଛୁ ତାଙ୍କୁ ତୁମ୍ଭ ବୋଲେ ।
ଏହିକାଳେ ରୋଷଘରୁ ଆସି ଚାରମାନେ
ରାଜାଙ୍କୁ ବୋଇଲେ ପାକ ହେଲା ସୁବିଧାନେ ।

ମଧ୍ୟ ଆଦିତ୍ୟ ଆସିଣ ହେଲା ସୂର୍ଯ୍ୟବେଳା
ଆହାର ହେ ସାରଦେବ କିମ୍ପା କର ହେଳା ।
ବେଗେ ବିଜେକର ଦେବ ମଣୋହି ଗୃହକୁ
ସୂର୍ଯ୍ୟବେଳରେ ମଣୋହି ଲଭଇ ପକ୍ସକୁ ।
ଅନ୍ନ ଅଜୀର୍ଣ୍ଣ ହୋଇବ ଚନ୍ଦ୍ରବେଳ ହେଲେ
ମୃତଦା ଅଗ୍ନି ହୋଇବବେଳ ନ ପାଇଲେ ।
ସୂର୍ଯ୍ୟ ବେଳେଭୋଜନ ଯେ ଚନ୍ଦ୍ର ବେଳେରତି
ଏମନ୍ତ ବେଭାର ଅଛି ଶାସ୍ତ୍ରର ସଙ୍ଗତି ।
ସୂପକାର ବାର୍ତ୍ତା ଦୂତ ମୁଖରୁ ଶୁଣିଣ
ସଙ୍ଗତରେ ନେଇ ରାୟେ ପଣ୍ଡିତ ବ୍ରାହ୍ମଣ ।
ବିଜେ ହେଲେ ନଗରକୁ ମଣୋହି ନିମନ୍ତେ
ଗହଣେ ଗମନ କଲେ ବହୁ ଅମନାତ୍ୟେ ।
ଚଉଷଠି କୋଟି ଯୋଦ୍ଧା ଗଲେ ସଙ୍ଗତରେ
ସମ୍ଭର୍ବେ ବସିଲେ ରାଜା ମଣୋହି କୋଠିରେ ।
ଶୁଣ ହୋ ମସ୍ୟଇଶ୍ୱର ବୋଲଇ ବଲ୍ଲଭ
ରାଜ୍ୟଭାର ଦ୍ୱନ୍ଦ୍ୱ ଏହୁ ବଡ଼ାଇ ଦୁର୍ଲ୍ଲଭ ।
ମୁହିଁ ଜାଣିଲି ରାଜାଏ ବଡ଼ଇ ବିବାଦୀ
ପରରାଷ୍ଟ୍ର ମାଡ଼ିବସି ହେଲ ତୁମ୍ଭେ ଦ୍ୱନ୍ଦୀ ।
ଅମାତ୍ୟ ପୁରୋଧା ମନ୍ତ୍ରୀ ଯୋଦ୍ଧାଙ୍କ ସହିତେ
ସାମାନ୍ୟ ଭୋଜନେତୃପ୍ତ ହୋଇବେକିଚିତ୍ତେ ।
ସର୍ବ ସଇନ୍ୟ ବସନ୍ତୁ ତୋର ଛତ୍ର ଘରେ
ଏଥିର ଚରିତ ଶୁଣ ଆହେ ମସ୍ୟଶ୍ୱରେ ।
ସଙ୍ଗେ ଭୁଞ୍ଜିଲେ ବଡ଼ିମା ହେବେ ତୁମ୍ଭ ଥାଟ
ସମର କାଳେ କାରଣ କରିଲେ ମୁରାଟ ।
ସାନନ୍ଦ ହୋଇଲେ ରାଜା ବଲ୍ଲଭ ବଚନେ
ସୈନ୍ୟ ସଙ୍ଗତେ ଭୋଜନ କରନ୍ତି ରାଜନେ ।
ଭୃକୁଟି ନାମେ ଭୁବନେ ବିଜୟ ବିରାଟ
ତାଙ୍କ ସନ୍ନିଧେ ବସିଲେ ଯାଇ କୋନ୍ତଭଟ୍ଟ ।
ସାତକ୍ଷୌଣୀ ବଳ ଘେନି ବିରାଟ ବସିଲେ
ଏକାଭୀମ ସେମାନଙ୍କୁ ଚରଚା କରିଲେ ।
ପାଞ୍ଚଲକ୍ଷ ସୂପକାର କାର୍ଯ୍ୟ ନିଜେ କଲେ
ଗୌରୀ ଶୌରୀ ନଳବିଧି ରାନ୍ଧଣା ରାନ୍ଧିଲେ
ନିତି ନିତି ରାନ୍ଧଣାକୁ ପର୍ଷେ ଭୀମସେନ
ସନ୍ତୋଷେ ଭୁଞ୍ଜିଲେ ସୈନ୍ୟ ସେନାପତିଗଣ
ଦେବ ରାନ୍ଧଣାର ପାଗ ପାଇବେଟି କାହିଁ
ବିରାଟ ପ୍ରଶଂସା କଲେ ବ୍ରାହ୍ମଣଙ୍କୁ ଚାହିଁ ।
ଅଦ୍ଭୂତ ପୁରୁଷ ତୁମ୍ଭେ ବିଜେ ହେଲ କାହୁଁ
କେଉଁ ଦିଗପାଳ ସୂପକାର ରୂପ ବହୁ ।
କୋନ୍ତ ବୋଇଲେ ହେ ରାୟେଶୁଣମସ୍ୟପତି
ଶେଷରେ ଜାଣିବ ଦେବ ଏହାର ପ୍ରକୃତି ।
ଅମୃତରସ ଯୋଗାଡ଼ ଭୁଞ୍ଜିଲେ ସଇନ୍ୟ
ସର୍ବେ ପ୍ରଶଂସିଲେ ଦ୍ୱିଜ ଧନ୍ୟ ତୋ ଜୀବନ
ଆଚମନ ସାରି ନୃପ ବିଜୟ ଆସ୍ଥାନ
ରନ୍ଧା ପ୍ରଶଂସା କରନ୍ତି ତହିଁ ସର୍ବଜନ ।
କଉତୁକେ ନାରୀମାନେ ମାଗନ୍ତି ବ୍ୟଞ୍ଜନ
ଭୋଜନ ପାଇଁ ତାହାଙ୍କୁ ଦ୍ୟନ୍ତି ଭୀମସେନ ।
ଅନେକ ସ୍ତ୍ରୀ ଯେ ଆଣି ଦିଅନ୍ତି ପରିବା
ବୋଲନ୍ତି ପଣ୍ଡାଏ କିଛି ଆମ୍ଭଙ୍କୁ ଯେ ଦେବା
ରାଜା ଭୁଞ୍ଜିବା ପର୍ଯ୍ୟନ୍ତ ବଲ୍ଲଭଙ୍କ ଦୃଷ୍ଟି ।
ତଦପରେ ଦିଅନ୍ତି ସେ ଯାକୁ ଯେତେ ଅଣ୍ଟି ।
ସର୍ବେ ବୋଇଲେ ବିରାଟ ରାଜ୍ୟ ହେଲା ସିଦ୍ଧି
ଦେବ ରନ୍ଧନ ଗଉରୀ ଶୌରୀ ନଳବିଧି ।
କ୍ଷତ୍ରୀ ବୃତ୍ତି ଛାଡ଼ି ଜାତ ହୁଏ ବହୁଗୁଣ ।
ଗୁଣ ଉପୁଜିଲେ ପୁଣ ବହୁତ କାରଣ ।
ଶୁଣ ବୈବସ୍ୱତ ମନୁ ମହାତ୍ମାପୁରୁଷ
ଭୀମଙ୍କ ଗୋପନ କଥା ଏବେ ହେଲା ଶେଷ ।
ଶାରଳା ଦେବୀ ପ୍ରସାଦେ କଲି ମୁଁ ଲିଖନ
ହେ ନରେ ମୋହରଦୋଷ କିଞ୍ଚିତେ ନ ଘେନ
ଭରତ ଚରିତ ଏହୁ ଅଟେ ସୁଧାରସ
ଜନଙ୍କ ହିତେ ରଚିଲି ମୁଁ ଶାରଳା ଦାସ ।

—●—

## ଅର୍ଜ୍ଜୁନଙ୍କ ବିରାଟ ସଭାରେ ପ୍ରବେଶ

ଏଥୁଅନ୍ତରେ ଗମନ କଲେ ସବ୍ୟସାଚୀ
କବରୀ ଶାମଳୀ ବୀର ଖୋସା ଏକ ରଚି ।
ଶିରେ ଶୋଭେ ସୀମନ୍ତନୀ ମୁକୁତାର ଜାଲି
ଲଲାଟରେ ମଥାମଣି କର୍ଣ୍ଣେ କର୍ଣ୍ଣଝଲି ।
ଦୁଇହସ୍ତେ ପିନ୍ଧିଛନ୍ତି ସୁବର୍ଣ୍ଣର ଚୂଡ଼ୀ
ଗଳେ ଚାପସରୀ ଅଙ୍ଗେ ରହିଅଛି ଜଡ଼ି ।
ଦୁଇପାଦର ନୂପୁର ରୁଣୁଝୁଣୁ ବାଜେ
ମୁକୁତା ଗୁନ୍ଥା କାଞ୍ଚନ ହୃଦରେ ବିରାଜେ ।
ଚାଲନ୍ତି ପଥରେ ପାର୍ଥ ସ୍ତିରୀରୂପ ହୋଇ
ମାଧୁରୀଫୁଲ ପରାୟେ ତ୍ରୈଲୋକ୍ୟ ମୋହଇ ।
ତ୍ରୈଲୋକ୍ୟବିଜୟୀ ପାର୍ଥହୋଇ ସ୍ତିରୀବେଶ
ମସ୍ୟରାଜାଙ୍କ ନବରେ ହୋଇଲେ ପ୍ରବେଶ ।
ଦେଖିଣ ମୋହିତ ହେଲେ ନାଗରିକ ଜନ
ରମ୍ଭା ବିଜୟ କଲା କି ଏ ମର୍ତ୍ତ୍ୟ ଭୁବନ ।
କି ଅବା ଅଇଲେ ଏଥେ ମଦନ ମେନକା
ସଙ୍ଗେ କେହି ନାହିଁ କିମ୍ପା ଗମନ୍ତି ଏ ଏକା ।
ବିରାଟ ସଭା ନିକଟେ ଯାଇ ହେଲେ ଭେଟି

ଦେଖିଣ ସମସ୍ତେ ତାଙ୍କୁ କଲେ ଏକଦୃଷ୍ଟି ।
ସମ୍ଭର୍ବେ ଆସ୍ଥାନ ପରେ ବିଜେ ମତ୍ସ୍ୟପାଳ
ପାର୍ଥ ପ୍ରବେଶିଲେ ଯାଇ ଆସ୍ଥାନର ତଳ ।
ତ୍ରୈଲୋକ୍ୟ ମୋହିନୀ ରୂପ ଗୁଣ ସର୍ବେ ଦେଖି
ଭୟେ ବେନି ଭାଗ ଜନେ ଆସନ ଉପେକ୍ଷି ।
ବିରାଟପତି ବିଚାରେ ଏ ବଡ଼ ଅପୂର୍ବ
ଆକାଶ ବାହିନୀ ଏହୁ କି ନାମ ସମ୍ଭର୍ବ ।
ଯୁଧିଷ୍ଠିର ବିଚାରନ୍ତି ପାର୍ଥ ମୁଖ ଚାହିଁ
ରେ ନିର୍ଲଜ ଆତ୍ମା ତୋର ଅଛି କାହିଁପାଇଁ ।
ସଚରାଚର ଧଇଲୁ ବାବୁ ଧନୁ ହୁଳେ
ସୁଭଦ୍ରା ପାଇଁ ଜିଣିଲୁ କୃଷ୍ଣ କାମପାଳେ ।
ପଞ୍ଚାଳ ଦେଶର ଲାଖ ବିନ୍ଧିବାର କାଳେ
ଲକ୍ଷେ ରାଜା ଜିଣିଲୁ ତୁ ତହିଁ ଅବହେଳେ ।
ରାଜଚକ୍ର ଛିଦ୍ର ମଧ୍ୟେ ମତ୍ସ୍ୟ ଆଖି ଛେଦି
ଦ୍ରୁପଦ ରାଜନନ୍ଦିନୀ ଲଭିଲୁ ଦ୍ରୌପଦୀ ।
ଶରେ ସାଗର ବାନ୍ଧିଲୁ ହନୁଙ୍କ ବିବାଦେ
ଗୋସିଂହ ମାରି ଦ୍ୱାରିକା ରଖିଲୁ ତ ହାଦେ
ଅରଣ୍ୟରେ ଗମନ୍ତି ଯେ ଅଙ୍ଗାର ପନ୍ନଗ
ଅସ୍ତ୍ରାଘାତରେ କାଟିଲୁ ତାହାର ଯେ ଅଙ୍ଗ ।
ବୈଶ୍ୱାନରଙ୍କର ହେଲା ଲୁଦୁବୁଦୁ ବ୍ୟାଧି
ଇନ୍ଦ୍ରଜିଣି ଖାଣ୍ଡବରୁ ଦେଲୁ ମହୌଷଧି ।
କିରାତରୂପୀ ହରଙ୍କୁ ଜିଣିଲୁ ତୁ ହେଳେ
ଭୟେ ପାଶୁପତ ଅସ୍ତ୍ର ତୋତେ ଦାନ କଲେ ।
ସ୍ୱର୍ଗ ମର୍ତ୍ତ୍ୟ ପାତାଳେ ତୁ ଅଟୁ ଜଗଜ୍ଜିତା
ଏ ସ୍ଥାନେ ଭାଜନ ତୋତେ କରିଲା ବିଧାତା ।
ତୁମ୍ଭଙ୍କୁ ମୁଁ ନାଶକଲି କରି ପଶାଖେଳ
ସର୍ବ କେଣେ ଗଲା ଏବେ ଉଭା ସଭାତଳ ।
ତୋର ପରାକ୍ରମ ଏବେ ହୀନବୀର୍ଯ୍ୟ ଦେଖି
ଜଳିକିମ୍ବା ନ ଯାଉଛି ମୋର ବେନି ଆଖି ।
ପୁଣି କୋନ୍ତଭଙ୍ଗ ମନେ କରନ୍ତି ବିଚାର
ଜଳି କିମ୍ବା ନ ଯାଉଛି ମୋର ଏ ଶରୀର ।
ସଭାତଳରେ ଅର୍ଜୁନ ହେଲେ ଯହୁଁ ଉଭା
ସ୍ୱର୍ଗପୁରୀ ପ୍ରାୟ ଦିଶେ ବିରାଟର ସଭା ।
ବାମଅଙ୍ଗ ଦେଇକରି ବିରାଟ କତିକି
ପ୍ରଣାମ କଲେ ଫାଲଗୁନି ଯୁଧିଷ୍ଠିଙ୍କୁ ଦେଖି ।
ବିରାଟ ବୋଇଲେ ତାଙ୍କୁ ମହାପରସାଦେ
ଉଠ ଉଠ ଆଜ୍ଞା ହେଲା ତୁମ୍ଭଙ୍କୁ ଯେହାଦେ
ପାର୍ଥଙ୍କୁ ଏମନ୍ତ ଆଜ୍ଞା ରାଜନ ଦିଅନ୍ତେ
ଯୁଧିଷ୍ଠିର ବିଚାରିଲେ ନିଜ ହୃଦଗତେ ।
ଆମ୍ଭ ଆଜ୍ଞା ନ ହୋଇଲେ ନ ଉଠେ କିରୀଟି
ବିରାଟ ରାଜାଙ୍କ କଥା ନ ଶୁଣିବ ଏଟି ।
କୋନ୍ତ ବୋଇଲେତୁମ୍ଭେଗୋଶୁଣ ମହାମାଣୀ
ଠାକୁରଙ୍କ ଆଜ୍ଞା ହେଲା ଏବେ ଉଠ ପୁଣି ।
ବିରାଟ ବଚନେ ପାର୍ଥ ତୁନି ହୋଇଥିଲା
ଯୁଧିଷ୍ଠିରଙ୍କ ବଚନେ ଝଟତି ଉଠିଲା ।
ବିରାଟ ବୋଇଲେ ତୁମ୍ଭେ ଶୁଣ ଗୋ ସୁନ୍ଦରୀ
କେବଣ ସ୍ଥାନରେ ଗୃହ ଅଟଇ ତୁମ୍ଭରି ।
କେ ତୁମ୍ଭର ମାତା ଅଟେ କେ ତୁମ୍ଭର ପ୍ରଭୁ
କାହୁଁ ଅଇଲ ସୁନ୍ଦରୀ କେ ତୁମ୍ଭର ବନ୍ଧୁ ।
ମୋହିନୀ ରୂପକୁ ଧରି ମିଳିଲ ମୋ ରାଜ୍ୟେ
କି ହେତୁ ଆସିଲ ତୁମ୍ଭେ କହ କେଉଁକାର୍ଯ୍ୟେ
ଶୁଣି ସୁଶୀତଳ ବାକ୍ୟେ ବୋଲେ ସବ୍ୟସାଚି
ଅଳ୍ପକାର୍ଯ୍ୟ ବୋଲି ଯାହା ତାହା ନୁହେଁ କିଛି
ପଶ୍ଚିମ ସୌରାଷ୍ଟ୍ରେ ଅଛି ହସ୍ତିନାର ପୁରୀ
ଯୁଧିଷ୍ଠିର ଦେବ ଥିଲେ ତହିଁ ଅଧିକାରୀ ।
ଭୀମସେନ ଠାକୁର ଯେ ତାହାଙ୍କ ଅନୁଜ
ତାହାଙ୍କର ସାନୁଜ ଯେ ଫାଲଗୁନି ସାନୁଜ
ଶେଷ ସାନୁଜ ଦୁହିଙ୍କୁ ଚିହ୍ନିକି ବିରାଟେ
ମୁହିଁ ତାଙ୍କର ଶ୍ରୋଣଦା ବାଦ୍ୟକାର ଅଟେ ।
ପଶାଖେଳେ ଯୁଧିଷ୍ଠିର ରାଜ୍ୟଧନ ହାରି
ବାର ବରଷ ରହିଲେ ହୋଇ ବନଚାରୀ ।
ଯୁଧିଷ୍ଠିର ତୁମ୍ଭ ରାଜ୍ୟେ ଆସିବେ ଶୁଣିଲି
ତେଣୁ ସେ ଶବଦ ଶୁଣି ଗୋଡ଼ାଇ ଆସିଲି ।
ମୋର ନାମ ପଚାରିଲେ ଆହେ ଦଣ୍ଡଧାରୀ
ମୋର ନାମ ଅଟଇ ସଂଯମୀ ବୃହନ୍ନାରୀ ।
କନ୍ୟାପୁରେ ଥାଏ ମୁହିଁ ଅଟେ ନୃତ୍ୟକାରୀ
ଗୀତ ନୃତ୍ୟ ଶିକ୍ଷାଦିଏ ଅତି ଯତ୍ନକରି ।
ବିରାଟ ବୋଲେ ଜାଣିଲି ତୁମ୍ଭ ଶୁଦ୍ଧକାୟ
ହୃଦେ ଜାଣୁଛି ତୁମ୍ଭଙ୍କୁ ପୁରୁଷ ପରାୟ ।
ବୋଲେ ବୃହନ୍ନାରୀ ତୁମ୍ଭେ ଶୁଣ ମତ୍ସ୍ୟେଶ୍ୱର
ସ୍ତ୍ରୀ ପୁରୁଷ ଦୁହିଁଙ୍କର ମୁଁ ଅଟେ ବାହାର ।
ବିରାଟ ବୋଇଲେ କୋନ୍ତ ଏକଥା କେମନ୍ତ
ଯେଉଁ କଥା କହିଲେ ଏ ବଡ଼ ଆଚମ୍ବିତ ।
ଯାହା ସେ ଲିଖନ କରିଅଛି ପ୍ରଜାପତି
ଚନ୍ଦ୍ର ସୂର୍ଯ୍ୟ ସର୍ଜି ସେହୁ କଲା ଦିନରାତି ।
ସ୍ତିରୀ ଆନ ପୁରୁଷେକ ପାପେକ ପୁଣ୍ୟକ
ଅଉ ଏକ କଥା ଅଛି ସ୍ୱର୍ଗ ଯେ ନରକ ।
କୋନ୍ତ ବୋଇଲେ ହେ ରାୟ ଥିବଅନ୍ତଃପୁର
ଅହର୍ନିଶି ରହିଥିବ ସ୍ତିରୀ ସଙ୍ଗତର ।

ରାଜା ତୁମ୍ଭ ମନେ ଯେବେ ହେବ ସାବଧାନ
ବିଶ୍ୱାସୀ ଲୋକଙ୍କୁ ରାଇ କହିବ ସେମାନ ।
ଯାଚକେଶ୍ୱର ବୋଇଲେ ଅନ୍ତେ ପାଟବନ୍ଧା
ଉତ୍ତମ କୁମାର ଏହା କରନ୍ତୁ ସୁବିଧା ।
ସ୍ୱରୂପ ବୁଝିବା ସିନା ପରକ୍ଷି ଦେଖିଲେ
ରହିବି ଯେଅନ୍ତଃପୁରେ ନପୁଂସକ ହେଲେ ।
ଅନ୍ତଃପୁରରେ ପ୍ରବେଶ ହେଲେ ବୃହନ୍ନାରୀ
ବିରାଟ ସୁତା ଉତ୍ତରା ପରୀକ୍ଷା ଯେ କରି ।
ବିଧାତା ନିର୍ବନ୍ଧ ଯେହୁ ଉର୍ବଶୀର ଶାପ
ତେଣୁକରି ଅଦୃଶ୍ୟ ଯେ ହେଲା ନିଜରୂପ ।
ଉଲଗ୍ନ କରି ଦେଖିଲେ ତାଙ୍କ ବର୍ଣ୍ଣ ଚିହ୍ନ
ସ୍ୱାଭାବରେ ନାହିଁ ସ୍ତିରୀ ପୁରୁଷ ଲାଞ୍ଛନ ।
ଆସ୍ଥାନେ ଯାଇ ଉତ୍ତର କହଇ ସ୍ୱରୂପ
ସ୍ତ୍ରୀ ଲକ୍ଷଣ ନାହିଁ ପୁଂସ ଲକ୍ଷଣ ହିଁ ଗୋପ୍ୟ ।
କୋନ୍ତବୋଇଲେ ଯେ ସତ୍ୟ ସଦାଅଚେଧନ
ଉର୍ବଶୀର ଶାପ କେଭେ ହୋଇବ କି ଆନ ।
ପ୍ରଥମେ ବୋଇଲା ଧର୍ମ ଅଇଲେ ଯେ ବୋଲି
ସେ ଶବଦ ଶୁଭିଲା ମୁଁ ତେଣୁ ନିସ୍ତରିଲି ।
କୋନ୍ତବୋଇଲେ ହେରାୟ ନକହୁଯେ ମିଥ୍ୟା
ଅବଶ୍ୟ ସମୟେ ତୁମ୍ଭେ ଦେଖିବ ସେକଥା ।
ମହତ ବଚନ କେବେ ନ ହୁଅଇ ଆନ
କିମ୍ବା ଚନ୍ଦ୍ର ସୂର୍ଯ୍ୟ ହେବେ ଗମନାଗମନ ।
ବଚନରେ ବୋଧକଲେ ମତ୍ସ୍ୟ ଅଧିକାରୀ
ଉତ୍ତରାକନ୍ୟାକୁ ନୃତ୍ୟଶିକ୍ଷା ବୃହନ୍ନାରୀ ।
ବିରାଟ ବୋଲେ ପାର୍ଥଙ୍କୁ ମୁଁ ଦେଖିବି କାହିଁ
ଅନ୍ଧପଟଳ ଫିଟିବ ତାହାଙ୍କୁ ଅନାଇ ।
ଯାଚକେଶ୍ୱର ବୋଇଲେ ଶୁଣ ମତ୍ସ୍ୟରାଜା
ଧାର୍ମିକ ଲୋକଙ୍କୁ ଦେବ ବହୁତ ତରିଯା ।
ମନ୍ତ୍ରୀବରଙ୍କ ବଚନ ଶୁଣି ଦଣ୍ଡଧାରୀ
ଘେନିଲେ ଆପଣାକରେ ତହିଁ ଦିବ୍ୟଶାଢ଼ୀ ।
ଘେନ ବୃହନ୍ନାରୀ ବୋଲିଯାଚେଶାଢ଼ୀତୋଳି
ହେଠବଦନେ ଅର୍ଜୁନ ଚିନ୍ତେ ବନମାଳୀ ।
ସ୍ୱାମୀ ଏହା ଶାଢ଼ୀ ମୁହିଁ ଘେନି ତଳହସ୍ତେ
ଭୃତ୍ୟପଣ ହୋଇବି ନା ଶାଢ଼ୀବାନ୍ଧି ମାଥେ
ତିନିରୁ ଅଧିକ କେହି ନାହିଁ ଚାରିଜଣ
ଉପର ହସ୍ତରେ ଶାଢ଼ୀ ଦେବାକୁ ଭାଜନ ।
ଇନ୍ଦ୍ର ଗୋବିନ୍ଦ ଆବର ରାଜା ଯୁଧିଷ୍ଠିର
ଏହାଙ୍କ ଛଡ଼ା ମୁଁ ଶାଢ଼ୀ ନଘେନଇ କାର ।
କହୁଁ କହୁଁ ଫାଲଗୁନି ମୁଖ କଲେ ପୁଷ୍ଟ
ଆଜ ତ ତୋହର ଶିରୀ ସରିଲା ବିରାଟ ।
ଅର୍ଜୁନଙ୍କ କୋପ ଦେଖି ଜାଣିଲେ ଯୁଧିଷ୍ଠି
ହୃଦଗତେ ସୁମରିଲେ କୃଷ୍ଣନାମ ଗୋଟି ।
ତୋ ବଚନେ ଅଇଲି ମୁଁ ବିରାଟ ରାଜ୍ୟକୁ
ଏ ଧର୍ମ କଷଣୁ ପାରିକର ତ ଆମ୍ଭଙ୍କୁ ।
ବାକ୍ୟଦେବୀ ଯହୁଁ ତାଙ୍କୁ ହୋଇଲେ ପ୍ରସନ୍ନ
ବିରାଟ ବିଚାର କଲା ତହୁଁ ନିଜ ମନ ।
ଆପଣା ମନରେ ଭାବି କୋନ୍ତ ମୁଖ ଚାହିଁ
ହସ୍ତେ ଶାଢ଼ୀ ଧରି ତହୁଁ ସଧୀରେ କହଇ ।
ତୁମ୍ଭେ ଶାଢ଼ୀ ଦିଅ କୋନ୍ତ ଏ ବୃହନ୍ନାରୀକୁ
ଆନନ୍ଦେ ଏ ଚାଲିଯାଉ ଉତ୍ତରା ପୁରକୁ ।
ଶୁଣି କୋନ୍ତ ଶାଢ଼ୀଦେଉ ଘେନିଲେସେପାର୍ଥ
ଆନନ୍ଦିତ ହୋଇ ସେହୁ ବାନ୍ଧିଲେ ସେବାମାଥେ
ଆସ୍ଥାନ ମଧ୍ୟରୁ ଶାଢ଼ୀ ବୀରମଣି ଘେନି
ବିରାଟ ମନ୍ଦିରକୁ ଯେ ଗଲେ ଫାଲଗୁନି ।
ପୂର୍ବ ଉତ୍ତରା କୁମାରୀ ରହିଥିଲେ ଚାହିଁ
ଏହିକାଳେ ଫାଲଗୁନି ମିଳିଗଲେ ଯାଇଁ ।
ଯୁଧିଷ୍ଠିର ସଭାମଧ୍ୟେ ମତ୍ସ୍ୟଦେଶେ ପଶି
ଅରଜୁନ ବୃହନ୍ନାରୀ ହୋଇଲେ ଯେ ଆସି ।
ସୂପକାର ବେଶ ହୋଇ ରହେ ଭୀମସେନ
ତିନିହେଁ ରହିଲେ ଗୋପ୍ୟ ନଜାଣଇ ଆନ ।
ହେ ନରେ ଶ୍ରୀକୃଷ୍ଣ ନାମ ଜପ ସଦାକାଳେ
ସଂସାର ସାଗର ସୁଖେ ତରିଯିବ ହେଳେ ।
ସେ କଞ୍ଜଚରଣ ମଧୁପାନେ ଚିତ୍ତ ରହୁ
ଶାରଳା ଦାସକୁ ବାରେ ଏହି ଜ୍ଞାନହେଉ ।

—o—

## ଦ୍ରୌପଦୀଙ୍କର ବିରାଟ ଭବନେ ପ୍ରବେଶ

ଅଗସ୍ତିଙ୍କୁ ପୁଚ୍ଛାକଲେ ମନୁ ନୃପମଣି
ଏଥି ଉତ୍ତାରୁ କି ହେଲା କହ ମହାମୁନି ।
କହନ୍ତି ଅଗସ୍ତି ମୁନି ଆହେ ନୃପବର
ମୁଁ ଏବେ କହୁଛି ଶୁଣ ମତି କରି ସ୍ଥିର ।
ସହଦେବ ବୋଇଲେ ଗୋ ଶୁଣ ଯାଜ୍ଞସେନୀ
ଦଧିବାମନଙ୍କ ଶୁଭ ଅନୁକୂଳେ ଘେନି ।
ସଭାର ମଧ୍ୟରେ ଯାଇ ରହିଲେ ଯେ ଧର୍ମ
ରୋଷାଇ ଘର ଭିତରେ ରହିଲେକ ଭୀମ ।
ଅନ୍ତଃପୁରକୁ ଗମନ କଲେ ସବ୍ୟସାଚୀ
ଏହିରୂପେ ରହିଲେକ ଯେଝା ସ୍ଥାନବାଛି
ସର୍ବ ମଙ୍ଗଳ ଅମୃତଯୋଗ ବିଦ୍ୟମାନ
ବିଜୟ କଲେ ପାଞ୍ଚାଳି ସ୍ମରି ଭଗବାନ ।

କେଶ ବାସ ପରିମଳ ଅଳଙ୍କାର ବିନା
ଅରଣ୍ୟରୁ ବାହାରିଲେ ପାଣ୍ଡବ ଲଳନା ।
ଗମନ୍ତେ ତ୍ରୈଲୋକ୍ୟ ସେ ମୋହୁଛନ୍ତି ବାଳୀ
ନଗର ପଶ୍ଚିମଦ୍ୱାର ନିକଟରେ ମିଳି ।
ମଉନେ ରହିଲେ କିଛି ନକରି ସମ୍ଭାଷ
ଧାଈମାନେ ତାଙ୍କୁ ଦେଖି ଆସିଲେଯେ ପାଶ
ନଗରୀ ଚତୁରୀମାନେ ପ୍ରକାଶନ୍ତି ବାଣୀ
କେଉଁଠୁ ଆସିଲ ମାଗୋ କହ ମହାମ୍ବାଣୀ
ତାହାଙ୍କଠାରୁ କୌଣସି ଉତ୍ତର ନ ପାଇ
ବେଗେ ପ୍ରବେଶିଲେ ଧାଈ ରାଣୀପାଶେଯାଇ ।
ପାଟରାଣୀଙ୍କୁ କହନ୍ତି ଅତି ପ୍ରିୟଭାବେ
ସତ୍ୟବଚନ ଆମ୍ଭର ଶୁଣିବା ଗୋ ଏବେ ।
ଦ୍ୱାରେ ଉଭା ହୋଇଅଛି ଏକଗୋଟି କନ୍ୟା
ସାକ୍ଷାତେଦେଖିଲୁ ତାକୁ ଯେହ୍ନେ ଅନ୍ନପୂର୍ଣ୍ଣା ।
କଥା ନ କହିଲା କିଛି ଆମ୍ଭଙ୍କୁ ତରୁଣୀ
ଭାଗ୍ୟବତୀ କନ୍ୟା ସେହୁ ଅତି ସୁଲକ୍ଷଣୀ ।
କପିଳାସ ତେଜି କିବା ଆସିଲେକ ଉମା
କିବା ସେହୁ ଶଚିଦେବୀ ଇନ୍ଦ୍ରଙ୍କର ବାମା ।
ବିଷ୍ଣୁଙ୍କୁ ତେଜି ଗମନ କଲେ କି କମଳା
କିବା ରତିଦେବୀ ସେହୁ ପୁଷ୍ପକର ବାଳା ।
ସ୍ତିରୀଙ୍କ ମଧ୍ୟେ ସୁନ୍ଦରୀ ଅଟଇ ଯେ ରମ୍ଭା
ଆସିଛି ଗୌତମ ନାରୀ ଅଟଇ ଯେ ରମ୍ଭା ।
ମାଗୋ ଏଥର କଷଣ ପଡ଼ିଲାଣି ମୋତେ
ବିଚାରି କହିଲି ଦୋଷ ନ ଧରିବ ମୋତେ ।
ଜଗଜ୍ଜନ ମୋହିନୀ ଯେ ସ୍ତିରୀ ରତ୍ନ କାନ୍ତି
ଜାତି କମଳିନୀ ସେହୁ ରୂପେ ରୂପବତୀ ।
ବିଚାର ପରମେଶ୍ୱରୀ ବୁଝ ପରିମାଣି
ନିଷ୍ଠୟ କେ ତୋହର ଗୋହେବ ସପତଣୀ ।
କେବୋଇଲେ କେଶଧରି ନେବା ମୋ ତାହାକୁ
କଟକୁ ବାହାର କରି ଦେବା ସୁନ୍ଦରୀକୁ ।
କେବୋଲଇ ପିଟିବା ଗୋ ମୁଖେ ଦେଇବିଣ୍ଡା
କେବୋଲଇ ହାଣିବା ଗୋ କରେଧରି ଖଣ୍ଡା
ସୁଦେଷ୍ଣା ବୋଲଇ ଆଗେ ଏମନ୍ତ ନବୋଲ
ମହତୀଙ୍କୁ ଘଞ୍ଚାଳ ଗୋ କେବେ ନୁହେଁ ଭଲ
କଷଣ ପାଇଲେ ଆଗୋ ଆସନ୍ତି ଦେବତୀ
ଘଞ୍ଚାଳ କରିଲେ ମୃତ୍ୟୁ ହୁଏ ସମାପତି ।
ତାହାଙ୍କର ନିକଟକୁ ଯାଅ ଏହିକ୍ଷଣି
ମୋହର ତହିଁକି ତାଙ୍କୁ ଘେନିଆସ ପୁଣି ।
ମହାଦେଈଙ୍କ ବଚନେ ବେଗେଗଲେ ଧାତ୍ରୀ
ଅନେକ ଚତୁରୀ ଯାଇ ଠୁଳ ତାଙ୍କ କତି ।

ତୁମ୍ଭଙ୍କୁ ନେବାକୁ ଆଜ୍ଞାଦେଲେ ଠାକୁରାଣୀ
ଛାମୁକୁ ବହନ ହୋଇ ଆସ ସାଆନ୍ତାଣୀ ।
ଚଳିଲେ ପାଞ୍ଚାଳୀ ତହୁଁ ରାଜ ଅନ୍ତଃ ପୁରେ
ଦେଖି ସୁଦେଷ୍ଣା ଆସନ ଛାଡ଼ିଲେ ସତ୍ୱରେ
ପାଞ୍ଚାଳୀ ଆସନ୍ତେ ପୁର ଦିଶେ ଅତି ଶୋଭା
ସୁଦେଷ୍ଣା ବୋଇଲେ ଏହୁ ପ୍ରତ୍ୟକ୍ଷରେରମ୍ଭା ।
ଅମରପୁର ତେଜିଲେ କିବା ଆଖଣ୍ଡଳୀ
କିବା ଭୁତେଜି ଅଇଲେ ଭୂମି ଆଖଣ୍ଡଳୀ ।
ଏହିରୂପେ ବିଚାର କଲେକ ମହାଦେଈ
କିବା ଶିବ ତେଜି ଶିବା ଆସିଲେ ଏଠାଇଁ ।
କିବା ମେନକା ଦୁହିତା ଏହୁ ଶକୁନ୍ତଳା
ତେଜିଣ ଦୁଷ୍ମନ୍ତ କେଶ କରିଛି ମୁକୁଳା ।
ଶ୍ରୀୟା ନାମେ ସୁଦେଷ୍ଣାର ଯେହୁ ପରିଚାରୀ
ଲୌକିକ ବାକ୍ୟେକହିଲେ ତାହାକୁ ତିଆରି ।
ସମସ୍ୟା ସଦଭାବରେ ସୁବାକ୍ୟ କହିବ
ପ୍ରସ୍ତାବେ ଅନୁସାରେ ଗୋ ପ୍ରତ୍ୟୁତ୍ତର ଦେବ
ଯେହୁ ଅବା ଯେଉଁରୂପେ କର ମନବାଞ୍ଛା
କ୍ଷୁଧାର୍ତ୍ତେ ଭୋଜନ ଦେବ କରି ମନଇଚ୍ଛା ।
ସମସ୍ୟା ଅନୁରୂପେ ଗୋ କହିବ ବଚନ
ଧର୍ମ ଅନୁରୂପରେ ଗୋ ଧର୍ମ ସ୍ଥାପି ଜାଣ ।
ପରାକ୍ରମ ଅନୁରୂପେ ହୋଇବାକ ଦ୍ୱନ୍ଦୀ
ଶାପ ଅନୁରୂପରେ ଗୋ ହୋଇବାକ ବନ୍ଦୀ
ମନ୍ତ୍ର ଅନୁରୂପରେ ଗୋ ଘେନି ଦୀପଦାନ
ଦେବୀ ଅନୁରୂପରେ ଗୋ ପୂଜାବିଦ୍ୟମାନ ।
ସମସ୍ୟା ଅନୁରୂପେ ଗୋ କରିବାକ କୋପ
ଏମାନ ତେଜିଲେ ନିଶ୍ଚେ ବୃଦ୍ଧି ହୁଏ ପାପ ।
ତୁ ଯେ ପଣ୍ଡିତା ବିବେକୀ ଅଟୁ ଧର୍ମଶୀଳ
ତୋ ତହୁଁ ଗୁରୁହଂସିତା ବାକ୍ୟଅନର୍ଗଳ
ଶ୍ରୀୟାର ବଚନ ଶୁଣି କହନ୍ତି ସୁଦେଷ୍ଣା
କେବଣ ଦେଶରେ ଘର କହଅନ୍ନପୂର୍ଣ୍ଣା ।
କେ ତୋହାର ବଲ୍ଲଭଗୋ କେତୋହରତାତ
ଗୃହବାସ କାହିଁତୋର କେଉଁକୁଳେ ଜାତ ।
ଶୁଣ ଗୋ ବୈଷ୍ଣବୀ ମତ୍ସ୍ୟରାୟର ମଣ୍ଡଣି
କହନ୍ତେ ବଚନ ଶୁଭେ ମଧୁସମ ବାଣୀ ।
ଭକତି କରିଣ ପୁଣି ହୋଇ କୃତାଞ୍ଜଳି
ରୁଚିର ବଚନକୁ ଯେ କହନ୍ତି ପାଞ୍ଚାଳି ।
ପଶ୍ଚିମେ ସୌରାଷ୍ଟ୍ରେ ନଦୀ ବହଇ ଯମୁନା
ତାହାକୂଳେ ଇନ୍ଦ୍ରପ୍ରସ୍ଥ ବାରୁଣା ହସ୍ତିନା
ବଡ଼ ସମ୍ପଦ ଭୁବନ ସେହୁ ବାରସ୍ୱତୀ
ତହିଁ ଯୁଧିଷ୍ଠିର ଥିଲେ ରାଜ ଚକ୍ରବର୍ତ୍ତୀ ।

ଭୀମ ଅର୍ଜ୍ଜୁନ ନକୁଳ ପୁଣି ସହଦେବ
ସୋମବଂଶରୁ ସମ୍ଭୂତ ଯେ ପଞ୍ଚ ପାଣ୍ଡବ ।
ସୁଦେଷ୍ଣା ବୋଇଲେ ଶୁଣି ଭାଷୁ ଭଲବାକ୍ୟ
ଏବଡ଼ ଦୁର୍ଲ୍ଲଭ କଥା ଅଟଇ ତ୍ରୈଲୋକ୍ୟ
ଆଜଦିନ ସୁଫଳ ହିଁ ପୁଣ୍ୟ ଅପ୍ରମିତା
ପରମ ପୁରୁଷଙ୍କର ଏ ସିଦ୍ଧ ବାରତା ।
ପଞ୍ଚାଳ ରାଜାଙ୍କ ସୁତ ନାମ ଯାଜ୍ଞସେନୀ
କେଉଁରୂପେ ନିର୍ଭାହୁଏ ପଞ୍ଚସ୍ୱାମୀ ଘେନି ।
କିଞ୍ଚିତ ରୂପରେ ମାୟା ନ କରିବୁ ଜାଣି
ସ୍ୱରୂପ କରିଣ ମୋତେ କହ ତାହା ପୁଣି ।
ଅନେକ ରାଜ୍ୟରେ ଆଗେ ପଢ଼ଇ ଏ କଥା
ଆମ୍ଭେ ବୋଇଲୁ କି ସତହୋଇବ ସର୍ବଥା ।
ଦ୍ରୌପଦୀ ବୋଇଲେ ତୁମ୍ଭେ ବସଆଗୋମାଏ
ଏହୁ ବଡ଼ ଦୁରାପଦ ସନ୍ଦେହ କଥାଏ ।
ଆଗେ ତୁମ୍ଭେ ପୁଚ୍ଛାକଲ ପାଣ୍ଡବଙ୍କ କଥା
ପାଞ୍ଚଙ୍କର ରମଣୀ ସେ ଅଟେ ତତ୍ତ୍ୱକଥା ।
ସୁଦେଷ୍ଣା ବୋଇଲେ ଶୁଣି ସ୍ତିରୀମାନେ ଭଲ
ଏକନାରୀ ସହେ କେହ୍ନ ପାଞ୍ଚଙ୍କ ଆର୍ଦ୍ଦୋଳ ।
ପାଞ୍ଚାଳୀ ବୋଇଲେ ପୁଣି ଶୁଣ ମନ ଘେନି
ତିନିପତି ପରୀକ୍ଷା ଗୋ କରଇ ବହନି ।
ଯୁଧିଷ୍ଠିର ପୁରକୁ ସେ ଗମେ ଯେଉଁଦିନ
କ୍ରୀଡ଼ାରସ ରଙ୍ଗସାରି ପଶେ ହୁତାଶନ ।
ସେ କାୟା ଦହନ କରି ଅନ୍ୟେ ପୁଣି ଯାଏ
ପରଦିନ ଭୀମସେନ ସମର୍ପଇ କାୟେ ।
ବୃକୋଦର ସଙ୍ଗେ ପୁଣି ରସରଙ୍ଗେ ମାତି
ଦୋହରି ଅଗ୍ନିରେ ପଶେ ଯାଇ ମହାସତୀ ।
ସେଦିନ ଅନଳ ଦାହକରି ନିଜ କାୟେ
ପୁଣି ଯାଇ ସମର୍ପଇ ବୀର ଧନଞ୍ଜୟେ ।
ନକୁଳ ସହଦେବଙ୍କ ଏହିପରି ପ୍ରୀତି
ସମସ୍ତଙ୍କୁ ଶୁଦ୍ଧକାୟ ଦିଏ ଗୁଣବତୀ ।
ଆନ ସ୍ତିରୀମାନଙ୍କର ଜଳରେ ସ୍ନାହାନ
ଅଗ୍ନି ସ୍ନାନ କରି ସେହୁ ବଞ୍ଚୁଥାଇ ଦିନ ।
ଏକର ଉଚ୍ଛିଷ୍ଟ ସେ ଗୋ ଅନ୍ୟେ ନି ଦିଅଇ
ସେ ପଞ୍ଚ ପୁରୁଷ ଏକ ଅଟେ ତାଙ୍କ ଦେହୀ
କହନ୍ତେ ସୁଦେଷ୍ଣାଙ୍କର ଭୟ ଜାତ ହେଲା
ପଞ୍ଚଆତ୍ମା ଏକକରି ମନେ ବିଚାରିଲା ।
ଅସଂଖ୍ୟା ମହିମା ତାର କହିତ ନ ପାରି
ସେହି ସେ ମାହେଶ୍ୱରୀଗୋ ପଣ୍ଡାଙ୍କରନାରୀ
ସୈରିନ୍ଧ୍ରୀ ବୋଇଲେ ତାଙ୍କ ସେବା ମୁଁ କରଇ
ପଞ୍ଚଭୂତ ଏକଆତ୍ମା ମୁଁ ତାହା ଦେଖଇ ।

ଏହିପରି ଅଭିନ୍ନ ମୁଁ ଦେଖଇ ତାହାକୁ
ଦ୍ରୌପଦୀ ମଧ୍ୟେ ଅଟନ୍ତି ସେପରି ସବୁଙ୍କୁ ।
ତାହାଙ୍କ ସନ୍ନିଧେ ଖଟେ ସେରିନ୍ଧ୍ରୀ ମୋ ନାମ
ଲାଗି କରଇ ଅଲେଖ ଚିତା ଚତୁଃସମ ।
ସ୍ୱାମୀ ଅଧମ ପଣରେ ପଶାକ୍ରୀଡ଼ା କଲେ
ଧନ ରତ୍ନ ଆଦିକରି ସମସ୍ତ ହାରିଲେ ।
ସତ ଅନୁରୂପରେ ସେ ବନବାସୀ ହେଲେ
ଶବଦ ଶୁଭିଲା ତୁମ୍ଭ ରାଜ୍ୟକୁ ଆସିଲେ ।
ବିଚାରିଛି କୃଷ୍ଣା ଗଲେ ବିରାଟ ରାଜ୍ୟକୁ
ଗୋଡ଼ାଇ ଅଇଲି ତେଣୁ ଶୁଣି ଶବଦକୁ ।
ଦେଖିଲି ଧାର୍ମିକ ଆଉ ବିବେକୀ ତୁମ୍ଭଙ୍କୁ
ତେଣୁ ତୁମ୍ଭ ନିକଟରେ ଇଚ୍ଛା ରହିବାକୁ ।
ସୁଦେଷ୍ଣାବୋଇଲେ ମୋର ଅତି ଭାଗ୍ୟହେବ
ତୁମ୍ଭେ ଯଦି ମୋ ରାଜ୍ୟରେ ଦିନ କଟାଇବ ।
ମୁହିଁ ହୀନା ଦ୍ରୌପଦୀଙ୍କୁ ଦେଖିବି ବା କାହିଁ
ଛିଣ୍ଡାଇବି ସେହି ଦୁଃଖ ତୁମ୍ଭ ମୁଖ ଚାହିଁ ।
ଆଉ ଏ କ କଥା ଅଛି ମୋହର କଟାଳ
ସର୍ବଗୁଣେ ସାଧବୀ ଗୋ ମୁକ୍ତ କିମ୍ପା ବାଳ ।
କୃଷ୍ଣାବୋଲେଦେବର ସେ ସଙ୍ଗେ କଲାକଳି
ଭର୍ତ୍ସନା କରି ମୁଁ ତାକୁ ବହୁଦେଲି ଗାଳି ।
ସହି ନ ପାରିଣ ସେହି ନିର୍ବୋଧ ଚଣ୍ଡାଳ
ଅନ୍ତଃପୁରେ ପଶି ମୋର ଧଇଲା ଗୋବାଳ
ତେଣୁକରି କେଶମୋର ହୋଇଛି ମୁକୁଳ
ଅଭିମାନେ ନ ବାନ୍ଧିଲି ସେଥିପାଇଁ ଚୂଳ ।
ସୁଦେଷ୍ଣା ବୋଇଲେ ଶୁଣ ମୋହର ଉକତ
ଏ କେଶ ବନ୍ଧନ ତେବେ ହୋଇବକେମନ୍ତ
ଶୁଣି ଯାଜ୍ଞସେନୀ ବୋଲେ ଶୁଣ ତେବେତାହା
ସ୍ୱାମୀହସ୍ତେ ଉପୁଡ଼ାଇ ତାହାର ସେ ବାହା ।
ସେ ଶୋଣିତେ ପଖାଳିବି ମୋର ମୁକ୍ତକେଶ
ତେବେ ଗୋ ବନ୍ଧନ ମୁହି କରିବି ଅବଶ୍ୟ ।
ଶୁଣିକରି ସୁଦେଷ୍ଣାର ତଣ୍ଟିଗଲା ଫାଟି
ସ୍ତିରୀଜନ୍ମ ହୋଇଣ ତୋ କକ୍ଷା ଜଗଜେଠି ।
ସୁଦେଷ୍ଣାବୋଇଲେଆଗୋମୋଚଞ୍ଜେ ରହିଲେ
ଭକତିହୋଇ ନପାରେ ଅବାମୋର ବୋଲେ
ସହୋଦର ଦିଅରକୁ କିମ୍ପା ଏତେ ରକ୍ଷା
ତୋତେ ପୁଣି ଏଠାବରେ କେକରିବ ରକ୍ଷା ।
ସୈରିନ୍ଧ୍ରୀ ବୋଇଲେ ଆଗୋଶୁଣଠାକୁରାଣୀ
ଯେ ଦ୍ରୌପଦୀ ସେହିତୁମ୍ଭେ ମହାମହାତ୍ମାଣୀ ।
ଯେ ସେବକ ସୁବରି ସେ ଅଟଇ ନିୟତ
ଠାକୁରାଣୀ ପଣ ଅଟେ ବଡ଼ଇ ମହତ୍ତ୍ୱ ।

ବେଶ ଭୂଷଣେ ତୋତେ ଗୋ ସଜାଇ ବିନିତ
ଗନ୍ଧଚନ୍ଦନ ଅଙ୍ଗେ ଗୋ ବୋଳିବି ସୁଗାତ୍ରୀ
କଥାରେ ମାଗୁଛି ତୋତେ ଶୁଣ ମାହେଶ୍ୱରୀ
କିଞ୍ଚିତେ ରୁଷ୍ଟ ନ ହେବୁ ମୋତେଯେଉଁ ପରି ।
ପାଲଟାବସନମୋତେ ନଦେବୁଗୋମାୟେ
ନ କହିବୁ କଦାଚନ ଭର୍ତ୍ସନା କଥାଏ ।
ଦ୍ରୌପଦୀ ସୁଦେଷ୍ଣା ପାଶେ ହୋଇଣ ପ୍ରବେଶ
କପଟେ ସୈରିନ୍ଧ୍ରୀ ନାମ କରନ୍ତି ପ୍ରକାଶ ।
ସାମାନ୍ୟଜନେ ସମସ୍ୟାକରିବି ଗୋ ତେଜ୍ୟା
ପୁରୁଷଙ୍କୁ ନ ଛୁଇଁବି ନ ଛୁଇଁବି ଶଯ୍ୟା ।
ପୁରୁଷେ ନ ବରଗିବ ଉଚ୍ଛିଷ୍ଟ ନ ଦେବ
ଏହି ଷଡ଼ କଥା ମାୟେ ସର୍ବଦା ରଖିବ ।
ବହୁତ ଅଧିକ କଥା ତୋର ଉପୁଜିବ
ଏହି କଥା ତୋର କାଳେ କାଳେ ରହିଥିବ ।
ସୁଦେଷ୍ଣା ବୋଇଲେ ମୋର ନିକଟରେ ଥିବୁ
ଯେତେବେଳେ ଯାହାଇଚ୍ଛା ତାହାତୁ କରିବୁ ।
ସୈରିନ୍ଧ୍ରୀବୋଇଲେ ମାଗୋ ମୁହିଁ ଏଠିଥିଲେ
ମୋର ସ୍ୱାମୀକୁ ଦେଖିବୁଯେବେ ଇଚ୍ଛାକଲେ ।
ସୁଦେଷ୍ଣା ଚିନ୍ତାକରିଲେ ହୃଦଗତ କଥା
ହୃଦଗତେ କହିଥିଲେ ଯାହାମୋର ମାତା ।
ଅଥବା ସେ ବୋଲି ହୃଦଗତରେ ବିଚାରି
ନୋହିବ ନିବୃତ୍ତ ପଞ୍ଚ ମନରେ ନିବାରି ।
ସୁଦେଷ୍ଣା ବୋଇଲେ ଆଗେଥାଅ ନିତ୍ୟକର୍ମେ
ଯେତେକାଳ ଉଚିତ ଗୋ ହେବମୋରଧର୍ମେ ।
ତହୁଁ ଦିବ୍ୟଶାଢ଼ୀ ଏକ ସୁଦେଷ୍ଣା ଧଇଲେ
ନିଅ ଗୋ ମାତା ବୋଲିଣ ଭୁଜକୁ ଟେକିଲେ ।
ସୁଦେଷ୍ଣା ଶାଢ଼ୀ ଯାଚନ୍ତେ ଧରି ଉର୍ଦ୍ଧ୍ୱହସ୍ତେ
ଦ୍ରୌପଦୀ ହେଠବଦନେ ଚିନ୍ତେ ଜଗନ୍ନାଥେ ।
ଦାସବତ୍ସଳ ଭକତଜନଙ୍କର ବନ୍ଧୁ
ଏ ବିପଦୁ ରକ୍ଷାକର ଆହେ କୃପାସିନ୍ଧୁ ।
ଉର୍ଦ୍ଧ୍ୱ ହସ୍ତେ ଦେବମୋତେ ନେବତଳହସ୍ତେ
ଏ ପୁଣି କରିବ କୋପ ନ ବାନ୍ଧିଲେ ମାଥେ
ନେଲେ ନିଷ୍ଚୟ ମୋହର ହେବ ଦାସପଣ
ଏ କଥାକୁ ସାକ୍ଷୀହୁଅ ଦେବ ନାରାୟଣ ।
ନ ପୁଣ ଜାଣିବ ଏହୁ ବିନୟୀ ନୋହିଲେ
ଶାଢ଼ୀ ଘେନି ମସ୍ତକରେ ପୁଣି ନ ବାନ୍ଧିଲେ
ହେ ଶ୍ରୀହରି ଜାଣ ସବୁ ଏଥିର ଚରିତ
ମୁହିଁ ତୋହର ଆଶ୍ରିତ ପାଣ୍ଡବ ସହିତ ।
ତୋହର ବୋଲ ପାଇଣ ଆସିଲୁ ଏଥକୁ
ଏ କଷଣୁ ପାରିକର ହେ ନାଥ ଆମ୍ଭଙ୍କୁ ।
ପୁରୁଷ ଉତ୍ତମ ତୁମ୍ଭେ ମୁଁ କି ବର୍ଣ୍ଣିବିଟି
ହୃଦଗତରେ ବିକାଶୁ ତୁମ୍ଭ ନାମ ଗୋଟି ।
ତୁଳସୀର ବଲ୍ଲଭଙ୍କ ପାଦେ ଅନୁବ୍ରତ
ଶାରଳା ଦାସ ନିରତେ ନମେ ଶତ ଶତ ।
ଶ୍ରୀହରିଙ୍କ ନାମଗୋଟି ଯା ହୃଦରେ ଥାଇ
ସୁଦେଷ୍ଣାର ହୃଦଗତେ ବିଜେକଲେ ଯାଇ ।
ଶାଢ଼ୀକୁ ଧରିଣ ଥିଲେ ବିରାଟର ରାଣୀ
କରୁ କାଢ଼ି ଝୀନବାସ ଥୋଇଲେ ଧରଣୀ ।
ଆଗେ ତୁମ୍ଭେ ହେଲମୋରରାଜ୍ୟେ ଗଉରବୀ
ଉପରହସ୍ତରେ ଶାଢ଼ୀ କେଉଁରୂପେ ଦେବୀ
ଛାମୁରେ ଥୋଇଲା ନେଇ ମତ୍ସ୍ୟରାଜା ରାଣୀ
ନାରାୟଣ ସୁମରିଲେ ଘେନି ମହାମାଣୀ ।
ଜଗନ୍ନାଥ ଲୟକରି ଆପଣେ ଧଇଲେ
ତରକେ ଉପରହସ୍ତେ ଶାଢ଼ୀ ନ ଘେନିଲେ
ତହୁଁ ଶ୍ରୀହରିଙ୍କି କୃଷ୍ଣାମନେ ଚିନ୍ତାକଲେ
ସେଦିନୁ ବିରାଟ ଅନ୍ତଃପୁରରେ ରହିଲେ ।
ଲୌକିକ କର୍ମରେ ଥାଇ ପାଟ ମହାଦେଈ
ଅବିଚଳିତ ଚିତ୍ତରେ ମନେ ବିଚାରଇ ।
ଯାବୋଲି ବୋଇଲେ ଏହୁକରିବେଯେକୋପ
ମୋର ପୁରେ ବଞ୍ଚିବେ କି ଦେଖି ଏ ସ୍ୱରୂପ
ଯେଉଁପରକାରେ ଯୋଗଥିବ ମୋତେ ପୂର୍ବେ
ନିଷ୍ଚୟ ତାହା ଭୁଞ୍ଜିବି ଅର୍ଜିଅଛି ଏବେ ।
ମଥାକୁ ଗୋପ୍ୟ ନକଲେ କୁଳ ନାଶଯାଇ
ସନ୍ଦେହକୁ ଫିଟାଇଲେ ମୁର୍ଦ୍ଧନା ଫାଟଇ ।
କର୍ମ ଆଦରି ରହିଲେ ପାଟ ମହାଦେଈ
ଆପଣାର ମନକଥା କାହାକୁ ନକହି ।
ରହିଲେ ପାଞ୍ଚାଳୀ ନିତ୍ୟକର୍ମେ ସୁଦେଷ୍ଣାର
ଅଲେଖ ତିଳକ ଭାଗ ବନ୍ଧା କାର୍ଯ୍ୟସାର ।
ବିରାଟ ଚରିତ ଏହୁ ଅତି ପୁଣ୍ୟବାଣୀ
ସଂସାର ସାଗରୁ ନରେ ତର ଏହା ଶୁଣି ।
ଶ୍ରୀକୃଷ୍ଣ ଚରଣେ ସଦା କର ଅଭିଳାଷ
ଶାରଳା ଦାସ କହଇ ପୂରୁ ମୋ ମାନସ ।

—●—

## ନକୁଳଙ୍କର ବିରାଟ ସଭାକୁ ଗମନ

କହନ୍ତି ଅଗସ୍ତି ଶୁଣ ବୈବସ୍ୱତ ମନୁ
ବିରାଟ ରାଜ୍ୟକୁ ବିଜେ ମାଦ୍ରୀଦେବୀ ସୁନୁ ।
ଶିରେ ଅଛି ପାଗ ଗୋଟି ବାହୁରେ ବାହୁଟି
ଦକ୍ଷକରେ ଯଷ୍ଟି ବାମେ ନିଆଁ ବରିଆଟି ।

ଅଧର ଦିଶୁଅଛଇ ପକ୍ୱବିମ୍ବ ବୋଲ
ଝଳିତ ଦଶନ ଦିଶେ ଅତୀବ ମଞ୍ଜୁଳ ।
କର୍ଣ୍ଣୟ ପ୍ରାୟେକ ଗଣ୍ଡସ୍ଥଳ ବେନି ପାଟି
ହିରଣ୍ୟରେଖା ପରାୟେ ଜଳେ ରେଖାଗୋଟି ।
ଅଲୋକିତ କୁଣ୍ଡଳ ଯେ ଝୁଲେ ଶ୍ରବଣରେ
ଗଜକୁମ୍ଭ ଜିଣିକରି ଦିଶେ ହସ୍ତପରେ ।
ଭ୍ରମରଙ୍କ କୋଳାହଳ ସୁବାସର ଲୁବ୍‌ଧେ
ଉଡ଼ି ବୁଲୁଥାନ୍ତି ପାଶେ ସୁମନର ବୋଧେ ।
କମଳ ମୃଣାଳ ଜିଣି ଦିଶେ ବେନି ବାହା
କୈବଲ୍ୟ ପ୍ରତିମା ପ୍ରାୟ ଦିଶେ ତାଙ୍କ ହିୟା ।
ଅତି ବିସ୍ତାର ହୃଦୟ କର୍ଣ୍ଣ କଚ୍ଛରୁଚି
ପ୍ରଥମ ପ୍ରାୟକ ନାଭି ଗଣ୍ଡ ତାଙ୍କ ଅଛି ।
ବିକ୍ରମସିଂହ ପରାୟେ ଗଗନର ଠାଣି
ସୁସଞ୍ଚ ଯେ ସରୁମଝା ହରି କଟୀ ଜିଣି ।
ଉଲଟ ରମ୍ଭା ପରାୟେ ଦିଶେ ବେନି ଜାନୁ
ବାଳକ ପରାୟେ ତାଙ୍କୁ ଫୁଟି ଦିଶେ ତନୁ ।
ଶୁଦ୍ଧ ସ୍ଫଟିକକୁ ଜିଣି ଦିଶେ ନରରେଖ
ବିକଶିତ ପୁଷ୍ପପ୍ରାୟ ଶୋଭାଦିଶେ ମୁଖ ।
ଅଶୋକ କଢ଼ୀକୁ ଜିଣି ଦେଶେ ପାଦାଙ୍ଗୁଳି
ପାଦତଳି ଦିଶୁଥାଇ ପୋହଳାକୁ ବଳି ।
ଏକଗୋଟି ଲାଙ୍କିଆ ଯେ ଅଛି ବାମକରେ
ଜଡ଼ିତ ହୋଇଛି ସେହୁ ପୁଣି ସୁବର୍ଣ୍ଣରେ ।
ପାଟର ବନ୍ଧନ ସୁନା କଳିଆର କରେ
କାମଦେବ ପରକାରେ ଦିଶନ୍ତି ଶୋଭାରେ ।
ଶୁକ୍ଳପାଗ ଚଉସରି ଲଲାଟେ ଗଭାଟି
କର୍ଣ୍ଣରେ ମନ୍ଦାରଫୁଲ ପଞ୍ଚବର୍ଣ୍ଣେ ଫୁଟି ।
ଆସ୍ଥାନେ ଥାଇ ବିରାଟ ଚାହିଁଲା ନିରେଖି
କୋନ୍ତକୁ ବୋଇଲା ପଶାକାଠି କି ଉପେକ୍ଷି ।
ସ୍ୱର୍ଗ ଛାଡ଼ି ଅନଙ୍ଗ କି ଆସିଲେ ଏଠାକେର
ମୋତେ ଜଣାଯାଉଅଛି ସେହିପରକାରେ ।
ତାହାର ବ୍ୟତୀତ ଆନ ନ ହୋଇବ ବାଣୀ
ସୁସଞ୍ଚ ସୁନ୍ଦର ଗତି ସିଂହପ୍ରାୟ ଠାଣି ।
ବିରାଟ ବଚନେ କୋନ୍ତେ ପକାଇଲା ଦୃଷ୍ଟି
ଆସ୍ଥାନରେ ଥାଇକରି ଦେଖିଲେ ଯୁଧିଷ୍ଠି ।
ହୃଦଗତେ ବିଚାରିଲେ ସ୍ୱାମୀ ଯେ ଏମନ୍ତ
ହୋଇ ନ ପାରିବୁ ପରା ଏ ସ୍ଥାନେ ଗୁପତ ।
ପ୍ରତ୍ୟକ୍ଷେ ଏ ଦିଶୁଅଛି ଅନଙ୍ଗ ସ୍ୱରୂପ
ନିଶ୍ଚୟ ପ୍ରକାଶ ହେବ ଆମ୍ଭର ଏ ଗୋପ୍ୟ
ଆରେ ବାବୁ ତୁମ୍ଭେ ସବୁ ଭାଗ୍ୟ ଘେନିଯାଇ
ହତ ସୁତେ ପଶାଖେଳି ଦୁଃଖକୁ ହେଲଇଁ ।
ଯେହୁ ପାଟ ପାଇଅଛି ଅମର ମଣ୍ଡଳେ
ସେ ସୋଦର ଉଭାହେଲେ ଛାର ସଭାତଳେ ।
ଧିକ୍ ହେଉ ଏହିପରି ମୋ ଧାର୍ମିକ ପଣ
ଏତେ ସମ୍ପଦ ହରାଇ ବସିଲି ମୁଁ ପୁଣ ।
ହେ ଦୈବ ପୁରୁଷ କଲୁ ଏହିପରି ଗତି
କୁନ୍ତ ମୁନେ ଧରଇ ଯେ ଅକ୍ଳେଶରେ ପୃଥ୍ୱୀ ।
ସୁକୁମାର ସୁନ୍ଦର ତୁ ଅଟୁ ବଳବନ୍ତା
କେଉଁ ଦୋଷେ ଶାସ୍ତି ତୋତେ ବିହିଲା ବିଧାତା
ଗୁପତ ନିମନ୍ତେ ହେଲା ଛଦ୍ମ ବେଶୀ କାୟ
ପୃଥିବୀକି ଦିଶୁଅଛି ଅନଙ୍ଗ ପରାୟ ।
ଅତ୍ୟନ୍ତ ସୁନ୍ଦର ତୋର ସୁଲକ୍ଷଣ ତନୁ
ଭୋ ବିଧି ବିରାଟଯେହ୍ନେ ନକୁଳେ ନ ଚିହ୍ନୁ
ଗମନ କରନ୍ତେ ଲୀଳା ଚାଲି ଅତି ବେଗ
ଦେଖିକରି ସଇନ୍ୟ ଯେ ହେଲେ ବେନିଭାଗ ।
ଯୁଧିଷ୍ଠିର ଦେବ ତହୁଁ କୃଷ୍ଣଙ୍କୁ ଚିନ୍ତିଲେ
ଏକାଳେ ନକୁଳ ଉଭାହେଲେ ସଭାତଳେ ।
ବିରାଟ କଟିକି ବୀର ଢ଼ାଳି ବାମଅଙ୍ଗ
କୋନ୍ତକୁ ଚାହିଁ ପ୍ରଣାମ କଲେ ସେହୁ ବେଗ
ଜିତ ମହାପରସାଦ ବିରାଟ ବୋଲଇ
ରାଜାଙ୍କ ବଚନେ ବୀର ଟଳୁ ନ ଉଠଇ ।
ଯୁଧିଷ୍ଠିର ବିଚାରିଲେ ମୁଁ ଆଜ୍ଞା ନ ଦେଲେ
ସେ ତ ନ ଉଠିବ କେବେ ବିରାଟର ବୋଲେ
ଧର୍ମବୋଲେ ଠାକୁରଙ୍କ ଆଜ୍ଞାହେଲେ ତୋତେ
ଉଠ ମହାତ୍ମା ପ୍ରଣାମ ହେଉଅଛ କେତେ ।
ବିରାଟର ବାଣୀ ସେହି କର୍ଣ୍ଣେ ନ ଶୁଣିଲା ।
କୋନ୍ତଙ୍କ ବଚନେ ବୀର ବେଗରେ ଉଠିଲା ।
ପଛକୁ ନକୁଳ ଘୁଞ୍ଚିଗଲା ପୁର ମେଣ୍ଟି
ବିରାଟକୁ ଚାହିଁଣ ଯେ ବୋଲଇ ଯୁଧିଷ୍ଠି ।
ବିରାଟ ବୋଇଲା ତୁମ୍ଭେ ଶୁଣ ହେ ସୁନ୍ଦର
କାହୁଁ ଅଇଲୁ କେବଣ ଭୁବନେ ତୋ ଘର ।
ଆମ୍ଭେ ଯାହା ପୁଚ୍ଛାକଲୁ ପ୍ରକାଶିଣ କହ
ଏ ମଞ୍ଚମଣ୍ଡଳ ଲୋକ ପ୍ରାୟ ଦିଶୁନାହଁ ।
କି ଅବା ଅନଙ୍ଗ ବିଦ୍ୟାଧର ଚିତ୍ରସେନୀ
ବୃହସ୍ପତି କୁବେର କି ଅଟ ତୁମ୍ଭେ ପୁଣି ।
ବଡ଼ ପରାକ୍ରମ ଅଟୁ ତୁହି ବଳବୀର୍ଯ୍ୟ
ଏ ତୋହର ବଳ ଦେଖି ଆମ୍ଭେ ହୀନତେଜ ।
ନକୁଳ ବୋଇଲେ ମୁହିଁ ନୁହେଁ ଦେବପୁତ୍ର
ପଶ୍ଚିମ ସୌରାଷ୍ଟ୍ର ବୋଲି ଜାଣ ମତ୍ସ୍ୟନାଥ ।
ହସ୍ତିନା ବାରୁଣା ବୋଲି ତହିଁ ଅଛି ରାଜ୍ୟ
ସେଠା ଠାକୁର ଯୁଧିଷ୍ଠି ଦେବ ମହାରାଜ ।

ଭୀମସେନ ବୋଲିକରି ତାଙ୍କର ଅନୁଜ
ସେହି ପୁଣି ଅଟନ୍ତି ଯେ ପବନ ଆତ୍ମଜ ।
ଭୀମସେନ ଠାକୁରଙ୍କ ଅଛି ସାନ ଭ୍ରାତ
ବାସବ ନନ୍ଦନ ସେହୁ ହରି ପଞ୍ଚଭୂତ ।
ଅର୍ଜୁନଙ୍କ ଅନୁଜ ଯେ ନକୁଳ କୁମର
ମାଦ୍ରୀଙ୍କର ନନ୍ଦନ ଯେ ବଡ଼ ସୁକୁମାର ।
ସେ ନକୁଳ ସଖା ମୁହିଁ ନାମ ଗ୍ରନ୍ଥିକାର
କହିଲି ମୋହର ନାମ ଆହେ ମତ୍ସ୍ୟେଶ୍ୱର ।
ତାହାଙ୍କର ବଳେ ମୁହିଁ ଦେଶ ଭ୍ରମୁଥାଇ
ସବୁ କଥା ଦେଖି ଆସି ରାଜାରେ କହଇ ।
ଶତ୍ରୁ ସଙ୍ଗେ ପଶା ଖେଳି ହାରି ରାଜ୍ୟ ଧନ
ପାଞ୍ଚଭାଇ ଅରଣ୍ୟରେ କାଟୁଥିଲେ ଦିନ ।
ଶବ୍ଦ ଶୁଭିଲା ଯୁଧିଷ୍ଠି ଏ ସ୍ଥାନେ ଆସିଲେ
ତାହା ଶୁଣି ଗୋଡ଼ାଇଣ ଅଇଲଇଁ ଭଲେ ।
ଦେଖିଲି ଧାର୍ମିକ ତୁମ୍ଭେ ଆଉ ଗୁଣବନ୍ତ
ମହୀଧର ଯୋଗେଶ୍ୱର ତୁମ୍ଭେ ଭାଗ୍ୟବନ୍ତ ।
ରାଜ୍ୟ ପରିମଳ ତୁମ୍ଭ ବଡ଼ ରାଜ୍ୟଭୂଇଁ
ତେଣୁ ରହିବାକୁ ଇଚ୍ଛା କରିଅଛି ମୁହିଁ ।
ବିରାଟ ବୋଇଲେତୋର ଅଟେକେଉଁସେବା
ବାଳୁତ ଗ୍ରନ୍ଥିକାର ତୁ କେଉଁ କାର୍ଯ୍ୟଦେବା ।
ରାଜାଙ୍କ ଉକତି ଶୁଣି ବୋଲେ ଗ୍ରନ୍ଥିକାର
ବାଜିପାଳ ଅଟେ ମୁହିଁ ଶୁଣ ମତ୍ସେଶ୍ୱର ।
ବିରାଟ ବୋଇଲେ ଯେବେ ବାଜିପାଳ ଅଟୁ
ଅଶ୍ୱଙ୍କ ଲକ୍ଷଣ ଚିହ୍ନିବାରେ ଅଟୁ ପଟୁ ।
ନକୁଳ ବୋଇଲେ ତୁମ୍ଭେ ଶୁଣ ମତ୍ସ୍ୟଇନ୍ଦ୍ର
ଅଶ୍ୱଙ୍କ ଲକ୍ଷଣ ମୁହିଁ ଜାଣଇ ସ୍ୱଚ୍ଛନ୍ଦ ।
ବିକଟ ବିକରାଳ ଯେ ଦାଢ଼ୁଆ କର୍କଟ
ଅବିକାର ସୁଚଣ୍ଡ ଯେ କାଙ୍କୁରା ବିକଟ ।
ଶରକ ନାଗକାର ଯେ କୁଟ ନଦୀ ଫଟା
କୁରୁପା ଚାନ୍ଦଝରା ଯେ ଚେପୁର କକଟା ।
ମୁଳା ବାହାଡ଼ା ଦାନ୍ତିଆ ଆଉ ରଣଭଙ୍ଗା
ବାଧା ଅବତାରୁ ରୁଖ ହୁଅନ୍ତି ଅବଗା ।
ଏତେକ ଲକ୍ଷଣରେ ହୋ ଅଶ୍ୱଙ୍କର ବ୍ୟାଧି
ମୋର ଦରଶନେ ଏହା ସବୁ ହୁଏ ସାଧି ।
ଯୁଦ୍ଧସମରେ ଆବୃତ ଅଟେ ଯେଉଁ ବାଜି
ମୋହର ସାଜିଲେ ସେହୁ ହେବ ମହାତେଜି
ପ୍ରତିଜ୍ଞା କରି କହିଲା ସେହୁ ସର୍ବ କଥା
ଆଶ୍ଚର୍ଯ୍ୟ ହୋଇଲେ ଶୁଣି ମତ୍ସ୍ୟ ମହାରଥା ।
ରାଜା ବୋଇଲେ ଅଶ୍ୱିନୀ କୁମାର ତୁ ଅଟୁ
ଏ ବିଦ୍ୟା ଥାଉଁ ତୁ କିମ୍ପା ମାନବର ଖଟୁ ।

ନକୁଳ ବୋଲେ ଧାର୍ମିକ ଅଟୁ ବୁଦ୍ଧିମନ୍ତା
ନାନା କର୍ମରେ ନିବାଡ଼ କଲାକ ବିଧାତା ।
କର୍ମ ଅବଳକୁ ତୁମ୍ଭ ରାଜ୍ୟେ ଅଛି ଆସି
ଦିଅ ମୋତେପରମାଣ ପାର ଯେବେପୋଷି
ରାଜା ବୋଇଲେ ନକୁଳ ଯେବେ ଅଶ୍ୱପାଳ
ମୁହିଁହେ ଭେଟିଲିତୋତେ ମୋ କର୍ମସୁଫଳ ।
ଯେଉଁ ସ୍ୱାମୀ ଦଶଦିଗେ ବିଜେ ଦିଗସାଧି
ଦାନେ ସାଧ କରିଲେ ସେ ଜଗତ ପ୍ରସିଦ୍ଧି ।
ତୁ ଯେବେ ବୋଇଲୁ ସବୁ ସାଧି ମୁଁ ପାରଇ
ତେବେ ଦୁଷ୍ଟ ଅଶ୍ୱ ଏକ ମୋହର ଅଛଇ ।
ମୁହିଁ ତାକୁ ଆଣିଦେବି ତୋହର ଛାମୁରେ
ଉତ୍ତମ ରାଉତେ ଯାଇ ନ ପାରନ୍ତି ଡରେ ।
ମୁଖେ ଚାରିପାଦ ପାଞ୍ଚ ରଜ୍ଜୁ ବନ୍ଧାହୋଇ
ଏକଠାବେ ପାଣିଦେଇ ନ ଫଟାନ୍ତି କେହି ।
ବିରୁହା ଗଉଡ଼େ ଯେବେ ତା କତିକି ଯାଇ
ହାବୁଡ଼େ ପଡ଼ିଲେ ତାଙ୍କୁ କାମୁଡ଼ି ପକାଇ ।
ପରଶୁ କୁଠାର ଅଟେ ତାର ଖୁରା ସିନା
ଚୂନା ହୁଅଇ ଶାବେଳି ଆଉ କୁନ୍ତ ମୁନା ।
କଟାକ୍ଷରେ ଚାହିଁଲେସେ ଲୋକେ ପାନ୍ତିଭ୍ରାନ୍ତି
ମହା ମହା ଯୋଦ୍ଧାମାନେ ନଯାନ୍ତି ତା କତି
ମନ ଲୋଡେ ଯେଉଁମାନେ ତା କତିକିଗଲେ
ପଦ ପ୍ରହାରେ ବତିଶିଜଣ ନାଶ ଗଲେ ।
ବୋଇଲେ ସେ ଚଳିଯାଏ ଫିଟିଲେ ସେଉଡ଼େ
ଖାଲ ଠିକର ନ ଜାଣି ପଙ୍କରେ ସେ ବୁଡ଼େ
ସେ ଅଶ୍ୱକୁ ଦେଇପାରୁ ମୋତେ ଯେବେସାଧି
ପରୀକ୍ଷେ ଜାଣିବା ତୋର ସର୍ବକାମ ସିଦ୍ଧି ।
ଶୁଣି ଗ୍ରନ୍ଥିକାର ବୋଲେ ଆଣ ତୁମ୍ଭେ ହୟ
କେଉଁ ଅବିଗୁଣ ତାର ଦେଖିବା ହେ ରାୟ ।
ବିରାଟ ବୋଇଲେ ସାଧି ହୋଇବ ଏକ୍ଷଣି
ମୋହରବୋଇଲେ କେହୁତାକୁପାରେଆଣି ।
ନକୁଳ ବୋଇଲେ ବାଜୀ ଦେଖିଯିବା ଆସ
ଚୁହାଣ ଭେଟାଏ ନେଇ ସେ ଅଶ୍ୱର ପାଶ
ନୁକଳ ମୂର୍ତ୍ତିକୁ ଦେଖି ହସିଲା ସେ ହୟ
ସନ୍ନିଧେ ନକୁଳ ଯାଇଁ ଆଉଁସିଲେ ଦେହ ।
ବନ୍ଧନ ଦଉଡ଼ି ତାର ସବୁ ଦେଲେ ଫେଡ଼ି
ମୁଖେ କଡ଼ିଆଳ ଭାର ଦେଲେକ ଉଛୁଡ଼ି ।
ହାମ୍ଫୋଲ ଦେଇଣ ବୀର ଚଳିଗଲେବେଗେ
ପଛେ ପଛେ ଦାରୁ ତଳେ ଅତିହିଁ ସରାଗେ ।
ନକୁଳ ପ୍ରବେଶ ହେଲେ ଯାଇ ସଭାତଳେ
ଦେଖିଆଶ୍ଚର୍ଯ୍ୟ ହୋଇଲେ ସଭାରେସକଳେ ।

ନକୁଳ ବୋଇଲେ ତୁମ୍ଭ ଅଶ୍ୱପାଳ ନାହିଁ
ଅଶ୍ୱର ଲକ୍ଷଣ ରାଜା ନ ଜାଣନ୍ତି କେହି ।
ଚାରିଖୁରା ଧଳାପୁଣି ଶିରେ ବୃନ୍ଦ ଗୋଟି
ଶ୍ୱେତବର୍ଣ୍ଣ ପୁଚ୍ଛଗୋଟି ଭୂମିତଳେ ଲୋଟି ।
କର୍କଶ ନୟନ ଅଟେ ବିଚାରିଣ ମୋକ୍ଷ
କୃଷ୍ଣବର୍ଣ୍ଣ ରୋମାବଳୀ ଉତ୍ସର୍ଗ ପ୍ରତ୍ୟକ୍ଷ ।
ଘାଟ ବାଟ ଅକଳିତ ହୁଅଇ ପୁଲକେ
ଭୟ ଲାଗିଲା ନକୁଳଙ୍କର ଡାକହାକେ ।
ଗ୍ରନ୍ଥିକାର ବୋଇଲେ ଯେ ରାଜାମୁଖ ଚାହିଁ
ବାରୁଲାଗି ହୁଏ ଏବେ ଆସିଣ ଗୋସାଇଁ ।
ବିରାଟ ବୋଇଲେ କୋନ୍ତ ସାଧୁ ବାଜିପାଳ
ହୃଦଗତେ ଆଭରଣ ଦେଲା ରତ୍ନମାଳ ।
ନିଜଭୁଜେ ଆଲିଙ୍ଗନ କର ମତ୍ସ୍ୟନାଥ
କଣୟ ପିନ୍ଧାଇଦେଲା ଗ୍ରନ୍ଥିକାର ହାତ ।
ଅଶ୍ୱ ପାଞ୍ଚ ତରୁଆ ହେ ହୟ ବାଣ ତାଳ
ଦେଖିଣ କାତର ମନେ ଚୋଖା ପରିମଳ ।
ଗ୍ରନ୍ଥିକାର ବୋଲେ ରାଜା ସୁସଞ୍ଜୟ ଜାନୁ
ମୁହିଁ ଲାଗିହେଲେ ନାଶ ଯିବ ଏହା ତନୁ ।
ବିରାଟ ବୋଇଲା ଭଲ ଗଲ ଏହା ପାଶ
ଭରସା ନୁହଇ ଯାଇ ଧନ୍ୟ ତୋ ସାହସ ।
ତୋହର ମନକୁ ବାବୁ ନକର ତୁ ବାଧା
ଏହାର ଧାପକୁ ରାଜ୍ୟ ଯାକର ଶରଧା ।
ଗ୍ରନ୍ଥିକାର ବୋଲେରାଜାମୋରନାହିଁ ଦ୍ରୋହ
ବିରାଟ ବୋଇଲେବେଗେ ଅଶ୍ୱରେ ଆରୋହ
ପିଠି ହାମ୍ପୋଳିଣ ବାଜିପାଳ ହେଲା ଜଗି
ଅଶ୍ୱ ଉଡ଼ିଗଲା ତହୁଁ ପବନହୁଁ ବେଗି ।
ପିଠି ଉପରେ ବସନ୍ତେ ଗମିଗଲା ଯୁଣେ
ପୁଣି ଆସ୍ଥାନର ପାଶେ ମିଳିଲା ତକ୍ଷଣେ ।
ପୁଣି ଦେଖାଇଣ ଦେଲେ ଦକ୍ଷିଣର ଭୂମି
ତେଣିକି ଗଲା ସେହୁସେ ଷୋଳକ୍ରୋଶ ଗମି ।
ଏକ ଘଡ଼ିକରେ ପାଞ୍ଚ ଯୋଜନ ସେ ଗଲା
କ୍ଷଣ କ୍ଷଣକେ ପୃଥ୍ୱୀରେ ପାଦ ନ ଲାଗିଲା ।
ସାଧୁ ଗ୍ରନ୍ଥିକାର ତୋର ଜୀବନ ସଙ୍ଗତି
କେବଣ କୁଳରେ ଜାତ ମଣିମା ତୋ ସ୍ଥିତି
ଆଜ୍ଞା ପରମାଣରେ ସେ ଆମୁଞ୍ଚଇ ବାଜି
ଘଡ଼ିକରେ ପ୍ରାଣତ୍ୟାଗ ହୋଇ ମହୀ ଗଞ୍ଜି ।
ନକୁଳକୁ ଦେଖି ସେହୁ ହେଲା ସ୍ୱର୍ଗଗାମୀ
ଅଳକା ଭୁବନରେ ସେ ଯାଇଣ ବିଶ୍ରାମି ।
ଚଇତନ ପୁଚ୍ଛିଲେ ଯେ ଶୁଣ ମନୁଦେବ
ସେ ବାରାଶ୍ୱ ଚରିତ ତ ବଡ଼ ଅସମ୍ଭବ ।

ସନ୍ଦେହ ଲାଗିଲା ଶୁଣି ଏ ବାରତା ଗୋଟି
ପୂର୍ବେ ଥିଲା ସେ ମହାତ୍ମା କେବଣ ଜନ୍ମଟି ।
ଶୁଣ ଆହେ ଚଇତନ ଯାହା କଲୁ ପୁଚ୍ଛା
ପ୍ରସ୍ତାବ ବାକ୍ୟକୁ ଯେବେ ଶୁଣି କଲୁ ଇଚ୍ଛା ।
ବୃନ୍ଦାର୍କ ନାମରେ ଥିଲା ଏକ ସତ୍ୟଯୁଗ
ମନଭେଦ ଇନ୍ଦ୍ର ହାତେ ବସଇ ଯେ ସ୍ୱର୍ଗ
ବାମଦେବ କ୍ଷେତ୍ରପାଳ ପାର୍ବତୀ ନନ୍ଦନ
କଲେ କ୍ଷେତ୍ରପାଳ ୟାଙ୍କୁ ମିଶି ଦେବଗଣ ।
ଅମର ଭୁବନେ ଦେବ ୟାଙ୍କୁ ଦେଲେଶାଢ଼ୀ
ଏକ ରାତ୍ରକେ ନ ଗଲେ ମୁଣ୍ଡ ଯିବ ଛିଡ଼ି ।
ଆସ୍ଥାନର ତଳେ କ୍ଷେତ୍ରବର ପଡ଼ି ପାୟେ
ଆଦିତ୍ୟ ଅଶ୍ୱ ମଧରୁ ଦିଅନ୍ତି ଗୋଟିଏ ।
ଅତିବେଗେ ଅଶ୍ୱକୁ ମୁଁ ସେ ସ୍ଥାନେଦେଖିଲି
ସେହି ପାରିବେ ରାତ୍ରକେ ବ୍ରହ୍ମାଣ୍ଡକୁ ବୁଲି ।
ସୁରପତି ବୋଇଲେ ତୁ ଯାଅ ହୋଇବେଗ
ଆମ୍ଭେ ହୋଇଲୁ ବୋଲିଣ ଅଶ୍ୱଟିଏ ମାଗ ।
ଚଳିଲା ସେ କ୍ଷେତ୍ରପାଳ ଇନ୍ଦ୍ରଙ୍କ ବଚନେ
ପ୍ରବେଶ ବୋଇଲା ଯାଇ ଦିନକର ସ୍ଥାନେ ।
ମସ୍ତକେ ଶାଢ଼ୀ ଦେଖିଣ ବୋଲେ ଅଂଶୁମାଳ
ଆକାଶ ଭୁବନେ ତୁ କି ହେବୁ କ୍ଷେତ୍ରପାଳ ।
ସ୍ୱାମୀ ମୋତେ ଆଜି ଶାଢ଼ୀ ଦେଲେକ ମଘବା
ଏକା ରାତ୍ରକେ ଯେମନ୍ତେ ସ୍ୱର୍ଗକୁ ବୁଲିବା ।
ଗଗନ ଭ୍ରମି ଛାଡ଼ିବ ଅଶ୍ୱ ଯେତେବେଳେ
ତକ୍ଷଣେ ଲାଗିବ ଆସି ଏ ଶୂନ୍ୟ ମଣ୍ଡଳେ ।
ଭକତଜନ ବତ୍ସଳ ଗଗନ ବିହାରୀ
କଉତୁକେ ଦିନପତି ବୋଇଲେ ଏପରି ।
ରାତ୍ରେ ଭ୍ରମି ଦିବସରେ ମୋତେ ଦେବୁ ଆଣି
ତେବେଦେଇପାରେତୋତେମୋହର ରହଣୀ
ଅଷ୍ଟଅଶ୍ୱରୁ ଅଧିକ କାହିଁ ମୋର ହୟେ
ଅତୁଲ୍ୟ ହୋଇଲେ ଅଶ୍ୱ ଆକାଶ ନ ଯାଏ ।
ପାର୍ବତୀ ସୁତ କାର୍ତ୍ତିକ ପୂଜି ଦିଗପାଳ
ଡାହାଣ ଅଶ୍ୱ ଫେଇଲେ ତହୁଁ କ୍ଷେତ୍ରପାଳ ।
ଦକ୍ଷେ ଭୂରିଶ୍ରବା ସୁତ ବୁଧ ସାଧଶ୍ରବା
ବାମେ ଚାରି ଅଶ୍ୱଛନ୍ତି ଆଦି ଭୂରିଶ୍ରବା ।
ଅଷ୍ଟଦଶ ମଧେ ଅଛି ମହାଅଶ୍ୱ ଭୂରି
ଲକ୍ଷେ ଯୂଣ ମାଡ଼ି ଚାଲେ କାରେ ଟାପୁଟାରି
ଭୂରିଶ୍ରବାକୁ ଘେନିଣ କ୍ଷେତ୍ରପାଳ ଗଲା
ଯାଆନ୍ତେ ଅରୁଣ ଥାଇ ସୂର୍ଯ୍ୟଙ୍କୁ କହିଲା
ଅରୁଣ ବୋଇଲା ସ୍ୱାମୀ ମନ୍ଦକର୍ମ କଲ
ବାମଦେବ କ୍ଷେତ୍ରପାଳ ଅଶ୍ୱ ବାନ୍ଧିଦେଲ ।

କ୍ଷେତ୍ରପାଳ ଆକାଶରେ ସେହୁ ଦଣ୍ଡୁଆସି
ରାତ୍ରେ ଭ୍ରମି ଦିନ ପୂର୍ବୁ ଅଶ୍ୱଦେବ ଆସି ।
ଅରୁଣ ବୋଇଲା ଦେବ ନୁହଇ ଏମନ୍ତ
ଆମ୍ଭର ତହିଁକି ଏବେ ପେଷିଦେବା ଦୂତ ।
ତାହା ଛାଡ଼ିଲେ ସେ ଆଣୁ ଆମ୍ଭ ଅଶ୍ୱଗୋଟି
ବଡ଼ାଇ ଦୁର୍ଲ୍ଲଭ କଥା ଦେଲେ ସେ ପାଳଟି
ଦିନକର ନାଥ ତହୁଁ ଚାହିଁ ଅରୁଣକୁ
ବାମଭୁଜୁ ଜାତ କଲେ ଏକ ପୁରୁଷକୁ ।
ସେ ପୁରୁଷକୁ ସ୍ଥାପିଲେ ଗଗନ ମଣ୍ଡଳ ।
ବୋଇଲେଗୋରେହାନାମେ ହୁଅକ୍ଷେତ୍ରପାଳ
ଆକାଶରୁ ବୁଲି ଯେବେ ଛାଡ଼ିବ ବାରଣ
ଧାତିକାରେ ସେହିକାଳେ ଅଶ୍ୱ ଘେନିଆଣ ।
ସୂର୍ଯ୍ୟ ବଚନେଗୋରେହା ତହୁଁ ବେଗେଗଲା
ବାମଦେବ କ୍ଷେତ୍ରପାଳ ସନ୍ନିଧେ ମିଳିଲା ।
ବୋଇଲା ପେଷିଲା ତୋରଠାକୁ ଦିନକର
ରାତ୍ରକ ବୁଲି ଅଶ୍ୱକୁ ଦେବ ହେ ମୋହର ।
କ୍ଷେତ୍ରପାଳ ବୋଇଲା ତୁ ଥିବୁ ମୋର କତି
ଅଶ୍ୱ ଛାଡ଼ିଲେ ତୁ ଘେନି ଆସିବୁ ତଡତି ।
ଭ୍ରମଇ ସେ ବାମଦେବ ନିଶା କଟୁଆଳ
ତୁଲେଗୋଡ଼ାଏ ଗୋରେହାନାମକ୍ଷେତ୍ରପାଳ
ରାତ୍ରକେ ବୁଲେ ତେତ୍ରିଶ କୋଟି ସଂଖ୍ୟାପୁର
ଗୋରେହା କ୍ଷେତ୍ରପାଳ ଯେ ଅଛି ତା ସଙ୍ଗର
ରଜନୀ ଦିବସ ଯେହୁ ଅଶ୍ୱ ଚଢ଼ି ଅଛି
ଆଦିତ୍ୟ ଅସ୍ତ ହୋଇବ ସପ୍ତଅଶ୍ୱ ଯୋଚି ।
ଗୋରେହାବୋଇଲାମୋତେଦେବୁଟିକିହୟେ
ରାତ୍ରଶେଷେ ଆଦିତ୍ୟ ଯେ ହୋଇବ ଉଦୟେ
କ୍ଷେତ୍ରପାଳ ବୋଲଇ ମୁଁ ସୂର୍ଯ୍ୟଙ୍କୁ କହିଛି
ଏ କଥାରେ ଟିକେ ମାତ୍ର ମିଛ ନାହିଁ କିଛି ।
ଗୋରେହା ବୋଇଲା ତୁ ଏ କଥା କିମ୍ପାକହି
ଆଦିତ୍ୟ ଦେବତାଙ୍କୁ ଯେ ଭଣ୍ଡି ଲୋଡୁ ତୁହି
କୋପେ ଅସୀପତ୍ର ବାମଦେବ ଘେନି ହାଣି
ଗୋରେହାର ଦଶଭୁଜ ଛିଡ଼ିଲା ତକ୍ଷଣି ।
ବାମଦେବ କ୍ଷେତ୍ରପାଳ କୋପ ବିଘାତେଣ
ଗୋରେହାର ହସ୍ତ ଯହୁଁ କରିଦେଲେ ଛିନ୍ନ
ତହୁଁ ସୂର୍ଯ୍ୟଙ୍କ ନିକଟେ ହୋଇଲା ପ୍ରବେଶ
ଅରୁଣ ବୋଇଲା ଦେବ ଦେଖ ଏ ଭବିଷ୍ୟ ।
ହସ୍ତ କାଟିଲା ବୋଲିଣ ଗୋରେହା କହଇ
ହେ ଦେବ ମାଗନ୍ତେ ଅଶ୍ୱ ନ ଦେଲାକ ସେହି ।
ତୁମ୍ଭ ରାଣ ପଡ଼ି ଅଶ୍ୱ ଧରନ୍ତେ ମୁଁ ଯାଇ
ମୋର ହସ୍ତ କାଟିଦେଲା ଖଡ଼ଗକୁ ନେଇ ।
ଅଶ୍ୱକୁ ଦଣ୍ଡେ ନ ଛାଡ଼େ ରଜନୀ ଦିବସେ
ଭୋଜନ କରଇ ସେହୁ ବସି ଅଶ୍ୱପାଶେ ।
ଅଶ୍ୱ ନ ଛାଡ଼ିବା ହେତୁ ବିଳମ୍ୱ ହୋଇଲା
ଏବେ ଅଶ୍ୱକୁ ମୁରୁଛଗୋରେହା ବୋଇଲା ।
ବାମ ଡାହାଣରେ ହୋଇ ଚାରି ଚାରି ହୟେ
ଗମନ୍ତି କରନ୍ତି ତୁଲ ନୁହେଁ ଏକଠାଏ ।
ଶରତ ଶିଶିର ଗ୍ରୀଷ୍ମ ବସନ୍ତ ବରଷା
ହିମ ଷଡ଼ଋତୁ ଭେଦି ଗମେ ଷଡ଼ମାସା ।
ଉତ୍ତର ଦକ୍ଷିଣ ଭୂମି ବଡ଼ ଯେ ଅବଦ
ବାଛି ତେଣୁ ଦେଲେ ଅଶ୍ୱନାମ ମେଘନାଦ ।
ବିରଞ୍ଚି ନାରାୟଣ ସେ ଅତି ବଇରାଗେ
ଅତୁଳ ଭଙ୍ଗେ ରହିଲେ ଯିବେ କେଉଁବାଗେ
ରେ ପାମର କ୍ଷେତ୍ରପାଳ ତୁହି ବଡ଼ ମନ୍ଦ
ମୋତେ ତୁହି ପାରିଲୁରେ କୁଟକରି ଛନ୍ଦ ।
ଏ ମୋହର ଅଶ୍ୱ ତୁହି ନେଲୁ ଅବିଶ୍ୱାସୀ
ଯାଅ ତୁ ରେ କାମପାଳ ଅଶ୍ୱ ହୁଅ ଆସି ।
ବିରଞ୍ଚି ଶାପରେ ବାମଦେବ କ୍ଷେତ୍ରପାଳ
ଅଶ୍ୱ ହୋଇ ଜନ୍ମିଲା ସେ ଏ ମହୀମଣ୍ଡଳ ।
ଶାପ ପାଇ କ୍ଷେତ୍ରପାଳ କରିଣ ବିନୟ
ବୋଇଲେ ବିରଞ୍ଚି ରକ୍ଷାକର ଦୟାମୟ ।
ତାହା ଶୁଣି ଦୟାକଲେ କମଳ ଲୋଚନ
ଅଶ୍ୱ ବରଣ ଦୋଷେ ତୁ ହୋଇଲୁ ଦୂଷଣ ।
ଅଶ୍ୱ ହୋଇଥିବୁ ତୁହି ପଞ୍ଚବଟୀ ବନ
ଡାହକ ଦେଶର ରାଜା ଯିବେ ସେହି ସ୍ଥାନ
ସେ ତୋତେ ବନ୍ଧନ କରି ଯହୁଁ ଘେନିଯିବ
ବିରାଟ ରାଜାଙ୍କ ପାଶେ ନେଇ ସମର୍ପିବ ।
ତୁହି ପୁଣି ବିରାଟକୁ ହୋଇବୁ ଅସାଧ
ଅନେକ ଯତନେ ତୁହି ନ ହୋଇବୁ ସାଧ ।
ଆମ୍ଭର ସନ୍ତାନ ହେବ ଅଶ୍ୱିନୀ କୁମାର
ତାହାଙ୍କ ଅଂଶେ ନକୁଳ ହେବ ଅବତାର ।
ସେପାଣ୍ଡବେଗୋପ୍ୟହେବେମତ୍ସ୍ୟଦେଶେଯାଇ
ନକୁଳ ପରୀକ୍ଷା ତୋତେ କରିବାକୁ ନେଇ ।
ପରୀକ୍ଷା କରିବ ତୋତେ ମହାସଭା ତଳେ
ତୁହି ମୁକତ ହୋଇବୁ ତାକୁଦେଖି ତୋଳେ
ଶୁଣ ଚଇତନ ଏବେ କୁମାରଙ୍କ ଗୁଣ
ସେ ଅଶ୍ୱକୁ ହୋଇଥିଲା ଶାପକୁ ପାଇଣ ।
ପୂର୍ବେ ଆଦିତ୍ୟଙ୍କ ଠାରୁ ଶାପ ସେହୁ ପାଇ
ନବଯୁଗଯାଏ ଥିଲା ଅପେକ୍ଷାରେ ରହି ।

ନକୁଳକୁ ଦେଖି ସେହୁ ମୁକତି ପାଇଲା
ପୁଣି ଯାଇ ଆକଶରେ କ୍ଷେତ୍ରପାଳ ହେଲା ।
ଏଥୁ ଅନନ୍ତରେ ମତ୍ସ୍ୟ ଦେଶ ମହୀପାଳେ
କୋନ୍ତକୁ ବୋଇଲେ ଶାଢ଼ୀଦିଅ ଅଶ୍ୱପାଳେ
ଆହେକୋନ୍ତ ମୋର ରାଜ୍ୟେ ତୁମ୍ଭେ ଅଧିକାରୀ
ତୁମ୍ଭର ହୃଦୟ କଥା ଦିଅ କି ବିଚାରି ।
ନାରାୟଣଙ୍କୁ ସୁମରି ତହୁଁ ଧର୍ମରାୟେ
ଆପଣାର ହସ୍ତେ ଶାଢ଼ୀ ବାଜିପାଳେ ଦିଏ ।
କେଶବଙ୍କ ନାମ ଗୋଟି ଧରି ହୃଦଗତେ
ମଥାରେ ବାନ୍ଧିଣ ଶାଢ଼ୀ ହେଲା ପ୍ରଣିପତ୍ୟେ ।
ଅଶ୍ୱଶାଳେ ବିଜେକଲେ ମାଦ୍ରୀଦେବୀ ସୁତ
ଅଶ୍ୱମାନେ ଦେଖି ତାଙ୍କୁ ଛାଡ଼ିଲେ ଦୁଷ୍କୃତ ।
ହରଷ ବଦନ ହେଲେ ସର୍ବ ଅଶ୍ୱମାନେ
ସକଳ ରୋଗ ଛାଡ଼ିଲା ନକୁଳ ଦର୍ଶନେ ।
ପୂର୍ବର ଲିଖନ ଧାତା ଭିଆଇଣ ଥିଲା ।
ଯେଉଁ ବୃଦ୍ଧ ଅଶ୍ୱଗୋଟି କ୍ଲେଶୀ ହୋଇଥିଲା
ନକୁଳ ଦର୍ଶନେ ନବଯୁବାବସ୍ଥା ହେଲା
ଏବେ ସେହି ଅଶ୍ୱ ଚୋଖା ବାଜି ବୋଲାଇଲା
ଯେଉଁ ଅଶ୍ୱ କ୍ଷିତିଜ୍ୟୋର କରନ୍ତି ଯେ ରଣେ
ନକୁଳକୁ ଦେଖି ମୁକ୍ତି ଲଭନ୍ତି ସେମାନେ ।
ଅନେକ ପ୍ରକାର ବ୍ୟାଧି ଛାଡ଼ିଲା ଅଶ୍ୱକୁ
ଲୋକେ ପ୍ରଶଂସା କରିଲେ ସେ ଗ୍ରନ୍ଥକାରକୁ ।
ଜୟ ଜୟ ହେ କେଶବ ହରିଣ୍ୟ ବଇରୀ
କେଶବ ନାମ ଧରିଛ କେଶୀକୁ ସଂହାରି ।
ମଧୁରିପୁ ବୋଲାଇଛ ମଧୁକୁ ସଂହାରି ।
ନାରାୟଣ ବୋଲାଉଛି ନାରକାକୁ ମାରି ।
କଂସକୁ ସଂହାରି ନାମ ବହିଲ କଂସାରି
ରାବଣ ମାରିଲ ପ୍ରଭୁ ରାମରୂପ ଧରି ।
ଜଗତ ଧାରଣ କରି ନାମ ଜଗନ୍ନାଥ
ସେ ନାମ ଧଇଲେ ପାପୀ ହୁଅଇ ମୁକତ ।
ହେ ନରେ ନରକୁ ତର କରି ନାମାଭ୍ୟାସ
କହନ୍ତି ଯେ ଶୁଦ୍ରମୁନି ଶ୍ରୀ ଶାରଳା ଦାସ ।

—❁—

## ସହଦେବଙ୍କର ବିରାଟ ସଭାକୁ ଗମନ

ଏଥୁ ଅନନ୍ତରେ ଶୁଣ ମନୁ ନରପତି
ସହଦେବଙ୍କ ଚରିତ ଆଗମର ରୀତି ।
ମାଦ୍ରୀଦେବୀଙ୍କ ନନ୍ଦନ ମହାପୁଣ୍ୟବନ୍ତ
କର ଦେଖନ୍ତେ ଜାଣନ୍ତି ଭୂତ ଭବିଷ୍ୟତ ।
ଭୂତ ଭବିଷ୍ୟତ ବର୍ତ୍ତମାନ ଏହି ତିନି
ଯୁଗାନ୍ତର ବାରତାକୁ କଲେ ତନୁ ଘେନି ।
ପୃଥ୍ୱୀ ଆପ ତେଜ ବାୟୁ ଆବର ଆକଶ
ଏ ପଞ୍ଚଭୂତର କଥା ଯା ଠାରୁ ପ୍ରକାଶ ।
ଜାଣଇ ଏ ସ୍ୱର୍ଗ ମଞ୍ଚ ପାତାଳ ରହସ୍ୟ
ତାହାର ମହିମାକୁ ମୁଁ କରିବି ବା କିସ ।
କାଳ ଅବଳେ ଗୋପାଳ ଦେଶକୁ ସେ ଧରି
ପୃଥିବୀର ଭାରାଭର ଥିଲେ ସେ ଉଦ୍ଧାରି ।
ଧାତାଙ୍କ ନିମନ୍ତେ ସେହୁ ପଣ୍ଡୁରାଜା ସୁତେ
ଅଜ୍ଞାତବାସେ ରହନ୍ତି ଯାଇଣ ଗୁପତେ ।
ଜୁଡ଼ାକରି କେଶ ସେହୁ ବାନ୍ଧିଛନ୍ତି ବେଣୀ
ଲଲାଟରେ ପୁଞ୍ଜା ପଞ୍ଚରତ୍ନରେ ଖଞ୍ଜାଣୀ ।
କାନ୍ଧରେ କାଉଁରୀ ଭାର ହସ୍ତେ ଅଛି ବଂଶୀ
କରେ କେନ୍ଦୁବାଡ଼ି ଶୋଭା ପାଉଛି ପ୍ରକାଶି ।
ପାଦରେ କଠଉ ପୁଣି ମଥାରେ ଖୋଲରି
କଟୀଦେଶେ କଟୀସୁତା ଅଛି ପାଞ୍ଚସରି ।
ସୁସଞ୍ଚ ସୁନ୍ଦର ରୂପ ଗୋପାଳ ବେଶରେ
ପ୍ରବେଶ ହେଲେ ବିରାଟ ସିଂହ ଦୁଆରରେ ।
ସେହୁ ତ ଜାଣଇ ପୁଣି ସ୍ତମ୍ଭନ ମୋହନ
ଆବର ଜାଣଇ ନାନା ଧାତୁ ଦ୍ରବ୍ୟମାନ ।
ଆସ୍ଥାନେ ଯାଇ ରାଜାଙ୍କୁ ଜଣାଇଲା ଚାର
ହେ ଦେବ ଗୋପାଳ ଏକ ରହିଅଛି ଦ୍ୱାର ।
ଅନୁମାନରେ ଜାଣଇ ବହୁତ ସେ ବିଦ୍ୟା
ଅତ୍ୟନ୍ତ ସୁନ୍ଦର ସେହୁ ଦେଖିବାକୁ ଶୋଭା ।
ଏ ଅପୂର୍ବ କଥା ଶୁଣି ମତ୍ସ୍ୟ ନୃପରାଣ
ଦେଖିବା ହୋ ଗୋପାଳର କି ପୁଣ ଲକ୍ଷଣ
ରାଜାଙ୍କର ଆଜ୍ଞା ପାଇ ଛାଡ଼େ ଦ୍ୱାରପାଳ
ଭିତରପୁରେ ପ୍ରବେଶ ହୋଇଲେ ଗୋପାଳ
ଦେଖନ୍ତି ଆସ୍ଥାନେ ଥାଇ ସର୍ବଜନ ପୂରି
ଗୋପାଳଙ୍କୁ ଦେଖିଣ ସେ ପ୍ରଶଂସା ଯେକରି
ବିରାଟ ବୋଇଲେ କୋନ୍ତ ଛାଡ଼ ପଶାକାଠି
ନିରେକ୍ଷିଣ ଚାହିଁ ଏହି ଗୋପାଳ ମୁଖଟି ।
ଗୁଣ ଲକ୍ଷଣ ଷୋଡ଼ଶପଣ ଦେଖ ଯେତେ
ଗୋପାଳବୋଲିଣ ଯାକୁବୋଲିବାକେମନ୍ତେ
କାନ୍ଧେ ଭାର ଗମନ୍ତେ ତ ମତ୍ତଗଜ ଗତି
ସ୍ୱର୍ଗ ଛାଡ଼ି ଆସିଲେ କି ଅବା ପୁରହୁତି ।
କିବା ଅପରାଧି ନାଥ ପ୍ରତ୍ୟକ୍ଷ ଅଟଇ
କେଉଁ ପୁରୁଷ ମୋହର ଭୁବନେ ଆସଇ ।

କୋନ୍ତ ବୋଇଲେ ଶୁଣିମା ହେଉ ମହୀପାଳ
ଯୁବକତେ ଏ ସୁକୁମାର ଅଟଇ ଗୋପାଳ ।
କାଛଟି ବସନ ବିନା ନ ଜାଣନ୍ତି କିଛି
ଗୋରସ ଖାଆନ୍ତି ସର ଭୁଞ୍ଜନ୍ତି ସେ ବାଛି
ଲବଣୀ ଅଧାମ ପୁରି ସୁମଧୁର ଛେନା
ଉବୁରିଲେ ଏହାଙ୍କଠୁ ଅନ୍ୟ ଖାଏ ସିନା ।
ବୁଲାବନ୍ତି ଲଉଡ଼ି ସେ ମତ୍ତ ରଣରଙ୍ଗେ
ନାଚନ୍ତି ଖେମଟା ନାଟ କ୍ରୀଡ଼ରତ ସଙ୍ଗେ ।
ବଳେ ଅନ୍ତର୍ଗତେ ପୁଣି ଅଟେ ମହାସୁଖୀ
ରଜନୀହିଁ ବଞ୍ଚନ୍ତି ଗୋପଲ୍ଲୁ ଥାନ୍ତି ରଖି ।
ଖରା ବରଷା ହେମନ୍ତ ଆଦି ଷଡ଼ରିତୁ
ଅମୃତର ସର ଖେଳେ ଏହାଙ୍କର ହେତୁ ।
ଆହେ ବିରାଟ ବିଚାର ଗୋପାଳଙ୍କ କାୟେ
ଭୋଗ ଅର୍ଥେ ସେ କୁଳରେ ଜନ୍ମ ତାଙ୍କ ହୁଏ ।
ହୀନଜନ କଦାଚିତେ ନୁହନ୍ତି ଗୋପାଳେ
ନାରାୟଣ ବଢ଼ିଥିଲେ ଗୋପାଳଙ୍କ ମେଳେ ।
ତିନିଲୋକରେ ପ୍ରବଳ ଯହୁଁ ହେଲା କଂସ
ଗଉଡ଼ ଶ୍ରୀକୃଷ୍ଣ ଘେନି ତାକୁ କଲେ ଧ୍ୱଂସ ।
ଗୁଣ ସ୍ୱରୂପେ ଏହାଙ୍କ ଅଟଇ ବିଚାର
କେଉଁଗୁଣମାନ ଅବା ବୁଝିବା ଯାଙ୍କର ।
ରାଜା କୋନ୍ତଭଟ୍ଟ ଦୁହେଁ କରନ୍ତି ବିଚାର
ଏହିକାଳେ ପ୍ରବେଶିଲେ ମାଦ୍ରୀଙ୍କ କୁମର ।
ବିରାଟ କଟିକି ସେହୁ ଅଙ୍ଗ ଢ଼ାଳିଦେଇ
ପ୍ରଣିପାତ କଲେ କୋନ୍ତଭଟ୍ଟକୁ ଅନାଇ ।
କୋନ୍ତଭଟ୍ଟ ପଶାକାଠି ଗଡ଼ାଉଣ ଥିଲେ
ସହଦେବଙ୍କୁ ଦେଖିଣ ତଳରେ ଥୋଇଲେ ।
ସହଦେବଙ୍କ ଆଡ଼କୁ ବକ୍ରେ ଦେଇ ଦୃଷ୍ଟି
ସମସ୍ୟା ଭାଳନ୍ତି ମନେ ଆପଣେ ଯୁଧିଷ୍ଠି ।
ଭୂତ ଭବିଷ୍ୟତ କଥା ଜାଣୁ ତୁହି ବାବୁ
ଗତ ଆଗତ କଥାରେ ସର୍ବଜ୍ଞ ତୁ ସବୁ ।
ଯାହାନିକଟୁ ଶିଖିଲେ ବୁଦ୍ଧି ହୃଷୀକେଶ
ସବୁ ବୁଡ଼ାଇଲୁ ମୋରକର୍ମେ ହୋଇ ବଶ ।
ବିରାଟ ବୋଇଲେ ଉଠ ଉଠ ହେ ସତ୍ୱର
କେଉଁ ଦେଶରେ ତୁମର ଅଟଇ ହେ ଘର ।
ଉଠ ଉଠ ବାରମ୍ବାର ବୋଲେ ସେ ରାଜନ
ସେ କିମ୍ପା ଉଠିବ ଶୁଣି ରାଜାର ବଚନ ।
କୋନ୍ତବୋଇଲେଠାକୁରଆଜ୍ଞାହେଲା ମୋତେ
ଉଠ ଉଠ ଗୋପାଳ ହୋ ନମୁଅଛୁ କେତେ ।
କୋନ୍ତଙ୍କ ବଚନେ ତହୁଁ ସହଦେବ ଉଠି
ମସ୍ତକରେ ଦେଲା ନେଇ ଦୁଇ ହସ୍ତ ଗୋଟି ।

ବିରାଟ ବୋଇଲେ ତୁମ୍ଭେ କେବଣ ବିଦେଶୀ
କେତେ କାର୍ଯ୍ୟରେ ଏଠାକୁ ଏବେ ଅଛଆସି
କହ ହୋ ଗୋପାଳ ତୁମ୍ଭ ନାମ ଅଟେ କିସ
ସହଦେବ ବୋଲେ ମୋର ପଶ୍ଚିମରେଦେଶ
ଉତ୍ତର ବାହିନୀ ନଦୀ ଗଙ୍ଗା ଯେ ଯମୁନା
ଇନ୍ଦ୍ରପ୍ରସ୍ଥ ଯମପ୍ରସ୍ଥ ବାରୁଣା ହସ୍ତିନା ।
ପଣ୍ଡୁନନ୍ଦନ ଅଭୟ ଅଟେ ସୋମବଂଶ
ଯୁଧିଷ୍ଠିର ମହାରାଜ ପଣ୍ଡୁଙ୍କର ଶିଷ୍ୟ ।
ଭୀମସେନ ନାମ ଅଟେ ତାଙ୍କ ଅନୁଜର
ତାଙ୍କ ଅନୁଜ ଅର୍ଜ୍ଜୁନ ମନେ ଘେନାକର ।
ତାଙ୍କ ସାନୁଜ ଲକ୍ଷ୍ମଣ ଅଟେ ମହାକ୍ଷତ୍ରୀ
ତାହାଙ୍କର ଅନୁଜ ଯେ ସହଦେବ ମନ୍ତ୍ରୀ ।
ସହଦେବଠାରେ ଦୟା କରିଲେ ଅଚ୍ୟୁତ
ଗୋରୁପଲଙ୍କ ପାଖରେ ଥିଲେ ଜଗନ୍ନାଥ ।
ଅସଂଖ୍ୟ ଗୋଧନ ତାଙ୍କ କଳନା ନ ଯାଇ
ମୁହିଁ ସେ ପଲ ରକ୍ଷକ ଗୋପାଳ ଅଟଇ ।
ତନ୍ତୀପାଳ ଗୋପାଳ ଯେ ଅଟେ ନାମମୋର
ଗୋବିନ୍ଦ ରାଜ୍ୟପାଳ ମୁଁ ଜାଣ ନୃପବର ।
ବନେ ଶୁଣିଲି ଏ ସ୍ଥାନେ ବିଜୟେ ଯୁଧିଷ୍ଠି
ଶବଦ ଶୁଣି ଆସିଲି ପାରିବି ବା ଭେଟି ।
ବହୁତ ଗୋଧନ ଅଛି ରାଜା ତୁମ୍ଭପୁରେ
ଗୋରୁ ପ୍ରତିପାଳ ଜାଣେ ଅନେକ ପ୍ରକାରେ
ଯେବଣ ଗୋରୁପଲକୁ ମୁହିଁକରେ ରକ୍ଷା
ଅତୁଟ ହୋଇ ବଢ଼ନ୍ତି ନାହିଁ ତାର ସଂଖ୍ୟା
ଖଳା ରୋଗ ଖୁରା ରୋଗ ଶାବେଳୀ ମଣ୍ଡୁକୀ
ମଉନ ଗଳାରେ ଶୋଥ ଧୋକଟ ଖିରାଣ୍ଡି
ଫେରୁ ତାଳୁକା ଛିନାଳୀ ପାତାଳିକ ଖୋରା
ବଙ୍କୋଲା ଛୋଟିଳଉର୍ଦ୍ଧ୍ୱ ବାହୁପର ଜାରା ।
ଅନ୍ତଭଜା କରପଟ ପୁଣି ମଉଳିଆ
ଆବୁରା ପାଦୁରା କଳିକଣ ଅଜାଶ୍ୱଆ ।
ଆଣ୍ଠ କଳଟ ପୀଳୁଆ ପୁଣି ମହୀରଣା
ରୋହିବୁଦା ଭିତରେଣା କାନ୍ତ ବାରିଗଣା ।
ତାଟେକି ପାଟେକ ଅଘଷ ଅରକଟିଆ
ସିଂହଯୋଖା ମୁଷାଯୋଖା ଯେ ବାତଗଣିଆ
ଏହିରୂପେ ଗୋଧନଙ୍କୁ ଅଛି ଶତ ବ୍ୟାଧି
ମୋର ଆଜ୍ଞାରେ ସେମାନେ ନପାରନ୍ତି ଭେଦି
ଦୁଷ୍ଟ ଗାଈମାନେ କରଗତ ହୋନ୍ତି ଗୋଷ୍ଠେ
ଛନ୍ଦେ ଅଛନ୍ଦେ ସେମାନେ ଦୁହଁନ୍ତି ସନ୍ତୁଷ୍ଟେ
କାମୁଡ଼ା ବିନ୍ଧଣା ଆଦି ସର୍ବେ ହୋନ୍ତି ସିଦ୍ଧି
ବାଞ୍ଝା ମଡ଼ିଛି ନୁହନ୍ତି ମୁଁ ଦେଲେ ଔଷଧି ।

ଯେବଣ ଗାଈ ବିନ୍ଧଣା ହୁଏ ଦୁଷ୍ଟପଣେ
ସେମାନେ ଶାନ୍ତି ଲଭନ୍ତି ମୋରବିଦ୍ୟାଗୁଣେ
ଶୁଣିଣ ବିରାଟ ବୋଲେ ହେ ଗୋପାଳ ରହ
ପାଇଲି ପରୀକ୍ଷା ମୁହିଁ ଆଉ କଥା କହ ।
ତୁ ବୋଇଲୁ ଅସାଧକୁ ସାଧ ମୁଁ କରଇ
ଏକ୍ଷଣି ଜାଣିବି ତୋତେ ଏକ କଥା କହି ।
ବିରାଟ ବୋଲେ କୋନ୍ତ ପୃଥୁନା ଯେ ଗାଈ
ଅଣ୍ଡିରାବସ୍ତା ଲକ୍ଷେକ ବେନିଲକ୍ଷ ମାଈ ।
ଏତେ ଘେନି ବୁଲୁଥିଲା ମୋହର ଏଗୋଷ୍ଠେ
ରହିଲା ଅରଣ୍ୟ ବିନ୍ଧ୍ୟ ପର୍ବତ ନିକଟେ ।
ସାତ ଅକ୍ଷୌହଣୀ ବଳ ଘେନି ମୁହିଁ ଗଲି
ଥାଟ ବଢ଼ାଇଲି ତାକୁ ଆଣିବି ମୁଁ ବୋଲି ।
ବହୁତ ସୈନ୍ୟ ଗୋଧନ ସଙ୍ଗେ ଯୁଦ୍ଧକଲେ
ଭୟେ ରହି ନ ପାରି ମୋସୈନ୍ୟଭାଜିଗଲେ ।
ଗୋଡ଼ାଇ ବହୁ ପ୍ରୟାଗ କଲେ ସେହି ମତେ
ଥାଟ ଭଗ୍ନ ହେଲା ନବଯୋଜନ ପର୍ଯ୍ୟନ୍ତେ ।
ସାତ କ୍ଷୌଣୀ ବଳ ଘେନି ସଙ୍ଗେ ଯାଇଥିଲି
ଦୁଇକ୍ଷୌଣୀ ମଲେ ପାଞ୍ଚକ୍ଷଉଣୀ ଆଣିଲି ।
ଆହୁରି ମୁହିଁ କେବଳ ମୁରୁଛି ନ ପାରି
ପୁଣିହିଁ କହିଲି ସୈନ୍ୟ ବିନ୍ଧ୍ୟମାଳ ଗିରି ।
ସେଦିନ ବହୁତ ସୈନ୍ୟ ମୋର ନାଶଗଲେ
ସେ ପୃଥୁନା ଗାଈ ମୋର ଆୟତନହେଲେ
ଯେବେ ସେ ପୃଥୁନା ଗାଈ ସାଧ କରିଦେବୁ
ତେବେ ମତ୍ସ୍ୟ ମଘଦେଶେ ପ୍ରଭୁ ବୋଲାଇବୁ
ହେ କାନ୍ତେ ମୋ ଗାଈପଲ ଯେଉଁଦିନୁଗଲା
ରାଜ୍ୟ ହତଶିରୀ ହୋଇ ଅଶୋଭା ଦିଶିଲା ।
ବାବୁ ତୋ ବଚନେ ଯେବେ ଗୋଧନମୁଁପାନ୍ତି
ତନ୍ତ୍ରପାଳ ନାମ ତୋର ସର୍ବଦା ଘୋଷନ୍ତି
ସହଦେବ ବୋଲେ ରାଜା ପାଇଲି କାରଣ
ଚାଲ ପୃଥୁନା ଦେଖାଅ ଅଛି କେଉଁସ୍ଥାନ ।
ସହଦେବଙ୍କ ପ୍ରତିଜ୍ଞା ଦେଖି ରାୟେ କୋନ୍ତ
ବିଚାରିଲେ ପ୍ରତିଜ୍ଞା ଏ କରୁଛି ବହୁତ ।
ଦୁଇ ଲକ୍ଷ୍ୟ ସୈନ୍ୟ ମାରିଅଛନ୍ତି ଗୋ ମାତ
ଏହାରି ବଚନେ କିମ୍ପା ଆସିବେ ସେ ଏଥ ।
ଏ ପୁଣ ସେ ଗାଈ ଯଦି ନଆସେୟାବୋଲେ
ସହଦେବ ନାଶଯିବ ରାଜା କୋପକଲେ ।
ଏହା ଚିନ୍ତି ସୁମରିଲେ ଦେବ ଦାମୋଦର
ସହଦେବକୁ କଷଣୁ ପ୍ରଭୁ ପାରିକର ।
ବିରାଟ ବୋଲେ ତନ୍ତ୍ରୀପାଳ ହେ ଗୋପାଳ
ଯିବା ଯେବେ ବିନ୍ଧ୍ୟପାଳ ସାଜିବା କି ବଳ ।

ସହଦେବ ବୋଲେ ସେହୁ ପ୍ରମୋଦର ଭୂମି
ତୁମ୍ଭର ତହିଁକି ଯିବା ଅନୁଚିତ ସ୍ୱାମୀ ।
ଏ ସମ୍ପଦ ଘେନି ସ୍ୱାମୀ ଥିବ ଏହି ଠାବେ
ଏହିକ୍ଷଣି ପଲ ଘେନି ପୃଥୁନା ଆସିବେ ।
ଦୁଃସହ ପ୍ରତିଜ୍ଞା ଦେଖି ହସନ୍ତି ନୃପତି
ଶୁଣିନାହିଁ କର୍ଣ୍ଣ ମୋର ଏସନ ଭାରତୀ ।
ଦେଖିବା ଦେଖିବା ଏହି ଗୋପାଳ ମହିମା
ମୁହିଁଟି ଜାଣିଲି ଏହୁ ପ୍ରତ୍ୟକ୍ଷରେ ବ୍ରହ୍ମା ।
ଶୁଣି ସହଦେବ କଲେ ଉତ୍ତରକୁ ଦୃଷ୍ଟି
ବାମ ପାଦର ଉତ୍ତରେ ବକ୍ଷ ପାଦଗଣ୍ଠି ।
ହୃଦଗତେ ସୁମରିଣ ଦେବ ଦଇତ୍ୟାରି
ଚୁମ୍ଭିଲା ବଂଶୀ ପୃଥୁନା ନାମ ଧରିକରି ।
ବିରାଟକୁ ବିନ୍ଧ୍ୟମାଳ ବିଶାଶତେ ଯୁଣ
ବଂଶୀ ଶବଦ ଶୁଭିଲା ପୃଥୁନା ଶ୍ରବଣ ।
ଧ୍ୟାନରେ ଜାଣିଲେ ସେହୁ ନନ୍ଦିନୀ ନାତୁଣୀ
ସହଦେବ ଚିନ୍ତେ ମୋତେ ମନ୍ତ୍ରୀ ଚୂଡ଼ାମଣି
ପୃଥୁନା ପ୍ରଶଂସା କଲେ ସାଧୁରେ ବିରାଟ
ବଂଶ ସାଧୁ ତୁହି ସାଧୁ ସାଧୁ ତୋର ରାଷ୍ଟ୍ର
ପୂର୍ବଜନ୍ମେ କରିଥିଲ ଜପ ତୁ କଠୋରେ
ତେଣୁ ତୋ ରାଜ୍ୟକୁ ଗଲେ ପଣ୍ଡୁଙ୍କକୁମରେ
ଲକ୍ଷେ ବତ୍ସାଙ୍କୁ ହକାରି କହିଲେ ଯେ ମାଏ
ଆସ ଆରେ ଆମ୍ଭେ ଯିବା ମତ୍ସ୍ୟଦେଶଯାଏ ।
ବିରାଟ ରାଜାର ଏବେ ଦୂରିତ ତୁଟିଲା
ଗୋପାଳ ବେଶରେ ସହଦେବ ବିଜେକଲା ।
ଏ ପ୍ରକାରେ କହନ୍ତେ ସେ ସର୍ବ ବତ୍ସାମାନେ
ହମ୍ବାରବ କରିଣ ସେ ଗମିଲେ ଅରଣ୍ୟେ ।
ଓହ୍ଲାଇଲେ ମାହେଶ୍ୱରୀ ବିନ୍ଧ୍ୟର ଶିଖରୁ
ଉଡ଼ିଲା ଗଗନେ ଧୂଳି ବତ୍ସାଙ୍କ ଖୁରାରୁ ।
କହୁଁ କହୁଁ ଗଗନରେ ଉଡ଼େ ପାଦଧୂଳି
ଆକାଶେ ଅଦୃଶ୍ୟ ହେଲେ ପ୍ରଭୁ ଅଂଶୁମାଳୀ
ମୁଖରାବର ଶବଦ ଶୁଭେ ତିନିପୁର
ମଧ୍ୟଭୁବନେ କମ୍ପଇ ହୋଇ ଥରହର ।
ବିରାଟ ପୁଚ୍ଛନ୍ତି ପୃଥ୍ୱୀ ଉଲ୍କାପାତ ଦେଖି
ନିର୍ଘାତ ପଡ଼ିଲା କିବା ଗଗନ ଉପେକ୍ଷି ।
ଉତ୍ତର ଦିଗର ଚାର କହଇ ଆସ୍ଥାନେ
ହେ ସ୍ୱାମୀ ଗୋଧନ ପଲ ଆସୁଛନ୍ତି ବନେ ।
ଅଦ୍ଭୁତ ଗୋଧନପଲ କାହୁଁ ସେ ଗଗନ
ତନ୍ତ୍ରୀପାଳ ବୋଲେ ରାଜା ଆମ୍ଭରି ପୃଥୁନ ।
ଶୁଣି ଆଶ୍ଚର୍ଯ୍ୟ ହୋଇଲେ ମତ୍ସ୍ୟଦେଶ ନାଥ
ଆଶ୍ଚର୍ଯ୍ୟ ଚକିତ କିହୋ ହୋଇବ ଏମନ୍ତ ।

ଦୁଇ ଅକ୍ଷୌହିଣୀ ବଳ ନାଶ କଲା ଯେହୁ
ପୁଣି କିମ୍ପାଇଁ ଆସିବ ଏ ସ୍ଥାନକୁ ସେହୁ ।
ଆଶ୍ଚର୍ଯ୍ୟେ ଚାହାଁନ୍ତି ରାଜା ଦେଇ ଏକ ଦୃଷ୍ଟି
କହୁଁ କହୁଁ ନିକଟରେ ଗୋରୁପଲ ଭେଟି ।
ସ୍ୱରୂପ ଦେଖିଣ ସର୍ବେ ଉଚ୍ଚବାଚ ନୋହି
ଭୟପାଇ ସୈନ୍ୟମାନେ ଗଲେ ଯେ ପଳାଇ
ପୃଥୁନା ରୂପକୁ ଦେଖି ରାୟେ ଧୀରେ ଧୀରେ
ଭୟରେ ଉଠିଲେ ଯାଇଁ ଜଗତି ଉପରେ ।
ମେଢ଼ ମଣ୍ଡପ ଦେଉଳ ଆବର ଜଗତି
ବୃକ୍ଷ ପରେ ଚଢ଼ି ଜନେ ତାହାକୁ ଦେଖନ୍ତି ।
ଗୋଧନକୁ ଦେଖି ଯହୁଁ ଚଳିଲେ ବିରାଟ
ଏକା ଆସ୍ଥାନେ ରହିଲେ ତହୁଁ କୋନ୍ତଭଟ୍ଟ ।
ବିରାଟ ବୋଇଲେ କୋନ୍ତଭଟ୍ଟ ଗଲେ କାହିଁ
ବଡ଼ଇ ପ୍ରମାଦଯୁକ୍ତ ଅଟେ ଏହି ଗାଈ ।
ଏହିମତେ ପର୍ବତରୁ ଅଇଲା ଓହ୍ଲାଇ
ଦୁଇକ୍ଷୌଣୀ ବଳମୋର ମାଇଲା ଗୋଡ଼ାଇ ।
ସର୍ବଜନେ ଚାହିଁଛନ୍ତି ଏକଦୃଷ୍ଟି ହୋଇ
ସହଦେବଙ୍କୁ ବେଢ଼ିଲେ ଶତେପୁର ଗାଈ ।
ଦେଖିଣ ଚକିତ ହେଲେ ମତ୍ସ୍ୟ ନୃପମଣି
ସେ ସ୍ଥାନେ ଶବଦହେଲା ହାହାକାର ବାଣୀ ।
ହାହା ତନ୍ତ୍ରୀପାଳ ବୋଲି ବିରାଟ ବୋଇଲା
ମୋହ ଉପକାର ପାଇଁ ଗୋପାଳଟି ମଲା ।
ସହଦେବ ପ୍ରଣିପାତ ପୃଥୁନାଙ୍କ ପାଦେ
ମାଗୋ ବଞ୍ଚିବି ଦୁର୍ଗତି ତୋହର ପ୍ରସାଦେ ।
ମା ଶୁଭଯୋଗେ ଗୋପ୍ୟ ହୋଇଲେ ଠାକୁର
ମୋହର ବେଳକୁ ଇଚ୍ଛା କଲା ମତ୍ସ୍ୟଶ୍ୱର ।
ମୁହିଁତ ଆନକୁ ସେବା ଆଉ ନ କରିବି
ତୋହର ଚରଣେ ମାଗୋ ସଦା ସେବୁଥିବି ।
ଏଡ଼େ କୋପକରି ମାଗୋ ଅଇଲୁ ରାଜ୍ୟକୁ
ବିରାଟ ଭୟେ ଗମିଲା ଜଗତି ଉର୍ଦ୍ଧ୍ୱକୁ ।
ପୃଥୁନା ବୋଇଲେ ରାଜା ଦୂର ନୋହିଗଲେ
ମୁହଁ କଥା କହିବଇଁ କିପରି ତୋ ତୁଲେ ।
ଶୁଣି ସହଦେବ ନମେ ପୃଥୁନା ପାଦରେ
ଆଦ୍ୟ ସିଦ୍ଧି ଦେବୀ ରଖ ତୁହି ପ୍ରଳୟରେ ।
ମାଗୋ ଆଦି କପାଳରେ ଚରାଚର କ୍ଷୟେ
ତୋହର କ୍ଷୀର ପ୍ରଦାନେ ପୃଥ୍ୱୀ ରକ୍ଷାପାଏ
କପିଳାର ନନ୍ଦିନୀ ସେ ବୌଳନାମେ ଗାଈ
ବିମଳା ନାମେ ତାଠାରୁ ବତ୍ସା ଉପୁଜଇ ।
ବିମଳା ନନ୍ଦିନୀ ନାମ ଅଟଇ ଯେ ରୋହୀ
ରୋହୀର ନନ୍ଦିନୀ ନାମ ସୁରଭୀ ଅଟଇ ।
ତା ତହୁଁ ଜାତ ନନ୍ଦିନୀ ମାଗୋ ବତ୍ସାଦେବୀ
ତାହାଙ୍କ ମହିମା ମୁହିଁ କି ଅବା ବର୍ଣ୍ଣିବି ।
ନନ୍ଦିନୀର ତହୁଁ ଜାତ ରମ୍ଭା ନାମେ ଗାଈ
ଏ ରମ୍ଭାର ତହୁଁ ଜାତ ହେଲେ ଶତେଗାଈ
ଏହାଙ୍କ ନନ୍ଦିନୀ ନାମ ଅଟେ ତ୍ରିଲୋଚନା
ତ୍ରିଲୋଚନାର ନନ୍ଦିନୀ ନାମ ଯେ ପୃଥୁନା ।
ପୃଥୁନା ପାଞ୍ଚସହସ୍ର ଜାତକଲେ ଗାଈ
ପୁଣି ପଞ୍ଚାଶ ସହସ୍ର ଅଣ୍ଡିରା ଜନ୍ମାଇ ।
ଏହି ପରକାରେ ଲକ୍ଷେ ବତ୍ସା ଉପୁଜାଏ
ଗୋଟିଏ ଚିରରକ୍ଷୀର ତାଙ୍କୁ ଦେଲେ ମାଏ
ଜଗତ ତାରିଣୀ ମାଗୋ ଭକତା ବତ୍ସଳା
କେଶରୀ ବର୍ଣ୍ଣ ପାଟଳି ଶ୍ୟାମବର୍ଣ୍ଣ କଳା ।
ଅଭୟା ଅପର୍ଣ୍ଣାମାଗୋ ଘେନ ମୋଅର୍ଦ୍ଧୋଳି
ଏକବର୍ଣ୍ଣେ ଆଗୋ ମାତା ନାନା ବର୍ଣ୍ଣେଝାଳି
ଜୟ ଜୟ ଅନାଦି ଗୋ ବିଜୟା ମାତଙ୍ଗୀ
ଲୟରୁ ପବନ ଜାତ ସ୍ଥିରୀ ମହାଦେବୀ ।
ଅଦ୍ଭୁତେ ଅପର୍ଣ୍ଣା ମାଗୋ ନୀଳଧର ଜ୍ୟୋତି
ତୋର ପଦ୍ମପାଦେ ମାଗୋ ମୋର ରହୁମତି
ପ୍ରଳୟ ତାରିଣୀ ମାଗୋ ସକଳ ରଖନ୍ତା
ମୋହର କଷ୍ଟ ଉଦ୍ଧରି ଫେଡ଼ ସବୁ ଚିନ୍ତା ।
ବୁଡ଼ିଲା ଅବନୀ ମାଗୋ ତୁହି ଉଦ୍ଧରିଲୁ
ଦେବ ଅସୁର ମାନବେ ପ୍ରାଣ ଦାନ ଦେଲୁ ।
ଆଦ୍ୟ ଅବତାରେ ମାଗୋ ତୁଲ୍ୟ ବରକନ୍ଧୁ
ପଞ୍ଚମୁଖୀ ଗଙ୍ଗା ଝରେ ତୁମ୍ଭର ଏ ପାଦୁଁ ।
ସ୍ୱର୍ଗ ମର୍ତ୍ତ୍ୟ ପାତାଳ ଗୋ ତ୍ରୟଖଣ୍ଡ ମହୀ
ସମସ୍ତ ଲୋକ ତୋହର କ୍ଷୀରମାନେ ଦେହୀ ।
ବତିଶ ଛନ୍ଦଣୀ ମାଗୋ ଦଶାଶଏ ମୁଦ୍ରା
ତୁହି ବଞ୍ଚାଇଲୁ କାମ ଆଉ କାଳନିଦ୍ରା ।
ଅକ୍ଷୟ ଅଭୟା ତୁ ଅଜେୟା ଅନୁଭବୀ
ମନୋବାଞ୍ଛା ସିଦ୍ଧକରୁ ତୁହି ମହାଦେବୀ ।
ସନ୍ତପ୍ତ ହୃଦୟ ମୋର ଅଟେ ଶୋକାନଳେ
ତୁହି ମାଗୋ ଛଡ଼ାଇବୁ ତାହା ଏକାବେଳେ
ସରିସମ ଦୀର୍ଘକାୟ ଅଟେ ମହାଧନି
ସକଳଜନ ତାରିଣୀ ଘେନ ମୋ ଦଇନୀ ।
ସେ ପୃଥୁନାକୁ ଭକତି କରି ହୃଦଗତେ
ଶାରଳାଦାସ କହନ୍ତି ସଜ୍ଜନଙ୍କ ହିତେ ।
ଏ ସ୍ତୁତି କରି ପୃଥୁନା ମାତା ପାଦତଳ
ଏ ରାଜ୍ୟକୁ ଅଣାଇଲେ ହୋଇ ତନ୍ତ୍ରୀପାଳ ।

ପୃଥୁନା ବୋଇଲେ ବାବୁ ହୋଇଲି ପ୍ରସନ୍ନ
ତୋର ମୋର ଏକବନେ କଟାଇବା ଦିନ ।
ଅନନ୍ତ ମହିମା ଅଟେ ବିରାଟର ପୁଣ୍ୟ
ତେଣୁକରି ପାଇବା ଯେ ଲକ୍ଷେକ ଗୋଧନ ।
ତହୁଁ ସହଦେବ କଲେ ବଇଁଶୀର ଧ୍ୱନି
ଆନନ୍ଦ ହୋଇଲେ ମତ୍ସ୍ୟଦେଶ ଜନ ଶୁଣି ।
ବିରାଟ ବୋଇଲା ସେହୁ ନୁହନ୍ତି ଗୋପାଳ
ଗୋପାଳ ରୂପେ ଆସିଛି କେଉଁ ଦିଗପାଳ ।
ସହଦେବ ବୋଲେ ଶୁଣଆହେ ରାୟେ ମତ୍ସ୍ୟ
ପୃଥୁନା ପ୍ରାପତ ଏବେ ହୋଇଲା ପ୍ରତ୍ୟକ୍ଷ ।
ବିରାଟ ଡାକି କହିଲେ ତୋ ଜୀବନ ସାଧୁ
ମୁଁ ମୋକ୍ଷ ପାଇଲି ତୁହି ମୋ ପରାଣ ବନ୍ଧୁ
ତୋର ପ୍ରସନ୍ନେ ଲଭିଲି ମୁହିଁ ଗାଇଗୋଟି
ମୁକତି କର ତୁ ମୋତେ ଦେଇ କ୍ଷୀରପୁଟି ।
ସାତ କ୍ଷୌଣୀ ବଳ ମୋର ସବୁଙ୍କରି ଆଶ
ତୁହି ବିଚକ୍ଷଣ ତୋତେ ଦେବଇଁ ମୁଁ କିସ ।
ସହଦେବ ଶୁଣି ବୋଲେ ଶୁଣ ଆଗୋମାଏ
ବିରାଟଙ୍କୁ ଦେବ କି ଗୋ ତୋ କ୍ଷୀର ପୁଟାଏ ।
ସୈନ୍ୟବଳ ମାରି ଯାକୁ କରିଛୁ ବିମୁଖ
ତୋହର କ୍ଷୀର ପାଇଲେ ପାସୋରିବେ ଦୁଃଖ
ପୃଥୁନା ବୋଇଲେ ମୋରଚିରେକ୍ଷୀରନେବୁ
ଚିରେକ କ୍ଷୀର ନେଇଣ ଆକାଶେ ଛାଡ଼ିବୁ ।
ଆରେକ ଚିର ଛାଡ଼ିବୁ ନେଇ ପାତାଳକୁ
ଚିରେ ସମର୍ପିବୁନେଇ ମୋ ଲକ୍ଷେ ବତ୍ସାଙ୍କୁ ।
ଏକା ଚିରକେ ପାଇବୁ ତୁହି ଯେତେ କ୍ଷୀର
ତୁ ଦୁହିଁଲେ ତୃପ୍ତହେବ ନିଶ୍ଚେ ମହେଶ୍ୱର ।
ତିନି ଚିର ଛାଡ଼ିଦେଇ ଦୁହଁ ଏକ ଚିର
ମୁହିଁ ସହଦେବ ତୁହି ରଖିବୁ କୁମର ।
ଚକ୍ରୀମାନେ ଦେଇଛନ୍ତି ଯେଉଁ କୁମ୍ଭମାନ
ଶୁଣି ସହଦେବ ମନ୍ତ୍ରୀ କରଇ ଦୋହନ ।
ଏହା ଦେଖିଣ ଆଶ୍ଚର୍ଯ୍ୟ ହେଲେ ମତ୍ସ୍ୟନାଥ
ଏକକୁ ଆରେକ ଚାହିଁ ହୋଇଲେ ଚକିତ ।
ଏକ ଚିରୁ ସହଦେବ ଦୁହେଁ ଲକ୍ଷେ ଭାର
ତାହା ଦେଖି ମତ୍ସ୍ୟରାଜା ହରଷ ଅପାର ।
ଶୁଣିବାକୁ ଅସଙ୍ଗତ କହିବା କେମନ୍ତେ
ବଡ଼ାଇ ଦୁସ୍ତର କଥା ଅଗୋଚର ମୋତେ ।
ନିନ୍ଦା ଯେହୁ କରେ ସେହୁ ହୁଏ ମହାଦୁଃଖୀ
ହୃଦୟେ ପ୍ରତ୍ୟୟ ଯେବେ ନୁହେଁ ଶାସ୍ତ୍ରଦେଖି
ଗାଈ କେଡ଼େ ହୋଇଲା ବା କୁମ୍ଭକେଡ଼େଥିଲା
ଏକା ଚିରକରୁ ଦୁଗ୍ଧ ଲକ୍ଷେଭାର ହେଲା ।

ମହା ପଣ୍ଡିତ ତୁ ଭାଗ୍ୟବନ୍ତ ଗୁଣଜ୍ଞାତା
ଏହି ଶାସ୍ତ୍ର କହିବାକୁ ତୁହି ଯେ ବକତା ।
ଏହା ସଂକ୍ଷେପିଣ ମୋତେ କହ ତପୋଧନ
ଫିଟିବ ମନରୁ ଭ୍ରାନ୍ତି ତୋ ମୁଖୁଁ ଶୁଣିଣ ।
କହନ୍ତି ଅଗସ୍ତି ମୁନି ସର୍ବ ଗୁଣଜ୍ଞାତା
ଶୁଣ ଆହେ ମହାରାଜା ଗାଇ ଆଦ୍ୟ କଥା ।
ବିରହ ଶବଦରୁ ଏ ହୋଇଲା ସମ୍ଭୁତା
ନିରଞ୍ଜନ ଦେହୀ ଏହୁ ଜାଣ ଆଦିମାତା ।
ସୃଷ୍ଟିର ଆଦ୍ୟରୁ ଏହି ହୋଇଲେ ସମ୍ଭୁତା
ଶୁଣି କହେ ମନୁ ନୃପୟାଙ୍କ ତତ୍ତ୍ୱକଥା ।
ସେହି ନିରଞ୍ଜନ ପୁଣ ଅଟନ୍ତି କପିଳା
ତାହାଙ୍କ ନନ୍ଦିନୀ ନାମ ଅଟଇ ବଉଳା ।
ବଉଳାଙ୍କ ନନ୍ଦିନୀ ତୈଳାଦ୍ରି ଲୋଚନା
ତାହାଙ୍କ ଅଂଶୁ ଉତ୍ପତ୍ତି ହୋଇଲା ପୃଥୁନା ।
ପୃଥୁନାଠାରୁ ସୁମତୀ ନାମେ ହେଲେ ଗାଇ
ଲବଣ ସମୁଦ୍ର ତରୀ ନିତ୍ୟ ଚରି ଯାଇ ।
ରତ୍ନଦ୍ୱୀପେ ଯାଇ ଚରେ ଅମୀୟ ଶେଖର
ଏମନ୍ତ ଚରନ୍ତେ ଦିନେ ହୋଇଲା ଉଚ୍ଛୁର ।
ଅନ୍ୟ ଦିନମାନଙ୍କରେ ହୁଏ ଆଣ୍ଟୁ ପାଣି
ସେଦିନ ଆସନ୍ତେ ପେଟେ ଲାଗିଲାକ ପୁଣି ।
ବତ୍ସା କ୍ଷୀରପାନ କରୁ ପେଟଜଳ ଭକ୍ଷି
ବୋଇଲା ମାତା ଏମନ୍ତେ ଜଳ କାହିଁ ରଖି ।
ମାଗୋ କ୍ଷାର କ୍ଷୀର ମଧ୍ୟେ ଅମୁଲ୍ୟ ଲବଣ
ଏ ସମୁଦ୍ର ହେଲା ଶତେ ନବଲକ୍ଷ ଯୁଣ ।
ତହିଁର ଶେଷରେ ଅଛି ଅମ୍ବୁନୀର ଜଳ
ଆଣ୍ଠୁଆଣି ପାଣି ମୋର ଲାଗେ ପେଟତଳ ।
ତୋହର ବିକଳେ ଧାଇଁ ଅଇଲି ମୁଁ ଖରେ
ତେଣୁକରି ପାଣି ମୋର ଲାଗିଲା ପେଟରେ ।
ଆରଦିନ ନନ୍ଦିନୀ ଯେ ରତ୍ନଦ୍ୱୀପେ ଗଲା
ତୃଷାରେ ଅମ୍ବୁ ସମୁଦ୍ର ନନ୍ଦିନୀ ପିଇଲା ।
କହୁଛନ୍ତି ବୈବସ୍ୱତ ଶୁଣ ଚଇତନ
ଅମ୍ବୁ ସମୁଦ୍ର ଅଟଇ ତିନିଶ ଯୋଜନ ।
ବସ୍ତାର ଅଟଇ ବିଂଶ ଶତ ଯୁଣ କାଠି
ଏଡ଼େ ସମୁଦ୍ରକୁ ପାନ କଲା ବତ୍ସାଗୋଟି ।
ତୁ ଯେ ପୁଚ୍ଛାକଲୁ ମୋତେ ବୈବସ୍ୱତ ମନୁ
ସେହି ସମୁଦ୍ର ଗଣ୍ଡୁଷ କଲେ ଯଥା ମନୁ ।
ଅମୃତାକ୍ଷ ସମୁଦ୍ରକୁ ଦେଖି ବୃନ୍ଦା ଅର୍କେ
ସୁରଭୀକୁ ଦେଖି ସ୍ତୁତି କଲେ ସୁରଲୋକେ ।
ମାଗୋ ତୋହର ନନ୍ଦିନୀ କମଳା ଅଟନ୍ତି
ଅମ୍ବୁ ସମୁଦ୍ର ନଥିଲେ କେହି ନ ବର୍ତ୍ତନ୍ତି ।

ପୃଥ୍ୱୀ ଫଳ ନ ଦିଅଇ ନୁହଇ ସଂଜାତ
ଏହା ଆଶ୍ରୟେ ବଞ୍ଚନ୍ତି ଏ ଭୁବନ ସାତ ।
ତାହାଙ୍କର ବଚନେ ସେ ଆଦି ମାହେଶ୍ୱରୀ
ସମୁଦ୍ର ମଧ୍ୟେ ମିଳିଲେ ତାଙ୍କ ଚିର ଚାରି ।
ମୁଷଳ ଧାରା ରେ ଦୁଗ୍ଧ ଝରେ ଦିବାରାତି
ସମସ୍ତ ବର୍ଷେ ସମୁଦ୍ର ପୂରିଲାକ ସ୍ଥିତି ।
ତୁ ଯେ ପୁଚ୍ଛାକଲୁ ରାୟେ ପ୍ରାଣ ତୋର ସାଧୁ
ଅଶେଷ ଶରୀର ବୋହି ହେଲା କ୍ଷୀର ସିନ୍ଧୁ ।
ବେନି ନୟନରୁ ଜାତ ନୀଳସିନ୍ଧୁ ବେନି
ଏହି ସମୁଦ୍ର ଘେରିଲା ସେମାନଙ୍କୁ ଘେନି ।
ମାଏ ଜନମ କରଇ ପ୍ୟନ୍ତିୟାଙ୍କ ବତ୍ସା
ହରନ୍ତି ଉଦ୍ଧରନ୍ତି ସେ ଯାହା ତାଙ୍କ ଇଚ୍ଛା
କପିଳା ଯାହାକୁ ବୋଲି ଏହାଙ୍କର ଆଇ
ଏକା ଶରୀରରୁ ସାତ ସମୁଦ୍ର ଜନ୍ମଇ ।
ଅନେକ ପ୍ରକାରେ ପୂଜାକଲା ମନୁଜ୍ଞାତା
ତବମୁଖୁ ମୋର ଭ୍ରାନ୍ତି ଫିଟୁ ବ୍ରହ୍ମବେତ୍ତା ।
ମହତବାକ୍ୟ କରିଲା ମତ୍ସ୍ୟଦ୍ୱୀପେଶ୍ୱର
ମାନବେ ପ୍ରାପତ ହେଲା ଦେବତାଙ୍କ କ୍ଷୀର ।
ଗୋରୁପଲ ଘେନି ମନ୍ତ୍ରୀ ଚଳଇ ଗୋଗୋଷ୍ଠେ
କୁଟୀର ପାତିଲା ମଣିଭଦ୍ରା ନଦୀତଟେ ।
ମନ୍ତ୍ରୀମଣି ସହଦେବ ଔଷଧ ପ୍ରସାଦେ
ଆରୋଗ୍ୟ ଗୋଧନକ୍ଷୀରପାଇଲେକହାଦେ ।
ପଦ୍ମେ ଭାର କ୍ଷୀର ଯହୁଁ ଉପୁଜିଣ ଥିଲା
ଶତେ ପଦ୍ମ ଭାର ସହଦେବ ଯେ ଦୁହିଁଲା ।
ବିରାଟ ରାଜ୍ୟ ସମସ୍ତ ହେଲା ଗୋରୁମୟ
ରୋଗ ପୀଡ଼ା ନାହିଁ ହେଲେ ଧଳାକଇଁ ପ୍ରାୟ ।
ଏକ ସହସ୍ର ଗାଭୀରେଗୋଗୋଷ୍ଠେକବୋଲି
ଶତ ପଲ୍ଲୀ ହେଲେ ଏକ ଲଉଡ଼ି ବୋଲାଇ
ଶତ ଲଉଡ଼ିରେ ମହାଖୁଡ଼େକ ଅଟଇ ।
ଶତ ମହାଖୁଡ଼ରେ ଯେ ହୁଏ ଯେତେ ଗାଈ
ଏତେକ ଉପରେ ସେହୁବୋଲାଇ ଯେଭୋଇ ।
ଏତେ ଯେ ମହା ଭୋଇର ଶୁକ୍ଳଗୋରୁ ଏତେ
କହ ଖଡ଼ିକାର ଏବେ ଗୋରୁ ହେଲାକେତେ ।
ଦୁହାଁଳ ତ ପାଞ୍ଚପଦ୍ମ ତିନି ଖର୍ବ ଗାଈ
ଅଣ୍ଡିରା ଅର୍ବୁଦେ ପାଞ୍ଚ ଅର୍ବୁଦେବ ମାଈ ।
କପିଳା ବଉଳା ନାନାବର୍ଣ୍ଣେ ଛନ୍ତି ଗାଈ
ନାନା ପରକାର ରଙ୍ଗେ ତହିଁ ଛନ୍ତି ରହି ।
ପିଙ୍ଗଳ ଆବର ପୁଣି କାହାର ନୟନ
ଲଲାଟ ପାଦରେ କାର ଅଛି ନାନା ଚିହ୍ନ ।

ନୟନେ ଉଜ୍ଜ୍ୱଳ କାର ଶିରେ ଚିତାପାଟି
ପାଦରେ ଖୁରା ପିଙ୍ଗଳ ଗାଈ ତହିଁ ଅଛି ।
ଏମନ୍ତ ରୂପରେ ପାଞ୍ଚଲକ୍ଷ ଷଣ୍ଢ ଅଛି ।
ଲକ୍ଷେ କୋଟିଏ ପିଙ୍ଗଳ ଶିରେଚାନ୍ଦ ଫାଟି
ଏଗାରଶତ ଯୋଜନ ମତ୍ସ୍ୟରାଜ୍ୟ ସୀମା
କୃଷିକର୍ମ ନାହିଁ ତହିଁ ଗୋଧନହିଁ ବ୍ରହ୍ମା ।
ସୁଖେ ଚରନ୍ତି ଓଗାଳ ବନ୍ଧା ତହିଁ ନାହିଁ
ସେ ମଣିଭଦ୍ରା ନଦୀରେ ନିତ୍ୟ ପାଣି ଖାଇ
ଅଗସ୍ତିଙ୍କୁ ପୁଚ୍ଛାକଲେ ମନୁ ମହାରାଜା
ଶସ୍ୟଜାତ ନୁହେଁ କେହ୍ନେ ବଞ୍ଚନ୍ତି ପରଜା ।
ଅଗସ୍ତି ବୋଲନ୍ତି ସେହୁ ମଘଦେଶ ଭୂମି
ତାହାକୁ କରନ୍ତି ଭୋଗ ବିରାଟର ସ୍ୱାମୀ ।
ସେ ମଘ ଦେଶର ରାଜା ଅଟେ ମହୀଦାସ
କୀଚକ ଭୟେ ପଳାଇ ଛାଡ଼ିଗଲା ଦେଶ ।
କାମ୍ୟକ ନାମେ ପର୍ବତ ଅଟେ ମଘଦେଶେ
କାମ୍ୟକ ନାମରେ ମେଘ ପ୍ରତିଦିନ ବର୍ଷେ ।
ଚାଳିଶ ଦିନରେ ତହିଁ ପାଚି ହସେ ଧାନ
ତହିଁରୁ ଯେ ଉତ୍ପତ୍ତି କୃଷି କର୍ମମାନ ।
କ୍ଷଣକରେ ଶତମାଣ ବରତନ ଜମି
ଏତେକ କଥା କରଇ ମତ୍ସ୍ୟେଶ୍ୱର ସ୍ୱାମୀ ।
ଏ ବିଧିରେ ବେନି ରାଜ୍ୟ ପାଳଇ ବିରାଟ
ନିଜ ସୀମା ଛାଡ଼ିଣ ନଯାଏ ପର ରାଷ୍ଟ୍ର ।
ଆପଣା ନରେନ୍ଦ୍ର ପରେ ବହୁତର ଦ୍ୱନ୍ଦୀ
କିନ୍ତୁ ତାର ସଙ୍ଗେ କେହି ନାହାନ୍ତି ବିବାଦୀ ।
ବିରାଟଙ୍କ ରାଜ୍ୟ ଅଟେ ଯୋଜନ ପଚାଶ
ଧବଳ ଅଟ୍ଟାଳି ପରେ ସୁନାର କଳଶ ।
କୁବେର ସମାନ ତହିଁ ଧନବନ୍ତ ପ୍ରଜା
ଜଣେ ଦୁଃଖୀ ନାହିଁ ତହିଁ ରାଜାଙ୍କର ସଞ୍ଜା
ଗୋରସ ବିକିଣ ତହୁଁ ଉପୁଜାନ୍ତି ଧନ
ସେ ଧନ ଭଣ୍ଡାରେ ନେଇ କରନ୍ତି ସ୍ଥାପନ
ଅମନାତ୍ୟ ପାତ୍ର ଯୋଦ୍ଧା ହେଉନ୍ତୁ ପଦାତି
ସମସ୍ତ ସାମନ୍ତମାନେ କୃଷିକର୍ମେ ବର୍ତ୍ତି ।
ମହା ପାତ୍ରେକ ପଚାଶ ମାତ୍ର ରାଜା ଦ୍ୟନ୍ତି
ପାତ୍ର ପଦାତିକ ଶତ ମାତ୍ର ଯେ ପାକନ୍ତି ।
ରଥୀକେ ଦୁଇଶ ଯୋଦ୍ଧା ପାଏ ମାତ୍ର ଶତ
ମହତ ଜନଙ୍କୁ ଶତ ସାମନ୍ତେ ଐବତ ।
ଏମନ୍ତ ସମ୍ପଦେ ମତ୍ସ୍ୟେ ମଘ ଦେଶ ପୁରୀ
ଦେବତା ସମାନ ତହିଁ ଛନ୍ତି ନରନାରୀ ।
ମହୀତଳରେ ବିଦିତ ମତ୍ସ୍ୟଦେଶ ନାହା
ଅଶୀଲକ୍ଷ ରଥୀ ଅଟେ ରାଜାଙ୍କର ସାହା ।

ତିନିଲକ୍ଷ ଅଛି ଚୋଖା ଚତୁରଙ୍ଗ ବାଜୀ
ଶୁଦ୍ଧ ଧବଳ ଅଟନ୍ତି ସର୍ବେ ବଡ଼ ତେଜି ।
ବହୁତ ପ୍ରକାରେ ବାଜୀ ଅଛି ତା ନିକଟ
ବହୁତ ଅଶ୍ୱ ବାଣିଜ୍ୟ କରଇ ବିରାଟ ।
ଅଥବା ଯେବଣ ରାଜା ହୋଇବ ଅପ୍ରୀତି
ଗୋରସ ଭୁଞ୍ଜାଇ ତାର ବୁଲାବନ୍ତି ମତି ।
ଧର୍ମ ବିବେକ ପଣ୍ଡିତ ଅଟେ ମହାରାଜା
ସୁଦେଷ୍ଣା ବୋଲିଣ ତାଙ୍କ ଅଟେ ଏକ ଭାର୍ଯ୍ୟା ।
ଶଙ୍ଖ ଶ୍ୱେତ ଉତ୍ତର ଯେ ତିନୋଟି କୁମର
ଉତ୍ତରା ନାମରେ କନ୍ୟା ଅଛି ଅନ୍ତଃପୁର ।
ଏହି ମହୀମଣ୍ଡଳରେ ଅଟେ ଭୂତଖଣ୍ଡ
ସାତ ଅକ୍ଷୌହିଣୀ ବଳ ଅଟେ ପରିଦଣ୍ଡ ।
ଏହିପରି ସମ୍ପଦରେ ବିରାଟ ବସଇ
ଅନ୍ୟ ରାଜ୍ୟ ଖଳ ତାର ରାଜ୍ୟେ ନ ପଶଇ
ଶୁଣ ଚଇତନ ମଘଦେଶର ମହିମା
ବିହିପରି ସଜାଇଛି ବିରାଟ ମହାତ୍ମା ।
ବିରାଟ ଦେଶରେ ଏକାଦଶୀ ଦିନେ ସର୍ବେ
ଅନ୍ନ ନ ଭୁଞ୍ଜନ୍ତି କେହି ସେସ୍ଥାନରେ କେବେ ।
ଅଥବା ଯେହୁ ଭୁଞ୍ଜାଇ ଲୁଚାଇ ଗୁପତେ
ରାଜ୍ୟୁ ତଡ଼ିଦ୍ୟନ୍ତି ପାଞ୍ଚବର୍ଷ ପରିଯନ୍ତେ ।
ପଣ୍ଡୁସୁତମାନେ ନିଜ ରାଜ୍ୟକୁ ଉପେକ୍ଷି
ବିରାଟ ରାଜ୍ୟେ ରହିଲେ ଧାର୍ମିକତା ଦେଖି ।
ସଭା ପଣ୍ଡାମାନେ ପଶା କ୍ରୀଡ଼ାର ବିଧାନେ
କୋନ୍ତଭଟ୍ଟ ନାମ ବହି ରହିଲେ ଗୋପନେ
ରାଜସଭାରେ କହନ୍ତି ଧର୍ମରାଜ ବସି
ପ୍ରଜା ଲୋକେ ଥାନ୍ତି ଯେଣୁ ତାଙ୍କ ପ୍ରତି ଖୁସି
କୋନ୍ତ ବୋଇଲେ ରାଜାକୁ ଶୁଣ ହେ ବିରାଟ
ଯଦ୍ୟପି ତୁମ ରାଜ୍ୟକୁ ଆସେ ପର ରାଷ୍ଟ୍ର ।
ନଗର ଭିତରେ ସେହୁ ନ ହେବ ପ୍ରବେଶ
ଅମନାତ୍ୟମାନେ ଯାଇ କରିବେ ସମ୍ଭାଷ ।
ଆମ୍ଭାନେ କହିଲେ କୋନ୍ତ ଯେଉଁପରି ବୁଦ୍ଧି
ପରରାଷ୍ଟ୍ରେ ଲୋକଙ୍କର ଦ୍ୱାର ଯେ ନିରୋଧି ।
ବଲ୍ଲଭ ନାମରେ ସେହୁ ସୂପକାର ନିଧି
ବୃକୋଦର ପାଞ୍ଚ ପାଞ୍ଚଥର ଦିଏ ରାନ୍ଧି ।
ଗଉରୀ ଶଉରୀ ନଳ ବିଧିରେ ରନ୍ଧନ
ସମସ୍ତଙ୍କୁ ସମ୍ପାଦଇ କୁନ୍ତୀଙ୍କ ନନ୍ଦନ ।
ଏକା ସୂପକାର ସେହୁ କରଇ ରନ୍ଧନ
ସୁଖେ ଭୋଜନ କରନ୍ତି ବିରାଟ ରାଜନ ।
ରାଜ ସ୍ତିରୀମାନଙ୍କୁ ସେ ବ୍ୟଞ୍ଜନ ଦିଅଇ
କୌତୁକେ ପାରିବା ଯେହୁ ଦେଉଥାନ୍ତିନେଇ ।
ହରଷେ ଦିଅଇ ଭୀମ ନାହିଁ ନ କରଇ
ଯେଉଁକାଳେ ଯେଉଁଜନ ଯେ କଥା ମାଗଇ
ସ୍ୱାମୀ ଅବା ଭିକ୍ଷାକାରୀଠାରେ ସମଦୃଷ୍ଟି
ତେଣୁକରି ସେ ରାଜ୍ୟରେ ସାଧୁ ଧ୍ୱନି ଉଠି
ଏହିମତେ ଷଡ଼ମାସ ତହିଁ ବହିଗଲା
ସାତମାସ ପରିଯନ୍ତେ ଗୋପନ ହୋଇଲା ।
ଜୟ ଜୟ ଜଗନ୍ନାଥ ଜଗତ ବନ୍ଦନ
ଭକ୍ତଜନ ମାନଙ୍କର ହୃଦୟ ଚନ୍ଦନ ।
ନୀଳକନ୍ଦରରେ ପ୍ରଭୁ ବୌଦ୍ଧ ଅବତାର
ଦର୍ଶନ ମାତ୍ରକେ ପାପୀ ହୁଅନ୍ତି ଉଦ୍ଧାର ।
ବଡ଼ ଦେଉଳରେ ଚକା ବଇଠିରେ ବସି
ଦହନ କରୁଛ ଭକ୍ତଜନ ଦୁଃଖରାଶି ।
ତୁମ୍ଭ ପାଦପଦ୍ମେ ମୋର ସଦା ଥାଉ ଆଶ
ମାଗଇ ଯେ ଶୂଦ୍ରମୁନି ଶାରଳାଙ୍କ ଦାଶ ।

—●—

## ଭୀମ, ବ୍ୟାଘ୍ର ଯୁଦ୍ଧ ଓ ନାନା ପ୍ରସଙ୍ଗ

ଏଥୁ ଅନନ୍ତରେ ପୁଚ୍ଛି ବିଲଙ୍କାଧିପତି
ଅନ୍ନ ପାଇଣ ପାବନୀ ହୋଇଲା ତୃପତି ।
ବୃକୋଦରଙ୍କ ମହିମା ତୁମ୍ଭେତ କହିଲ
ଏକେ ସଂଗ୍ରାମେ ଅଟଇ ସେହୁ ମହାମଲ୍ଲ ।
ପୁଷ୍ଟି ଭୋଜନେ ତାଙ୍କର ଶରଧା ବଳିଲା
ଏବେ ମହାସୁସ୍ଥରେ ସେ ଯୁଦ୍ଧ ତେଜ୍ୟାକଲା
କହନ୍ତି ଅଗସ୍ତି ମୁନି ସର୍ବଜ୍ଞ ପ୍ରକାର
ଶୁଣ ହୋ ମହାପଣ୍ଡିତ ମନୁ ନୃପବର ।
ଶୁଣ ଆହେ ଚଇତନ ବଦନ୍ତି ମାହାତ୍ମା
ବିନାଅସ୍ତ୍ରେ ବ୍ୟାଘ୍ର ଏକ ବଧକଲା ଭୀମା ।
ବେଣ୍ଟକାର ନାମେ ଥିଲା ଏକଇ ଶବର
ମନୋହର ଅରଣ୍ୟରେ ଅଟେ ତାର ଘର ।
ଦଣ୍ଡକା ଅରଣ୍ୟେ ସେହୁ ମୃଗୟାକୁ ଗଲା
ଗଜ ବ୍ୟାଘ୍ରଙ୍କ ସମର ସେଠାରେ ଦେଖିଲା
ପର୍ବତେ ଥାଇଣ ସେହୁ ବିନ୍ଧିଲାକ ଶର
ନାରାଚଘାତେ ପଳାଇ ଗଲା ବ୍ୟାଘ୍ରବର ।
ତହୁଁ ସେ ମତ୍ତହସ୍ତୀକୁ ବିନ୍ଧିଲା କିରାତ
ବିରାଟ ରାଜ୍ୟରେ ନେଇ ହେଲା ଉପଗତ ।
କିରାତ ସ୍ୱହସ୍ତେ ନେଇ ଶିଳାରେ ବାନ୍ଧିଲା
ତୋଷେ ବିରାଟ ତାହାକୁ ବହୁଧନ ଦେଲା ।
ସପ୍ତଦିନ ଯାଏ ତାକୁ ଆୟତ୍ତ କରିଣ
ତହୁଁ ଚାଲିଗଲା ତାକୁ ସାଧି ନ ପାରିଣ ।

ପୁଣି କିରାତ ଦଣ୍ଡକାଅରଣ୍ୟକୁ ଗଲା
ସେ ମତ୍ତ ବ୍ୟାଘ୍ରକୁ ତହୁଁ ବାନ୍ଧିଣ ଆଣିଲା ।
ମନ୍ଦର ପର୍ବତ ଜିଣି ସେ ବ୍ୟାଘ୍ରର କାୟ
ମସ୍ତକ ଦିଶଇ ତାର ଉଦେଗିରି ପ୍ରାୟ ।
ଆକାଶ କମ୍ପଇ ଯେବେ ବ୍ୟାଘ୍ରଦିଏ ରଡ଼ି
ଗର୍ଜ୍ଜନ ଘାତେ ପର୍ବତ ଚୂଡ଼ ଯାଇ ଝଡ଼ି ।
ଅଗସ୍ତିଙ୍କୁ ପୃଚ୍ଛାକଲେ ବୈବସ୍ୱତ ମନୁ
ସେ ମତ୍ତବ୍ୟାଘ୍ର ମାଇଲେ କେହ୍ନେ ବାତସୁନୁ ।
ଶବର ସେହୁ ବ୍ୟାଘ୍ରକୁ ବାନ୍ଧିଲା କେମନ୍ତ
ସାଧୁ ସାଧୁରେ ଶବର କେଡ଼େ ବଳବନ୍ତ ।
ସେହି ଶବର ମହିମା କହ ମୁନି ଏବେ
ଜରା ନାମେ ସେ ଶବର ଜନ୍ମିଥିଲା ପୂର୍ବେ
ଅଗସ୍ତି ବୋଇଲେ ଶୁଣ ଆହେ ବିଲଙ୍କାଧି
ପୂର୍ବେ ସେ ଶବର ଥିଲା ଅତି ମହାଯୋଧି ।
ଶୁଣ ଯୋଗେଶ୍ୱର ତ୍ରେତାଯୁଗର ଉକତ
ଶ୍ରୀରାମ ସୂର୍ଯ୍ୟବଂଶରେ ହୋଇଲେ ସମ୍ଭୁତ ।
କୈକେୟୀ ବଚନେ ରାମ ହେଲେ ବନବାସୀ
ଲକ୍ଷ୍ମଣ ସୀତା ସହିତେ ଅରଣ୍ୟରେ ପଶି ।
ଦଣ୍ଡକାରଣ୍ୟେ ରହିଲେ ଯାଇ ବନଗିରି
ସେ ଅରଣ୍ୟରୁ ରାବଣ ସୀତା ନେଲା ହରି ।
ସୀତା ଖୋଜିଗଲେ ରାମ ଦକ୍ଷିଣର ପଥ
କିଷ୍କିନ୍ଧ୍ୟା ରାଜ୍ୟରେ ଯାଇ ହେଲେ ଉପଗତ ।
ଋଷ୍ୟମୁକ ପର୍ବତରେ ସୁଗ୍ରୀବକୁ ଭେଟିଲେ
ତାର ସଙ୍ଗେ ମିତ୍ରହୋଇ ବାଳିକୁ ବଧିଲେ ।
ସୁଗ୍ରୀବରକୁ ନୃପତି କଲେ କିଷ୍କିନ୍ଧ୍ୟାରେ
ବିଭା କରାଇଲେ ବାଳୀ ଭାର୍ଯ୍ୟା ସହିତରେ ।
ସୁଗ୍ରୀବର ହରିବଳ କରେ ଆୟୋଜନ
ଦୂତ କରିଣ ପେଷିଲେ ବୀର ହନୁମାନ ।
ମାଲ୍ୟବନ୍ତରେ ରହିଲେ ପ୍ରଭୁ ରଘୁଶିକ୍ଷି
ହନୁଯାଇ ଠାବକଲେ ଲଙ୍କାଗଡ଼େ ପଶି ।
ମଧୁବନ ତୋଟା ଭାଙ୍ଗି ସୈନ୍ୟବଳ ମାରି
କୌତୁକ ଯୁଦ୍ଧ ତାଙ୍କର କେହୁ ବର୍ଣ୍ଣିପାରି ।
ଇନ୍ଦ୍ରଜିତ ବାନ୍ଧିନେଇ ପୋଡ଼ିଦେଲେ ଲଙ୍କା
ରାମଙ୍କୁ ବାର୍ତ୍ତା କହିଲେ ଆସି ପୁଣି ଏକା ।
ହନୁମନ୍ତଙ୍କ ପ୍ରତିଜ୍ଞା ବଳକୁ ଦେଖିଣ
ଭ୍ରାତା ତେଜି ବିଭୀଷଣ ପଶିଲା ଶରଣ ।
ମନ୍ତ୍ରୀ ଚୂଡ଼ାମଣିଙ୍କର ଥିଲା ଦିବ୍ୟ ବୁଦ୍ଧି
ସୁଗ୍ରୀ ସୈନ୍ୟବଳ ଘେନି ବାନ୍ଧିଲେ ବାରିଧି ।
ସେ ବନ୍ଧ ଦେଖି ରାବଣ ମନେ ଭୟକଲା
ଲଙ୍କାଗଡ଼ ଚାରିଦ୍ୱାର ଯତନେ ରୁନ୍ଧିଲା ।

କବାଟ ପଡ଼ନ୍ତେ ରାମ ଦେଖି କୋପକଲେ
କୋଦଣ୍ଡ ଟଙ୍କାର କରି ନାରାଚ ଧରିଲେ ।
ତାହା ଦେଖି କରଯୋଡ଼ି ବୋଲନ୍ତି ଲକ୍ଷ୍ମଣ
ଶୁଣିବାକ ଆଜ୍ଞା ହେଉ ସ୍ୱାମୀ ମୋ ବଚନ
ମୂଢ଼ ପଣରେ ରାବଣ ହରିଲା ଜାନକୀ
ଏବେ କବାଟ ପାଡ଼ିଲା ଆପଣଙ୍କୁ ଦେଖି ।
ଏବେ ରାବଣ ପାଶକୁ ଦୁତ ବରଗିବା
ସୀତା ଫେରାଇ ନ ଦେଲେ ସମର କରିବା
ଲକ୍ଷ୍ମଣ ବଚନ ଶୁଣି ଜାମ୍ବବଙ୍କୁ ଭଣି
ବୋଇଲେ ଆଜ୍ଞା ଚିଟାଉ ଲେଖେ ମନ୍ତ୍ରୀମଣି
ମହାମନ୍ତ୍ରୀ ଜାମ୍ବବାନ ବୋଲେ ସାଧୁବାଣୀ
ଦଶାନନକୁ ବିଚାରି ଲେଖା ଲେଖେ ଗୁଣି ।
ଲେଖା ମୁଦିଣ ସନ୍ତକ ଦେଲେ ରଘୁମଣି
ସୀତା ଫେରାଇ ନ ଦେଲେ ମରିବୁ ତୁ ପୁଣି
ଶ୍ରୀମୁଖ ଲେଖା ଘେନିଣ ପୁଚ୍ଛିଲେ ଏମନ୍ତେ
କିଏ ଲଙ୍କାଗଡ଼େ ଯିବ କହ ଆସି ମୋତେ ।
ଶ୍ରୀମୁଖ ଘେନିନ କେହୁ ଯିବ ଲଙ୍କାଗଡ଼
ତିନିଜଣ ଚାରିଜଣ ନାହିଁ ଆମ୍ଭ ଗାଡ଼ ।
ଏକା ହନୁ ଯାଇପାରେ ଲଙ୍କାର ଭିତର
ହନୁକୁ ଦେଖି ରାବଣ କରିବ ବିଚାର ।
ରାମଥାଟ ମଧ୍ୟେ ଏକା ବୀର ଅଟେ ସେହି
ତେଣୁକରି ପ୍ରତିଥର ଆସେ ଦ୍ୱାହି ଦ୍ୱାହି ।
ଏହାକୁ ମାଇଲେ ସବୁ ଯିବ ବଳ ଦର୍ପ
ବେଢ଼ି ପ୍ରମାଦ ଚିନ୍ତିଲେ ତହୁଁ କଉଣପ ।
ପୁଣି କେମନ୍ତେ ପେଶିବି ମୁହିଁ ହନୁମନ୍ତ
ସୁଗ୍ରୀବ ଯାଇ ପାରନ୍ତି ସେହୁ ମୋର ମିତ୍ର ।
ସ୍ୱାମୀ ଦୂତପଣେ ଗଲେ ସେ ଜାଣି ପାରିବ
ଯେଣୁ ଥାଟ ମଧ୍ୟେ ଏହି ଅଧିକାରୀ ସର୍ବ ।
ଅଙ୍ଗଦ ଯାଇ ପାରଇ ଏବେ ଲଙ୍କାପୁରୀ
ବିଚାରେ ଅଙ୍ଗଦର ମୁଁ ଅଟେ ପିତାବୈରୀ
ଯାଇ ନ ଆସିବି କିବା ପଶିବ ତା ସଙ୍ଗେ
ସକଳ କଥା କହିବି ଅବା ଶତ୍ରୁ ଆଗେ ।
କାହାକୁ ପେଷିବି ବୋଲି ହୃଦଗତେ ଭାଳି
ଦୂରେ ଥାଇଣ ଅଙ୍ଗଦ କରେ ନିଉଛାଳି ।
ମୋତେ ଶ୍ରୀମୁଖକୁ ଯେବେ ଦେବ ରଘୁପତି
ମୁହିଁ ଗଲେ ସର୍ବ କାର୍ଯ୍ୟ କରିବି ନିଷ୍ପତ୍ତି ।
ଶ୍ରୀରାମ ବୋଇଲେ ଆମ୍ଭେ ଜାଣିଲୁ ତୋହିୟା
ତାହାର ବଧ ନିମନ୍ତେ ଧରିବୁ ସେନେହା ।
ଅଙ୍ଗଦ ବୋଇଲେ ସ୍ୱାମୀ ନୁହଇ ଏମନ୍ତ
ରାବଣର ଉପକାର କରିଛି ବହୁତ ।

ପିତା ମୋର ତାକୁ ଧରି ଆଣିଥିଲା ପୂର୍ବେ
ସିଂହଦ୍ୱାରେ ବାନ୍ଧିଥିଲେ ତାହାକୁ ମୋଗର୍ବେ
ଯେଉଁଦିନ ଖାଇବାକୁ ଦିଆ ନୋହିଥିବ
ଦାସୀମାନଙ୍କ ଆଗରେ କରଇ ତାଣ୍ଡବ ।
ସେହି ସେ ଦିନ ଦାସୀଙ୍କ ଉଚ୍ଛିଷ୍ଟକୁ ଖାଇ
ଆପଣା ଶରୀର ରକ୍ଷା କରଇ ଗୋସାଇଁ ।
ସ୍ୱାମୀ ମୋତେଦିନେଆଜ୍ଞା ଦେଲେପିତାମୋର
ମୁଣ୍ଡ କାଟରେ ଅଙ୍ଗଦ ଏହି ଦଇତର ।
ପିତାଙ୍କ ବଚନେ ମୁହିଁ ଘେନି ଅସୀପତ୍ର
ଦେଖିଲି ଦାସୀଙ୍କ ଆଗେ କରୁଛି ସେ ନୃତ୍ୟ
ମୁଁ ବୋଇଲି ଶୁଣ ଆରେ ରାବଣ ଦଇତ
ଶିରଚ୍ଛେଦନ ହୋଇବ ଇଷ୍ଟଦେବ ଚିନ୍ତ ।
ନିସତ ହୋଇ ବୋଇଲା ମୋର କେହିନାହିଁ
ତ୍ରୈଲୋକ ଅଙ୍ଗଦ ମୋର ଇଷ୍ଟ ଯେ ଅଟଇ
ସ୍ୱାମୀ ଶରଣ ପଶନ୍ତେ ତାକୁ ଦୟାକଲି
ହାତ ପାଦରକୁ ଫେଇ ତାକୁ ଛାଡ଼ିଦେଲି ।
ଏହି ଉପକାରେ ତୋର କରିଅଛି ପୂର୍ବେ
ମୋତେ ଦେଖିଲେ ସେଭୟ କରିବହେଏବେ ।
ନିଷ୍କଳଙ୍କ ବଚନରେ ତୃପ୍ତ ରଘୁନାଥ
ଶ୍ରୀମୁଖ ଦେଲେ ନେଇଣ ଅଙ୍ଗଦର ହାତ ।
ଶ୍ରୀମୁଖ ଘେନିଣ ବୀର ବେଗେ ଯାଇ ଲଙ୍କା
ସେତୁବନ୍ଧେ ବିଭୀଷଣ ସଙ୍ଗେହେଲା ଦେଖା ।
ଲଙ୍କାଛିଦ୍ର କଥାମାନ କହେ ବିଭୀଷଣ
ସିଂହ ଭାଙ୍ଗି ପଶିବୁ ତୁ ଉତ୍ତର ଦ୍ୱାରେଣ ।
କୁମ୍ଭକର୍ଣ୍ଣେ ଶୁଆଇବୁ ଉତ୍ତର ଭାଗେଣ
ମନ୍ଦୋଦରୀ କେଶ ଧରି ଦେବୁ ଅପମାନ ।
ବ୍ରାହ୍ମଣ୍ୟ ଅର୍ଜିଲା ବେଦ କରିବୁ ଗାୟନ
ନିଃଶଙ୍କ ହୋଇଣ ତହୁଁ କରିବୁ ଗମନ ।
ରାବଣର ବସିବାର ଯେ ଜଗତୀ ଚାଳ
ତାହାକୁ ଘେନିଆସିବୁ ବାଳିର ଦୁଲାଳ ।
ଏତେକ ଲଙ୍କାରେ ଯେବେ କରୁ ଯୁବରାଜା
ଶ୍ରୀରାମ ସୈନ୍ୟ କଟକେ ହୋଇବୁ ତୁ ପୂଜା ।
ଏମନ୍ତ ମନ୍ତ୍ରଣା ଶୁଣି ଅଙ୍ଗଦ ଚଳିଲା
ପ୍ରଥମ ଦ୍ୱାର ସକଳ ସିଂହକୁ ଭାଙ୍ଗିଲା
ଭିତର ଜଗତୀ ଦ୍ୱାର କବାଟକୁ ଭାଞ୍ଜି
ଗଡ଼ରେ ଅଙ୍ଗଦ ବୀର ପଶେ ଗଳଗାଜି ।
କୁମ୍ଭକର୍ଣ୍ଣର ଗୃହରେ ପଶି ଧାତିକାରେ
ଶୁଆଇଲା ଶିର କରି ଉତ୍ତର ଦିଗରେ ।
ଅଙ୍ଗଦର ରୀତି ଶୁଣି ଅସୁରଙ୍କ ନାରୀ
ଚାରିଆଡ଼କୁ ଅନାନ୍ତି ଗୃହରୁ ବାହାରି ।

ଅନ୍ତଃପୁରୁ ବାହାରିଲେ ମନ୍ଦୋଦରୀ ରାଣୀ
ବୀର ଅଙ୍ଗଦ ଆକର୍ଷେ ଯାଇ ତାର ବେଣୀ
ନାରଦ ବୋଇଲେ ଛାଡ଼ ଛାଡ଼ ଏହା କେଶ
ଏ ତୋହର ମାତା ଯାକୁ ନ କରତୁ ରୋଷ
ନାରଦ କହିଲେ ହେତୁ କରି ପୂର୍ବକଥା
ମନ୍ଦୋଦରୀ ରାଣୀଙ୍କର ପୂର୍ବର ବ୍ୟବସ୍ଥା ।
ଶୁଣିଣ ଅଙ୍ଗଦ ତହୁଁ ଛାଡ଼ିଦେଲେ କେଶ
ଡ଼େଇଁ ରାବଣ ଜଗତୀ ଉପରେ ପ୍ରବେଶ ।
ବହୁ ଉଚ୍ଚବାଚ ହେଲେ ରାବଣ ଅଙ୍ଗଦ
ବାମହସ୍ତେ ଲେଖା ଘେନି ଫିଟାଇଲା ମୁଦ
ଶ୍ରୀମୁଖ ପଢ଼ିଣ ତହୁଁ ବୋଇଲା ଦୁର୍ବୁଦ୍ଧି
ଅଙ୍ଗଦ ବୋଲେ ତୋହର ଶିର ଦେବିଛେଦି
ସ୍ୱାମୀଙ୍କର ହୋଇଥାନ୍ତା ମୋତେ ଯେବେ ଆଜ୍ଞା
ତେଣୁ କରି ନ କରିବା ସ୍ୱାମୀଙ୍କି ଅବଜ୍ଞା ।
କହୁ କହୁ ବିକ୍ରମେ ସେ ସୁଗ୍ରୀବର ଚାଟ
ରାବଣ ଶିରରୁ ତର୍କେ ଘେନିଲା ମୁକୁଟ ।
ସୁବର୍ଣ୍ଣ ଚାଳକୁ ଭାଙ୍ଗି ଧରି ବେନି ହସ୍ତେ
ବିକ୍ରମୀ ଅଇଲା ପୁଣି ବେନି ପାଦଗତେ ।
ବାଳିସୁତ ସୁବଳୟା କରିଲେ ବିଜୟ
ଶ୍ରୀଭୂଷା ମୁକୁଟ ଦେଇ କରଇ ବିନୟ ।
ଦେଖି ସାନନ୍ଦ ହୋଇଲେ ପ୍ରଭୁ ଯୋଗେଶ୍ୱର
ସାଧୁ ସାଧୁ ଅଙ୍ଗଦରେ ମାଗ ତୁହି ବର ।
ବଚନ ଶୁଣି ଅଙ୍ଗଦ ହୋଇଲା ଯେ ଉଭା
ମାଗିବୁ ପ୍ରଭୁ ପ୍ରସନ୍ନେ ବରମୋତେ ଦେବା
କେଉଁ ବର ମାଗିବି ମୁଁ ମୁଖେ କରି ସ୍ଫୁଟ
ଜାଣି ମୋତେ ଅନୁଗ୍ରହ କର ଜଗଜ୍ୟେଷ୍ଠ ।
ଶ୍ରୀରାମଚନ୍ଦ୍ର ବୋଇଲେ ଜାଣିଲି ତୋହିୟା
ନିଶ୍ଚୟ କରି ବୋଲୁଛି ଦେବଇଁ ତାହା
ଅଙ୍ଗଦ ବୋଲେ ସ୍ୱାମୀ ତୋ ସର୍ବଭୂତେ ବାସ
କେଉଁ ବର ମାଗିବି ମୁଁ କରନ୍ତୁ ପ୍ରକାଶ ।
ଜାଣିକରି ବର ମୋତେ ଦେଲେ ରଘୁନାଥ
ମୁହିଁ ଅକିଞ୍ଚନ ତୁମ୍ଭ ଭୃତ୍ୟର ମୁଁ ଭୃତ୍ୟ ।
ଅଙ୍ଗଦ ମାଗିଲା ଯାହା ଜାଣିଲେ ଶ୍ରୀହରି
ତୁହି ବିଚାରିଲୁ ଆମ୍ଭେ ତୋ ପିତାରବୈରୀ
ତୋ ହସ୍ତେ ଆମ୍ଭର ବଧ ଅଛି ଯଥାବିଧି
ଯାଅରେ ଅଙ୍ଗଦ ତୋର କାର୍ଯ୍ୟହେବ ସିଦ୍ଧି
ସର୍ବ ସୈନ୍ୟ ସ୍ତମ୍ଭୀଭୂତ ହେଲେ ତାହାଶୁଣି
ହନୁମନ୍ତ ରାଗହୋଇ ଉଠେ ଶିରଝୁଣି ।
ବୋଲେ ଅଙ୍ଗଦର ମୁଣ୍ଡ ପକାଇବି ମୋଡ଼ି
ସ୍ୱାମୀଦ୍ରୋହ କିନ୍ତୁ ଏଡ଼େ ଦୁଷ୍ଟ ପଣେ ବଢ଼ି ।

ରାମ୍‌ବୋଲେ ହନୁ ପିତାକାର୍ଯ୍ୟ ଯେନକରେ
ଜୀଇଁଥିଲେ ମଧ୍ୟ ମୃତ୍ୟୁ ସଙ୍ଗେ ସମତାଲେ
ଆରେ ବାବୁ ନ ମିଳିବ ଏବେ ଏ ଜନ୍ମର
ତେତେବେଳେଯିବୁ ସ୍ୱର୍ଗେ ହୋଇଦେହାନ୍ତର ।
ଦ୍ୱାପର ଯୁଗରେ ମୁହିଁ କହ୍ଲା ଅବତାରେ
ଜନମ ଲଭିବି ଯାଇ ବସୁଦେବ ଘରେ ।
ଅଷ୍ଟମଲ୍ଲ ମୂଳେ କଂସ ରାଜାକୁ ମୁଁ ସାଧି
ଜରାସନ୍ଧ ନାରକାକୁ ଅସୁରଙ୍କୁ ବଧି ।
ଭାରତ ଯୁଦ୍ଧେ ପାଣ୍ଡବେ ହେବେ ମୋର ପ୍ରୀତି
ଭରାଭରକୁ ଉଶ୍ୱାସ କରି ବସୁମତୀ ।
ବହୁତ କୁଟୁମ୍ବ ଯହୁଁ ହୋଇବ ମୋହର
ଉପାୟ କରି ତାହାଙ୍କୁ କରିବି ସଂହାର ।
ଦ୍ୱାପର ଶେଷରେ କଳି ପ୍ରବେଶ ହୋଇଲେ
କୁଟୁମ୍ବ ନାଶି ଶୋଇବି ଯମୁନାର କୂଳେ ।
ଗୋପନ ହୋଇ ମୁଁ ଥିବି ମାଧବୀ ଲତାରେ
ଦ୍ୱାପରେ ତୁ ଜନ୍ମିଥିବୁ କିରାତ ବଂଶରେ ।
ଅଜ ନାମରେ ଏକଇ ବିଖ୍ୟାତ ଶବର
ହର ବନରେ ଆଶ୍ରମ ଅଟଇ ତାହାର ।
ତାର ନନ୍ଦନ କିରାତ ନାମେ ଅଜପତି
ତାହାର ପିତାର ସେହୁ ଏକଇ ସନ୍ତତି ।
ତାର ନନ୍ଦନ ବେଜରା ନାମେ ବନଚର
ତାହାର ନନ୍ଦନ ନାମ କପୋତ ଶବର ।
କପୋତ ସୁତ କିରାତ ନାମ ହରିଦାସ
ଜାରା ନାମରେ ଶବର ଅଟେ ତାର ଶିଷ୍ୟ ।
ଜାରା ଶବର ନାମରେ ତହିଁ ତୁହି ଥିବୁ
ସେହିସ୍ଥାନେ ଶରାଘାତ ମୋତେ ନ କରିବୁ ।
ତୋର ପିତାଙ୍କୁ ଅଦୋଷେ କଲି ଶରାଘାତ
ସେହିପରି କରିବୁ ତୁ ଶୁଣ ବାଳୀସୁତ ।
ବୈବସ୍ୱତ ମନୁକୁ ଯେ କହିଲେ ଅଗସ୍ତି
କିରାତ ନାମେ ଅଙ୍ଗଦ ହୋଇଛି ଉତ୍ପତ୍ତି ।
ମନୋହର ଅରଣ୍ୟରେ ଅଟେ ତାର ଘର
ଦଣ୍ଡକ ବନେ ଧଇଲା ଏହି ବ୍ୟାଘ୍ରବର ।
ସେ ବ୍ୟାଘ୍ରକୁ ଘେନି ଆଜ କିରାତର ନାତି
ମତ୍ସ୍ୟରାଜ୍ୟରେ ପ୍ରବେଶହୋଇଲେ ଝଟତି ।
ପାଞ୍ଚକେରା ଲାଗିଅଛି ଲୁହାର ଶିକୁଳା
ମଦମତ୍ତ ବ୍ୟାଘ୍ର ସେହୁ ତେଜେ ଅନର୍ଗଳା ।
ତୁଣ୍ଡ ବିସ୍ତାର କରିଣ ଦେଉଛି ସେ ରଡ଼ି
ଗିରି କନ୍ଦର ବନସ୍ତ ପଡୁଅଛି ଝଡ଼ି ।
ଭୟାନକ ଶବ୍ଦେ ତାର ଆକାଶ କମ୍ପଇ
ଶବଦ ଶୁଣିଣ ଜନେ ଯାଆନ୍ତି ପଳାଇ ।

ସେହି ସ୍ଥାନ ଛାଡ଼ିକରି ସର୍ବେ ପଳାଇଲେ
ଅନ୍ୟସ୍ଥାନେ ଲଭି ପୁଣି ଚେତନା ଲଭିଲେ
ବ୍ୟାଘ୍ରଙ୍କୁ ଆଣ୍ଟେ ଧରିଣ ସେ ଜାରା ଶବର
ପ୍ରବେଶ ହେଲା ବିରାଟ ସଭାର ତଳର ।
ବିରାଟ ବୋଲେ କିରାତ ଜୀବ ତୋର ଧନ୍ୟ
ଏଡ଼େ ବ୍ୟାଘ୍ରକୁ କେମନ୍ତେ କରିଲୁ ବନ୍ଧନ ।
ଭଲ କାର୍ଯ୍ୟ କରିଅଛୁ ବାନ୍ଧି ଏ ବ୍ୟାଘ୍ରକୁ
କେତେ ଉପଦ୍ରବ ଦ୍ୟନ୍ତା ମୋହର ରାଜ୍ୟକୁ
ଏହା ବୀର୍ଯ୍ୟରୁ ଉତ୍ପତ୍ତି ହୋଇଣ ସନ୍ତତି
ବହୁତ ମାରନ୍ତେ ଜନ୍ତୁ ପଶି ବହୁ କ୍ଷତ୍ରୀ ।
ତୁହି ରକ୍ଷାକଲୁ ଏବେ ଏ ବ୍ୟାଘ୍ରର ଭୟ
ଲକ୍ଷ ମାଢ଼ ସ୍ୱର୍ଣ୍ଣ ଦେଲେ କହି ନୃପରାୟ ।
ରେ କିରାତ ଯେଉଁ ହାତୀ ଦେଲୁ ଆଣି ବାନ୍ଧି
ପାଞ୍ଚ ବରଷରେ ତାକୁ ନ ପାରିଲୁ ସାଧି ।
ବିରାଟ ବଚନ ଶୁଣି ବୋଲଇ ସେ ଜାରା
କୀଚକର ହାତେ ଏହି ବ୍ୟାଘ୍ର ନେଇ ମରା
କୌଣସି ପ୍ରକାରେ ବଧ ନୋହିଲା ଏ ବଳୀ
ଏକାଥରକେ ସହସ୍ର ନର ଦିଏ ଗିଳି ।
ବିରାଟ ବୋଲେ କୀଚକ ମୋର ସେନାପତି
ଯାହା ବାହୁବଳେ ଭୁଞ୍ଜେ ସକଳ ସଂଭୂତି ।
ଯାର ପାଇଁ ରାଜ୍ୟେ ଦ୍ୱନ୍ଦ ନାହିଁ ଅନୁବ୍ରତେ
ସେପରି ସେନାପତିଙ୍କୁ ପେଶିବି କେମନ୍ତେ ।
ସେ ବ୍ୟାଘ୍ରେ ଗିଳେ ଥରକେ ସହସ୍ରେକନର
ତା ସଙ୍ଗେ ଯୁଦ୍ଧ କରିବା ନୁହଇ ବିଚାର ।
ଆରେ ଶବର ଏହାକୁ ଅନ୍ୟଦେଶେ ମରା
ତୁମ୍ଭରଦେଶକୁ ଲାଜ ହେବ ବୋଲେଜରା ।
ଯଦ୍ୟପି ମୁଁ ଏ ବ୍ୟାଘ୍ରକୁ ଘେନି ଯିବି ଏଥୁ
ଏହା ନେଇ ଦେବି ତୁମ୍ଭ ବୈରୀ ତ୍ରିଗର୍ତ୍ତକୁ ।
ଏ ବ୍ୟାଘ୍ରକୁ ଘେନିଣ ଯେ ବାହିବ ତ୍ରିଗର୍ତ୍ତ
ତେତେବେଳକୁ ତୁମ୍ଭେ ହେକରିବକେମନ୍ତ
କୋନ୍ତ ବୋଇଲେ ତୁମ୍ଭର ସେ ଅଟେବଇରୀ
ଉପାୟ କରିଣ ଯାକୁ ପକାଅ ଯେ ମାରି
ବିରାଟ ବୋଲେ ଯାଚକେଶ୍ୱର ମନ୍ତ୍ରୀ ଆଗ
ମୁକୁଳାଇ ଘେନିଆସ ସେହି ମତ୍ତନାଗ ।
ରାଜାଜ୍ଞା ଶୁଣି ବୋଇଲେ ତହୁଁ କୋନ୍ତ ଭଟ୍ଟେ
ଦୁଷ୍ଟ ହାତୀ ଗୋଟି ଥିଲେ ମେଲିଦିଅ ଆଟେ
ବିରାଟ ବୋଇଲେ ମୋର କୀଚକ ପ୍ରସାଦେ
ଦୁଇରାଜ୍ୟର ଐଶ୍ୱର୍ଯ୍ୟ ଭୋଗେ ନିରାପଦେ ।
ଆଣ ସେ ମତ୍ତ ହସ୍ତୀକି ବ୍ୟାଘ୍ର ଯୁଦ୍ଧ ହେଉ
ଗଜ ବ୍ୟାଘ୍ର ମାରୁ କିବା ବ୍ୟାଘ୍ର ଗଜେଖାଉ ।

ରାଜାଙ୍କର ବଚନକୁ ନିରାଧାର ମଣି
ସହସ୍ରେକ ବେଣ୍ଟକାର ଆଣିଲେ ତକ୍ଷଣି ।
ଗଜ ଆସେ ନାଦ କରି କିମ୍ପାଇ ମେଦିନୀ
ବେନି ପରିତାଳ ହେଲେ ହେବ ଘୋରଧ୍ୱନି ।
ଆସ୍ଥାନର ତଳେ ଗଜ ଉଭା କଲେ ଆଣି
ଗଜକୁ ଦେଖିଣ ଭୟକଲେ ନୃପମଣି ।
ଦାଣ୍ଡର ନିକଟେ ଏକ ବଡ଼ ବୃକ୍ଷ ଥିଲା
ଦୁର୍ଦ୍ଧର୍ଷ ଗଜ ତାହାକୁ ଭାଙ୍ଗି ପକାଇଲା ।
ବିରାଟ ବୋଇଲା ଆହେ ମତ୍ତବ୍ୟାଘ୍ର ମଲ୍ଲ
କରୁ ସମର ଯେ ଯାଇ ମତ୍ତହସ୍ତୀ ତୁଲ ।
ଜାରାଶବରବୋଇଲେ ନାହିଁ ମୋର ଦୋଷ
ଏ ଗଜ ଦେଇ ତୁମ୍ଭଙ୍କୁ ନେଲି ରତ୍ନକୋଷ ।
ବିରାଟବୋଲେ ଏମନ୍ତ ନ ବୋଲ ତୁ ଜାରା
ଗଜଯୁଦ୍ଧ କରି ତୁହି ବ୍ୟାଘ୍ର ବେଗେ ମରା ।
ରାଜାଙ୍କର ବଚନେ ଯେ ସର୍ବ ବେଣ୍ଟକାର
ଗଜକୁ ଦେଖାଇ ଦେଲେ ମତ୍ତ ବ୍ୟାଘ୍ର ବର ।
ଗଜର ଗର୍ଜ୍ଜନେ ବ୍ୟାଘ୍ର ଦିଏ ଘୋର ରଡ଼ି
ଜୀବଜନ୍ତୁ ପଳାଇଲେ ସେ ସ୍ଥାନକୁ ଛାଡ଼ି ।
ବେନି ପରିତାଳ ହୋଇ ବିକ୍ରମି ଆସନ୍ତେ
ଆକାଶେ କମ୍ପିଲେ ଦିଗପାଳଙ୍କ ସହିତେ ।
ବିରାଟର ରାଜ୍ୟଲୋକଥିଲେ ମହାକ୍ଷତ୍ରୀ
ଦ୍ୱାର ଛାଡ଼ିଣ ବାଲୁତେ ଗୃହେ ଯାଇ ପଶି ।
ସୁଗ୍ରୀବରଙ୍କ ସମାନ ଅଟେ ଯେଉଁ ହସ୍ତୀ
ମହାଭୟ କଲା ଦେଖି ବ୍ୟାଘ୍ରର ମୂରତି ।
ହମ୍ପୋଳ ଦେଇ ଧାଇଁଲା ସେହୁ ବଡ଼ ଦୁଷ୍ଟ
ତିନିକାଠି ଆୟତନ ସେ ଗଜରମାଥ ।
ଆକର୍ଷିଲା ବ୍ୟାଘ୍ରବର ବିସ୍ତାରିଣ ତୁଣ୍ଡ
କୁଦାଏ ମାରି ବସିଲା ଯାଇ ହସ୍ତୀମୁଣ୍ଡ ।
ତମ୍ବାପାତ୍ର ପରକାରେ ଦିଶେ ବେନି ଦୃଷ୍ଟି
ଘୋର ନାଦକରିଣ ସେ ଚାପେ ବେନିପାଟି ।
ବ୍ୟାଘ୍ର ଆକର୍ଷନ୍ତେ ଯାଇ ଗଜର ମୁର୍ଦ୍ଧନା
ଅସ୍ଥି ଚର୍ମ ସହିତରେ ହୋଇଗଲା ଚୂନା ।
ପଡ଼ିଲାକ ଗଜବର ନିଶ୍ଚେଷ୍ଟିତ ହୋଇ
ବହନ ସେ ବ୍ୟାଘ୍ର ପୁଣି ଉଦର ଚିରଇ ।
ବେନିଫାଳ ହୋଇକରି ପଡ଼ିଲା ସେ ଗଜ
ରୁଧିର ଆପ୍ୟାନ ତହୁଁ କଲା ବ୍ୟାଘ୍ରରାଜ ।
ଗଜ ଉଦର ମଧ୍ୟରେ ପୁରୁଷେକ ଥିଲା
ଯୁଧିଷ୍ଠିରଙ୍କୁ ଦେଖିଣ ସ୍ୱର୍ଗଗାମୀ ହେଲା ।
ଚଇତନ ବିନୟରେ ପୁଛିଲେ ମନୁଙ୍କୁ
ବ୍ୟାଘ୍ର ବଧ କଲା ଯହୁଁ ମତ୍ତ ମାତଙ୍ଗକୁ ।
ବିରାଟ ରାଜା ଏ ପରେ କଲେ କି ବିଚାର
ଏହି କଥା କହି ମୋର ଭ୍ରାନ୍ତି ଦୂର କର ।
ମନୁ ବୋଇଲେ ହେ ତୁମ୍ଭେ ଶୁଣ ଚଇତନ
ଦେଖିଣ ବିରାଟ ତହୁଁ ହେଲେ ଭୀତମନ
ଏଡ଼େ ବଡ଼ ହସ୍ତୀ ହେଲା ଯହୁଁ ପ୍ରାଣେ ହତ
ଆଉ କିଏ ସେ ବ୍ୟାଘ୍ରକୁ ମାରିବ ଚିନ୍ତିତ ।
ବ୍ୟାଘ୍ର ଘେନି ଏବେ ତୁହି ଯାଅ ବେଣ୍ଟକାର
ଶବର ବୋଇଲେ ଶୁଣ ମତ୍ସ୍ୟ ନୃପବର ।
ଶତସିଂହ ବଳ ଯାର ଅଟେ ପରାକ୍ରମ
ବ୍ୟାଘ୍ର ଛାର ତାହାକୁ କି ହୋଇପାରେ ସମ
କିରାତ ବୋଇଲେ ଦଶ ପଦାତି ସଙ୍ଗରେ
ଗୋଟିଏ ବଳଦ ସମ ହୋଇବ ବଳରେ ।
ଦଶଟି ବଳଦ ସମ ଏହି ଷଣ୍ଢ ଜାଣ
ଦଶଷଣ୍ଢ ବଳ ଏକ ବଳୀୟାର ପୁଣ ।
ଦଶଟି ବଳିୟା ବଳ ଯେତେକ ଅଟଇ
ଗୋଟିଏ ଦାମୁଡ଼ି ସଙ୍ଗେ ସେ ସମ ହୁଅଇ
ଦଶଟି ଗଣ୍ଡାର ବଳ ଏକ ସମ୍ବରର
ଦଶ ସମ୍ବରର ସମ ବାହୁଟିଆ ତାର ।
ଦଶ ବାହୁଟିଆଙ୍କର ଯେତେ ପରାକ୍ରମ
ଗୋଟିଏ ବ୍ୟାଘ୍ର ସହିତ ହୋଇବ ସେ ସମ ।
କେଶରୀ ବଂଶରେ ଜନ୍ମ ହୋଇଛି ଏହାର
ଦଶ ବ୍ୟାଘ୍ର ପରାକ୍ରମ ଏକ ଭଲ୍ଲୁ କର ।
ଦଶ ଦାମୁଡ଼ିର ବଳ କରିଲେ ଏକାଠି
ଗୋଟିଏ ଗଣ୍ଡାର ସଙ୍ଗେ ସମହେବ ସେଟି ।
ଦଶଭାଲୁ ପରାକ୍ରମ ଅଟେ ଏକ କୋକି
ଦଶକୋକି ପରାକ୍ରମେ ଏ ଶାର୍ଦ୍ଦୁଳ ଲେଖି
ଏକା କେଶରୀ ଅଙ୍ଗଦ ଅଟେ ଯୁଗପତି
ଦଶ ଶାର୍ଦ୍ଦୁଳ ପ୍ରାକର୍ମେ ଅଟେ ଏକହାତୀ ।
ଦଶହସ୍ତୀ ପରାକ୍ରମେ କେଶରୀକୁ ବୋଲି
କୀଚକର ଶତସିଂହ ବଳ ମୁଁ ଶୁଣିଲି ।
ଏତେ ବଳେ ବଳବାନ ଅଟଇ କୀଚକ
ଏ ବ୍ୟାଘ୍ରର ପରାକ୍ରମ କି ଛାର ମାତ୍ରକ ।
ଯଦ୍ୟପି ନମରାଇବ କୀଚକର ହସ୍ତେ
ଏହିଠାରେ ମେଲିଦେବି କହିଲଇଁ ତୋତେ ।
ରାଜ୍ୟଲୋକେ ତ୍ରାସ କଲେ ତାହାକଥା ଶୁଣି
ଏ ବ୍ୟାଘ୍ର ଛାଡ଼ିଲା ମାତ୍ରେ ଖାଇବ ଏକ୍ଷଣି ।
ରାଜ୍ୟଲୋକଙ୍କ ବିକଳ ଦେଖିଣ ବିରାଟ
ବୋଲେ ମୌନେ ବସିଅଛକିମ୍ପାକୋନ୍ତଭଟ
କୋନ୍ତ ବୋଇଲେ ତୁହିରେ ଶୁଣବେଣ୍ଟକାର
କୀଚକକୁ ଏହି ବ୍ୟାଘ୍ର କରିବ ସଂହାର ।

ଆନ ଯେବେମୋରତୋର ହୋଇବନାସିଦ୍ଧ
ଏହି କଥା ବିଚାର ତୁ କର ମନ ମଧ୍ୟ ।
ବନସ୍ତ ଜୀବ ନ ରହେ ଏ ବ୍ୟାଘ୍ରର ଭୟେ
କୀଚକ କ୍ଷତ୍ରୀୟ ଧାଉଁ କିବା ଭୟେ ରାୟେ ।
ଋଷ ବିପ୍ରତପସ୍ୱୀୟେ ନ ଯିବେଟି ବନ
ତୁମ୍ଭେ ଦଣ୍ଡଧାରୀ ଚିନ୍ତି ଏ ଅରିଷ୍ଟମାନ ।
ଯଦ୍ୟପି ଏ ବ୍ୟାଘ୍ର ବଧ ଏ ରାଜ୍ୟେନୋହିବ
ରାଜ୍ୟର କଳନା ପରରାଷ୍ଟ୍ରେ ନିନ୍ଦାଦେବ ।
କୀଚକ ପରି ପ୍ରାକର୍ମେ ଏହୁ ଯିବ ନାଶ
ବିରାଟ ବୋଇଲେ କୋନ୍ତ ଏହିକଥା ଭାଷ ।
କୋନ୍ତ ବୋଇଲେ ଶୁଣ ହେ ବିରାଟର ପତି
କଥା ଏକ କହିବାକୁ ମିଳଇ ଯୁକତି ।
ହେ ଯାଚକେଶ୍ୱର ମନ୍ତ୍ରୀ ବଲ୍ଲଭ ବ୍ରାହ୍ମଣ
ଆସ୍ଥାନତଳେ ବୋଇଲା ଜାଣେ ମାଲରଣ ।
ତାହାକୁ ହକାରି ଏବେ ଅଣାଅ ହେ ରାୟେ
ଏ ବ୍ୟାଘ୍ରକୁ ମରାଇବି କୌତୁକ ଉପାୟେ ।
ବ୍ୟାଘ୍ର ମଲେ କିବା ଦ୍ୱିଜ ମଲେ ପଛେ ମଲା
ବିଦେଶୀ ବ୍ରାହ୍ମଣ ହୋଇ ପ୍ରତିଜ୍ଞା ସେ କଲା ।
ଶୁଣି ସ୍ତମ୍ଭୀଭୂତ ହେଲେ ମତ୍ସ୍ୟର ନରେନ୍ଦ୍ର
ବୋଇଲେ ଜାଣିଲୁକୋନ୍ତ ତୁମ୍ଭେ ବଡ଼ ମନ୍ଦ ।
ବ୍ୟାଘ୍ର ସଙ୍ଗେ ମନୁଷ୍ୟର ହୁଏ କି ସମର
କି ଦ୍ରୋହ କଲା ତୁମ୍ଭର ସେହି ସୂପକାର ।
ମନ୍ତ୍ରୀ ବୋଲେ ଦେବ ତାଙ୍କୁ ଆଣିବା ହକାରି
କିସ ସେ ବୋଲିବ ତାହା ବୁଝିବା ବିଚାରି ।
ବିରାଟ ବୋଇଲେ ବେଗେ ଯାଅ ଚାରଗଣ
ବଲ୍ଲଭ ସୂପକାରକୁ ହକାରିଣ ଆଣ ।
ରାଜାଜ୍ଞା ପାଇଣ ତହୁଁ ଚଳିଗଲେ ଦୂତେ
ରୋଷଶାଳ ସନ୍ନିଧିରେ ମିଳିଲେ ତୁରିତେ ।
ବିଜୟେ ସେ ବୃକୋଦର ରାନ୍ଧଣା ବିଧାନେ
ଦ୍ୱାରରୁ ଥାଇ ଡାକନ୍ତି ସେହି ଚାରମାନେ ।
ଗୋସାଇଁ ବଲ୍ଲଭପଣ୍ଡା ବୋଲି ଡାକଦେଲେ
ରାନ୍ଧଣା କାର୍ଯ୍ୟଥିବାରୁ ଶୁଣି ନ ପାରିଲେ ।
ଗଜେ ମାଡ଼ିବସି ଯେହ୍ନେ ସିଂହ ଆକର୍ଷଇ
ବନ୍ଧନକୁ ବୃକୋଦର ତେସନ କରଇ ।
ଆଣ୍ଟରେ ଡାକନ୍ତେ ମଧ୍ୟ ନ ଶୁଣଇ ଭୀମ
ପୁନଃ ପୁନଃ ଡାକି ଦୂତେ ପାଇଲେ ଯେ ଶ୍ରମ ।
କାଳଚକ୍ର ପ୍ରାୟେକ ସେ ବୁଲାଇଣ ଡୋଳା
କିଏରେ ବୋଲି ଚାହିଁଲା ପବନର ବଳା ।
ଭୟେ କମ୍ପମାନ ହୋଇ କହନ୍ତି ଡଗର
ଗୋସାଇଁ ଠାକୁର ଆଜ୍ଞା ଆସ ସୂପକାର ।
ମହାକ୍ରୋଧ ହୋଇଣ ସେ ତରାଟିଣ ଆଖି
ମୁହିଁ କାହାର ବଶରେ ଠାକୁର କେ ଅଛି ।
ଦୂତେ ବୋଇଲେ ବିରାଟ ରାଜାଙ୍କର ଆଜ୍ଞା
ଶୁଣି ପାବନି ତାହାଙ୍କୁ କରିଲା ଅବଜ୍ଞା ।
ବାହୁଡ଼ି ଆସିଣ ତହୁଁ କହିଲେ ଡଗର
ସୂପକାରବୋଲେ କିଏ ମୋପରେ ଠାକୁର
ଶୁଣିଣ ମନେ ବିରସ ହେଲେ ଧର୍ମସୁତ
ବିଚାରିଲେ ଅଜ୍ଞାତେ ମୁଁ ବଞ୍ଚିବି କେମନ୍ତ ।
ଯାର ସଦା ମୂର୍ଖପଣ କରିବା ପ୍ରକୃତି
ବିରାଟକୁ ଛାର ସେହି ବୋଲିବା ଅଯୁକ୍ତି ।
ହେ ଜଗମୋହନ କର ପ୍ରତିକାର ମୋତେ
ତୁମ୍ଭେ ଏଥୁ ରଖ ଦୁର୍ଗତିରୁ ଜଗନ୍ନାଥେ ।
ବିରାଟବୋଲେ କୋନ୍ତ କି ହେଲା ଅଭିମାନ
ବିସ୍ମୟେ ବସିଲେ କିମ୍ପା ହୋଇଲେ ମଉନ
କୋନ୍ତବୋଲେ ନଯୋଗାଇ ଏହିସବୁ କଥା
ଗୁରୁଜ୍ୟେଷ୍ଠ ସ୍ୱାମୀ ଆଦି ହେଲେ ଉପଗତା
ଆପଣା ବଡ଼ାଇପଣେ ପ୍ରଶଂସା ନ କହି
ଆତ୍ମ ବିଚାରରେ ଦଣ୍ଡଯୋଗ୍ୟ ଯେ ଅଟଇ ।
ବିରାଟ ବୋଲେ କୌରବ କଲି ମୁହିଁ ପୂଜା
ମୋହର ରାଜ୍ୟଠାକୁର ଅଟଇ ସେ ଦ୍ୱିଜା ।
ଚାର ବୋଇଲେ ଦେବ ଏ ବଡ଼ଇ ଉପେକ୍ଷା
ବ୍ରାହ୍ମଣ ହୋଇ କରଇ ବହୁତ ସେ କକ୍ଷା
ରାନ୍ଧଣାର ଚୁଲ୍ଲୀରେ ସେ ଯୋଗାଡ଼କୁ ଭରି
ଆରେକଯୋଗାଡ଼େ ଦେବେ ସୂର୍ଯ୍ୟପାକକରି
ବିରାଟ ବୋଇଲେ ବଡ଼ ଦୁର୍ଲ୍ଲଭ ଚରିତ
ଏକା ବ୍ରାହ୍ମଣର ପାଇଁ ସର୍ବବେଳ ସୁସ୍ଥ ।
ମୋହର ସୈନ୍ୟ ଭୁଞ୍ଜନ୍ତି ତହିଁ ମନଇଚ୍ଛା
ମନ ଜାଣି ପରଷଇ ଯାର ଯାହା ବାଞ୍ଛା ।
ଗଉରୀ ଶଉରୀ ନଳ ବିଧି ନିତି ପ୍ରତି
ସ୍ୱର୍ଗ ମର୍ତ୍ତ୍ୟ ଭୁବନକୁ ଅସଂଖ୍ୟ ତା ରୀତି
ନୁହଇନା ମୋରବୋଲେ ତାହାକୁ ଯେପେଷି
ଗୁଣବନ୍ତେ ଅନୁଚିତ କି କାରଣେ ନାଶି ।
ଅଶକତେ ଲୋକ ଯେହୁ ସେହୁ ଆଜ୍ଞାବର୍ତ୍ତୀ
ଗୁଣବନ୍ତ ଲୋକ କରେ କରିବ ବା ଭୀତି ।
ତୁମ୍ଭେ ଯେବେ ପାର ତାକୁ ଅଣାଅ ଡକାଇ
ବିରାଟ ବୋଇଲେ ତୁହି ଏହି କଥା କହି ।
କୋନ୍ତ ବୋଇଲେ ବେଗରେ ଯାଅଚାରିଜଣ
ଆମ୍ଭେ ବୋଇଲୁ ବୋଲିଣ ତାକୁ ଡାକିଆଣ
କୋନ୍ତଙ୍କର ଆଜ୍ଞା ପାଇ ଚଳିଗଲେ ଦୂତ
ରୋଷାଇଶାଳନିକଟେ ହେଲେ ଉପସ୍ଥିତ ।
ହେ ବଲ୍ଲଭ ରାଜା ଆଜ୍ଞା କରିଲେ ଅବଜ୍ଞା
ଏବେ ଆସ କୋନ୍ତଙ୍କର ହୋଇଛି ଅନୁଜ୍ଞା ।

ରାନ୍ଧଣା ବିଧାନ ବିଧି ଛାଡ଼ିଣ ମାରୁତି
ବିଚାରେ ଅଜ୍ଞାତ ବାସ ହେଲା କି ସମାପ୍ତି ।
କିସ ଅବା ବିରାଟକୁ ପଡ଼ିଲା ପ୍ରମାଦ
କି ଅବା ଅଜ୍ଞାତବାସ ହୋଇଲାକି ଭେଦ ।
କି ଅବା ମାନଗୋବିନ୍ଦ ପର ଥାଟ କଲା
କିବା ବିରାଟକୁ ପରଥାଟେକ ପଡ଼ିଲା ।
ରସାଣ ତନୁରେ ତାର ଲାଗିଅଛି କଳ
କଣୟ ପର୍ବତେ କିବା ଦିଶେ ମେଘମାଳ ।
ଖାଙ୍କର କେଶ ଲମ୍ବିତ ତହିଁ ଜୁଡ଼ା ଗୋଟି
ଚନ୍ଦନର ଚାରୁଚିତା ଦଶବର୍ଣ୍ଣେ ଫୁଟି ।
ତ୍ରିକଛ ବସନ କଳା ଶରୀରେ ଜଡ଼ିତ
ପଇତା କାନ୍ଧରେ ଅଛି ଉତ୍ତରୀ ସହିତ ।
ଖେଳନ୍ତା ସିଂହକୁ ଜିଣି ଚାଲନ୍ତି ସେ ହେଳେ
ପ୍ରବେଶ ହୋଇଲେ ଯାଇ ରାଜସଭାତଳେ ।
ଯୁଧିଷ୍ଠିର ଭୀମସେନ ଆକାରକୁ ଦେଖି
କୃଷ୍ଣଠାରେ ଲୟଦେଇ ବୁଜିଲେ ସେ ଆଖି ।
ଆହାର ପୃଷ୍ଠରେ ସେହି ନେଉଅଛି ଦିନ
ବିସ୍ତର ଅକର୍ମନ୍ତେ ସେନୋହେ ତନୁ କ୍ଷୀଣ ।
ଆହେ ଦଇବ ପୁରୁଷ ତୋର ଏହା କଳା
ଯେ ବିରାଟ ଦେଖିବାକୁ ଭାଜନ ନୋହିଲା ।
ରାଜସ୍ୱୟ ଯଜ୍ଞକାଳେ ନେଳାଟି ଗଲଥି
ଆସ୍ଥାନତଳରେ ତାକୁ ଦେଲେ ଏତେଶାସ୍ତି ।
ଏହି ପରକାରେ କହି ବିହିଲା ଦଇବ
ବିରାଟ ସଭାତଳରେ ଆଣିଦେଲା ଠାବ ।
ମୋହର ଏ କଳା କୃତ୍ୟ କାହାକୁ କହିବି
ଏ ତୁମ୍ଭର ଅବସ୍ଥା ମୁଁ କେମନ୍ତ ସହିବି ।
ବିରାଟ ବୋଇଲେ ଗୁଣବନ୍ତ ବ୍ରାହ୍ମଣଟି
କେବଣକାରଣେୟାକୁ ଦେଲେ ଏତେଜକ୍ଷି
କୋନ୍ତବୋଲେ ଏ ଅସୁରଯେକାଳେ ନଥିଲେ
ରାଜ୍ୟଲୋକେ କି ଉପାସେ ମରିଯାଉଥିଲେ ।
ବିରାଟ ରାଜା କତିକି ଅଙ୍ଗସାରି ଦେଇ
ବଲ୍ଲବ ପ୍ରମାଣ କଲେ କୋନ୍ତ ମୁଖ ଚାହିଁ ।
ବିରାଟ ବୋଇଲେ ଉଠ ଆହେ ଦ୍ୱିଜବର
ରାଜା ବଚନ ଶୁଣିବା କିମ୍ପା ସୂପକାର ।
କୋନ୍ତ ବିଚାରିଲେ ଆମ୍ଭ ଆଜ୍ଞା ନହୋଇଲେ
ସେ କିମ୍ପାଇ ଉଠିବେଟି ବିରାଟର ବୋଲେ ।
କୋନ୍ତବୋଇଲେଠାକୁର ଆଜ୍ଞାହେଲାତୋତେ
ଉଠ କହିକିନା ପ୍ରଣିପାତ ହେଉ କେତେ ।
ସ୍ୱାମୀଙ୍କ ବଚନ ଶୁଣି ଉଠିଲେ ପାବନି
ଯୁଧିଷ୍ଠିରଙ୍କୁ ଚାହିଁଣ ଶିରେ ଦେଲା ପାଣି ।
ବିନୟ କରିଣ କହେ ବେନି କର ମଳି
ସାଗରକୁ ଧନ ଦେଲେ ହୁଏ କି ସେ ଚାଲି ।
ବିଚାରିଣ ସ୍ୱାମୀ ମୋତେ କେଉଁ ଆଜ୍ଞାଦେବା
ବଳ ଅନୁରୂପେ ସାଧି ମୋହର ସେ ସେବା
ଶୁଣ ଶୁଣ ବଲ୍ଲଭ ହୋ ବୋଲନ୍ତି ବିରାଟ
କେମନ୍ତ କରିବା ମୋତେ ପଡ଼ିଛି ଅରିଷ୍ଟ ।
ବଲ୍ଲଭ ବୋଇଲା ଆମ୍ଭେ ପର ଉପକାରୀ
କରିବା ଉପାୟ ତାର ଯେଉଁରୂପେ ପାରି ।
ଶୁଣିଲେ ସାନନ୍ଦ ତହୁ ହେଲେ ରାୟେମସ୍ୟ
ପ୍ରଦେଶୀ ହୋଇଲୁ ବୋଲି କହିଲୁ ପ୍ରତ୍ୟକ୍ଷ
ପଣ୍ଡା ହେ ବହୁତ ଉପଦର୍ପ କଲା ମୋତେ
ଯେ ବ୍ୟାଘ୍ର ଆଣିଛି ଦେଖି ନଥିଲି ମୁଁ ନେତ୍ରେ
କୀଚକ ସହିତ ଯୁଦ୍ଧ ମାଗେ ବ୍ୟାଘ୍ର ବର
ତାକୁ କାହିଁଦେବି ତାରପାଇଁ ରାଜ୍ୟମୋର ।
ଭୀମସେନ ବୋଲେ ରାଜା ରାଜ୍ୟ କରୁଥିଲେ
ବହୁତ କୌତୁକ ହୁଏ ପ୍ରଦେଶୀ ଅଇଲେ ।
ଏହି ପ୍ରକାର ବିଚାର କରିବା ଉଚିତ
ନୋହିଲେ ରାଜ୍ୟକୁ ହୁଏ ବହୁତ ବିକୃତ ।
ବିରାଟ ବୋଇଲେ ଶୁଣ ବଲ୍ଲଭ ପଣ୍ଡାଏ
ଏହି ବ୍ୟାଘ୍ର ବଧହେବ କେବଣ ଉପାୟେ ।
ଶୁଣ ଆହେ ମତ୍ସ୍ୟଶ୍ୱର ବୋଲଇ ବଲ୍ଲଭ
ବ୍ୟାଘ୍ର ମନୁଷ୍ୟର ଯୁଦ୍ଧ ବଡ଼ ଅସମ୍ଭବ ।
ନଖଦନ୍ତ ପୂରିଥାଇ ତାହାର ଯେ ବିଷେ
ମନୁଷ୍ୟ କରିବ ଯୁଦ୍ଧ କେବଣ ସାହସେ ।
ତୁମ୍ଭ ରାଜ୍ୟେ ଅଛି ମୁହିଁ ସୂପକାର ହୋଇ
ତଡ଼ିଦିଅ ମୋତେ ତୁମ୍ଭେଯେବେନଯୋଗାଇ
ବ୍ୟାଘ୍ରର ମୁଖରେ ରାଜା ଦେଉଛ ଆମ୍ଭଙ୍କୁ
ବ୍ରହ୍ମହତ୍ୟା ଦୋଷ ନିଶ୍ଚେ ଲାଗିବ ତୁମ୍ଭଙ୍କୁ ।
ଯହୁଁ ସୂପକାର ଭାଷେ ଏହିପରି ବାଣୀ
ବିରାଟ ତୁନି ହୋଇଲେ ତାଙ୍କ କଥା ଶୁଣି ।
କୋନ୍ତ ବୋଇଲେ ପଣ୍ଡା ତୁ ବଡ଼ଇ ଅଜ୍ଞାନ
କେବେହେଁ ଭ୍ରଷ୍ଟ ନ କର ରାଜାଙ୍କ ବଚନ ।
ଆସ୍ଥାନରତଳେ ତୋତେହୋଇଲାଯେଅବଜ୍ଞା
ପାର ନ ପାର କେମନ୍ତେ କର ତା ଆଜ୍ଞା ।
ମାର ହୋ ବ୍ରାହ୍ମଣ ଯେବେ ତା ପ୍ରତିଜ୍ଞା ଥିଲେ
ବହୁତ ପୂଜା ପାଇବୁ ଏ ବ୍ୟାଘ୍ର ମାଇଲେ ।
ବିରାଟ ବଚନେ ସେ ଯେ କରୁଥିଲା ନାସ୍ତି
କୋନ୍ତଙ୍କ ବଚନ ଶୁଣି ଫିଟେ ମନଭ୍ରାନ୍ତି ।
ବୀର ବୋଇଲା ତୁ ମଲେ ତୋ ବ୍ୟାଘ୍ର ଝଟତି
ଜରା ବୋଲେ ତୁହି ଅଟୁ ବ୍ରାହ୍ମଣ ସନ୍ତତି ।

ଅନେକ ଦୋଷ ଅର୍ଜିବି ନ ବଧାଅ ପ୍ରାଣେ
ବଲ୍ଲଭ ବୋଲଇ ମୁହିଁ ପଶୁଅଛି ରଣେ ।
ସମର କଲେ ବ୍ରାହ୍ମଣ ହୁଏ ଶିରଚ୍ଛେଦ
ଏଥିପାଇଁ ତୁହି କିମ୍ପା କରୁଛୁ ବିଷାଦ ।
ବେଣ୍ଟକାର ବୋଲେ ତହୁଁ ଶୁଣ ଦିଗପାଳେ
ମୋହର ଆଉଟି ଦୋଷ ନାହିଁ ଏତେବେଳେ ।
ବଲ୍ଲଭ ବୋଲେ ଅଦୋଷେତୁ ହି କିମ୍ପାବୋଲୁ
ଏହି ବ୍ୟାଘ୍ରକୁ କିମ୍ପାଇଁ ବନ୍ଧନ ନ କଲୁ ।
ବେଣ୍ଟକାର ସେ ବ୍ୟାଘ୍ରକୁ ଦୂରେଅଛି ଧରି
ମୂର୍ଖ ଦ୍ୱିଜବର କିମ୍ପା ଏହା ନ ବିଚାରି ।
ବେଣ୍ଟକାର ବୋଲେ ଏହା ନଜର ପଣ୍ଡାଏ
ତୁ ମରିବୁ ମୋତେ କିମ୍ପା ଲାଗିବ ହତ୍ୟାଏ ।
ଭୀମସେନ ବୋଇଲା ହୋ ନେଲ ଦୂରକରି
ପୁଣି ସାକ୍ଷୀକରେ ବ୍ୟାଧ ଗଗନବିହାରୀ ।
ସାଧୁରେ ସାଧୁତୁ ରାଜା ଅଟୁ ମହାବଳୀ
ଶୁଣି ହାମ୍ପୋଳି ମାରିଣ ଫିଟାଏ ଶିକୁଳି ।
ତହୁଁ ବୋଇଲା ତୁ ଯାଅ ଆରେ ବ୍ୟାଘ୍ର ବର
ଭକ୍ଷଣ କର ତୁ ଯାଇ ଏହି ସୁପକାର ।
ସୂପକାର ଦେଖି ବ୍ୟାଘ୍ର ଧାଇଁଲା ଗରଜି
ଗର୍ଜନ୍ତେ ପର୍ବତଚୂଡ଼ା ପଡ଼ିଅଛି ଭାଜି ।
ଭୀମ ବିଚାରେ ମାରିବି ଯାକୁ ବଜ୍ରମୁଠେ
ପୁଣି ବିଚାରେ ଜାଣିବେ ବିରାଟ ସହିତେ ।
ଇଚ୍ଛାରେ ଉତ୍ତାନ ହୋଇ ପଡ଼ିଲାକ ଭୀମ
ଆକର୍ଷି ଧରିଣ ବ୍ୟାଘ୍ର କରିଲେ ସଂଗ୍ରାମ ।
ବ୍ୟାଘ୍ର ଦେଖି ପଳାଇଣ ଗଲେ ଭୀମସେନ
ମେଢ଼ ମଣ୍ଡପରେ ଯାଇ ଉଠିଲେ ବହନ ।
ମତ୍ସ୍ୟପତି ଆସ୍ଥାନରେ ନ ପାରିଲେ ରହି
ଭିତର ଜଗତିରେ ସେ ଉଠିଲେକ ଯାଇ ।
ଏକମାତ୍ର ଆସ୍ଥାନରେ ରହିଲେ ଯୁଧିଷ୍ଠି
ଭୀମସେନକୁ ଚାହାଁନ୍ତି କରି ଏକଦୃଷ୍ଟି ।
ଉତ୍ତାନାପାୟୀ ହୋଇଣ ଭୀମ ଅଛି ପଡ଼ି
ବକ୍ଷସ୍ଥଳେ ବସି ବ୍ୟାଘ୍ର ଦିଏ ଘୋରରଡ଼ି ।
ତଳେ ପଡ଼ି ଭୀମସେନ ବ୍ୟାଘ୍ର ଆକର୍ଷଇ
ବ୍ୟାଘ୍ର ବସିଛି କେଶରୀ ସମ ତେଜ ବହି ।
କେବଳ ମାତ୍ର ସେ ବ୍ୟାଘ୍ର ହୃଦେ ବସିଅଛି
ତାର ବଳେ ଭୀମଙ୍କୁ ନ କରିପାରେ କିଛି ।
ତଳେ ଭୀମ ଉପରରେ ଅଛି ବ୍ୟାଘ୍ରବର
ଦେଖିଣ ନଗରବାସୀ ଶୋକେ ଜର ଜର ।
ହା ହା ସୂପକାର ବୋଲି ବୋଲୁଛନ୍ତିଜନେ
ମୃତ୍ୟୁ ଲଭିବୁ ବୋଲିଣ ଆସିଲୁ ଏ ସ୍ଥାନେ ।
ଆମ୍ଭ କାହୁଁ ଜାଣିବୁ ତୋ ରନ୍ଧନର ରୀତି
ତୋହର ପ୍ରସାଦେ ଆମ୍ଭେ ଖାଇ ନିତିପ୍ରତି ।
ଏକା ହୋଇ କରୁଥିଲ ସକଳ ରନ୍ଧନ
ସର୍ବ ସୂପକାର ଜଗଜ୍ଜିତା ଏକ ଜଣ ।
ରୋଦନ କରନ୍ତି ନଗ୍ରବାସୀ ନରନାରୀ ।
ସର୍ବେ ଶୋକଭରେ ସୂପକାର ନାମ ଧରି ।
ଯେତେବେଳେ କ୍ଷୁଧାତୁର ମାଗନ୍ତି ଯେ ଅନ୍ନ
ନିଅଳସ ବ୍ରାହ୍ମଣ ସେ ଦିଏ ସେହିକ୍ଷଣ ।
କାହୁଁ ଏ ବ୍ୟାଧ ବ୍ୟାଘ୍ରକୁ ଅଇଲା ସେଘେନି
ତାହାର ପ୍ରସାଦେ ସର୍ବେ ହେଲୁ ବୀର୍ଯ୍ୟହାନି ।
ସୂପକାର ପେଶିବାକୁ ରାଜାଙ୍କ ଅନିଚ୍ଛା
ଏକା କୋନ୍ତ ପଣ୍ଡା ଥାଇ ଯାକୁ କଲେ ରକ୍ଷା
ଆମ୍ଭର ନିଃଶ୍ୱାସ ସବୁ ତାର ମୁଣ୍ଡେ ପଡୁ
ଆହେ କୋନ୍ତଭଟ୍ଟ ତୁମ୍ଭ ପେଟ ଏବେ ପୋଡୁ ।
ଉଦାର ବ୍ରାହ୍ମଣ ଜାଣେ ନାହିଁ କୂଟ ଛନ୍ଦ
ବ୍ୟାଘ୍ର ସହିତେ ମନୁଷ୍ୟ କାହିଁ ଅଛି ଦ୍ୱନ୍ଦ ।
ହେ ଧର୍ମ ଆମ୍ଭମାନଙ୍କ ଦଇନୀକୁ ଘେନି
ବେଳେକ ଉଦ୍ଧାର ଏହି ବ୍ରାହ୍ମଣ ମୁର୍ଦ୍ଧନି ।
ବିରାଟ ବଚନ ଶୁଣି ଏହୁ ଭାଜିଗଲା
ଏକା କୋନ୍ତ ବ୍ରାହ୍ମଣର କୁଟେ ନାଶଗଲା ।
କିରାତ କି ହୋଇଥିଲା କେବେ ତା ବଇରୀ
ପରକୁ ମରାଇଲା ସେ ଆପଣେ ନ ମରି ।
ସଂସାର ମୁଖେ ଭ୍ରାତାଙ୍କ ଶୁଣି ଅପଖ୍ୟାତି
ଆକର୍ଷି ବ୍ୟାଘ୍ରକୁ ମାଡ଼ି ବସିଲା ତଡତି ।
ରେରେକାର ରଡ଼ି କରି ପବନ କୁମର
ବାମକରେ ସେ ବ୍ୟାଘ୍ରକୁ ପାତି ଅବନୀର ।
ବେନି ଆଣ୍ଠୁରେ ମାଡ଼ିଣ ବସିଲା ସେ ହୃଦେ
ବାମକରେ ତୋଟି ଚିପି ପ୍ରହାରିଲା ପାଦେ ।
ଦକ୍ଷିଣଭୁଜେ ମାଇଲା ପୁଣି ମୁଥ ତୋଳି
ଭୂମିରେ ପଡ଼ିଲା ବ୍ୟାଘ୍ର ଦେଇଣ ବୋବାଳି
ବ୍ୟାଘ୍ରର ଗର୍ଭ ଭିତରେ ପୁରୁଷେକ ଥିଲା
ବିଦ୍ୟାଧର ସଦୃଶରେ ବାହାରିଣ ଗଲା ।
ଅମରେ ଆସିଣ ଥିଲେ ପୁଷ୍ପକ ବିମାନେ
ଆରୋହୀ ସେ ବିଦ୍ୟାଧର ଗଲା ଅନ୍ତର୍ଦ୍ଧାନେ ।
ବ୍ୟାଘ୍ର ବଧ ଦେଖିକରି ସେ ଜାରା ଶବର
ସୂପକାରଙ୍କୁ ପ୍ରଶଂସା କରଇ ଅପାର ।
ସୂପକାର ନୋହୁ ତୁହି କେଉଁ ଦିଗପାଳ
ତୋର ତହୁଁ ବଳବନ୍ତ ନାହିଁ ରବିତଳ ।
ବିଶ୍ୱାସ କଥାଏ ତୋତେ ପଚାରିବି ନିକି
ହେ ବଲ୍ଲଭ ଭୀମସେନ ଠାକୁର ତୁମ୍ଭେକି ।

ଭୀମସେନ ବୋଇଲେ ତୁ ଜାଣିଲୁ କେମନ୍ତେ
ଖେଳାଉଥିଲି ତୁମ୍ଭଙ୍କୁ ତୁମ୍ଭର ବାଳୁତେ ।
ଶତଶିଂହ ପର୍ବତରେ ତୁମ୍ଭର ଆଶ୍ରମ
ପଣ୍ଡୁ ମହାରାଜା କ୍ଷେତ୍ରେ ତୁମ୍ଭର ଜନମ ।
ତୁଳ କୃଷ୍ଣ ଚତୁର୍ଦ୍ଦଶୀ ଦିବା ଚନ୍ଦ୍ରବାର ।
ପଣ୍ଡୁବିଜେ ଅନ୍ଧାରୀରୁ ବଣ୍ଟେ ପାରିଧିର ।
ମୋର ପିତା ଗିରିରଜା ପଣ୍ଡୁସମ ଯୋଧୀ
ଏ ବେନିଜନ ମଇତ୍ର ହେଲେ କାଳବଧି ।
ମୋହର ମାତାର ନାମ ଅଟଇ କୃତ୍ତିକା ।
କୋଇନ୍ତାଙ୍କ ସଙ୍ଗେ ସେହି ବସିଥାଏ ଏକା
ମନ୍ତ୍ର ସୁମରଣା କଲେ ଥାଇ ଶଯ୍ୟାଗତେ
ଏ ବନ ଦେବତା ଆସି ମିଳିଲେ ତୁରିତେ ।
ତକ୍ଷଣେ ରମଣ ଇଚ୍ଛା କଲେ ମାହେଶ୍ୱରୀ
ତେଣୁ ଦିବସ ଜାତ ତୁମ୍ଭେ ଶତଶୃଙ୍ଗ ଗିରି ।
ବାବୁ ହେ ଶ୍ରାବଣ ଶୁକ୍ଳ ପଞ୍ଚମୀ ଦିନର
ପଣ୍ଡୁ ମୃଗୟାକୁ ଯାଇ ଅଛନ୍ତି ବନର ।
ତୁମ୍ଭଙ୍କୁ ଘେନି କୋଇନ୍ତା ଥିଲେ ପରବତେ
ବ୍ୟାଘ୍ରେକ ରଡ଼ିଏ ଦେଲା ନିଶା ଅର୍ଦ୍ଧରାତ୍ରେ
ମୁହିଁ ହୋଇଥିଲି ତେବେ ପାଞ୍ଚ ବରଷର
ମହାଘୋର ଅନ୍ଧକାର ବରଷା ଦିନର ।
ବ୍ୟାଘ୍ରକେ ଗର୍ଜିଲେ ଯେଉଁ ପର୍ବତର ତଳ
ଗର୍ଜ୍ଜନ ଶୁଣି କୋଇନ୍ତା ହୋଇଲେ ବିକଳ ।
ଭୟପାଇ ଥରହର ହୋଇଣ ତୁରିତେ ।
ଉଠି ଯାଇଁ ପଡ଼ିଗଲ ତୁମ୍ଭେ ସେ ପର୍ବତେ ।
ଶତଯୁଣ ଆୟତନ ଯେବଣ ଅଚଳ
ତୁମ୍ଭେ ପଡ଼ିଯାନ୍ତେ ସେହି ପଶିଲା ପାତାଳ ।
ତୁମ୍ଭଙ୍କୁ ପକାଇ ଦେବୀ ପଳାଇଲେ ଡରେ
ଭୟରେ ଉଠିଲେ ଯାଇଁ ବୃକ୍ଷର ଉପରେ ।
ପର୍ବତର ତଳେ ପଡ଼ି କାନ୍ଦନ୍ତେ ତୁମ୍ଭେତ
ତୁମ୍ଭଙ୍କୁ ଦେଖିଣ ବ୍ୟାଘ୍ର ଆସିଲା ତୁରିତ ।
ତୁମ୍ଭ ପାଦ ବାଜନ୍ତେ ସେ ବ୍ୟାଘ୍ରର ମୁର୍ଦ୍ଧନା
ଶତଖଣ୍ଡ ହୋଇ ମୁଣ୍ଡ ହୋଇଗଲା ଚୂନା ।
କାରାଶବର ବୋଇଲା ଭୀମଙ୍କ ଆଗର
ବାଳକ୍ତୁ କାଳେ ମାରିଛ ତୁମ୍ଭେ ବ୍ୟାଘ୍ରବର ।
ନବମମାସ ବୟସେ ବ୍ୟାଘ୍ର କଲ ହତ
ଜାଣିଲି ମୁଁ ଏବେ ତୁମ୍ଭେ ସେ ଭୀମ ନିଶ୍ଚିତ ।
ଭୀମ ଛଡ଼ା ଏ ବ୍ୟାଘ୍ରକୁ କେ ପାରିବ ମାରି
ତେଣୁ ଜାଣିଲି ମୁଁ ତୁମ୍ଭେ ଭୀମ ବୋଲିକରି ।
ଭୀମସେନବୋଇଲେ ତୁ ଅଟୁ ମୋ ସୋଦର
ପାଞ୍ଚମାସ ଅଛି ଗୋପ୍ୟ ପ୍ରକାଶ ନକର ।

କାରାଶବର ବୋଇଲା କୀଚକର ପାଇଁ
ତୁମ୍ଭର ଅଜ୍ଞାତବାସ ହୋଇଅଛି ଭାଇ ।
ମୁଁ ଏହା ଜାଣିଣ ଅଛଇଁ ହେ ବୀର ଆଗହୁଁ
ହୃଦଗତେ ବହିଅଛି ମାତା ମୋତେ କହୁଁ ।
ହେ ଭୀମସେନ ଦେଖିବା ପାଇଁକି ତୁମ୍ଭଙ୍କୁ
ଛଦ୍ମବେଶରେ ଅଇଲି ବିରାଟ ରାଜ୍ୟକୁ ।
ବହୁତ ଅପେକ୍ଷା ଥିଲା ଦେଖିବା ନିମନ୍ତେ
ମାତା ମୋର କହିଥିଲେ ଅତ୍ୟନ୍ତ ଗୁପତେ ।
ବ୍ୟାଘ୍ର ବଧ ନ ହୋଇବ ବାବୁ ଆନବଳେ
ଯେ ମାରିବ ସେ ବ୍ୟାଘ୍ରକୁ ଭୀମ ସେହୁଭଳେ
ନାମ ଧରନ୍ତେ ଜାଣନ୍ତେ ସର୍ବେ ତୁମ୍ଭେ ବୋଲି
ତେଣୁ ବ୍ୟାଘ୍ର ଯୁଦ୍ଧ ପାଇଁ କୀଚକେ ମାଗିଲି
ହୋଇଅଛି ଏବେ ମୁହିଁ ମନୋହର ବନେ
ତୁମ୍ଭଙ୍କୁ ଦେଖିବା ପାଇଁ ଆସେ ଏ ବିଧାନେ
ବିରାଟ ରାଜ୍ୟେ ଆସିବି ମୁହିଁ ପ୍ରତିଦିନେ ।
ତୁମ୍ଭଙ୍କୁ ସାକ୍ଷାତ କରି ତୋଷ ଥିବି ମନେ ।
ଭୀମସେନ ପଚାରିଲେ ସେ ବ୍ୟାଘ୍ର ବାରତା
ଭୀମସେନ କିରାତର ଯହୁଁ ହେଲା କଥା ।
ଯେଉଁ ପୁରୁଷେକ ଥିଲା ବ୍ୟାଘ୍ରର ଗରଭେ
ବ୍ୟାଘ୍ର ବଧ ହୁଅନ୍ତେଣ ଗଲା ସେଇ ଏବେ ।
ଗର୍ଭରୁ ବାହାର ହୋଇ ବେଗେ ସେ ଗମିଲା
ଉର୍ଦ୍ଧ୍ୱମୁଖ ହୋଇଣ ସେ ଆକାଶେ ମିଳିଲା
ଭୀମସେନ ପୁଚ୍ଛିଲେ ସେ କେବଣ ମହାତ୍ମା
ଜାଣୁଯେବେ କହ ସେଥି ପୁରୁଷ ଉତ୍ତମା ।
କାରା ବୋଇଲା ବାବୁ ହେ ଶୁଣ ପୂର୍ବକଥା
କହୁଅଛି ଏବେ ସେହି ପୁରୁଷ ବାରତା ।
କଳୋପନୟନ ବୋଲି ଏକ ସତ୍ୟଯୁଗେ
ଗୋଲକ ବୋଲିଣ ଇନ୍ଦ୍ର ବସଇ ସେ ସ୍ୱର୍ଗେ
ଅଜମିତ ବୋଲି ରଷି ଅଗସ୍ତିଙ୍କ ବଳେ
ମହା ତପୋବନ୍ତ ହେଲେ ସେହୁବହୁ କାଳେ
ଅଜମିତ ବୋଲିକରି ସେ ଆକାଶ ମୁନି
ଜନକ ମୁନିଙ୍କ ସେହୁ ସଙ୍ଗେ ସାହା ଘେନି ।
ଜନକର ପୁତ୍ର ପୁଣି ବାଳକ ବ୍ରାହ୍ମଣ
କୃପାଜଳ ମହାମୁନି ତାହାଙ୍କ ନନ୍ଦନ ।
କୃପାଜଳଙ୍କ ନନ୍ଦନ ବଇଷ୍ଣବ ରଷି
ବନୁବର ବୋଲିକର ଏହାଙ୍କର ରଷି ।
ବନୁବରଙ୍କ ନନ୍ଦନ କଣ୍ୱ ମହାରଷି
ସ୍ଥୂଳ ବୋଲିକରି ପୁତ୍ର ଯାଙ୍କଠୁଁ ପ୍ରକାଶି ।
ସେ ସ୍ଥୂଳରଷି ବୈଶାଖ ତୃତୀୟାର ଦିନ
ଗୁରୁବାରେରୋହିଣୀ ଯେ ଅଟେ ବିଦ୍ୟମାନ ।

ସେହିଦିନ ଋଷି ସ୍ୱର୍ଗ ଭୁବନକୁ ଗଲେ
ଇନ୍ଦ୍ରଦେବ ତାଙ୍କୁ ଦେଖି ଆସନ ନ ଦେଲେ ।
ବହୁବେଳ ଉଭାହେଲେ ନ ଦେଲେ ଆସନ
ପୂଜାଦି କିଛି ନ କଲେ ଯହୁଁ ମଘବାନ ।
ସେ ସ୍ଥାନୁ ଅଇଲେ ମୁନି ପାଇ ବହୁ ଲାଜ
ବୋଇଲେ ଅମରେ ମୁହିଁ ଦେବି ଦେବରାଜ ।
ଉତ୍ତର ଦିଗରେ ଅଛି ବଦ୍ରିକା ଆଶ୍ରମ
ତହିଁ ଘୋର ତପକଲେ କରି ଅନୁକ୍ରମ ।
ତିରିଶି ବର୍ଷେ ଭୁଞ୍ଜନ୍ତି ସେହୁ ଏକବେଳ
ତାହାଙ୍କୁ ହିଁ ତେଜ୍ୟା କରି ପୁଣି କେତେକାଳ ।
ଗୋଟିଏ ତୁଳସୀଦଳ ଚଳ ପିଇ ପାଣି
ଏଗାର ହଜାର ବର୍ଷ ବସିଲେ ସେ ପୁଣି ।
ମଳୟ ପବନ ପୁଣି କଅଁଳିଆ କାୟା ।
ଏଡ଼େବଡ଼ କଷ୍ଟ ତହୁଁ ବସିଲାକ ଦୟା ।
ନାରଦ କହିଲେ ଯାଇ ଶୁଣହେ ମଘବା
ଅମର ସମ୍ପଦ ନାଶ କଲୁ ଆରେ ବାବା ।
ସ୍ଥୂଳଋଷି ଆସିଲେକେ ଏ ସ୍ଥାନେ ସମୟେ
ଆସନ ନ ଦେଲୁ ତାଙ୍କୁ ବସିବାକୁ ରାୟେ ।
ଅମଙ୍ଗ ହୋଇ କର୍ତ୍ତାଙ୍କୁ ସେବେ ସେହି ଋଷି
ଅନାହାରେ ଏକାଦଶ ସସ୍ରବର୍ଷ ବସି ।
କରତା ପ୍ରସନ୍ନ ତାଙ୍କୁ ହେବେ ବେନିଦିନେ
ଅମରପତି ହୋଇବେ ତୋହର ଆସନେ ।
ଦେବ ସନ୍ଦେଶ ଡଗର କହିଲାକ ସବୁ
ଯେମନ୍ତେ ପାର ତ ରକ୍ଷା ଏବେ ହୁଅ ବାବୁ ।
ତାହା ଶୁଣିଣ ସଙ୍କିତ ହେଲେ ମଘବାନ
ହୃଦେ ବିଚାରିଲେ କିସ କରିବି ବିଧାନ ।
ସୁତ ମନ୍ତ୍ରୀଙ୍କୁ ବସାଇ ଆପଣା ନିକଟେ
ବୋଲେ ବଦ୍ରିକାକୁ ଯାଅ ଏକ୍ଷଣି ଆକଟେ ।
ସ୍ଥୂଳମୁନି ତପ କରେ ଅତିଶୟ ତମେ
ଏଗାର ହଜାର ବର୍ଷ ବଦ୍ରିକା ଆଶ୍ରମେ ।
ଧୁରନ୍ଧର ଯୋଗୀ ସେହୁ ତପୋବନ୍ତ ଋଷି
ତପ ଭଗ୍ନ କର ଯାଇ କୂଟକୁ ପ୍ରକାଶି ।
ସ୍ୱାମୀଙ୍କ ବଚନ ଶୁଣି ସେ ନନ୍ଦନ ବେନି
ବୋଲେ ବଡ଼ ଦୁରାପଦ ଅଟେ ସେହି ମୁନି ।
ସ୍ୱାମୀ ହେ ତୁମ୍ଭର ଆଜ୍ଞା ନ କଲେ ମରିବୁ
ଋଷି କୋପ କଲେ ତହିଁ ଭସ୍ମ ହୋଇଯିବୁ ।
ତୁମ୍ଭେମାନେ ମୋ ନନ୍ଦନ ସ୍ୱର୍ଗ ରକ୍ଷାକର
ବନ୍ଧୁତ୍ୱ ପାଇବ ତୁମ୍ଭେ ପିତା କାର୍ଯ୍ୟକର ।
ପିତାଙ୍କ ବଚନ ଶୁଣି ସୁତ ମନ୍ତ୍ରୀ ବେନି
ଚଳିଲେ ସେ ବିଦ୍ୟାଧର ଦଣ୍ଡ ବୀଣାଘେନି ।

ଉତ୍ତର ବିଦ୍ରକାଶ୍ରମେ ଛନ୍ତି ମହାଋଷି
ବାସବ ଦୁଇନନ୍ଦନ ମଞ୍ଚେ ହେଲେ ଆସି ।
ଗାନ୍ଧାର ବାଦ୍ୟ ଉଙ୍କାରି ଗଲେ ବିଦ୍ୟାଧରେ
ଦେଖିଣ ମୋହିତ ହେଲେ ଇନ୍ଦ୍ରଙ୍କ କୁମରେ
ଅନେକ ବିନୟ ରଙ୍ଗେ ମଧୁର ସଙ୍ଗୀତ
ଦେଖି ବିଦ୍ୟାଧର ଦୁଇ ରୂପରେ ମୋହିତ ।
ମଦନର ଅସକତ ସେ ପାଣ୍ଡବ ଶୁଣି
ଅଙ୍ଗେ ବିନ୍ଧିଲା ମଦନ ଶର ଯାଇ ପୁଣି ।
ତୁଣ୍ଡ ବିସ୍ତାରିଣ ଋଷି ଭକ୍ଷନ୍ତି ପବନ
ସୁତ ମନ୍ତ୍ରୀ ଦୁହେଁ ଯାଇ ପଶିଲେ ଗର୍ଭେଣ
ବାତାଚାରୀ ହୋଇଣ ସେ ପଶିଲେ ଉଦରେ
ଋଷିଙ୍କର ପଞ୍ଚତତ୍ତ୍ୱ ବୁଡ଼ାଇଲେ ଖରେ ।
ମୁଖେ ପଶିଣ ସେ ଦୁହେଁ ହେଲେ ପାପଆତ୍ମା
ଦୁଃଖେ ଅର୍ଜିତ ତପକୁ ଭଜିଲେ ମହାତ୍ମା ।
ଶରୀରେ ପଶି ତାଙ୍କର ବୁଦ୍ଧି କଲେ ବାମ
ତପସ୍ୟା ତେଜିଲେ ମୁନି କାମେ ଅସାଷ୍ଟମ
ବନରେ ଭ୍ରମନ୍ତି ମୁନିବର ଭାବ ଘେନି
ସଙ୍ଗମ କଲେ ଧରିଣ ଗୋଟିଏ ମୃଗୁଣୀ ।
ହରିଣ ଗର୍ଭେ ପଡ଼ିଲା ଅହଙ୍କାର ରେତ
ତହିଁରୁ ଜାତ ହୋଇଲା ଏକଗୋଟି ସୁତ ।
ଦକ୍ଷିଣ ପ୍ରାଚୀ କୂଳରେ ପ୍ରତିଷ୍ଠା ମଠେକ
ଶ୍ୱେତପରକାଶକୁ ସେ ଦେଖିଣ ଭ୍ରଷ୍ଟକ ।
ବୋଇଲେ ସ୍ୱର୍ଗ ଭୁବନେ ତୁ ଇନ୍ଦ୍ରେ ହୁଅସି
ଇନ୍ଦ୍ର ଆସନରେ ଯାଇ ସୁଖେ ଥାଅ ବସି ।
ସେ ଇନ୍ଦ୍ର ମୋହର ତପ ନାଶିଲା ଉପାୟେ
ଇନ୍ଦ୍ର ନାଶକରି ସ୍ୱର୍ଗେ ହୁଅ ଦେବରାୟେ ।
ଅଗସ୍ତି ବୋଇଲେ ଶୁଣ ମନୁ ନରପତି
ତ୍ୱଷ୍ଟା ଇନ୍ଦ୍ର ପଦେ ଯାଇ ବସିଲାକ ତଥି ।
ତ୍ୱଷ୍ଟା ଇନ୍ଦ୍ରପଦ ପାଇଁ କରିଲେ ଯେ ଇଚ୍ଛା
ଭୂତ-ମହାଋଷି ବୋଲି ତାହାଙ୍କର ବଞ୍ଛା ।
ଭୂତ ମହାଋଷି ପୁତ୍ର ବହୁ ତପ କଲା
ତୁଳ ଶୁକଳ ଦଶମୀ ଦିନ ସ୍ୱର୍ଗେ ଗଲା ।
ପାର୍ବତୀ ବୋଇଲେ ଆହେ ଶୁଣ ଦେବକାଶୀ
ବିନା ଦୋଷେ ନାଶଗଲା ଏଡ଼େକ ତପସ୍ୱୀ
ପଡ଼ିବା ମାତ୍ରକେ ତାକୁ ଆକର୍ଷିଲା ବ୍ୟାଳ
ବନ୍ଧନୁ ମୂଷଳ ସମ ବହଇ ଗରଳ ।
ନାରଦେ ଡାକି ବୋଇଲେ ତହୁଁ ଶୂଳପତି
ଅତି ବେଗେ ଘେନିଯାଅ ବ୍ରହ୍ମାଙ୍କର କତି ।
ଜୀବନ୍ୟାସ କରିତାକୁ ପ୍ରାଣଦାନ ଦିଅ
ଭଲଠାବେ ନେଇ ଭୂତଋଷିଙ୍କୁ ତୁ ଥୁଅ ।

ଶିବ ଆଜ୍ଞାରେ ନାରଦ ମୃତପିଣ୍ଡ ଘେନି
ପ୍ରବେଶ ହୋଇଲେ ଯହିଁଛନ୍ତି ପଦ୍ମଯୋନି ।
ନାରଦ ବୋଇଲେ ପିତା ଘେନ ନିବେଦନ
ଏ ଭୂତ ଋଷିଙ୍କି ଦେଖିଦିଅ ପ୍ରାଣଦାନ ।
ଅଇଲି ମୁଁ ଈଶ୍ୱରଙ୍କ ଆଜ୍ଞା ଶିରେ ବହି
ଏହାଙ୍କୁ ଉତ୍ତମ ସ୍ଥାନ ଦିଅନ୍ତୁ ଗୋସାଇଁ ।
ତାହା ଶୁଣି ପିତାମାତା ତାଙ୍କୁ ଜିଆଇଲେ
ନାରଦଙ୍କୁ ଚାହିଁ ବ୍ରହ୍ମା ପୁଣି ଆଜ୍ଞା ଦେଲେ ।
ମୋଠାରୁ ଅଳକାପୁରୀ ଅଟେ ଭଲସ୍ଥାନ
ଏହାଙ୍କୁ ବସାଅ ନେଇ ଇନ୍ଦ୍ର ସିଂହାସନ ।
ମହାଋଷିଙ୍କୁ ଘେନିଣ ଚଳିଲେ ନାରଦେ
ନେଇ ବସାଇଲେ ତାଙ୍କୁ ଇନ୍ଦ୍ରଙ୍କର ପାଦେ
ବୋଇଲେ ଅଗସ୍ତି ପୁଣି ଶୁଣ ନରପତି
ଇନ୍ଦ୍ର ପଦରେ ବସିଲେ ସ୍ଥୂଳ ଋଷିନାତି ।
ସ୍ଥୂଳଋଷି ସଙ୍ଗେ ଇନ୍ଦ୍ର ବିବାଦ କରିଲେ
ବଜ୍ର ଘେନି ଭୂତ ମହାଋଷିଙ୍କି ତେଜିଲେ ।
ରାଜ୍ୟ ଧନ ଏଡ଼େ ଇନ୍ଦ୍ର ଧର୍ମପଦ ଛାଡ଼ି
ସେ ମହାତପିଙ୍କି ଯାଇ ବସିଲା ସେ ମାଡ଼ି ।
ନାରଦ ଯାଇଣ ଶୁଣି କହିଲେ ତ୍ୱଷ୍ଟାଙ୍କୁ
ଇନ୍ଦ୍ର ବଧକଲା ଦେବ ତୁମ୍ଭର ପୁତ୍ରଙ୍କୁ ।
ପୁତ୍ର ବଧ ଶୁଣି କୋପ କଲେ ତପୋନିଷ୍ଠ
ସତ୍ୟ ଛାଡ଼ି ଇନ୍ଦ୍ର କଲା ପ୍ରକୃତିକୁ ନଷ୍ଟ ।
କରରେ ଦଣ୍ଡ ଘେନିଣ ଧାଇଁ ମୁନିରାଗେ
ପୁଣି ନାରଦ କହିଲେ ଆସି ଇନ୍ଦ୍ର ଆଗେ ।
ତ୍ୱଷ୍ଟା ଋଷି ଆସୁଛନ୍ତି ମହାକୋପକରି
ତୁମ୍ଭର ଶିରୀ ସମ୍ପଦ ଦେବେ ସେହୁ ସାରି ।
ହେ ମହାତ୍ମା ତପୀ ସଙ୍ଗେ ହୋଇଲେ ବିବାଦୀ
କିଞ୍ଚିତ ଦୋଷରେ ନାଶ ଗଲା ଜମ୍ଭଭେଦୀ ।
ସ୍ଥୂଳଋଷିଙ୍କି ନ ଦେଲ ଆସ୍ଥାନରେ ବସି
କିଞ୍ଚିତ ଦୋଷେ ସମ୍ପଦ ହୋଇଯିବ ଧ୍ୱଂସି ।
ନାରଦ ବଚନେ ଭୟ କଲେ ମଘବାନ୍
ସକଳ ସମ୍ପଦ ନାଶି ତେଜିଲେ ଜୀବନ ।
ଶରୀରୁ କାଢ଼ିଲେ ନିଜ ପଞ୍ଚଭୂତ ଆତ୍ମା ।
ପାପ ଆତ୍ମାକୁ ଘେନିଣ ବସିଲେ ମହାତ୍ମା ।
ପଞ୍ଚଆତ୍ମା ଥୋଇଲେ ଯେ ପଞ୍ଚଠାବ କରି
ପ୍ରଥମ ଆତ୍ମା ଥୋଇଲେ ଧର୍ମ ଅଙ୍ଗେ ଭରି ।
ଦ୍ୱିତୀୟ ଆତ୍ମାକୁ ନେଇ ପବନରେ ଥୋଇ
ଆପଣାକୁ ଆତ୍ମାଶୂନ୍ୟ କରିଣ ରୁହାଇ ।
ଅଶ୍ୱିନୀଙ୍କୁ ଏକ ଆତ୍ମା ସମର୍ପଣ କଲେ
କୁମାରେ ଆତ୍ମାଏ ନେଇ ଗୋପନ କରିଲେ ।
ପାପଆତ୍ମାକୁ ଘେନିଣ ଇନ୍ଦ୍ରଛନ୍ତି ବସି
କୋପାନଳ କୋପେ ତ୍ୱଷ୍ଟା ପ୍ରବେଶିଲେ ଆସି
ତ୍ୱଷ୍ଟା ବୋଇଲେ ଇନ୍ଦ୍ରତୁ ନାଶିଲୁ ନନ୍ଦନ
ଯାଅରେ ବାସବ ତୁହି ହୋଇଣ ବହନ ।
ବ୍ରହ୍ମବେତ୍ତାଙ୍କର ଶାପ ତକ୍ଷଣେ ପଡ଼ିଲା
ତ୍ୱଷ୍ଟାଋଷିଙ୍କର କୋପେ ଇନ୍ଦ୍ର ଭସ୍ମ ହେଲା
ଶୁଣ ବୈବସ୍ୱତ ଏ ଯେ ଋଷିଙ୍କ ବିବାଦେ
ଅମରାଧିନାଥ ଏବେ ପଡ଼ିଲା ପ୍ରମାଦେ ।
ଧର୍ମଙ୍କ ନିକଟେ ଯେଉଁ ଆତ୍ମା ସ୍ଥାପିଥିଲେ
ଦ୍ୱାପର ଯୁଗରେ ଧର୍ମନନ୍ଦନ ଜନ୍ମିଲେ ।
ପବନ ଥୋଇଣଥିଲେ ହେ ଦ୍ୱିତୀୟ ଆତ୍ମା
ଦ୍ୱାପରେ ଜନ୍ମିଲେ ହୋଇ ଭୀମ ମହାତମା
ଇନ୍ଦ୍ର ଯେଉଁ ଆତ୍ମାନେଇଶୂନ୍ୟେଥିଲେଥୋଇ
ସର୍ବ ସୁଲକ୍ଷଣେ ଯହୁଁ ଅର୍ଜୁନ ଜନ୍ମଇ ।
ଅଶ୍ୱିନୀଙ୍କଠାରେ ଯେଉଁ ଆତ୍ମା ଥୋଇଥିଲେ
ଅଶ୍ୱିନୀଙ୍କ ବୀର୍ଯ୍ୟରେ ସେ ନକୁଳ ଜନ୍ମିଲେ
କୁମାରଙ୍କଠାରେ ଯେଉଁ ଆତ୍ମା ଥିଲେ ସ୍ଥିତ
ସେହି ହେଲେ ସହଦେବ ମାଦ୍ରୀଦେବୀ ସୁତ ।
ବ୍ରହ୍ମବେତ୍ତା ମହାଋଷି କହିଲେ ପ୍ରସ୍ତାବେ
ପଞ୍ଚଆତ୍ମା ଘେନି ଜାତ ହୋଇଲେ ପାଣ୍ଡବେ
ବୈବସ୍ୱତ ମନୁ ପୁଚ୍ଛାକଲେ ଅଗସ୍ତିଙ୍କି
ବ୍ୟାଘ୍ର କିଏ ସେ ହୋଇଲା କୁହ ମୁନିଏ କି
ଅଗସ୍ତି ବୋଇଲେ ସେହି ବହୁ ଶାସ୍ତ୍ର କଥା
ସିନ୍ଧୁ ବାଲି ଗଣିବାକୁ କେହୁ ସାମରଥା ।
କହନ୍ତି ଅଗସ୍ତି ଶୁଣ ବିଲଙ୍କାର ରାଜ
ସ୍ଥୂଳମୁନି ଗର୍ଭେ ଥିଲେ ବାସବ ଆତ୍ମଜ ।
ଅନେକ ବାତୁଳ ସେହି କରିଲେ ଯତିଙ୍କି
ଅବିକୃତ ଶୃଙ୍ଗାର ସେ କଲେ ମୃଗୁଣୀକି ।
ଯେତେ ସ୍ତ୍ରୀ ମୃଗୁଣୀ ସେହି ବନେପାରେଧରି
ଅବିରତ ଶୃଙ୍ଗାର ସେ କରେ ବନେ ଫେରି
ସିଂହମାସ ଶୁକ୍ଳପକ୍ଷ ଚତୁର୍ଥୀର ଦିନ
ସ୍ଥୂଳଋଷି ପେଶିଲେ ସେ ଦଣ୍ଡକ ଅରଣ୍ୟ ।
ହରିରୁଦ୍ର ପର୍ବତେ ସେ ନିଦ୍ରାଗଲେ ଯତି
ଗର୍ଭରୁ ବାହାର ହେଲେ ବାସବ ସନ୍ତତି ।
ବ୍ରାହ୍ମଣ ଘୋଟିଲା ତହୁଁ ମୁନି ଗର୍ଭୁଯାନ୍ତେ
କାହିଁ ଯାଉଛୁ ରେ ତୁମ୍ଭେ ନାଶକରି ମୋତେ
କଷ୍ଟେ ଅର୍ଜିବାର ତପ ନାଶକଲେ ମୋର
ହୁଅ ବେନିଭାଇ ଯାଇ ଶାର୍ଦ୍ଦୂଳ କୁଞ୍ଜର ।
କରପତ୍ର ଯୋଡ଼ି ତହୁଁ ବୋଇଲେ କୁମରେ
ମୋକ୍ଷ କେମନ୍ତେ ଲଭିବୁ ଆଜ୍ଞାଦିଅ ଥରେ ।

ମୁନି ବୋଇଲେ ତାହାଙ୍କୁ ମନର ବିରାଗେ
ତୁମ୍ଭେମାନେ ମୋକ୍ଷହେବ ଚଉବିଂଶ ଯୁଗେ
ହଟକଳଶ ବୋଲିଣ ଯେ ଦ୍ୱାପର ଯୁଗ
ଜମ୍ଭଭେଦି ନାମେ ଇନ୍ଦ୍ର ବସିବ ଯେ ସ୍ୱର୍ଗ ।
ପଦ୍ମଯୋନି ନାମେ ବ୍ରହ୍ମା ଜୀବ ନାମେ ଯମ
ଯୁଗାନ୍ତକ ନାମେ କାଳ ତପ ନାମେ ଧର୍ମ ।
ଅନନ୍ତ ନାମେ ଆଦିତ୍ୟ କାମ ନାମେ ଶଶୀ
ଏହି ଦୁହେଁ ଯେଉଁକାଳେ ପ୍ରକାଶିବେ ଆସି ।
ଜୀବିତ ନାମରେ ମନ୍ତ୍ରୀ ଶ୍ୱାସନାମେ ବହ୍ନି
ଶୋଭିତ ନାମେ ପୃଥିବୀ ଭୁବନାମେ ଧ୍ୱନି ।
ଚୌଷଠି ସହସ୍ର ବର୍ଷ ଭୋଗାନ୍ତେ ଦ୍ୱାପର
ବୈବସ୍ୱତ ମନୁଙ୍କର ଗଣନା ପ୍ରକାର ।
ଯୁଧିଷ୍ଠିର ନାମେ ଦେବ ଧର୍ମଙ୍କ ନନ୍ଦନ
ମହୀଭାରା ଉଶ୍ୱାସିବେ ମାରି ଦୁଷ୍ଟଜନ ।
ସେ ଦ୍ୱାପର ଅନ୍ତେ ସୁକୁମାର ସମ୍ବତ୍ସରେ
ଯୁଧିଷ୍ଠି ଅଜ୍ଞାତବାସେ ଥିବେ ବିରାଟରେ ।
ଜାରା ନାମରେ ଶବର ଅଙ୍ଗଦ ଯେ ପୂର୍ବେ
ବିରାଟ ନିକଟେ ଗଜ ଧରି ନେବ ଯେବେ ।
ଗଜକୁ ବ୍ୟାଘ୍ର ଧରିଣ କରିଲେ ନିହତ
ଭୀମ ମାଲଯୁଦ୍ଧେ ବ୍ୟାଘ୍ର କରିବ ନିପାତ ।
ପାଣ୍ଡବ ସୁନ୍ଦର ଯେଉଁ ଷୋଡ଼ଶ ଯୁଗତେ
ଭୀମସେନ ନାଶିବେ ଯେ ଯୁଧିଷ୍ଠି ଅଗ୍ରତେ ।
ପୂର୍ବର ଚରିତ ଏହୁ ଅଟେ ଆଦି କଥା
ଶୁଣିଲ ହେ ମହାରାଜ ବ୍ୟାଘ୍ରର ବାରତା ।
ବାସବ ନନ୍ଦନ ଦୁହେଁ ଶାପ ପାଇଥିଲେ
ମୋକ୍ଷ ହୋଇଣ ସେ ପୁଣି ସ୍ୱର୍ଗକୁ ଗମିଲେ ।
ମୁନି ବୋଇଲେକ ସେହି ବ୍ୟାଘ୍ର ବଧ ଅନ୍ତେ
ବିରାଟ ସମରାଟ କି ହୋଇଲେ ତୁରିତେ ।
କିରାତକୁ ଡାକେ ଆସ ବୋଲି ରାୟେ ମତ୍ସ୍ୟ
ସେ ବ୍ୟାଘ୍ରକୁ ସୂପକାର ମାଇଲା ପ୍ରତ୍ୟକ୍ଷ ।
ସମସ୍ତ ବାରତା ଜାରା କହିଲେ ଭୀମକୁ
ଶୁଣି ଭୀମ ପ୍ରଣିପାତ ହୋଇଲା ତାହାକୁ ।
ଜାରାଶବର ବୋଇଲେ ଏ ନୁହେଁ ବିହିତ
ତୁମ୍ଭେମୋର ତାତ ମୁହିଁ ଅଟେ ତୁମ୍ଭେ ସୁତ
ଭୀମସେନ ବୋଇଲେ ମୁଁ ଲୋଡୁଥିଲି ଏହା
ଅଜ୍ଞାତ ପଣ୍ଡିତ ତୁହି ଅଟୁ ପୁଣ୍ୟଦେହା ।
ଜାରା ବୋଲେ ସତ୍ୟଯୁଗେ କେତୁଯେ ମଙ୍ଗଳ
ତ୍ରେତୟାରେ ବାଳି ସୁଗ୍ରୀ ଅଟେ ମହାମଲ୍ଲ ।
ଦ୍ୱାପର ଯୁଗରେ ତୁମ୍ଭେ ଭୀମ ଦୁଃଶାସନ
ବାଳୀ ସୁଗ୍ରୀ ଅବତାରେ ମୁଁ ତୁମ୍ଭ ନନ୍ଦନ ।
ଶତଶୃଙ୍ଗେ ମୋର ତାତ ଖଟନ୍ତି ପଣ୍ଡାଙ୍କୁ
ମୁହିଁ ଏବେ ଭକ୍ତିଭାବେ ଖଟିଲି ତୁମ୍ଭଙ୍କୁ ।
ଭୀମସେନ ନାମ ବହି ଯେଉଁ ସୂପକାର
ଦେଖିବାକୁ ବ୍ରାହ୍ମଣୀ ସେ ନମେ ନମସ୍କାର ।
ଭୀମସେନକୁ କିରାତ କହେ ଯେଉଁ ବାଣୀ
ତହିଁ ଭୀମ ତୁଷ୍ଟ ହୋଇ ଚିନ୍ତେ ଚକ୍ରପାଣି
ବ୍ୟାଘ୍ର ବଧ ଦେଖି ରାଜା ଅତି ତୁଷ୍ଟହେଲେ
ଜଗତୀରୁ ଆସି ପୁଣି ଆସ୍ଥାନେ ବସିଲେ ।
ଆସ ସୂପକାର ତୋର ଏପରି ମହିମା
ଏ ମର୍ତ୍ତ୍ୟେ ରଖାଇଲୁ ତୁ ମୋହର ଗାରିମା ।
ତୁହି ରକ୍ଷା କଲୁ ଏବେ ତୋର ରାଜପାତ୍ର
ଭୟ କରାଇଲେ କିମ୍ପା ଆମ୍ଭଙ୍କୁ ଏମନ୍ତ ।
ଆପଣା ଶରୀରେ ଯେତେ ଅଳଙ୍କାର ଥିଲା
ବଲ୍ଲଭ ଶରୀରରେ ସବୁ ମଣ୍ଡଣି କରିଲା ।
ବହୁତ ବସନ ଘେନି ବୋଲେ ମତ୍ସ୍ୟନାଥ
ବଲ୍ଲଭଙ୍କୁ ପାତ୍ରପଣେ ଶାଢ଼ୀ ଦିଅ କୋନ୍ତ ।
ଆପଣା ଶ୍ରୀହସ୍ତେ କୋନ୍ତ ଶାଢ଼ୀ ନେଇ କରି
ବୋଇଲେ ତୁ ରୋଷଘରେ ହେଲୁ ଅଧିକାରୀ
ତହୁଁ ପ୍ରଶଂସା କରନ୍ତି ତାକୁ ରାଜ୍ୟଲୋକେ
ସାଧୁ ସାଧୁ ସୂପକାର ମହିମା ତ୍ରୈଲୋକ୍ୟେ
ରାଜା ବୋଇଲେ ତୋପରି ଶତେଜନଥିଲେ
ଜିଣି ପାରନ୍ତି ପୃଥିବୀ ମୁହିଁ ଅବହେଳେ ।
ମନେ ସାନନ୍ଦ ହୋଇଣ ବୀର ବୃକୋଦର
ଗୁପତେ ରହିଲା ଯାଇଁ ରୋଷାଇର ଘର ।
ମୁହିଁ କବିପଣ କଲି ଶାରଳା ପ୍ରସନ୍ନେ
ମୋତେତେ ଅସଂଖ୍ୟ କଥା ଅଟଇ ଲେଖନେ
ଅଥବା ଦେଖାଇବି ମୁଁ ଠାବ ଠାବ କରି
ସଂସାର ବୋଧିବାପାଇଁ କଉତୁକ କରି ।
କିଏ ସେ ତଦନ୍ତ କରି ପାରିବ କଥନ
ଅସଂଖ୍ୟ ପୁଣ୍ୟର କଥା ଭାରତ ବିଧାନ ।
ଅଭୟୀ ଅନ୍ନପୂର୍ଣ୍ଣା ଗୋ ଝଙ୍କଡ଼ ନିବାସୀ
ଅସଂଖ୍ୟ ଅଗୋଚର ଗୋମୋତେବରଦେସି
ସର୍ବମଙ୍ଗଳା ମାଙ୍ଗଲ୍ୟ ଯାର ନାମ ଗୋଟି
ଦଧି ସମୁଦ୍ର ଭିତରୁ ଶ୍ୱେତପଦ୍ମ ଫୁଟି ।
ନିର୍ମଳ ସାଯୁଜ୍ୟ ମୋକ୍ଷ ଯାହାର ପ୍ରକୃତି
ବସନ୍ତ ମାସରେ ଯେହ୍ନେ ମଳୟ ବହନ୍ତି ।
ତୁହି ଗୋ ଜନନୀ ମାଗୋ ସର୍ବସିଦ୍ଧି ନିଧି
ତୋର ପ୍ରସନ୍ନେ ତରିବି ଏ ଭବ ବାରିଧି ।

ଜମ୍ବୁଦ୍ୱୀପ ଭ୍ରତଖଣ୍ଡେ ସିଦ୍ଧ ଅନ୍ନପୂର୍ଣ୍ଣା
ଦୈତ୍ୟବଳ ନାଶୁମାଗୋ ଘେନିଯୋଗ୍ନୀସେନ ।
ନୟନେନଦେଖେମାଗୋଦେଖେଶାସ୍ତ୍ରଯୋଗେ
ବିରାଟ ପର୍ବ ଲେଖିବି ତୁମ୍ଭ ଅନୁରାଗେ ।
ସିଦ୍ଧ ଶାରଳା ପ୍ରସନ୍ନେ ମୋତେ ବରଦିଅ
କଉତୁକ ଲୀଳାରେ ଗୋ ସଂସାର ଖେଳାଅ
ପ୍ରସନ୍ନରେ ବର ଦେଉ ଦୁର୍ଗତିରୁ ତାରୁ
ନିରେଖଙ୍କୁ ପ୍ରସନ୍ନରେ ବେଗେ ରକ୍ଷାକରୁ ।
କଳିକାଳ ଧ୍ୱଂସିନୀ ଗୋ ଆନନ୍ଦ ନନ୍ଦିନୀ
ସର୍ବଦା ଚରଣେ ତୋର ମୋହର ଦଇନୀ ।
ମୋ କଣ୍ଠେ ବିଜୟ କର ଦେବୀ ସରସ୍ୱତୀ
ସୂର୍ଯ୍ୟନନ୍ଦନକୁ ମୋର ନ ରହିବ ଭୀତି ।
ଜନ୍ମେ ଜନ୍ମେ ମୂରୁଖ ମୁଁ ଅଟଇ ଅଜ୍ଞାନ
ଶାରଳା ଦାସର ତୁମ୍ଭ ପାଦପଦ୍ମେ ଧ୍ୟାନ ।

—❀—

## ଭୀମଙ୍କ ସହିତ ପ୍ରଦେଶୀ ମାଲ୍ଲର ଯୁଦ୍ଧ ଓ ତାହାର ମୃତ୍ୟୁ

ବଦନ୍ତି ଅଗସ୍ତି ଶୁଣ ବୈବସ୍ୱତ ମନୁ
ବ୍ୟାଘ୍ର ବଧ କଲା ସେହି ପବନର ସୂନୁ ।
କେହି ନ ଜାଣିଲେ ସେହି ରହିଲେ ଗୋପନେ
ଶାଡ଼ୀପାଇ ଗଲେ ଭୀମ ରୋଷାଇ ଭୁବନେ ।
ମନୁ ରାଜା ପୁଛାକଲେ ହେଲା କେଉଁ ଯୁଦ୍ଧ
ଅଗସ୍ତି ବୋଇଲେ ପୁଣି ମାଲ କଲା ବଧ ।
କେଉଁପୁର ମାଲ ସେହୁ କେଉଁପୁରେ ଥିଲା
ବଲ୍ଲଭ ସହିତ ତାର କାହିଁ ଭେଟ ହେଲା ।
ଅଗସ୍ତି ବୋଇଲେ ସତ୍ୟଯୁଗ ରାଜା ବଳୀ
ଖେଳେ ମାଲଙ୍କୁ ଘେନିଣ ସାଧେ ମେରୁସ୍ଥଳୀ ।
ବାମନ ରୂପରେ ପ୍ରଭୁ ହୋଇ ବିଶ୍ୱମୂର୍ତ୍ତି
ଚାପନ୍ତେ ସେ ବଳୀ କଲା ପାତାଳକୁ ଗତି ।
ମଲ୍ଲେ ଆସିଣ ଧଇଲେ ବାମନଙ୍କ ଜାନୁ
ଚରଣ ଉପାଡ଼ିବାକୁ ଇଚ୍ଛିଲେ କୃଶାନୁ ।
ରୋମ ମୂଳକୁ ତାଚ୍ଛଲ୍ୟ କରିଲେ ବାମନେ
ଅନେକ ଦୂରେ ପଡ଼ିଲେ ବଳୀ ମାଲମାନେ ।
ବୀରଚୂଡ଼ଙ୍କ ନଗର ପଶ୍ଚିମର କୋଣେ
ବଜ୍ରବାହୁ ପଡ଼େ ନବସହସ୍ର ଯୋଜନେ ।
ପଞ୍ଚସହସ୍ର ଯୋଜନ ଯେ କଟକ ସ୍ଥଳୀ
ସେ ମାଲ ପଡ଼ିଲା ପାଞ୍ଚଯୋଜନେ ଉଗୁଳି ।
ମନ୍ଦର ପର୍ବତପ୍ରାୟ ପଡ଼ିଲା ଲେଉଟି
ବିଂଶଯୂଣ ଭୂମି ଚୂନା ପଡ଼ନ୍ତେ ମାଲଟି ।
ସେହି ମାଲର ନନ୍ଦନ ମହାବାହୁ ବୀରା
ମେଦିନୀ ନ ସହଇ ସେ ମାଲଙ୍କର ଭାରା ।
ଆମାୟା ମାଲକୁ ନାଶ କରେ ହନୁମନ୍ତ
ରଣକେଶରୀ ବୋଲିଣ ତାର ଅଟେ ସୁତ
ୟା ସୁତ ପୃଥ୍ୱୀକେଶରୀ ନାମେ ହେଲା ମାଲ
ହରିଣ କେଶରୀ ନାମେ ଏହାର ଦୁଲାଳ ।
ହରିଣ କେଶରୀ ପୁତ୍ର ମେରୁକେଶୀ ବୀର
ଏହାଙ୍କର ପ୍ରହାରରେ ଖଣ୍ଡଗିରି ଚୂର ।
ମେରୁକେଶରୀଙ୍କ ପୁତ୍ର ପ୍ରଚଣ୍ଡ କେଶରୀ
ପୃଥିବୀ ମାଲ ଜିଣିଲା ସମସ୍ତଙ୍କୁ ଧରି ।
ପ୍ରଚଣ୍ଡକେଶରୀ ପୁତ୍ର ଯେ ଦଶକେଶରୀ
ଗଗନକେଶରୀ ନାମେ ପୁତ୍ର ହେଲା ତାରି ।
ତାହାର ପୁତ୍ରର ନାମ ଆକାଶ କେଶରୀ
ଆକାଶ କେଶରୀ ପୁତ୍ର ପାତାଳ କେଶରୀ ।
ଚନ୍ଦ୍ର କେଶରୀ ନାମରେ ହେଲା ୟା କୁମର
ବଳଦର୍ପେ ସମ କେହି ନ ହୋଇଲେ ବୀର
ଏହାଙ୍କ ନନ୍ଦନ ନାମ ସୁବାହୁ କେଶରୀ
ଗଜଦର୍ପେ କେଶରୀ ଯେ ଏହାଙ୍କୁ ଫୁକାରୀ
ପ୍ରତାପୀ ମାଲ ହୋଇଲା ଜମ୍ବୁଦ୍ୱୀପ ମଧ୍ୟେ
ବହୁ ସୈନ୍ୟବଳ ମାରେ ଏହୁ ରଣଯୁଦ୍ଧେ ।
କନ୍ୟାମାସ କୃଷ୍ଣପକ୍ଷ ଅଷ୍ଟମୀର ତିଥି
ଭୃଗୁବାସରେ ଆରଦ୍ରା ନକ୍ଷତ୍ର ଯୁକତି ।
ସେ ଦିନ ସେ ମାଲ ଆସେ କରଦଣ୍ଡ ଧରି
ଅୟୁବ୍ରତେ ମାଲସଙ୍ଗେ ଆଣିଲା ତାହାରି ।
ପ୍ରତିଜ୍ଞା ଆରମ୍ଭ ଆଜ୍ଞା ତାହାର ବୀରଧୂ
ଏକା ଦର୍ପରେ ମନ୍ଥିଲା ସେହୁ ସାତସିନ୍ଧୁ ।
ମନ୍ଦର ଉପାଡ଼ିଣ ସେ ଘେନେ ବାମହସ୍ତେ
ହେମବନ୍ତ ପର୍ବତକୁ ଧରିପାରେ ମାତ୍ରେ ।
ବୀରଦାଉଣ୍ଡି ମର୍ଦ୍ଦଳ ବାଜେ ବିଜିଘୋଷ
ବୀର କାହାଳୀ ନେତ ଯେ ଉଡ଼େ ଚଉପାଶ
ନିଷ୍କଳଙ୍କ ତମ୍ଭା ପ୍ରାୟ ମାଲ ବେନି ଆଖି
ମତ୍ସ୍ୟଦେଶ ଲୋକମାନେ ଭୟ କଲେ ଦେଖି
ଅଚଳ ମହାଶୂନ୍ୟେକ ପ୍ରାୟେ ଆସେ ଉଠି
ତ୍ରିକୂଟ ପର୍ବତ ପ୍ରାୟ ମାଲ ଦୁଇ ମୁଷ୍ଟି ।
ଶୁଦ୍ଧ ତମ୍ଭା ପରାୟେକ ମାଲ ତେଜ ତନୁ
ଦଶନଖ ବେନିଭୁଜ ଲମ୍ବିତ ଆଜାନୁ ।
କେଶୀ କଂସ ପରାୟେକ ମାଲ ବେନି ଭୁଜ
କାଳ ଅନଳ ଜିଣି ତା ବିରାଜଇ ତେଜ ।

ଦର୍ପେ ମାଲ ପ୍ରବେଶିଲା ବିରାଟର ରାଜ୍ୟ
ଦେଖି ସର୍ବଜନମାନେ ହୋଇଲେ ଆଶ୍ଚର୍ଯ୍ୟ
ଯେହ୍ନେ ମହାମତ୍ତ ଗଜ ମାଲ କରେ ଦର୍ପ
ଭୟେ ଦୁଇଭାଗହେଲେକେହିହେଲେ ଗୋପ୍ୟ
ଆସ୍ଥାନର ତଳେ ମାଲ ହୋଇଲା ପ୍ରବେଶ
ବାହାସ୍ଫୋଟ ମାରିଣ ସେହାମ୍ଫୋଳେ ଆକାଶ
ଭୂମି ଆବୋରିଣ ସେ କଲା ଠିଆଠାଣି ।
ବୋଲେ ମୁହିଁଏକା ଜଣେ ଚୌରାଶୀ ବିନ୍ଧାଣି ।
ଅଧରପୃଷ୍ଟ କରି ସେ ଚାପେ ଦନ୍ତପାଟି
ଭୟେ ଆସ୍ଥାନାର ଲୋକ ପଳାଇଲେ ଉଠି ।
ଆରେ ରେ କହି ହାମ୍ଫୋଡ଼ିସେହୁ ବେନିବାହୁ
ଅତିଚାର ବକ୍ରେ କିବା ଚଳିଲାକ ରାହୁ ।
ବିରାଟ ପୁଛିଲେ ତୁମ୍ଭେ କେବଣ ବିଦେଶୀ
ମାଲ ବୋଇଲା ମୁଁ ଅଟେ ଆଦି ବଳୀବଂଶୀ ।
ବସିଣ ବାରତା ତହୁଁ କହିଲାକ ସବୁ
ବିରାଟ ବୋଇଲେ ଏଥି ରହିବୁ ନା ଯିବୁ
ମାଲ ବୋଲେ ମୁଁ ପ୍ରଦେଶି ଅଟଇ ଏକଲା
ଶତେସିଂହ ପରାକ୍ରମ ଅଟେ ତୁମ୍ଭ ଶଳା
ପୃଥିବୀ ମଧ୍ୟରେ ବହୁ ମାଲ କଲି ବଧ
ଏବେ ମୁଁ କୀଚକ ସଙ୍ଗେ କରିବଇଁ ଯୁଦ୍ଧ ।
ଆଣ କୀଚକକୁ ଯୁଦ୍ଧ କରୁ ମୋର ତୁଲେ
ଶସ୍ତ୍ର ଛତ୍ର ଧରାଇବି ମୋତେ ସେ ଜିଣିଲେ ।
ମୁହିଁ ଯେବେଟି ତାହାକୁ ପାରିବଇଁ ମାରି
ଆଉ ଜମ୍ବୁଦ୍ୱୀପେ କେହି ନ ହୋଇବେ ସରି ।
ଭୂମି ଛୁଇଁଣ ଶ୍ରବଣ ଛୁଇଁ ମତ୍ସ୍ୟପତି
ବୋଇଲେ ତୋତୁଲେ ମୋରଅଛିଯେଉଁ ନୀତି ।
କୀଚକର ବାହୁବଳେ ମୋର ରାଜ୍ୟଭାର
ତାରଭୟେ ପଳାଇଣ ତ୍ରିଗର୍ତ୍ତ ଈଶ୍ୱର
ଦୁହାଁଳ ଯେ ଦୁଇପଦ୍ମ ବାରଲକ୍ଷ ଗୋରୁ
ଏତେ ଭୋଗ କରଇ ମୁଁ ତାର ପ୍ରସାଦରୁ ।
ତାହାକୁ ପେଷିବି କିମ୍ପା ଏଡ଼େକ ପ୍ରମାଦେ
ତୋ ସଙ୍ଗେ ସମ୍ପର୍କ ନାହିଁ ସମ୍ପଦ ବିପଦେ
ବିରାଟ ବୋଇଲେ ଯାଅ ତୁ ଅନ୍ୟ ରାଜ୍ୟକୁ
ମୋର ବଳେ ପେଷ ତୁମ୍ଭେ ସେହି କୀଚକକୁ
ମାଲ ବୋଇଲେ କୀଚକ ଯୁଦ୍ଧହିଁ ନ କଲେ
ଏ ତୁମ୍ଭର ରାଜ୍ୟରୁ ମୁଁ ନ ଯିବଇଁ ଭଲେ ।
ଦେଶ ଉଜାଡ଼ି ମାରିବି ଯେତେ ଜୀବଜନ୍ତୁ
ସମସ୍ତଙ୍କୁ ମାରିବି ମୁଁ ନ ଥୋଇ କାହାକୁ ।
ଅଶ୍ୱଶାଳ ଗଜଶାଳ ନଗ୍ର ଆଦିକରି
ସର୍ବ ଭାଙ୍ଗି ଲୁଟାଇବି ଯେହ୍ନେ ବନଗିରି ।

କ୍ଷଣ କ୍ଷଣ କୋପକରେ କଥା କହୁଁ କହୁଁ
କୋନ୍ତେ ବୋଇଲେ ବିରାଟ ଶୁଣଏବେତହୁଁ
ରାଜ୍ୟକରୁଥିଲେ ହୁଏ ନାନାଦି କୌତୁକ
ଅରିଷ୍ଟ ପ୍ରମାଦ ଆଦି ପଡ଼ିବ ଅନେକ ।
ଏ ମାଲ ଯଦ୍ୟପି ଏଥୁ ବାହୁଡ଼ିଣ ଯିବେ ।
ତ୍ରିଗର୍ତ୍ତକୁ ଘେନି ସେହୁ ଅବଶ୍ୟ ବାହିବ ।
ଏବେ ଭୟ କଲେ ସେହୁ ନିଶ୍ଚେ ଯିବ ମାରି
ଯହିଁପାଇଁ ଭୟ କର କରିବି ସେପରି ।
ଶତସିଂହ ପରାକ୍ରମୀ ଯେଉଁ ସେନାପତି
ମାଲ ଛାରକୁ କିମ୍ପାଇଁ ତାର ଏଡ଼େ ଭୀତି ।
ବିରାଟ ବୋଇଲେତୁମ୍ଭେଶୁଣଆହେ କୋନ୍ତେ
କିଛିହିଁ ଲାଜ ନୋହିବ ଏ ମାଲ ଯାଆନ୍ତେ ।
କୋନ୍ତେ ବୋଇଲେ ଆସିଛୁ ତୁହି ଯୁଦ୍ଧ କରି
ବିଚାର କରିବା ତାହା ରହ ଦିନ ଚାରି ।
ରାଜାଙ୍କୁ ବୋଇଲେ ଆଜ୍ଞାକର ବଲ୍ଲଭକୁ
ଭୋଜନ ଦିଆଅ ତୁମ୍ଭେ ପ୍ରଦେଶି ମାଲକୁ ।
ଦିନ ଚାରି ପାଞ୍ଚ ଏଥି ବିଶ୍ରାମ ତୁ କର
ବିଚାର କରିଣ ତୋତେ ଦ୍ୟାଇବା ସମର ।
ବିରାଟ ଆଜ୍ଞା କରିଲେ ରାଇଣ ଦୂତଙ୍କୁ
ଏ ମାଲକୁ ଘେନି ଯାଅ ବଲ୍ଲଭ ପାଖକୁ ।
ବୋଇଲେ ଅଯୁତେ ମାଲଛନ୍ତି ଏହାତୁଲେ
ଏହାଙ୍କ ଯୋଗାଡ଼ ତୁମ୍ଭେ ଦେବ ଅତିଭଲେ
ଯାଇ ମାଲ ରାଜାଙ୍କର ଆଜ୍ଞା ଶିରେ ଘେନି
ଚାରେ ଯାଇଁ ସୂପକାରେ କରିଲେ ଦଇନି ।
ହେ ଗୋସାଇଁ ସୂପକାରେ ହେଉ ତବ ଶୁଭ
ଠାକୁରଙ୍କ ଆଜ୍ଞା ଏହି ମାଲେ ଅନ୍ନ ଦେବ ।
ବହୁତ ଦେଶ ବୁଲିଣ ଆସିଅଛି ବଳ
ନିନ୍ଦା ନୋହିବ ଯେପରି ହୋଇବଟି ଭଲ ।
ବଲ୍ଲଭ ବୋଇଲେ ଆହେ କ୍ଷଣେ ରହ ଭାଇ
ବୀରନିଧି ଯୋଗାଡ଼ ମୁଁ ରାନ୍ଧେ ତୋହପାଇଁ
ତାହା ଶୁଣିଣ ସେ ମାଲ କହଇ ବଚନ
ଆଣିଦିଅ ତେଲ ଆମ୍ଭେ କରିଯିବୁ ସ୍ନାନ ।
ଶୁଣିଣ ପାବନି ତହୁଁ ଭରଣେ ସର୍ଷପ
ଆଣି କୁଢ଼ାଇଣ ଦେଲେ ମାଲର ସମୀପ ।
ଦେଖି ମାଲ ବିଚାରଇ ଏହୁ ଅଟେ ବାଇ
ତୈଳ ମାଗୁ ସୋରିଷ ଏ ଦେଉଛି ବଢ଼ାଇ
ବହୁକ୍ରୋଧ ହୋଇ ତହୁଁ ମାଲବୋଲେଗୀର
ବାଚାଳ ପରାୟ କିମ୍ପା ହେଉ ସୁପକାର ।
ଆମ୍ଭେତ ମାଗିଲୁ ତୈଳ ଲଗାଇବା ପାଇଁ
ତୁ କିମ୍ପା ସୋରିଷ ଦେଉ ସମ୍ମୁଖେ ବଢ଼ାଇ ।

ଶୁଣି ସୂପକାର ବୋଲେ ତୁମ୍ଭେ ପରା ମାଲ
ଏହାକୁ ମର୍ଦ୍ଦନ କରି ବେଗେ କାଢ଼ ତେଲ
ଆପଣା ଶରୀରେ ବୋଲି ଶୀଘ୍ର ସ୍ନାନକର
ଭୋଜନର ବେଳ ପରା ହେଉଛି ଉଛୁର ।
ଏହି କଥା ଶୁଣି ମାଲ ହୋଇଣ ତାଟକା
ବୋଇଲେ କିକଥାକହୁରେ ବ୍ରାହ୍ମଣ ଟୋକା ।
ଏହି କଥା କି ସଂସାରେ କେବେକେହି କରେ
ନୂତନ ଶୁଣିଲି ଏବେ ଆସି ଏହିଠାରେ ।
ପରିହାସ କରୁ ମୋତେ ନ ଜାଣି ପାମର
ଧୀରେ ଛୁଇଁଲେତ ତୋର ଛିଡ଼ିଯିବ ଶିର ।
ଶୁଣି ଭୀମେସେନ ହେଲେ ମନେ କୋପାନ୍ୱିତ
ପୁଣି ବିଚାରିଲେ ମୋତେ ଅଟେ ଏ କିଞ୍ଚିତ
ଯଦ୍ୟପି ଏହାକୁ ମୁହିଁ ଦେବି ପ୍ରତିକାର
ତେବେ ଏ ଅଜ୍ଞାତବାସ ହୋଇବ ପ୍ରଚାର ।
ଧର୍ମ ଆଜ୍ଞା ଶୁଣି ନାହିଁ ମୁହିଁ ଯେ ସ୍ଥଳରେ
ଏହାକୁ ମାରିବା ମୋର ନୁହଇ ବିଚାରେ ।
ଏହି କଥା ମନମଧ୍ୟେ ଭାବିଣ ପାବନି
ଗର୍ବକଥା ସହ୍ୟକରି ହୋଇଯାଇ ତୁନି ।
ବୋଇଲେ ଅଞ୍ଜଳିକରି ଦେଖା ତୋର କର
ସର୍ଷପରୁ ତୈଳକାଢ଼ି ଦେଉଛିରେ ବୀର ।
ଏହା କହିଣ ମର୍ଦ୍ଦନ କରିଲେ ସର୍ଷପ
ମାଲର ହସ୍ତେ ପଡ଼ଇ ତୈଳ ଥପ ଥପ ।
ଏହା ଦେଖି ମାଲ ମନେ ଲଭି ଚମ୍ତ୍କାର
ତୈଳ ମାଖି ସ୍ନାନକୁ ସେ ଚଳିଲା ସତ୍ୱର
ସ୍ନାନରୁ ଆସିଣ ମାଲ ଭୋଜନ କରଇ
ଭୀମ ଉପାଦେୟ ଦ୍ରବ୍ୟ ନେଇ ପରଷଇ ।
ଧାନ ଉଁଷାଇଣ ଥିଲା ଶତେକ ପଉଟି
ଚାଙ୍ଗୁଡ଼ାରେ ପକାଇ ସେ କଲାମେଦ ଗୋଟି ।
ମୁଗୁନି ପଥର ଆଣି ତୁ୍ୟଣ ସେହୁ କଲା
କୌତୁକ ହୋଇଣ ଭୀମ ମାଲକୁ ଡାକିଲା ।
ବସହୋ ମାଲତୋହର ଯେତେକ ଗୋତୁଷ୍ଟି
ଏହାଙ୍କ ଭୋଜନ ଯେତେ ତିଉଣ ଆଣେଟି ।
ଏହା କହିଣ ବଲ୍ଲଭ ଚଳିଲା ତୁରିତ
ଦେଖିଣ ସେ ମାଲ ବଡ଼ ହୋଇଲା ତଟସ୍ଥ ।
ମାଲ ବୋଇଲା ପଣ୍ଡାଏ ଭୋଜନ ସମ୍ପତ୍ତି
ଅସୁରେ ଖାଇଣ ପାର କରି ନପାରନ୍ତି ।
ବଲ୍ଲଭ ବୋଇଲା ଏହା ପାର ତୁ ନକଲେ
କେମନ୍ତେ କୀଚକ ସଙ୍ଗେ ଲଢ଼ିବୁ ତୁ ଭଲେ ।
ଲୁହା ଭାଜିକରି ଗୋଟି ଗୋଟି କରି ବଳି
ମାଲ ଦେଖନ୍ତେ ଚୋବାଇ ତାହାକର ଧୂଳି ।
ବେନି ଆଣୁକୁ ମାଡ଼ିଣ ବସିଲା ମାରୁତି
ଉଁଷାଇଲା ଧାନକୁ ସେ ଭୁଞ୍ଜିଲା ତଡ଼ତି ।
ଭାଙ୍ଗିଣ ପଥର ଯେଉଁ କରିଥିଲା ତୁ୍ୟଣ
ଶତେ ନଉତି ଆପଣ ଭୁଞ୍ଜିଲା ବ୍ରାହ୍ମଣ ।
ମାଲକୁ ସମ୍ଭାଷିଣ ସେ କରିଲା ଉତ୍ତର
କୀଚକ ତୁଲେ ତୁ କିସ ଲଢ଼ିବୁରେ ଛାର ।
ମୁଁ ତାହାର ସୂପକାର ବ୍ରାହ୍ମଣ ଅଟଇ ।
ମୁଁ ତାହା କର୍ଣ୍ଣ କଳପା ବିନ୍ଧାଣ ଜାଣଇ ।
ନଜାଣୁ କାରଣ ତୁହି ଆରେ ମାଲ ଭେଣ୍ଡା
ଦେଶାଉର ଆଖଡ଼ାରେ ହୋଇଛୁକି ଖଣ୍ଡା
ସୁଖ ଭୋଗ ପାଇଁ ଯେବେ କରନ୍ତି ଏ ଇଚ୍ଛା
ଏହାଙ୍କ ପ୍ରତିଜ୍ଞା ସବୁ ହୋଇଥାଏ ମିଥ୍ୟା ।
ସୂପକାର ଚରିତକୁ ଦେଖିଣ ସେ ମାଲ
ଆସ୍ଥାନର ତଳେ ଯାଇ ନ କହଇ ଭଲ ।
ହେ ବିରାଟ ସୂପକାର ତୁମ୍ଭେ ବୋଲଯାରେ
କେଉଁ ରାକ୍ଷସେକ ଆସି ରହିଅଛି ପୁରେ ।
ରାନ୍ଧଣା ଚରିତ ମୁହିଁ କିବା କହିପାରି
କଞ୍ଚା ଦାରୁକୁ ଚୂଲୀରେ ସେହୁ ଦିଏ ଭରି ।
ଅକଟା ଅବଟା ନେଇ ଗୁଣ୍ଡକରେ ହସ୍ତ
ହାଣ୍ଡିରେ ପୂରାଇ ବୋଲେ ଏ ମୋହରସତ
ତେଲବୋଲି ସୋରିଷକୁ ଦେଲାମୋତେବାଢ଼ି
ବୋଇଲା ତୁ ତେଲ ଲଗା ସୋରିଷରୁକାଢ଼ି
ମୁଗୁନି ଥାଟ ପଥର ମୁଥେ କରି ଚୂର୍ଣ୍ଣ
ପେଜରେ ଫୁଟାଇ ଆକୁ କରିଲା ବ୍ୟଞ୍ଜନ ।
ଉଷୁନା ଧାନ ଆଣିଣ ଦେଲା ଶଏ ପୌଟି
ବୋଇଲା ଭୁଞ୍ଜହେମାଲତୋତେଯେତେଅଣ୍ଟି
ମୁହିଁ ତାହାକୁ ଦେଖିଣ ହୋଇଲି ତାଟକା
ଆପଣେ ଭୋଜନ କଲ ସବୁ ତାହା ଏକା ।
ଏହି କଥାକୁ ବିଚାର କର ଆହେ ମତ୍ସ୍ୟ
ତୁମ ସମଦଣ୍ଡ ଦିନେ କରିବ ସେ ଭକ୍ଷ
ଶୁଣି ବିରାଟ ଚାହିଁଲେ କୋନ୍ତଙ୍କ ବଦନ
କୋନ୍ତବୋଲେ ସେହୁ ଜାଣେ ବୀରଙ୍କରନ୍ଧନ
ଭୀମଙ୍କର ସୂପକାର ଅଟେ ସେ ପ୍ରତ୍ୟକ୍ଷେ
ମାଲକୁ ଦିଅଇ ଅନ୍ନ ସେହୁ ଏହିମତେ ।
ସୂପକାର ଅନ୍ନ ଯେବେ ନ ଭୁଞ୍ଜିବ ମାଲ
ରଜନୀ ବଞ୍ଚିବ ଯେବେ ସୁନ୍ଦିରୀର ମେଳ ।
ଶୟନ କାଳରେ ଯେବେ ଲୋଡ଼ିବସେଶଯ୍ୟା
ସେହୁ କିସ ମାଲଯୁଦ୍ଧ କରିବ ହୋ ରାଜା ।
ପୁଣିହିଁକୋନ୍ତ ବୋଇଲେ ମାଲହେଲେଭୋଗୀ
ଆହାରକୁ ଶ୍ରଦ୍ଧା ଯେବେ ମାରିବଟି ଯୋଗୀ ।

ବ୍ରାହ୍ମଣ ହୋଇଣ ଯେବେ ଦ୍ୱନ୍ଦ୍ୱକରେ ବାଞ୍ଛା
ତେବେ ବ୍ରାହ୍ମଣ ବୋଲି ପାଇବ ସେ କୁସ୍ଥା
ବେଦକାର ହୋଇ ଯେବେ ହୁଅଇ ବିମୁଖ
ଶତ୍ରୁର ସନ୍ତାପକାଳେ ଯେ କରଇ ଶୋକ
ସୁପକ୍ୱ ଅନ୍ନକୁ ତେବେ ଇଚ୍ଛିଲୁରେ ମାଲ
ମରଣକୁ ଇଚ୍ଛାକଲୁ ନ କରିଣ ଭଲ ।
ଯାଅ ଆହେ ଚାରଗଣ ଆମ୍ଭ ବାକ୍ୟ କହ
କୋନ୍ତ ଆଜ୍ଞା ଏ ମାଲକୁ ଭଲ ଭୋଜ୍ୟ ଦିଅ ।
କୋନ୍ତଙ୍କର ଆଜ୍ଞାପାଇ ଗଲେ ଚାରିଗଣ
ବାରତା କହିଲେ ସୂପକାରକୁ ଯାଇଣ ।
ଯୁଦ୍ଧ ମାଗିଅଛି ଆସି ସେ ପ୍ରଦେଶୀ ମାଲ
କୋନ୍ତ ବୋଇଲେ ତାହାକୁ ଅନ୍ନଦିଅ ଭଲ ।
ଯହୁଁ କୋନ୍ତଙ୍କର ଆଜ୍ଞା ପାଇଲେ ପାବନୀ
ମାଲକୁ ପରଷେ ବହୁ ଯୋଗାଡ଼କୁ ଘେନି ।
ଗଉରୀ ଶଉରୀ ନଳବିଧି ଯେଉଁ ଯୋଗ
ଭୁଞ୍ଜାଇ ସେ ମାଲ ସବୁ ପାଇ ବହୁ ଭୋଗ ।
ଭୀମସେନ ପଚାରିଲେ ମାଲଯୁଦ୍ଧ କଥା
ସଂକ୍ଷେପିଣ କହ ମୋତେ ଯୁଦ୍ଧର ବାରତା ।
ସମସ୍ତଙ୍କୁ ଅନ୍ନ ଯହୁଁ ଆଣିଦେଲା ଦ୍ୱିଜ
ବେଳକୁବେଳ ମାଲର ବଢ଼ିଲା ଯେ ତେଜ ।
ବିରାଟ ଆଗରେ କହେ ବହୁତ ପ୍ରଶଂସି
ସବୁରାଜ୍ୟେ ବୁଲେ ମୁହିଁ ହୋଇପରଦେଶୀ ।
ବିରାଟ ଏ ସୂପକାର ପାଇଲେ ବା କାହୁଁ
ଏ ମଧ୍ୟଭୁବନେ ତାକୁ କେଭେ ଦେଖିନାହୁଁ ।
ହାଣ୍ଡିରେ ପୂରାଇ ଚୂଲୀ ଉପରେ ରଖିଲେ
ସେହିକ୍ଷଣି ସେ ଯୋଗାଡ଼ ହୋଇଯାଏ ଭଲେ ।
ଅତି ପୁଣ୍ୟ କରିଥିଲେ ପାଇ ଏ ବ୍ରାହ୍ମଣ
ସାଧୁ ସାଧୁ ଉପୁଜଇ ସେଥିର କାରଣ ।
ମାଲ ବୋଲେ ଭୋଜନରେ ନାହିଁମୋରଇଚ୍ଛା
ସଂଗ୍ରାମପାଇଲେ ପୂରେ ମୋର ମନବାଞ୍ଛା
ପ୍ରଦେଶୀ ମାଲ ମୁଁ ମୋରକରେ ନାହିଁସ୍ନେହ
ଆଣି ତୁମ୍ଭର କୀଚକ ମୋତେ ରଣ ଦିଅ ।
ଶୁଣି ସେ କଥା ବିରସ ହୋଇଲେ ବିରାଟେ
କୀଚକ ସଙ୍ଗେ ସମର ନୋହୁ କୋନ୍ତଭଟେ ।
ତୁମ୍ଭେ ଜାଣ କୀଚକ ତ ମୋର ନୁହେଁ ବଶ
ତାହା ଅର୍ଜିଲା ସମ୍ପଦ ମୁଁ ଭୋଗେ ଅବଶ୍ୟ ।
କୋନ୍ତ ବୋଇଲେ ବିରାଟ କଥାଏ କରିବା
ବଲ୍ଲଭ ବ୍ରାହ୍ମଣେ ଆଣି ମାଲେ ଯୁଦ୍ଧଦେବା ।
ଶୁଣି ସ୍ତମ୍ଭୀଭୂତ ହେଲେ ମତ୍ସ୍ୟଦେଶ ରାୟେ
ହେ କୋନ୍ତ ବଲ୍ଲଭେ କିମ୍ଭା ତୁମ୍ଭ କଷାହୁଏ ।

କହୁଛନ୍ତି କୋନ୍ତ ତହୁଁ ଶୁଣ ହେ ବିରାଟେ
ବ୍ୟାଘ୍ର ବଧକଲା ସେହୁ କେଡ଼େବଡ ଆଣ୍ଟେ
ମାଲବଧ କରିବାକୁ ପାରେ ଅବା ସେହି
କିସବୋଲେ ବୁଝ ଏବେ ଏହାକୁ ଡକାଇ ।
ବିରାଟ ବୋଇଲେ ତହୁଁ ଡାକି ଚାରଗଣ
ବଲ୍ଲଭ ସୂପକାରକୁ ହକାରିଣ ଆଣ ।
ରାଜାଜ୍ଞା ପାଇଣ ଚାର ଗଲେ ବେଗ ହୋଇ
ରୋଷଦ୍ୱାରେଉପସ୍ଥିତନ୍ତୁ ହେଲେ ସର୍ବେଯାଇଁ
ବଲ୍ଲଭ ବଲ୍ଲଭ ବୋଲି ଡାକିଲେ ସେ ତହିଁ
ଠାକୁରଙ୍କ ଆଜ୍ଞା ତୁମ୍ଭେ ଆସ ବେଗହୋଇ
ରାନ୍ଧଣା କାର୍ଯ୍ୟରେ ଥାଇ ନ ଶୁଣେ ମାରୁତି
ଅଗ୍ନିଠାରୁ ତେଜିୟାନ ଦିଶେ ରୂପ କାନ୍ତି ।
ପୁନଃ ପୁନଃ କରି ଡାକ ଦିଅନ୍ତି ଡଗର
ବଲ୍ଲଭ ବୋଇଲେ କେହୁ ଅଟେମୋଠାକୁର
କାହାର ମୁଁ ବଶ କେହି ପାରିବ ବରଗି
ନଯିବି ବୋଲି ବୋଲନ୍ତେ ଚାରଗଲେ ଭାଗି
ଆସ୍ଥାନର ତଳେ ଯାଇ ରହିଲେ ସେ ଚାର
ବୋଇଲା କାହାରବଶ କେ ମୋରଠାକୁର
ଯୁଧିଷ୍ଠିର ବିସ୍ମୟ ଯେ ହେଲେ ତାହା ଶୁଣି
ହୃଦପଦ୍ମରେ ଚିନ୍ତିଲେ ପ୍ରଭୁ ଚକ୍ରପାଣି ।
ମୂର୍ଖ ଯେହୁ ଅନୁ ବ୍ରତେ ଦୁଷ୍ଟପଣ ତାର
ଏହାକୁ ଘେନି ଅଜ୍ଞାତ ହେବ କି ପ୍ରକାର ।
ବିରାଟବୋଇଲେ କୋପକର କିମ୍ଭାକୋନ୍ତେ
ବ୍ରାହ୍ମଣ ବଶ ମୋହର ନୁହଇ ଯୁକତେ ।
ଏକା ବ୍ରାହ୍ମଣକେ ମୋର ରାଜ୍ୟଯାକ ସୁସ୍ଥ
ଏ ମୋର ବିଚାରେ ତାର ସମସ୍ତେହିଁ ଭୃତ୍ୟ
ତେଣୁ କଥାକୁ ସର୍ବଦା ସେହୁ ଦିଏ ଭାଜି
ତୁମ୍ଭ ଆଜ୍ଞାରେ ଆସିବ ସେହୁ ସର୍ବ ତେଜି ।
କୋନ୍ତ ବୋଇଲେ ହୋ ସର୍ବ ଚାରଗଣ ପୁଣ
ଆମ୍ଭର ବୋଇଲା ବୋଲି ତାକୁ ଡାକିଆଣ ।
ଦଉଡ଼ିଲେ ଚାରଗଣ କୋନ୍ତବାକ୍ୟ ଶୁଣି
କହିଲେ କୋନ୍ତଙ୍କ ଆଜ୍ଞା ଆସ ଏହିକ୍ଷଣି ।
ଇନ୍ଦ୍ରାଜ୍ଞା ପାଇଣ ମେଘ ଯେସନେ ପ୍ରୟାଣ
ରାନ୍ଧଣା ଛାଡ଼ି ବାହାର ହୋଇଲେ ବ୍ରାହ୍ମଣ ।
ବିଜୟ ବିରାଟ ଯହିଁ ଧର୍ମରାଜ ତୁଲେ
ଆସ୍ଥାନର ତଳେ ଭୀମ ଯାଇଣ ମିଳିଲେ ।
ଅଙ୍ଗ ଢାଳି ଦେଇଣ ସେ ବିରାଟ କତିକି
ପ୍ରଣିପାତ ହେଲେ ଭୀମ କୋନ୍ତମୁଖ ଦେଖି ।
କୋନ୍ତ ବୋଇଲେ ବଲ୍ଲଭ ଆରେ ସୂପକାର
ଠାକୁରଙ୍କ ଆଜ୍ଞା ହେଲା ଉଠ ତତପର ।

ବିରାଟ ବଚନେ ଭୀମ ସେ ସ୍ଥାନୁ ନ ଉଠି
କୋନ୍ତଙ୍କ ବଚନେ ଯୋଡ଼ି ବେନିକରଗୋଟି
ସ୍ୱାମୀହେ କେବଣ ଅର୍ଥେ ଆଜ୍ଞାହେଲାମୋତେ
ଶୁଣି ରାନ୍ଧଣା ଛାଡ଼ି ମୁଁ ଅଇଲି ତୁରିତେ ।
ବିରାଟ ବୋଇଲେ ବିପ୍ର ମୋର ବାକ୍ୟ ଶୁଣ
ଏ ମାଲ ଲୋଡ଼େ କୀଚକ ସଙ୍ଗତରେ ରଣ ।
ଏ ସର୍ବ ସମ୍ପଦ ମୋର ଯାହାର ପ୍ରମାଦେ
ତାକୁ ପକାଇବି କେହ୍ନେ ଏଡ଼େକ ପ୍ରମାଦେ ।
ମତ୍ତବ୍ୟାଘ୍ରକୁ ମାଇଲ ଦେଖିଲି ମହିମା
ମାଲଯୁଦ୍ଧ କରିପାରେ କି ହୋ ମହାତମା ।
ସୂପକାର ବୋଲେ ତହୁଁ ମୋରଯେତେକର୍ମ
ବିପତ୍ତି କାଳରେ ମୋତେ ସଖା ହୁଏ ଧର୍ମ ।
ଚୌରାଅଶୀ ବିନ୍ଧାଣ ହେ ଛତିଶ ପ୍ରବନ୍ଧ
ବଡ଼ ବିଡ଼ମ୍ବନା ଏହୁ ଅଟେ ମାଲଯୁଦ୍ଧ ।
ଏ ମୋହର ବଚନେ କର କି ସଂପ୍ରତେ
ରାନ୍ଧଣାର ଭିନ୍ନ ଆନ ନ ଆସଇ ମୋତେ ।
ଯେବେ କିଛି ଦୋଷ ମୁହିଁ କଲଇଁ ତୁମ୍ଭର
ରାଜ୍ୟୁ ତଡ଼ିଦିଅ ମୋତେ ହେ ମତ୍ସ୍ୟଈଶ୍ୱର
ବାକ୍ୟେ ଜିଣି ନ ପାରିଲେ ଯହୁଁ ସେ ବିରାଟ
ବଲ୍ଲଭ ମୁଖକୁ ଚାହିଁ ବୋଲେ କୋନ୍ତଭଟ ।
ହେ ବଲ୍ଲଭ ବ୍ରାହ୍ମଣ ତୁ ଅଟୁ ସୂପକାର
ତୁ ଯେବେ ନ ଜାଣୁ ଆଉ ଜାଣେ କେସମର ।
ଏତେବେଳେ ତୁହି କିମ୍ପା କରୁଅଛୁ ନାସ୍ତି
ଠାକୁରଙ୍କ ଆଜ୍ଞାହେଲା ଛାଡ଼ ମନୁଭ୍ରାନ୍ତି ।
ବିରାଟ ବଚନ ଭୀମ ନାସ୍ତି କରୁଥିଲେ
କୋନ୍ତଙ୍କ ବଚନ ଶୁଣି ସମ୍ମତ ହୋଇଲେ ।
ଆସ ଆସ ମାଲ ଆରେ କରିବା ସମର
ମାଲ ଦୁଇହସ୍ତେ ନେଇ ଦେଲେ ଦୁଇ କର ।
ମାଲ ବୋଲେ ତୁ ରାନ୍ଧଣା ପ୍ରାୟ ଅବା ମଣୁ
ନିସ୍ତମ୍ଭ ସମରକୁ ତୁ କେଉଁପରି ଜାଣୁ ।
ବିସୁତ ପ୍ରାଣୀମାନଙ୍କ ବିପରୀତ ବୁଦ୍ଧି
ବ୍ରାହ୍ମଣମାତ୍ରକ ସିନା ପାରିବୁ ତୁ ରାନ୍ଧି ।
ବିମୁଖ ହୋଇଲୁ ପରା ରାନ୍ଧଣାରେ ପଶି
ଦୁଃଖୀ ଦେଖି ଡାକିଲାକି ତୋତେ କାଳଫାଶି ।
ଅବା ମୃତ୍ୟୁକୁ ବରଣ କରୁଛୁ ଯୁକତେ
ବ୍ରହ୍ମହତ୍ୟା ଦୋଷ ପାପ ହୋଇବନାମୋତେ ।
ବ୍ରାହ୍ମଣ ବୋଇଲା ଦ୍ୱିଜ ହେଲେ ଦ୍ୱନ୍ଦ୍ୱକାରୀ
ଶିରଚ୍ଛେଦ କଲେ ପାପ ନୁହଇଁ କାହାରି ।
ପାରିଲେ ସମର କର ସଜହୋଇ ଭାଇ
ନ ପାରିଲେ ନିଜ ଗୃହେ ଯାଅ ତୁ ପଳାଇ ।

ବାହାସ୍ଫୋଟ ମାରି କରି ବୋଲେ ଦ୍ୱିଜବର
ମାଲ ବୋଲେ ଆରେ ଦ୍ୱିଜ ମୁର୍ଖ ତୁପାମର
ବିକଟାଳ ବାକ୍ୟ ଶୁଣି ଭୀମ ତହୁଁ ହସି
ରେ ରେ କାର କରି ମାଲ ଭୀମକୁ ଆକର୍ଷି
ଭୂମିଠଣା କରି ବୀର ଅଙ୍ଗେ ବୋଳି ଧୂଳି
ଅଧର କାମୋଡ଼ି କୋପେ ଦିଅନ୍ତି ହାମ୍ଫୋଲି
ରେରେକାର କରେ ବୀର ମନେ ତହୁଁ ପାଞ୍ଚି
ଶବଦେ ପର୍ବତମାନ ଯାଉଛନ୍ତି ଘୁଞ୍ଚି ।
ରେରେକାର କରି ମାଲ କୋପେହେଲା ଗର୍ଜି
ଶବଦରେ ଗିରିମାନେ ପଡୁଛନ୍ତି ଭାଜି ।
ସେ ମାଲର ମୁରତିକି ଦେଖି ଧର୍ମମଣି
ବିଚାର କରନ୍ତି ନିଜ ହୃଦୟରେ ପୁଣି ।
କିଞ୍ଚିତ ଆକର୍ଷଣ ସେ ଚାହିଁ ବକ୍ରଦୃଷ୍ଟି
ବିଚାରନ୍ତି ମାଲକୁ ନ ମାର ବଜ୍ରମୁଷ୍ଟି ।
ଏକା ମୁଥକରେ ସର୍ବ ହୋଇବ ଜିଣନ୍ତା
ଆମ୍ଭେ ନିଜେ ମନ୍ଦକଲୁ ଜାଣି ସର୍ବକଥା ।
ଏ ଦୁଷ୍ଟେ କିମ୍ପା ଆଣିଲୁ ଆମ୍ଭେ ଏ ସ୍ଥାନକୁ
ଆଉ ବିପରୀତ ଦେଖ ପେଷିଲି ଯୁଦ୍ଧକୁ ।
ବାହାସ୍ଫୋଟ ମାରି କଲେ ମାଳ ଠିଆଠାଣ
ଦେଖିଣ ସଜ ହୋଇଣ ଆସନ୍ତି ବ୍ରାହ୍ମଣ ।
ତ୍ରିକଚ୍ଛ ଲମ୍ବିତ ଜୂଡ଼ା କରି ଭୀମସେନ
ମାଲମୂର୍ତ୍ତି ଦେଖି ଦରହସିତ ବଦନ ।
ନୃପତି ବୋଇଲେ କୋନ୍ତ ମଲା ସୂପକାର
ତୁମ୍ଭ ହେତୁରୁ ଯାଉଛି ରାଜ୍ୟଶିରୀ ମୋର ।
କୋନ୍ତା ବୋଲେ ସୂପକାର ନଥିଲା ଯେକାଳେ
ଉପାସେ କି ଥିଲେ ତୁମ୍ଭରାଜ୍ୟରେ ସକଳେ ।
କୋନ୍ତଭଟକୁ ବିରାଟ ଦିଶଇ ବହୁତ
ଶୁଣି ସାନନ୍ଦ ହୋଇଲେ ଧର୍ମଙ୍କର ସୁତ ।
ତ୍ରିକଚ୍ଛ ବସନ ତୋଳି ପିନ୍ଧି ସୂପକାର
ମାଲବନ୍ଧ ପ୍ରାୟ କରି ଭିଡ଼ିଲେ କୁଠାର ।
ଲମ୍ବିତ ଜୂଡ଼ାକୁ ମାଲ ବନ୍ଧ ବାନ୍ଧେବେଣୀ ।
କାନ୍ଧରୁ ପଇତା କାଢ଼ି ବାନ୍ଧେ ବାମପାଣି ।
ଭୀମସେନ ପ୍ରତିଜ୍ଞାକୁ କି କହିବି ପାରି
ପାଦତଳେ ଗିରିଶୃଙ୍ଗ ହୋଇଯାଏ ଚୂରି ।
ଆସ ମାଲ ବୋଲି ଭୀମସେନ ହେଲେ ଉଭା
ମାଲ ବୋଲେ ମାଲ ବିଦ୍ୟା ଜାଣୁଟିକିବାବା
ବଲ୍ଲଭ ବୋଇଲେ ମୁହିଁ ଅଟେ ସୂପକାର
ମୁଁ କାହୁଁ ଜାଣିବି ମଲ୍ଲ ସମର ବେଭାର ।
ତୋହର ମୁଁ ମାଲବନ୍ଧ ଦେଖିବି ରେ ଭାଇ
ସଞ୍ଜୀବନୀନାଥେ ତୋତେଦେବିମୁଁଭେଟାଇ ।

ନଜାଣେ ଯୁଦ୍ଧ ସ୍ୱଭାବ ଅଟେ ସାଧୁଜନ
ବେଦବିଦ୍ୟା ସିନା ଅଟେ ଆମ୍ଭ କର୍ମମାନ ।
କେବଳ ନୃପତି ବୋଲେ ବେଭାର ଆସ୍ଥାନେ
ଠାକୁରଙ୍କ ଆଜ୍ଞା ମୁହିଁ ଭାଙ୍ଗିବି କେସନେ ।
ପୁନଃ ପୁନଃ ମାଲ କରେ ବାଞ୍ଛା ବକ୍ରବାଣୀ
ମାଲଯୁଦ୍ଧ କଥା ମୋତେ କହିବା ବଖାଣି ।
ଚୌରାଶି ବିନ୍ଧାଣ ଷଷ୍ଟତ୍ରିଂଶ ନଦୀବନ୍ଧ
ମହା ବିଡ଼ମ୍ବନ ଏହି ଅଟେ ମାଲ ଯୁଦ୍ଧ ।
ଖଡ଼ଗ କୁନ୍ତ ଗଦା ଯେ ପରିଘ ମୁଷଳୀ ।
ନାନା ବିଦ୍ୟାମାନଙ୍କରେ ମାଲ ମହାବଳୀ ।
ଭୁଜେ ଭୁଜ ବନ୍ଧନ ଯେ ପାଦେ ପାଦ ଛନ୍ଦି
ମୁଥେ ମୁଥେ ପରିତାଳ ହୃଦେହୃଦ ରୁନ୍ଧି ।
ଉଭୟେ ସମର ତହିଁ କରନ୍ତି ସେ ବଢ଼ି
କିରୀଟି ପଡ଼ିଲେ ଅବା ସମର ନ ଛାଡ଼ି ।
ମାଲର ବଚନ ଶୁଣି ବୋଲେ ବୃକୋଦର
ମୋହର ସନମତ ହୋ ଯେ ଇଚ୍ଛା ତୁମ୍ଭର ।
ତହୁଁ ଧାଇଁଆସି ମାଲ ଧରେ ବେନିଭୁଜ
ବେନି ଭୁଜକୁ ଛନ୍ଦିଣ ଭିଡ଼େ ବେନିପାଦ ।
ପାଦେ ଛନ୍ଦି ପକାଇଲା ସେ ସୂପକାରକୁ
ମାଡ଼ିବସି ମାଲ ତହୁଁ ଚାପେ ତାର ବୁକୁ ।
ତଳେ ଭୀମ ଉପରେ ଯେ ଥାଇ ସେହି ମାଲ
ବୋଲେଆରେ ସୂପକାର ଭାଙ୍ଗିବି ତୋଗାଲ ।
ସେ ମାଲକୁ ସୂପକାର ଲେଉଟାଇ ଦେଇ
ବକ୍ଷସ୍ଥଳେ ମାଡ଼ିଣ ଯେ ବସିଲାକ ଯାଇ ।
ପୁଣିହି ଲେଉଟାଇଲା ମାଲ ମହାବୀର
ପୁଣିହିଁ ଲେଉଟାଇ ମାଡ଼ି ବସେ ସୂପକାର ।
ଭୁଜେ ଭିଡ଼ାଭିଡ଼ି ପାଦେ କରି ଛନ୍ଦାଛନ୍ଦି
ଭୁଜେ ହୃଦ ମାରି ଭୀମ ଭୁଜେ ଭୁଜ ବନ୍ଧି ।
ଭୁଜେ ହୃଦ ମାରି ଭୀମ ଭୁଜେ ଭୁଜ ତାଡ଼ି
ଶିରେ ଶିରେ ପରିତାଳ ଅଣ୍ଟାପ୍ରତି ମାଡ଼ି ।
ବଜ୍ର ଶବଦ ରାୟେ ଶୁଭେ ପରିତାଳ
ଶୂନ୍ୟପୁରୁଷ କମ୍ପିଲେ ଥାଇ ଶୂନ୍ୟଆଳ ।
ବାମଭୁଜେ ମାଡ଼ିବସି ଡାହାଣେ ପ୍ରହାର
ମାଲ ମାଡ଼ିବସି ବୋଲେ ତୋ ଇଷ୍ଟ ସୁମର ।
ରେରେ ସୂପକାର ଆଜି ସରିଲା ତୋ କାଳ
ରାନ୍ଧି ବଞ୍ଚୁଥିଲୁ ଏହି ନୁହେଁ ରୋଷଶାଳ ।
ମୁହିଁ ଶ୍ରେଷ୍ଠମାଲ ଅଟେ ପୃଥିବୀର ମଧ୍ୟେ
କୀଚକ ମୋହର ସଙ୍ଗେ ନପାରନ୍ତା ଯୁଦ୍ଧେ ।
ରେରେ ସୂପକାର ତୋର ଜୀବନ ସଫଳ
ମୋର ସଙ୍ଗେ ଯୁଦ୍ଧକଲୁ ତୁହି ଏତେବେଳ ।

ରାଜ୍ୟଲୋକମାନେ ଦେଖି ହେଲେ ହୀନବୀର୍ଯ୍ୟ
ସାଧୁ ସାଧୁ ଅଟୁ ତୁହି ଧନ୍ୟ ତୋର ତେଜ ।
ଏକା ସୂପକାର ହୋଇ ଅନ୍ନ ଦେଉଥିଲୁ
ସର୍ବ ସୈନ୍ୟବଳଙ୍କୁ କି ସୁଖେ ରଖିଥିଲୁ ।
ଅନ୍ନକଷ୍ଟ ପାଶୋରାଇଥିଲୁ ସୂପକାର
ସଙ୍କଟେ ପଡ଼ିଲୁ ଅଗ୍ରେ ନ କଲୁ ବିଚାର ।
ସମସ୍ତେ ଝୁରନ୍ତି ତୋତେ ତୋର ଅନ୍ନଖାଇ
ଏହାଙ୍କୁ ଛାଡ଼ିଣ ଏବେ ଯିବୁ ତୁହି କାହିଁ ।
ଯେ ଆମ୍ଭଙ୍କୁ କଷ୍ଟ ଦେଲା ତା ମୁଣ୍ଡକୁ ପୋଡ଼
ଜୟ କରି ସୂପକାର ରୋଷକୁ ବାହୁଡ଼ ।
ଆହେ କୋନ୍ତପଣ୍ଡା ଏବେ ତୁମ୍ଭ ପେଟ ପୁରୁ
ସୂପକାର କୂଟ କରି ତାହାକୁ ତୁ ମାରୁ ।
ବିରାଟ ବୋଇଲେ ମୁଁ ଯେ ତୁମ୍ଭଙ୍କୁ ବୋଇଲି
ଏ ମାଲ ବାହୁଡ଼ି ଯାଉ ବୋଲି କହିଥିଲି ।
ଦଇବେ ତୁମ୍ଭର କଥା ମୁହିଁ କଲି ଆଶା
ଆଜଠୁ ସୂପକାରର ଛାଡ଼ିଲା ଭରସା ।
ମୋର ବଚନ ଭାଙ୍ଗିଲା ସେହୁ ନାନାମତେ
ଆଶ୍ୱାସ ବଚନେ ମୁହିଁ ନାଶ କଲି ତୋତେ
ତୁ ମୋର ରାଜ୍ୟକୁ ଥିଲୁ ବହୁ ଉପକାରୀ
ମୁହିଁ ତୋତେ ଅଦୋଷରେ ପକାଇଲି ମାରି
ଏକା କୋନ୍ତପଣ୍ଡା ତୋତେ ଲାଗିଲାବିବାଦେ
ସୂପକାର ନାଶକଲା କୋନ୍ତଙ୍କ ପ୍ରସାଦେ ।
ମୋହର ପରଠାକୁରତୋତେକେଭେନୋହୁ
ତୋହପରି ସୂପକାର ମୋତେ ମିଳୁଥାଉ ।
ବହୁତ ଶୋକ କରିଣ ବୋଲନ୍ତି ବିରାଟ
ସୂପକାର ହତ୍ୟାଦୋଷେଦୋଷୀ କୋନ୍ତଭଟ୍ଟ
ଆହେ ଅଷ୍ଟ ଦିଗପାଳ ଧର୍ମେ ବିଚାରିବା
ମୋହର ନାହିଁଟି ହତ୍ୟାଦୋଷ ଆରେବାବା
ବିରାଟ ମୁଖୁ ଏପରି ଶୁଣିଣ ଅଖ୍ୟାତି
ଯୁଧିଷ୍ଠି ବୋଇଲେ ମୁହିଁ ତରିଲି ଶ୍ରୀପତି ।
ଏଡ଼େବଡ଼ ଯୁଦ୍ଧେ ଯେବେ ନଚିହ୍ନିଲେ କେହି
ହେଉ ମୋତେ ଅପଖ୍ୟାତି ତହିଁ କ୍ଷତି ନାହିଁ ।
ଶୁଣୁଥିଲା ଭୀମସେନ ପଡ଼ି ମହୀତଳେ
କୋନ୍ତଙ୍କୁ ଚାହିଁଲେ ତଳେପଡ଼ିବେବାଡ଼ୋଳେ
ନୟନ ଛଟକେ ଠାରି ଆଜ୍ଞା ଦେଲେକୋନ୍ତ
ମାରହୋ ମାଲକୁ ବେଗ ହୋଇ ତୋଷଚିତ୍ତ
ପଣ୍ଡାଙ୍କର ଠାରରେ ସେ ଜାଣିଲେ ପାବନି
ଚଞ୍ଚଳରେ ସେ ମାଲର ଛନ୍ଦି ପାଦବେନି ।
ହାବୋଡ଼ାଇ ଘାନ୍ତି ଏ ପକାଇଲେ ତଳେ
ରେରେକାର କରି ବସି ମାଲ ବକ୍ଷସ୍ଥଳେ ।

ଭୀମସେନ ପ୍ରତିଜ୍ଞା ଯେ କଲେକ ଦୁର୍ଲ୍ଲଭ
ମାଡ଼ି ମାଲ ବକ୍ଷସ୍ଥଳେ ବସିଲେ ବଲ୍ଲଭ ।
ବେନି ଚରଣକୁ ଚାପି ଭିଡ଼ିଲା ତାହାକୁ
କେହି ନ ଦେଖିଲେ ଭୀମ ପାଡ଼ିଛି ମାଲକୁ ।
ଅଧର ପୃଷ୍ଠ କରିଣ ପାତିଲେ ସେ ଜାନୁ
ଦୁଇଫାଳ ହୋଇଗଲା ମାଲର ଯେ ତନୁ ।
ଶିରଭେଦ ହୋଇ ତହୁଁ ରୁଧିର ଗଳିଲା
ମାଲ ବୋଲେଗୋସାଇଁମୋକୀରତିହୋଇଲା
ବଲ୍ଲଭ ବୋଲେ ମୁଁ ଅଟେ ରୋଷେୟା ବ୍ରାହ୍ମଣ
କେମନ୍ତ ଜାଣିବି ତୋର କୀରତି ବିନ୍ଧାଣ ।
ମନ୍ଦରକୁ ମାଡ଼ିବସେ ଯେହ୍ନେ ହନୁମନ୍ତ
ସେହିପରି ଦିଶୁଅଛି ଦୁହିଁଙ୍କର ଗାତ୍ର ।
ନାଭି ମଣ୍ଡଳେ ପାଦେକ ଆରପାଦେ କଟୀ
ବକ୍ଷସ୍ଥଳ ଭୁଜଦଣ୍ଡ ଆକାଶରେ ଦୃଷ୍ଟି ।
ହିରଣ୍ୟ ବିଦାର କାଳେ ଯେହ୍ନେ ନରସିଂହ
ସେହି ପରକାରେ ଦିଶେ ଭୀମଙ୍କର ଦେହ ।
ବେନି ନୟନ ଦିଶଇ କାଳଚକ୍ର ପ୍ରାୟ
ମତ୍ସ୍ୟ ଦେଶର ସଇନି କଲେ ମହାଭୟ ।
ଆକର୍ଷି ମାଇଲେ ବୀର ଏକମୁଥ ତୋଳି
ମାଲର ଶରୀର ତହୁଁ ହୋଇଗଲା ଧୂଳି ।
ମାଲକୁ ବଧ କରିଣ ସୂପକାର ଉଭା
ସର୍ବେ ବିଚାରିଲେ ଯମ ଦେବତା ଏ ଅବା ।
ଯେମନ୍ତ ମାଲକୁ ଭୀମସେନ ବଧ କଲେ
ତା ଗର୍ଭୁ ପୁରୁଷ ଏକ ବାହାର ହୋଇଲେ ।
କୋନ୍ତ ମୁଖ ଚାହିଁ ଭୀମସେନ ହସ୍ତେ ମଲା
ଦୁଃଖ ପାର ହୋଇ ସେହୁ ସ୍ୱର୍ଗପୁରେ ଗଲା ।
ପୁଷ୍ପକ ରଥରେ ବସି ହେଲା ସ୍ୱର୍ଗଗାମୀ
ଦରଶନ କଲା ଯାଇଁ ବିଶେଶ୍ୱର ସ୍ୱାମୀ ।
ଜୟ ଜୟ ତ୍ରିଲୋଚନ ଜୟ ଦେବହରି
ତ୍ରିପୁରାକୁ ବଧକରି ନାମ ତ୍ରିପୁରାରୀ ।
ଜିଣି ଶୁଦ୍ଧ ସ୍ଫଟିକକୁ ବିରାଜଇ ତନୁ
ଅଭୟ ନିରାକାର ସେ ଗଗନ ଈଶାନୁ ।
ପଞ୍ଚଦଶ ଲୋଚନ ଯେ ପଞ୍ଚଭୂତ ପ୍ରାଣ
ପିନାକ ତ୍ରିଶୂଳ କାଣ୍ଡ ଅକ୍ଷୟ ସେ ଦ୍ରୋଣ ।
ଶ୍ୱେତପଦ୍ମା ମହାପଦ୍ମ ତ୍ରିକୁଟକୁ ଦେଖି
ଅନନ୍ତ ନାଗ ମୁକୁଟବାହୁବନ୍ଧେ ଯୋଖି ।
ଚରଣ ନୁପୁର ଭୁଜେ ଶୋଭିତ ବାହୁଟି
ଦିଶର ବସନ କନ୍ଥା ଗଳେ ଚିରକୁଟି ।
ତାଣ୍ଡବ ଆରୋପଣରେ ପ୍ରସନ୍ନ ତ୍ରିପୁରା
ବେନି କାଳେ ନାଶକଲ ଅନ୍ଧକ ତ୍ରିଶିରା ।
ମହୀ ଉଶ୍ୱାସିଲ କଉଣପ କରି ଧ୍ୱଂସ
ଶଉରୀ ଭସ୍ମ ଲେପନ ତାମ୍ରବର୍ଣ୍ଣ କେଶ ।
ପୁଣି ଆପଣା କୋଳରେ ଧରିଛ ଗିରିଜା
ପର ଦୁଃଖରେ କାତର ବୈରୀ ଦର୍ପଗଞ୍ଜା
ମଣି କର୍ଣ୍ଣିକାର କ୍ଷେତ୍ର ମୁକ୍ତ ବାରାଣସୀ
ଜୟ ତୁମ୍ଭେ ବିଶ୍ୱନାଥ ମୁକତି ଦିଅସି ।
ବହୁତ କୋଟି ପାତଳ ଖଣ୍ଡେ ଯେଉଁ ତୀର୍ଥେ
ସର୍ବଦା ସମ୍ପଦ ନାଥ ଦୟାକର ମୋତେ ।
ପାର୍ବତୀ ବଲ୍ଲଭ ନାଥ ଶୁଣ ମୋ ଗୁହାରି
ଶାରଳା ଦାସକୁ ହେଲେ ଭବୁ କର ପାରି ।

— ❀ —

## ମାଲର ପୂର୍ବଜନ୍ମ ବୃତ୍ତାନ୍ତ ଓ ଭୀମର ରନ୍ଧନ ପ୍ରଣାଳୀ

ପୁଣି ପଚାରନ୍ତି ବୈବସ୍ୱତ ମନୁ ରାଜା
ଅଗସ୍ତିଙ୍କ ପାଦପଦ୍ମେ କରି ଦିବ୍ୟ ପୂଜା
ସେ ମାଲକୁ ବଧ ଯହୁଁ କରିଲେ ବଲ୍ଲଭ
ତା ଦେହୁଁ ପୁରୁଷ ଏକ ହୋଇଲା ଉଭବ ।
କେବଣ ମହାତ୍ମା ସେହୁ କହିବା ଅଗସ୍ତି
ଶୁଣିବାକୁ ଇଚ୍ଛା ମୋର ଅମୀୟ ଭାରତୀ ।
ଶୁଣି ରାଜନ ବୋଲନ୍ତି ଋଷି ବ୍ରହ୍ମବେତ୍ତା
ତୁମ୍ଭେ ଯାହା ପୁଚ୍ଛିଲ ସେ ବହୁଦିନ କଥା
ଏହୁ ସତ୍ୟ ଯୁଗରେ ସେ ବୈଶ୍ୱାନରବୋଲି
ତାହାର ନନ୍ଦନ ଅଟେ ଦ୍ୱାପଞ୍ଚ କହିଲି ।
ଦେବୁ ବୋଲିକରି ତାର ପୁତ୍ର ଉର୍ଦ୍ଧ୍ୱରେତା
ଏହାର ପୁତ୍ରର ନାମ ଅଟେ ରଣବେତ୍ତା ।
ମାତଙ୍ଗଜ ବୋଲି କରି ଅଟେ ତାର ସୁତ
ମାତଙ୍ଗଣର ନନ୍ଦନ ହେଲା ମାଲ୍ୟବନ୍ତ ।
ଏହାର ନନ୍ଦନ ନାମ ଅଟେ ମହୀବନ୍ତ
ମାଲମାନଙ୍କରେ ଏହୁ ଥିଲେ ବଳବନ୍ତ ।
ମହୀବନ୍ତର ନନ୍ଦନ ନାମ ହନୁମାନି
କୃତାନ୍ତ ଗଜ ବୋଲିଣ ଏହା ପୁତ୍ର ବେନି
ଏ ବିଧିରେ ଷଡବିଂଶ ଥୋକାଏ କହିଲି
କୃତାନ୍ତ ବକ୍ଷଚ ପୁତ୍ର ବଳୀଦକ୍ଷ ବୋଲି ।
ବଳିଆ ପକ୍ଷର ପୁତ୍ର ହେଲାହନ୍ତକାରୀ
ତ୍ରିଭୁବନ ମଧ୍ୟେ ତାକୁ କେହି ନାହିଁ ସରି ।
ଯୋଗବନ୍ତ ଲୟରେ ସେ କଲେ ଯୋଗସାଧ
କେଭେ କରେନାହିଁସେହୁ ହତ୍ୟା ବା ବିରୋଧ ।

ତାହାର ମହିମା ଶୁଣି ବଳୀ ମାଲ ଗଲା
ପଶ୍ଚିମ ଦ୍ୱାରରେ ମଣିଭଦ୍ରା ଭୀମ ଥିଲା ।
ପଶ୍ଚିମ ଦ୍ୱାରରେ ସେହୁ ଦ୍ୱାରପାଳ ବେନି
ବଳିଆ ମାଲ ପ୍ରବେଶ ପ୍ରତିଜ୍ଞାକୁ ଘେନି ।
ମୁହିଁ ବଳବନ୍ତା ଅଟେ ପୁଣି ହନ୍ତକାର
ଆହେ ଦ୍ୱାରପାଳ ତୁମ୍ଭେ ଆସ ମହାବୀର ।
ହେ ମହାବୀର ମୁଁ ମାଗେ ତୁମ୍ଭର ସମର
ଏକ ଏକ ହୋଇ ତୁମ୍ଭେ ଆସି ରଣ କର ।
ଆକ୍ରୋଶ ଭାବରେ ଯହୁଁ ଅନେକ କହିଲା
ସେ ପ୍ରତିଜ୍ଞା ଶୁଣି ଭୀମ ବାହାର ହୋଇଲା ।
ବିଶ୍ୱନାଥ ବିଦାରଣେ ଗଣନାଥ ସଙ୍ଗା
କପିଳାସ ଘଟଣା ଏ ପ୍ରଳୟକୁ ବଞ୍ଚା ।
ଶିରରେ ଜଟାକୃତାନ୍ତେନିର୍ଭୟ ସେ ଯୋଗୀ
ପ୍ରତିଜ୍ଞାକୁ ନ ସହନ୍ତି ସେହୁ ବଇରାଗୀ ।
ବାହାସ୍ଫୋଟ ମାରିଣ ସେ ଓଷ୍ଠେ ଦନ୍ତଚାପି
ଆସ୍ଥାନୁ ପଡ଼ିଲେ ଡେଇଁ ହୋଇ ମହାକୋପୀ
ବଳିଆ ବୀରକୁ ସେହୁ ଧଇଲେ ଆକର୍ଷି
ଭୂମିରେ ପକାଇ ତାର ହୃଦପଦ୍ମେ ବସି ।
ମାଲଭୀମ ଦୁହିଁଙ୍କର ଲାଗିଲା ସଂଗ୍ରାମ
ଦିନରାତି ମଧ୍ୟେ ତହିଁ ନାହିଁ ନା ବିରାମ ।
ମାଲ ଭୀମ ଦୁହେଁ ବଡୁବଳିଆର ଥିଲେ
ସମରେ କାହାକୁ କେହି ଜିଣି ନ ପାରିଲେ ।
ଉଚ୍ଚ ନୀଚ ସମ ହେଲା ଯୁଦ୍ଧ ପରିତାଳେ
ମେଦିନୀ କମ୍ପିଲା ପୁଣି କମ୍ପେ ଦିଗପାଳେ ।
ଥର ଥର ହୋଇ କମ୍ପେ ପ୍ରହାରେ ମେଦିନୀ
ତାଟକାହୋଇଲେ ଲୋକେଦେଖିଣସ୍ୟହାନି
ଭୂମି ଖାଲ ଡିଙ୍ଗର ତ ନ ହେଲା ବାରଣ
ଜନ ପ୍ରାଣୀ ତହିଁ ସଙ୍ଗେ ହୋଇଲେ ମନ୍ଥନ ।
ସହସ୍ର ବରଷ ଯାଏ ହୋଇଲା ସମର
ଅଗ୍ନିତେଜେ ହାନିମ୍ଳାନ ହେଲେ ଦିନକର
ମହାଯୁଦ୍ଧ ଦେଖି ବିଜେ ହୋଇଲେ ଈଶାନ
ରହ ରହ ବୋଲିଣ ସେ କଲେ ସମାଧାନ ।
ସହସ୍ର ବରଷ ଯୁଦ୍ଧେ ହୋଇଲେ ବିମୁଖ
ମଧ୍ୟସ୍ଥ ହୋଇଣ ଭାଗିଁ ଦେଲେ ପଞ୍ଚମୁଖ ।
ବହୁତ ପ୍ରକାରେ ଶାନ୍ତି କରିଲେ କପାଳୀ
ପଚାରିଲେ କାହିଁପାଇଁ କରୁଅଛ କଳି ।

ମାଲ ବୋଇଲେ ଆମ୍ଭର କଉତୁକ ଯୁଦ୍ଧ
ଏମନ୍ତେ ସମରେ କାଳେ କାଳେ ନୋହୁଁ ବଧ ।
ଈଶ୍ୱର ବୋଇଲେ ତୁମ୍ଭେ ହୋଇଲା ଶକତା
ଏଯୁଗେ ସମରେ କେହୁ ନୋହିଲେଦେଖନ୍ତା
ଦ୍ୱାପର ଯୁଗରେ ତୁମ୍ଭେ ଭୀମମାଲ ହୁଅ
ମତ୍ସ୍ୟ ମହାଦେଶେ ତୁମ୍ଭେ ସମର ରୁହାଅ ।
ଭୀମ ତୁଲେ ସମରକୁ ଇଚ୍ଛା ତୁମ୍ଭ ଯେବେ
ପଣ୍ଡୁଙ୍କ କ୍ଷେତ୍ରରେ ଭୀମ ଜନ୍ମ ହେବେତେବେ
ତୁହି ହନ୍ତାକାର ମାଲ ହୋଇକରି ଥିବୁ
ବିରାଟ ରାଜ୍ୟକୁ ଯାଇ ସମର ମାଗିବୁ ।
ତହିଁ ପୂର୍ଣ୍ଣ ହେବ ତୋର ରଣରଙ୍ଗା ସାଧ
ଭୀମସେନ କରିବ ଯେ ତୋତେ ପ୍ରାଣେ ବଧ
ଏମନ୍ତ କହି ଚଳିଲେ ଦେବ ପଞ୍ଚାମନ
ଅଗସ୍ତି ବୋଇଲେ ବୈବସ୍ୱତ ମନୁ ଶୁଣ ।
ପ୍ରତ୍ୟକ୍ଷେ ଜନ୍ମ ବୃତ୍ତାନ୍ତ ଶୁଣିଲେ ମାଲର
ପୂର୍ବଜନ୍ମେ ବଳୀଦକ୍ଷ ନାମ ଥିଲା ତାର ।
ଯୁଧିଷ୍ଠିରଙ୍କ ଦର୍ଶନ କରି ଗଲା ସ୍ୱର୍ଗେ
ଦକ୍ଷ ପୁରୁଷଙ୍କ ପାଶେ ବସିଲା ସେ ବେଗେ
ଶୁଣି ସାନନ୍ଦ ହୋଇଲେ ବିଲଙ୍କାଧିପତି
ଷଡଅର୍ଘ୍ୟେ ପୂଜା କଲେ ପଣ୍ଡିତ ଅଗସ୍ତି ।
ଆହେ ସାଧୁ ବୃକୋଦର ରହିଲା ଗୁପତେ
ଅନ୍ନେ ତା ଉଦର ପୂର୍ଣ୍ଣ ହୁଅଇ କେମନ୍ତେ
ଷାଠିଏ ପୌଟି ତଣ୍ଡୁଳେ ହୁଏ ସେ ତୃପତି
ବିରାଟ ଶତେକ ଅନ୍ନ ଦିଏଟିକି ନିତି ।
ଅଗସ୍ତି ବୋଇଲେ ଶୁଣ ଆହେ ଯୋଗେଶ୍ୱର
ଆହାର ନିମନ୍ତେ ହେଲା ବଲ୍ଲଭ ସୁଆର ।
ଅୟୁବ୍ରତେ ସୂପକାର ରାଜଗୃହେ ଥିଲେ
ସବୁଙ୍କୁ ଛଡ଼ାଇ ଏକା ସୂପକାର ହେଲେ ।
ନିତ୍ୟ ପ୍ରାପ୍ତହେଲେ ଭୀମ ଅୟୁବ୍ରତେ ପୌଟି
ହାତେ ରାନ୍ଧି ତାହା ପୂର୍ଣ୍ଣକରେ ଉଦରଟି ।
ସୋରିଷ ନ ବାଟି କିବା ପରିବା ନ କାଟି
ସବୁ ଏକାକରି ଭାଣ୍ଡେ ଦିଏ ତାକୁ ଘାଣ୍ଟି ।
ହେଙ୍ଗୁ ଯେ ମରୀଚ ଜୀରା ପୁଣିଦୁଗ୍ଧ ଖଣ୍ଡ
ଏକା ଘାନ୍ତିକେ ପୂରାଇ ଘାଣ୍ଟେ ସେହୁ ଭାଣ୍ଡ ।
ଦୋହରା ସୁମରି ଏକ ଜାଳେକ ଦିଥଇ
ମୁହୂର୍ତ୍ତେ ମଧରେ ସବୁ ପକାନ୍ତି ଓହ୍ଲାଇ ।
କଞ୍ଚାଦାରୁକୁ ସେ ନେଇ ମୋଡ଼ି ଅଗ ମୂଳ
ଚୂଲୀରେ ପୂରାଇ ଦେଲେ ଜଳଇ ପ୍ରବଳ ।
ଗଉରୀ ସଉରୀ ନଳ ତ୍ରିବିଧ ରାନ୍ଧଣା
ମାରଣା ନୁହଇ ସେହୁ ଏକୁ ଏକ ଜିଣା ।

ସୁବାସିତ ବ୍ୟଞ୍ଜନକୁ ସୁପାକେ ମିଳଇ
ବିରାଟ ଭୁଞ୍ଜନ୍ତି ତାହା ମୁଖେ ସୁଖପାଇ ।
ବୈବସ୍ୱତ ମନୁ ପୁଣି ପୁଚ୍ଛିଲେ ଉଦନ୍ତ
ଶଉରୀ ପ୍ରତି ରାନ୍ଧଣା ମୁନି ହେ କେମନ୍ତ ।
ଶୌରୀ ନାରାୟଣ ନାମେ ଅଟନ୍ତି କେଶବେ
ସୁରପ୍ରିୟା ନାମରେ ଯେ ଗଉରୀ ହୋଇବେ ।
କାଠ ଜଳାଇ କେବଳ ଅନଳରେ ଦାହା
ଅଲଗାରେ ଭଲ ମାଂସ ସେ ପାଏଟି ଯାହା ।
ମୃଗମାଂସ କାଢ଼ି କରି ଯାହା ଥାଏ କଞ୍ଚା
ସବୁ ଏକ ଯୋଗକରି ପାତ୍ରେ କରେ ସଞ୍ଚା ।
ତଇଳ କ୍ଷୀର ଲବଣୀ ଆଦି ପାତ୍ରେ ଭରି
ଶିଆଳି ଲତା ଗୁଡ଼ାଏ ପାତ୍ରେ ବାନ୍ଧିକରି ।
ଅଗ୍ନି ଜାଳିକରି ତାକୁ ପୋଡ଼ି କଲେ ପକ୍ୱ
ଭୋଜନକେ ସରି ହେବ ତାହାଠୁ ଅଧିକ ।
ବାତ ପିତ ଶ୍ଲେଷ୍ମଆଦି ତହିଁ ନାହିଁ ବ୍ୟାଧି
ସମସ୍ତ ପ୍ରସିଦ୍ଧ ହେଲା ରାନ୍ଧଣା ପ୍ରସିଦ୍ଧି ।
ଏପରି ଶଉରୀ ପାକ ହୁଏ ନିତି ନିତି
ଶଉରୀ ଏହାକୁ କଲେ ଭୁଞ୍ଜେ ସୁରପତି ।
ନାନା ଯୋଗାଡ଼ରେ ସେହୁ ସର୍ବ ଏକକରି
ଆମିଷ ଆମ୍ବିଳ ଏକ ଭାଣ୍ଡେ ନେଇ ଭରି ।
ତାହାକୁ ସିଝାନ୍ତେ ସେହୁ ସିଝେ ଅତିବେଗି
ତାହାକୁ ରାନ୍ଧଣା ଯେ ଅଟେ ସୂର୍ଯ୍ୟପାଗୀ ।
ଗଉରୀ ଶଉରୀ ନଳ ରନ୍ଧା ନିଜପ୍ରତି
ଏ ରାନ୍ଧଣା ରାଜା ଭୁଞ୍ଜି ହୁଅନ୍ତି ତୃପତି ।
ରାନ୍ଧଣା ତଣ୍ଡୁଳଭୀମଲୋଡ଼େ ଯେତେବେଳେ
ଶତେକ ନଉତି ଧାନ ଆସେ ସେତେବେଳେ
ମୁଥ ପ୍ରହାର କରିଣ ତାକୁ ଭୀମସେନ
କରନ୍ତି ତଣ୍ଡୂଳ ତହୁଁ ଅତ୍ୟନ୍ତ ବହନ ।
ନିଃଶ୍ୱାସ ମାରିଣ ତହୁଁ ଉଡ଼ାବନ୍ତି ଚୋପା
ସେ ତଣ୍ଡୂଳକୁ ରାନ୍ଧଣା କରନ୍ତି ସ୍ୱରୂପା ।
ଅମାତ୍ୟ ଆବର ଯୋଦ୍ଧା ଘେନିଣ ବିରାଟ
ବସନ୍ତି ସଙ୍ଗରେ ପୁଣି ଦେବ କୋନ୍ତଭଟ୍ଟ ।
ଆପେ ଅନ୍ନ ଘେନି ତାକୁ ପରଷେ ପାବନି
ପ୍ରଥମରୁ ଶେଷଯାକେ ହସ୍ତେ ପାତ୍ର ଘେନି ।
ପୁଣହିଁ ଅନ୍ନ ମାଗନ୍ତେ ବୁଲାନ୍ତି ସେ ନେତ୍ର
କୋନ୍ତ ବିରାଟ ଭୋଜନ କରନ୍ତି ଏକତ୍ର ।
ପରଶିବାକାଳେ ବିଶ୍ୱରୂପକୁ ବହଇ
ତେଣୁକରି ଉତ୍ତରକୁ ନ ଦିଅନ୍ତି କେହି ।
ଦେଖି ଭୟକରି ଆଉ ନ ମାଗନ୍ତି ଲୋକେ
ଗୋସାଇଁ ଅଣ୍ଟିଲା ବୋଲି କହୁଥାନ୍ତି ଥୋକେ ।
ଆପଣଙ୍କୁ ଅନ୍ନ ସେହୁ ଦିଏ ଏହିମତେ
ସୁଖେ ବୃକୋଦର ଭୁଞ୍ଜେବଳଇ ସେଯେତେ ।
ଭୁଞ୍ଜି ତୃପତ ହୁଅନ୍ତି ପବନର ବାଳ
ସୁଖରେ ରହନ୍ତି ତହୁଁ କ୍ଷତ୍ରି ମହାବଳ ।
ବହୁପ୍ରକାରେ ବିଭୂତି ଭୁଞ୍ଜେ ମତ୍ସ୍ୟସାଇଁ
ମଣୋହି ଶେଷରେ ରାଜା ଉଠି ନ ପାରଇ ।
ବିରାଟ ବୋଇଲେ କୋନ୍ତ ଏ ବଡ଼ ଦୁର୍ଲ୍ଲଭ
ଏମନ୍ତ କରିଣ ଅନ୍ନ ପରଷେ ବଲ୍ଲଭ ।
ଅତ୍ୟନ୍ତ ଯୋଗାଡ଼େ ପୁଷ୍ଟ ହୁଅଇ ସେଭୋଗ
ବପୁକ୍ଷୀଣ ହୋଇବ ହେ ଦେହ ହେବ ରାଗ
କୋନ୍ତ ବୋଇଲେ ବିରାଟ ଏକ କଥା ଅଛି
ଭୋଜନ ସମୟେ ଯେବେ ନିତି ଖାନ୍ତି ପୋଛି
କଣ୍ଠସ୍ଥଳ ପରିଯନ୍ତେ ପୂରଇ ଉଦର
ନାଭିଦେଶ ମନ୍ତ୍ର ନେଲେ ସବୁ ଯାଇ ପାର
ବିରାଟବୋଇଲେକୋନ୍ତତାମୋତେ ଦେଖାଅ
ଶରୀର ଶଉଚ ତୋର କେମନ୍ତ ଶିଖାଅ ।
ଶୁଣ ଆହେ ମତ୍ସ୍ୟଶ୍ୱର ଏମନ୍ତ ମହିମା ।
କାରୁଣ୍ୟ ଚତୁର ମୁଖେ ବୋଲିଥିଲେ ବ୍ରହ୍ମା
ପଣ୍ଡୁ କଲୁଷ ବୋଲିଣ ତାଙ୍କ ପୁତ୍ର ଘେନି
ସୁଆଙ୍ଗ ସାରିଣ ବୋଲି ଯାଙ୍କୁ ପୁତ୍ର ମଣି ।
ତାହାଙ୍କ ନନ୍ଦନ ହେଲେ ଆତାପି ବାତାପି
ମହୀମଣ୍ଡଳେ ଏମାନେ ହୋଇଲେ ପ୍ରତାପୀ ।
ଉଦ୍ଦାଳ ପୁରୋହିତଙ୍କ ପୋଷିଲା ଗଣ୍ଡାଟି
ଚୋରାଇ ବନସ୍ତେ ତାକୁ ଖାଇଲେ ସେ କାଟି
ଅଗ୍ନିରେ ପୋଡ଼ିଖାଇଲେ ତାକୁ ବେନିଭ୍ରାତ
ଆହ୍ନିକକ ସାରିଣ ଗଣ୍ଡା ଖୋଜିଲେ ପ୍ରୋହିତ ।
ନିତିପ୍ରତି ତାଙ୍କ ତୁଲେ ନ୍ୟନ୍ତି ଗଣ୍ଡାଗୋଟି
ସେଦିନ ଗଣ୍ଡାକୁ ଖୋଜି ନ ପାଇଲେ ସେଟି
ଖୋଜି ନ ପାଇଣ ମୁନି ଚିନ୍ତି ହୃଦଗତ
ଜାଣିଲେ ମାରି ଭକ୍ଷିଲେ ଏ ବେନି ଦଇତ ।
ତାପସ ମହାତ୍ମା ହେଲେ ଅତିଶୟ କୋହ
ରାଗେ ଶାପଦେଲେ ଦୁହେଁ ବ୍ରହ୍ମଦୈତ୍ୟ ହୁଅ
ଉଦ୍ଦାଳକ ଶାପ ପାଇ ଆତାପି ବାତାପି
ବ୍ରହ୍ମ ରାକ୍ଷସ ରୂପରେ ବୁଲନ୍ତି ସେ ପାପୀ ।
ଆଶ୍ରମ କଲେକ ଯାଇଁ ପଞ୍ଚବଟୀ ବନେ
ପ୍ରୟାଗକୁ ଯିବା ବାଟ ମଧ୍ୟବର୍ତ୍ତୀ ସ୍ଥାନେ ।
ଯେତେକ ଲୋକ ଗମନ୍ତି ପ୍ରୟାଗ ତୀର୍ଥକୁ
ବାଟ ପଡ଼ିଅଛି ପଞ୍ଚବଟୀ ଅରଣ୍ୟକୁ ।
ପଞ୍ଚାଶ ଯୋଜନ ଯାଏ ନାହିଁ ଘର ଗ୍ରାମ
ଏକମାତ୍ର ବନେ ଅଛି ତାହାଙ୍କ ଆଶ୍ରମ ।

ଦ୍ୱାଦଶ ଚିହ୍ନ ଆବର ଅଙ୍ଗରେ ପଇତା
ଗୃହ ଆରମ୍ଭରେ ବସିଥାନ୍ତି ବେନିଭ୍ରାତା ।
ଦୂରଗମ୍ୟ ବନ ଦେଖି କଲେ ସେ ଆଶ୍ରମ
ତୀର୍ଥବାସୀ ଜନେ ତହିଁ କରନ୍ତି ବିଶ୍ରାମ
ବାଳମୃଗଟାଏ ପୋଷିଥାଏ ସେ ବାତାପି
ପିଣ୍ଡା ନିକଟରେ ବାନ୍ଧି ରଖଇ ଆତାପି ।
ଭୋଜନରେ ଅନ୍ନ ଦେଇ ଅତିଥିଗଣଙ୍କୁ
ବୋଇଲେ ବ୍ୟଞ୍ଜନ ନାହିଁ ମାରିବା ମୃଗକୁ ।
ସେହି ତୀର୍ଥବାସୀଙ୍କର ସମ୍ମୁଖରେ ହାଣି
କେଳାଇ କୁଟାଇ ତାକୁ ତ୍ରୁଣକଲେ ଆଣି
ସ୍ନାନ କରିଣ ଭୁଞ୍ଜନ୍ତି ତହିଁ ତୀର୍ଥବାସୀ
ସୁପକ୍ୱ କରିଣ ସବୁ ଆତାପି ପରଷି ।
ବହୁତ ତୁଷ୍ଟ ହୋଇଣ ଖାନ୍ତି ସାଧୁଜନ
ଆହାର ଶେଷେ କରନ୍ତି ଯାଇ ଆଚମନ ।
ଦିନକର ଶେଷେ ତହୁଁ ଯାଆନ୍ତି ସେ ବାହି
ଥୋକାଏ ପଥ ଆତାପି ଯାଏ ଯେଗୋଡ଼ାଇ
କିଛି ଦୂର ଯାଇ ପୁଣି ଆସଇ ବାହୁଡ଼ି
ଆସରେ ବାତାପି ବୋଲି ଦିଅଇ ସେ ରଡ଼ି ।
ପେଟ ଭିତରେ ପୁରୁଷରୂପେ ଅବତରି
ଗର୍ଜିଣ ବାହାର ହୁଏ ପଞ୍ଜରା ବିଦାରି ।
ସେତେବେଳେ ସେ ପଥିକି ପଡ଼େ ଭୂମିଗତେ
ଆହାର କରନ୍ତି ତାକୁ ଚାହିଁ ବେନିଭ୍ରାତେ ।
କୋନ୍ତଭଟ୍ଟ ବୋଲୁଛନ୍ତି ହେ ବିରାଟ ଶୁଣ
ଏହିମତେ ଭକ୍ଷିଲେ ସେ ଅନେକ ବ୍ରାହ୍ମଣ ।
ସତ୍ୟଯୁଗ ଶେଷଯାଏ ତହିଁ କଲେ ବାସ
ତୀର୍ଥବାସୀ ଅନେକଙ୍କୁ କଲେ ସେହୁ ନାଶ ।
ତ୍ରେତୟାଯୁଗକୁ ଭୋଗକଲେ ଏହିମତେ
ଆତାପି ବାତାପି ନାମେ ସେ ବେନି ଦଇତେ ।
ଦେବୌଦାସନାମେ ସୂର୍ଯ୍ୟବଂଶେ ମନରଥା
ସତାଶୋଇ ସହସ୍ର ବରଷ ଏହୁକଥା ।
କନ୍ୟା କୃଷ୍ଣ ତ୍ରୟୋଦଶୀ ଦିବା ଚନ୍ଦ୍ରବାର
ରୋହିଣୀ ନକ୍ଷତ୍ରକୁ ଯେ ଭୋଗ ଦିନକର ।
ଦଣ୍ଡକମଣ୍ଡଳୁ ଘେନି ଅଗସ୍ତି ମହର୍ଷି ।
ସେ ମହାତ୍ମା ସେହିଦିନ ପ୍ରୟାଗକୁ ଆସି ।
ଆତାପି ବାତାପି ପ୍ରଣିପତ୍ୟ ହେଲେ ଆସି
ଅଗସ୍ତିଙ୍କୁ ରୁହାଇଲେ ହୋଇ ଅଭିଳାଷୀ ।
ସେହି ପରକାରେ କରି ମାଇଲେ ସେ ମୃଗ
ଆତାପି ରନ୍ଧନ କଲା ତାକୁ ଯାଇ ବେଗ ।
ଅଗସ୍ତିଙ୍କୁ ନେଇ ସେହୁ ପରଷିଲେ ମାଂସ
ବଡ଼ ସୁସ୍ୱାଦୁ ବୋଲିଣ ମୁନି କଲେ ଗ୍ରାସ ।
ଭୋଜନରେ ତୁଷ୍ଟ ହୋଇ କଲେ ଆଚମନ
ସେହିଠାରେ ନାଭିମନ୍ତ୍ର କଲେ ଉଚ୍ଚାରଣ ।
ରାତ୍ରକ ରହିଣ ମୁନି ଚଳିଲେ ପାହାନ୍ତି
ଆତାପିକୁ କହି ମୁନି ତହୁଁ ଚଳିଯାନ୍ତି ।
ପଛେପଛେ ଗୋଡ଼ାଇଲା ସେ ମାୟାବୀ ଚପଥ
ବାହୁଡ଼ ବୋଲି ବୋଲନ୍ତି ତାକୁ ମୁନିରାଜ ।
ଆସରେ ବାତାପି ବୋଲି ବୋଲଇ ଅସୁର
କାହୁଁ ସେ ଆସିବ ଭସ୍ମ ହୋଇଲା ଗର୍ଭର
ଯେଉଁ ମହାଋଷି କଲେ ସମୁଦ୍ର ଗଣ୍ଡୁଷ
ଯାହା ଉଦର ସମୁଦ୍ରେ ପଡ଼ି ହେଲା ଭସ୍ମ ।
ବ୍ରହ୍ମରାକ୍ଷସ ବାତାପି ତହିଁ ଭସ୍ମୀଭୂତ
ଆତାପି ନ ପାଏ ଡାକି ଆପଣାର ଭ୍ରାତ ।
ବାହୁଡ଼ି ଅଗସ୍ତି ପାଦେ କରିଣ ପ୍ରଣାମ
ବୋଲେ କେବଣ ମହାତ୍ମା ଅଟ ହେ ଉତ୍ତମ
ଆମ୍ଭେ ଦୁଇଭ୍ରାତ ହୋଇଅଛୁ ବ୍ରହ୍ମଦୈତ୍ୟ
ଅମୋକ୍ଷ ହୋଇଣ ବନେ ପଶିଲୁ ତୁରିତ ।
ବ୍ରହ୍ମହତ୍ୟା କରିଅଛୁ ଉଦର ନିମିତ୍ତ
ତୁମ୍ଭର ଉଦରେ ଭାଇ ହେଲା ଭସ୍ମୀଭୂତ ।
ହେ ଆତାପି ଆମ୍ଭେ ଅଟୁ ଅଗସ୍ତି ତପସ୍ୱୀ
ଗଣ୍ଡୁଷକେ ସମୁଦ୍ରକୁ ପାନ କଲୁ ବସି ।
ଆତାପି ବୋଇଲା ମୁନି ମୁହିଁ ନିସ୍ତରିବି
ଭୋ ତପି ତୁମ୍ଭଙ୍କୁ ମୋକ୍ଷ କାରଣ ମାଗିବି
ଅଗସ୍ତି ବୋଇଲେ ଏବେ ହୁଅ ତୁହି ମୃଗ
ମୋକ୍ଷକୁ କାରଣେ ତୋତେ କହିଦେବା ବେଗ
ମୃଗେକ ହୋଇଲା ତହୁଁ ଆତାପି ରାକ୍ଷସ
ପୋଡ଼ିଣ ଅଗସ୍ତି ମୁନି ତାକୁ କଲେ ଗ୍ରାସ ।
ଆଚମନକୁ ସାରିଣ ଅଗସ୍ତି ତପସ୍ୱୀ
ନାଭିମନ୍ତ୍ରେ ଦୁହିଁଙ୍କୁ ସେ କଲେ ଭସ୍ମରାଶି ।
ଦୁହେଁ ଯାଇଁଣ ପଶିଲେ ଅଗସ୍ତି ଉଦର
ଉଦର ଅଗ୍ନିରେ ପଡ଼ି ହୋଇଲେ ଉଦ୍ଧାର ।
ପୁଣିହିଁ କୋନ୍ତ ବୋଇଲେ ଶୁଣ ନୃପରାୟେ
ଅଗସ୍ତି ପାଖିଲେ ତହୁଁ ମନ୍ତର ଗୋଟିଏ ।
ଆପଣେ କୋନ୍ତ ଶିଖାଇ ଦେଲେ ବିରାଟକୁ
ଏରୂପେ କଲେ ଭୋଜନ ହୋଇଯିବୁ ତାକୁ
ଆତାପି ବାତାପି ଦୈତ୍ୟ ହୋଇଲେ ଯେସନ
ଜଠରାନଳରେ ଭସ୍ମ କଲେ ତପୋଧନ ।
ଅଗସ୍ତି ମୁନିଙ୍କ ମନ୍ତ୍ର ପାଇଣ ବିରାଟ
ଆଧାରଜିତା ହୋଇଣ ହୋଇଲେକ ହୃଷ୍ଟ
ଶୁଣି ବୁଦ୍ଧଜନେ ହେଲେ ଭୋଜନେ ଶକତ
ଆତାପିର ମନ୍ତ୍ରେ ଖାଦ୍ୟ ହେଲା ଭସ୍ମୀଭୂତ ।

ସର୍ବଖାଦ୍ୟ ପକ୍ବକରେ ଅଗସ୍ତି ମନ୍ତ୍ରଟି
ଅଗସ୍ତିଙ୍କୁ ସୁମରିଲେ ପାପ ଯାଏ ତୁଟି ।
ଧଇଲେ ତୁମ୍ଭର ନାମ ସର୍ବ ହେବ ଜୀର୍ଣ୍ଣ
ବାରାନିଧି ଭସ୍ମକଲା ଏମନ୍ତ ବିଧାନ ।
ଜୟ ଅଗସ୍ତି ପଣ୍ଡିତ ତୁମ୍ଭେ ମହାବିଜ୍ଞ
ଭୂତ ଭବିଷ୍ୟତ ଜ୍ଞାତା ଅଟ ହେ ସର୍ବଜ୍ଞ ।
ଭୋଜନଶେଷରେ ଘୋଟେ ଆସି ସର୍ବବ୍ୟାଧି
ଅଗସ୍ତି ସ୍ମରିଲେ ସର୍ବ ହୋଇଯାଏ ଛେଦି ।
ପିତା ନନ୍ଦନ ସୌଭାଗ୍ୟ ସେହୁ ବାଳଖିଲ୍ୟା
ବିହନ୍ତା ପୁରୁଷ ମଧ ଅହର୍ନିଶି ମେଳା ।
ଭୂତ ଭବିଷ୍ୟତା ଜ୍ଞାତା ସେ ମୁନି ପଣ୍ଡିତ
ଅହର୍ନିଶି ଚାରିବେଦ ପଠନେ ଆସକ୍ତ ।
ବିନ୍ଧ୍ୟଗିରି ପର୍ବତକୁ ହେଳେ ସୂକ୍ଷ୍ମକଲ
ବାବୁ ଖେଳେ ବାରାନିଧି କୂଳରେ ଧଇଲ
କୋଟିଏ ଯେ ବ୍ରହ୍ମତେଜ କରିଛ ଧାରଣ
କଷ୍ଟେ କଲେ ଐଶ୍ୱର୍ଯ୍ୟକୁ ଭୋଗୁଛ ଆପଣ ।
ଏକଦୁଷ୍ଟ କରୁ ଯାରେ ଚାରି ଯୁଗ କହି
ମହାଭାରତ ପୁରାଣେ ଯାର ନାମ କହି ।
ଧାତାକୁ ଦୃଢ଼ ଧାରଣ କରେ ଯେହୁ ବଳେ
ମନ ପବନ ଯାନରେ ଯାନ୍ତି ସେ ନିଶ୍ଚଳେ ।
ମୋହର ଶତେ ସହସ୍ର ଦଣ୍ଡ ପରଣାମି
ଶାରଳା ଦାସକୁ ବାରେ ଦୟାକର ସ୍ୱାମୀ ।

—●—

## ବିରାଟ ରାଜ୍ୟରେ ଚନ୍ଦନଯାତ୍ରା ଉତ୍ସବ ପ୍ରବର୍ତ୍ତନ

ପୁଣି ବୈବସ୍ୱତ ମନୁ ପୁଚ୍ଛେ ଅଗସ୍ତିଙ୍କୁ
ଭୀମଅନ୍ନେ ପୁଷ୍ଟ ହୋଇ ଲଭିଲେ ପ୍ରୀତିକୁ ।
ବ୍ୟାଘ୍ରେ ମଲେ ଭୀମ ବଧ କରିଲେ ସମରେ
ଆବର କି ଯୁଦ୍ଧ କଲେ ବିରାଟ ରାଜ୍ୟରେ ।
କହନ୍ତି ମହର୍ଷି ଶୁଣ ଆହେ ବିଲଙ୍କେଶ
କୀଚକ ବଧିକା କଥା କରିବା ପ୍ରକାଶ ।
ଆଶ୍ଚର୍ଯ୍ୟ ହୋଇଲେ ଶୁଣି ବୈବସ୍ୱତ ମନୁ
ଶତେସିଂହ ପରାକ୍ରମ କୀଚକର ତନୁ ।
ଏକା ସିଂହ ପରାକ୍ରମ ବହେ ବୀର ଭୀମ
କେମନ୍ତେ ଭୀମଙ୍କ ଏତେ ହେଲା ପରାକ୍ରମ ।
ଏ ବଡ଼ ଆଶ୍ଚର୍ଯ୍ୟ କଥା ଶୁଣିବାକୁ ଇଚ୍ଛା
ସଂକ୍ଷେପରେ କହ ମୋତେ ପୂରୁ ମନୋବାଞ୍ଛା ।

ଅଗସ୍ତି ବୋଲେ ପାଣ୍ଡବେ ରହିଥିଲେ ଗୁପ୍ତେ
ଅଜ୍ଞାତବାସେ ରହିଲେ ଧନୁମାସ ଅନ୍ତେ ।
ବଇଶାଖ ପର୍ବ କଥା ପଚାରନ୍ତି କୋନ୍ତ ।
ବୈଶାଖ ଯାତ୍ରା ବୋଲନ୍ତି ତହିଁ ସର୍ବଲୋକ
ଏମନ୍ତେ ବସନ୍ତ ଯାତ୍ରା ଅଛଇ ଅନେକ ।
ଦର୍ଶନେ ମୁକତି ପାଇ ରାଜ୍ୟକୁ ପବିତ୍ର
ବହୁତ ଜନ ଦେଖିଣ ହୁଅନ୍ତି ତୃପତ ।
ଆହେ ବିରାଟ ଯେ ଦେଶେ ରଙ୍ଗସଭା ନାହିଁ
ଯାତ୍ରା ଉତ୍ସବ ଯେବଣ ଦେଶେ ନ ହୁଅଇ ।
ଯେବଣ ରାଜ୍ୟରେ ପୁଣି ନାହିଁ ଯାଗ ଯଜ୍ଞ
ଜାଣିବ ସେ ଦେଶ ନିଷ୍ଠେ ଅସୁରଙ୍କ ଭୋଗ୍ୟ ।
ରାଜା ମଧ୍ୟେ ସୁବିଶାଳ ଅଟଇ ତୁମ୍ଭର
ଚନ୍ଦନଯାତ୍ରାର ବିଧି ହୁଏ କି ଏଥିର ।
ବିରାଟ ବୋଇଲେ ଯାହା ପୁଚ୍ଛା କଲୁ କୋନ୍ତେ
ନ ଜାଣଇ ସେହି ଯାତ୍ରା ଅଟଇ କେମନ୍ତେ ।
ମୂର୍ଖଜନ ଗୋଷ୍ଠୀ ମୋର ମୁଁ ଅରଣ୍ୟପତି
ଗୋପାଳଙ୍କ ବିନା ମୋର ନାହିଁ ଅନ୍ୟଗତି
ତୁମ୍ଭପରି ସଜ୍ଜନଙ୍କୁ ପାଇଲି ଯେକାଳେ
ତୁମ୍ଭେ ଥାଇ ଆରୋହଣ କରି ଚିରକାଳେ ।
କୋନ୍ତ ବୋଇଲେ ତୁମ୍ଭେ ହେ ଶୁଣ ନୃପବର
ଏକଲକ୍ଷ ମାଢ଼ ସୁନା ହେବ ଦରକାର ।
ବିରାଟ ବୋଇଲେ ଯାହା ଲାଗିବାର ଲାଗୁ
ତହିଁକି ନାହିଁ ମୋ ଚିନ୍ତା ଘେନ ତାହା ଆଗୁ ।
ଭଣ୍ଡାର ଅଧିକାରୀଙ୍କୁ ନୃପ ଡାକି କରି
ବୋଇଲେ କୋନ୍ତଙ୍କୁ ଦିଅ ଭଣ୍ଡାରାଦି କରି ।
ଭଣ୍ଡାର ଫେଇଣ ଦେଲା ବିରାଟ ବଚନେ
କୋନ୍ତ ତହୁଁ ବିଜେ କଲେ ଭଣ୍ଡାର ଆସ୍ଥାନେ
ବିଶ୍ୱକର୍ମା ସ୍ୱରୂପରେ ଅଟେ ସେ ବିନ୍ଧାଣୀ
ଅୟୁତମାଢ଼ ସୁବର୍ଣ୍ଣ ତାଙ୍କୁ ଦେଲେ ଆଣି ।
ବୋଇଲେ ହେ ବିଶ୍ୱକର୍ମା ଗଢ଼ ବିଶ୍ୱରାଜେ
ଶଙ୍ଖଚକ୍ର ଗଦାପଦ୍ମ ଥିବ ଚତୁର୍ଭୁଜେ ।
ଅମୂଲ୍ୟ ରତ୍ନ ମାଣିକ୍ୟ ଲଗାଇ ଲଲାଟେ
ଅର୍କ ଦେବତା ସ୍ୱାମୀଙ୍କ ପ୍ରାୟ ନଦୀଘାଟେ ।
ଲାଗିଲେ ଯେ ବିଶ୍ୱକର୍ମା ବହୁତ ବିନ୍ଧାଣି
ନାରାୟଣଙ୍କର ମୂର୍ତ୍ତି ନିର୍ମାଣିଲେ ଜାଣି ।
ପଞ୍ଚଅଇବ୍ରତମାଢ଼ସୁବର୍ଣ୍ଣକୁନେଇଦେଲେସେରତନ
ଶୁଦ୍ଧସୁବର୍ଣ୍ଣ ପ୍ରତିମା କଲେକ ନିର୍ମାଣ ।
କରିଲେ ଆଲଟଛତ୍ର ଦଣ୍ଡ ଆଦି ତହିଁ
ଅନେକ ବନ୍ଧାଣୀମାନେ ହୋଇ ଏକତ୍ରରେ
ନଗର ନିର୍ମାଣ କଲେ ନଦୀ ସମୀପରେ ।

ଉତ୍ତରା ବାହିନୀ ହୋଇ ବହେ କୃଷ୍ଣାବେଣୀ
ତହିଁ ଭିତରେ ଉତ୍ସବ ନବର ପ୍ରମାଣି ।
ଫଳିଲା କଦଳୀ ଆମ୍ବ ତହିଁ ରୋପଣ କରି
ନବରେ ରତ୍ନ ନିର୍ମାଣ ଜଗତୀ ବିସ୍ତାରି ।
ସେ ପୁର ପାଇଲା ଶୋଭା ଯେହ୍ନେ ବାରସ୍ୱତୀ
ପୀଢ଼ା ଉପରେ କଳଶମାନ କଲେ ସ୍ଥିତି ।
ରତ୍ନ କାନଫୁଲ କଳା କିଙ୍କିଣି ନିଯୋଗୀ ।
ଦିବା ରାତ୍ରି ନ ଖାଇଣ ଲାଗି ବେଗି ବେଗି ।
ଜଳନ୍ତି ଲକ୍ଷେ ଦିହୁଡ଼ି ବିନ୍ଧାଣିଙ୍କ ଆଗେ
ଗଢ଼ନ୍ତି ଅତିବେଗରେ ଲାଗି ବେଗେ ।
ଆମ୍ବର ଦେଖି ବିରାଟ ବହୁତ ଶରଧା
ରାତ୍ର ଦିବସ ଦେଖନ୍ତି ନିବାରିଣ କ୍ଷୁଧା ।
ସମରାଜ୍ୟ ଲୋକେ ତହିଁ ସମସ୍ତେ ଦେଖନ୍ତି
ଭୋଜନ ନିଦ୍ରା ମୈଥୁନ ସର୍ବ ଉପେକ୍ଷନ୍ତି ।
ଏକବିଂଶ ଦିନେ ସର୍ବେ ନିର୍ବାହିଲେ କର୍ମ
ବିରାଟ ବୋଇଲେ କୋନ୍ତ ସତେ ତୁମ୍ଭ ଧର୍ମ ।
କୋନ୍ତ ବୋଇଲେ ବିରାଟ ଏ ଅଟେ ଯୁକତ
ଧର୍ମଦାସ ପଣ୍ଡାଙ୍କର ଅଟୁ ଆମ୍ଭେ ସୁତ ।
ସମସ୍ତ ଯୁକତେ ଆମ୍ଭେ ଠାକୁର ବରଗି
ସର୍ବ ସୁବିଧାରେ ତୁମ୍ଭେ ଅଟ ମହାଯୋଗୀ ।
ସମରାଜ୍ୟ ଲୋକେ ତୋର ଅତିହିଁ ସୁବେଶ
ମଣ୍ଡଣି କରନ୍ତି ପୁର ହୋଇ ଅତି ତୋଷ ।
ବୈଶାଖ ଶୁକ୍ଳ ତୃତୀୟା ଅଟେ ଚନ୍ଦ୍ରବାର
ରୋହିଣୀର ନକ୍ଷତ୍ରକୁ ଭୋଗ ଯେ ଦିନର ।
ବାଣିଜ୍ୟ ନାମେ କରଣ ଶୁକ୍ଳ ନାମେ ଯୋଗ
ଚନ୍ଦନ ଉତ୍ସବ ଯାତ୍ରା ସେ ଦିନକୁ ଭୋଗ ।
ଚକ୍ରଧର ସ୍ୱାମୀ ଦିବ୍ୟ ବିମାନରେ ବିଜେ
ବୀର ତୁର ନିଶାଣ ଯେ ଟମକହିଁ ବାଜେ ।
ପସରା ଧରି ଚଳନ୍ତି ପସାରୀ ବେପାରୀ
ପଥୁକୀ ଜନ ଗହଳ ହୋଇଲାକ ଭାରି ।
କୃଷ୍ଣାବେଣୀ ନଦୀକୂଳେ ଉତ୍ସବ ନବର
ତହିଁ ବିଜେ କରାଇଲେ ଦେବ ଦାମୋଦର ।
ଦାଣ୍ଡେ ହସ୍ତୀ ଅଶ୍ୱ ରଥ ବଢ଼ଇ ଗହଳ
ଆଦିତ୍ୟ ଲୁଚିଣଗଲେ ପାଟ ଛତ୍ର ତଳ ।
ଗଗନେ ପଥୁକୀଙ୍କର ଉଡ଼ି ପାଦ ଧୂଳି
ଆକାଶେ ଅଦୃଶ୍ୟହେଲେ ଦେବ ବନମାଳୀ ।
ନବର ଭିତରେ ଯାଇ ସମ୍ଭାଇଲେ ଥାଟ
କୋନ୍ତଙ୍କୁ ବହୁ ପ୍ରଶଂସା କରନ୍ତି ବିରାଟ ।
ବଂଶାନୁକ୍ରମେ ବହୁତ ପୁରୁଷ ମୋ ଗଲା
ଏଡ଼େ ବଡ଼ ଯାତ୍ରା କେହି କରିତ ନ ଥିଲା ।
କୋନ୍ତ ବୋଇଲେ ବିରାଟ କରିଥିଲା ପୁଣ୍ୟ
ବହୁ ପୁଣ୍ୟ ଉପୁଜଇ ଧର୍ମ ହେତୁ ପୁଣ୍ୟ ।
ବିଜେ ପ୍ରତିମାକୁ ନେଇ ବସାଇଲେ ନାବେ
ସମସ୍ତ ସମ୍ଭାର ଘେନି ବିଜେ ଧର୍ମଦେବେ ।
ବୀରତୁରେ ନିଶାଣ ଯେ ଟମକ ଘୋଷାଇ
ଉଦଣ୍ଡ ପାଟଛତ୍ର ଯେ ଅତି ଶୋଭାପାଇ ।
ଶ୍ୱେତ ଚାମର ଢ଼ାଳନ୍ତି ଥାଇ ଚାରିପାଶେ
କର୍ପୁର ଚୂଆ ଚନ୍ଦନ ଆମୋଦ ବିକାଶେ ।
ଅନେକ ତରୁଣୀ ଘେନି କୀଚକ ଆସନ୍ତି
ନଉକା ବିମାନେ ବସି କ୍ରୀଡ଼ା ସେ କରନ୍ତି ।
ପବନହୁଁ ବେଗେ ନାବ ବାହି କୁହୁହଳେ
ସୁଦେଷ୍ଣାଯାତ୍ରାକୁବିଜେହେବେକେତେବେଳେ
ପୁଣି ବିରାଟ ଦାସୀକୁ ଆଣିଲେ ହକାରି
ବୋଇଲେ ରାଣୀ ବିଜୟକର ବେଗକରି ।
ରାଜାଙ୍କ ବଚନେ ଗଲା ଚତୁରୀ ରମଣୀ
ବୋଇଲା ଯାତ୍ରାକୁ ବିଜେକର ସାମନ୍ତାଣୀ
ଶୁଣି ମହାଦେଈ ଦାସୀଗଣ ସଙ୍ଗେ ନେଇ
ହାନ୍ଦୋଳାବେବିଜେହେଲେ ଅତିତୋଷହୋଇ
ପଛରେ ଗୋଡ଼ାଇଛନ୍ତି ଭାରା ନିବାରିଣୀ
ନଦୀତଟେ ପ୍ରବେଶିଲେ ବିରାଟର ରାଣୀ ।
ଆଗ ପଛେ ପଢ଼ିହାରୀ ଭିଡ଼ ନିବାରନ୍ତି
ଅନେକ ଯେ ପାଟଛତ୍ର ସଙ୍ଗତେ ଗମନ୍ତି ।
ବାଜେ ତହିଁ ବୀରତୁର ମର୍ଦ୍ଦଳ କାହାଳୀ
କଉତୁକେ ବିହରନ୍ତି ରଙ୍ଗେ ସର୍ବବାଳୀ ।
ନଦୀ ତୀରରେ ବିଜୟ କଲେ ମହାଦେଈ
ରଚିଲେ ଶାରଳା ଦାସ ଶାରଳାଙ୍କୁ ଧ୍ୟାୟି

—●—

## ସୈରନ୍ଧ୍ରୀ ଦର୍ଶନେ କୀଚକର ଦୂତ ପ୍ରେରଣ

କହନ୍ତି ଅଗସ୍ତି ମୁନି ଶୁଣ ମନୁରାଣ
ସୁଦେଷ୍ଣା ସୈରିନ୍ଧ୍ରୀ ସଙ୍ଗେ କରନ୍ତି ଗମନ ।
ଯାତ୍ରା ଦେଖି ଯାଉଛନ୍ତି ସଙ୍ଗେ ଯାଜ୍ଞସେନୀ
ସର୍ବଜନ ମୋହିନୀ ସେ ମରାଳ ଗାମିନୀ ।
ସମସ୍ତେ ମୋହିତ ହେଲେ ତାଙ୍କମୁଖ ଦେଖି
ନାବେ ଥୋଇଣ କୀଚକ ଚାହିଁଲେ ନିରେଖି ।
ଅସ୍ତଗଲା ଦିନମଣି ପ୍ରବେଶିଲା ନିଶି
ଦିହୁଡ଼ି ଆଲୋକ ତେଜି ଦିଶିଲା ବିକାଶି ।
କୀଚକ ଯେ ପଚାରଇ ଡାକି ମୃଦୁସୁଲୀ
ଆଲୋ ବଡ଼ ଅପୂର୍ବ ମୁଁ ଏ ସ୍ଥାନେ ଦେଖିଲି ।

ନାରୀଙ୍କ ସଙ୍ଗରେ ସେହୁ ହୋଇଥିଲା ଉଭା
କୋଟିଏ ଗୁଣେ ସୃଷ୍ଟିରେ ଦିଶଇ ସେ ଶୋଭା ।
କେ ପୁଣି ବିରାଟ କନ୍ୟା ପ୍ରଦାନ କରିଲା
ମୋତେ ନକହି ସେ କେହ୍ନେତାହାକୁ ବରିଲା ।
ଆଲୋ ତାହା ତଥ୍ୟକରି ବେଗେ ଆସଜାଣି
କେବଣ ରାଜାର ସେହୁ ଅଟଇ ଦୁଲଣୀ ।
କୀଚକ ବଚନେ ସେହୁ ମୁଦୁସୁଲୀ ଗର୍ଲା
ସୁଦେଷ୍ଣା ନିକଟେ ଯାଇ ପ୍ରବେଶ ହୋଇଲା ।
ପୁରେ ପଶି ମୁଦୁସୁଲୀ ପୁଚ୍ଛେ ପରିବାରୀ
କେବଣ ରାଜାର ଏହୁ ଅଟଇ କୁମାରୀ ।
ଦାସୀଙ୍କର ଅଗ୍ରତରେ ବୋଲେ ମୁଦୁସୁଲୀ
କିମ୍ଭୂତ-ମାୟା ତାହାର ଜାଣି ନ ପାରିଲି ।
କେବଣ ଦେଶରୁ ସେହୁ ଅଇଲା ଅଭୁତେ
ପତି ଭ୍ରାତା ନାହିଁ ଷଡ଼ମାସ ପରିଯନ୍ତେ ।
କୁଳମୂଳ ନାହିଁ ସେହୁ ହେଲା ଦେଶାନ୍ତରୀ
ମାତାପିତା ନାହିଁ ତାର ଖଟଇ ସେ ନାରୀ ।
ପତି ଭ୍ରାତ ନାହିଁ ତାର ଖଟଇ ସେସେବା
ଅଲେଖ ତିଳକ କରେ ବାନ୍ଧେ ରାଣୀ ଗଭା ।
ଏହି କଥା ଶୁଣି ତହୁଁ ବାହୁଡ଼ିଣ ଦାସୀ
କୀଚକ ଅଗ୍ରତେ ସବୁ କହିଲା ପ୍ରକାଶି ।
ଶୁଣି କୀଚକ ମଦନେ ହୋଇଲା ଉନ୍ମତ୍ତ
ସକଳ କର୍ମ ଲାଗିଲା ତାକୁ ପରିତ ।
କରୁଣା ନାମରେ ଥିଲା ଯେଉଁ ମୁଦୁସୁଲୀ
ଡାକି ତାକୁ କୀଚକ ଯେ ବିଶ୍ୱାସରେ ବୋଲି ।
ନିଅ ଲଲାଟ ବିନ୍ଧିଣ ଶିର ସମୀନ୍ତିନୀ
ମୁକୁତାର ଜାଲି ହରିତାଳ ରେଖା ପୁଣି ।
ଲଲାଟ ପାଟିକି କର୍ଣ୍ଣାଞ୍ଜଳି ଦିଶେ ଶୋଭା
ହୃଦୟ କ୍ଷୟ କଣୟ ପୁଷ୍କର ଯେ ଗଭା ।
ବଳା ଚାପସରି ଦଶ ଅବତାର ମାଳ
ସୁବର୍ଣ୍ଣର ଚୂଡ଼ି କଟି କିଙ୍କିଣୀ ମେଖଳ ।
ବିଦ ମୁଦି ବାହୁଟି ଯେ ସୁନାର ଦ୍ରବ୍ୟନ୍ତ
ରୁଣ୍ଟୁଝୁଣ୍ଟୁ ନୂପୁର ହେ ଚରଣେ ଆମ୍ଭନ୍ତ ।
ଦର୍ଶନକୁ ରୁଚି ନେତ ଖଣ୍ଡୁଆ ପତନି
ଦାସୀକୁ ଡିଆରି କହେ ଏ ସକଳ ଘେନି ।
ଏ ସର୍ବ ଭୂଷଣ ତୁମ୍ଭେ ଘେନି ଏହିକ୍ଷଣି
ସୈରିନ୍ଧ୍ରୀକୁ ନେଇ ଦେବ ଏହି ଆବରଣ ।
ଏ କଣୟ ହାନ୍ଦୋଳାରେ ବିଜୟ କରାଇ
ଭୁବନକୁ ଆଣ ମୋର ସର୍ବକଥା କହି ।
କୀଚକ ବୋଇଲା ମୋର ଶତେକ ଘରଣୀ ।
ମୁହିଁ ଆଜ୍ଞାକାରୀ ହେବି ତାର ବଚନକୁ
ବିନୟେ କହୁଛି ଘେନୁ ମୋ ଭାର୍ଯ୍ୟାହେବାକୁ ।
ମୁହିଁତ ମହାକ୍ଷତ୍ରିୟ ସଂସାରରେ ଜିତା
ସୈରିନ୍ଧ୍ରୀ ନୟନ ବାଣେ ହେଲି ଅଶକତା ।
ଦେଖି ଜାଣିଲଇଁ ସେହୁ ମହତ ସାଧବୀ ।
ଶରୀର ରକ୍ଷଣୀ ସେହୁ ମହାଜନ ଭାବି ।
ଏତେ କହି ଧନରତ୍ନ ଦେଲା ପୋଇଲୀକି
କନକ ସ୍ନାନ କରିବି ଭେଟା ସୈରିନ୍ଧ୍ରୀକି ।
ଅନେକ ଉସତ ତହୁଁ ହୋଇଲା ଚତୁରୀ ।
ଉତ୍ସବ ନବରେ ଗଲା ହୋଇ ବେଗକରି ।
ସୈରିନ୍ଧ୍ରୀକି ହକାରିଣ କହେ ଗୁପ୍ତ କରି
ବସ ଆଗୋ ମହାମ୍ୱାଣୀ ଦୁଃଖ ପରିହରି ।
ଏକାବେଳକୁ ହୋଇଲୁ ମାଗୋ ଲକ୍ଷ୍ୟପୋଶି
ମତ୍ସ୍ୟଦେଶେ ଭାଗ୍ୟ ତୋରଏବେହାଦେଦିଶି
ସ୍ତିରୀଙ୍କର ତିନି ଦୋଷ କ୍ଷଣେ ଲେଉଟାଇ
ଆଜୁତୋ ଭାଗ୍ୟ ଉଦୟ ସବୁ କଷ୍ଟ ଯାଇ ।
ସ୍ତିରୀଙ୍କର ମଧ୍ୟେ ମାଗୋ ତୋ ଜୀବନ ସାଧୁ
ସଙ୍କୋଚନ ରାଜାର ତୁ ହେଲୁ କୁଳବଧୂ ।
ସର୍ବତପେ ଅର୍ଜିଲୁ ତୁ ମାଗୋ ପୁଣ୍ୟଫଳ
ଏବେ ଆସିଣ ହୋଇଲା ତୋର ଭାଗ୍ୟକାଳ
ଦାସୀ ପଣେ ସେବାକରି ଦେଉଥିଲୁ ଦୁଃଖ
ରାଜ୍ୟର କାରେଣୀ ହୋଇ ପାଇବୁ ତୁ ସୁଖ ।
ଶୁଣିଣ ଦ୍ରୌପଦୀଙ୍କର ଉଡ଼ିଲା ସାହସ
ବୋଲଇ ପ୍ରମାଦ ମୋତେ ଚିନ୍ତିଲା ଲୋକେଶ
ରାଜ୍ୟଭାର ତେଜି କନ୍ଦମୂଳ କରି ଗ୍ରାସ
ଦାସୀପଣରେ ପଶିଲି ଏ ଅଜ୍ଞାତ ବାସ ।
ଏଥିରେ ପ୍ରମାଦ ଧାତ୍ରା ଚିନ୍ତୁଛନ୍ତି ଆଣି
ଭାଗବତ ସୁମରନ୍ତି କୃଷ୍ଣ ନାମ ଭଣି ।
ସୈରିନ୍ଧ୍ରୀ ବୋଇଲେକିଲୋ ହୋଇଲତୁବାଇ
ପୂର୍ବେ ଯାହା ଅର୍ଜିଥାଇ ତା ଅବଶ୍ୟ ପାଇ
ହେଇହେଇ ମାତା ଆଗୋ ପୂର୍ବେ ତୋରତପ
କୀଚକ ଦର୍ଶନେ ସର୍ବ ଖଣ୍ଡିବୁ ତୁ ପାପ ।
ଚନ୍ଦନଯାତ୍ରା କରିଲେ ସେ କୋନ୍ତ ପଣ୍ଡାଏ
ତୋର କର୍ମ ଅଇସୁଲକ୍ଷଣୀ ସର୍ବଦାଏ ।
ମାଗୋ ସଙ୍କୋଚନ ରାଜାକୁଳେ ଉତପତ୍ତି
ଜ୍ୟୋତିପୁର ନଗରେ ସେ ଅଟେ ଅଧିପତି ।
ଚକ୍ରବର୍ତ୍ତୀ କିରାତର ବଳଦର୍ପ ଭଞ୍ଜା
ସୁର ନର ପୁରେ ପୁଣି ମୟ ବାଣଗଞ୍ଜା ।
ଏ ମତ୍ସ୍ୟ ଦେଶର ସେହୁ ଅଟେ ଅଧିପତି
ଶତସିଂହ ପରାକ୍ରମୀ କ୍ଷିତିରେ ସେ କ୍ଷତ୍ରୀ ।
ମାଗୋ ବିରାଟ ନିର୍ମାକ୍ଷି ଅଟେ କାଳେକାଳେ
ଦୁଇରାଜ୍ୟ ଭୋଗେ ଏ କୀଚକ ବାହୁବଳେ ।

ଆବର ମହିମା ଦେଖ ତୋର ଶତେ ଭାଇ
ସମରେ ଜିଣି ପାରନ୍ତି ତିନି ଲୋକଙ୍କୁ ହିଁ ।
ସୁଦେଷ୍ଣା ନିକଟେ ଆଗେ ତାର ରୂପ ଚାହିଁ
କନ୍ଦର୍ପରେ ପୀଡ଼ାକଲା ତାହାର ଯେ ଦେହୀ ।
ଆମ୍ଭଙ୍କୁ ରାଇଣ ସେ ଗୋ କରଇ ଭକତି
ଆଜହୁଁ ଖଣ୍ଡନ ହେଲା ତୋହର ଦୁର୍ଗତି ।
ଅଦଭୂତେ ସୁଖପ୍ରାପ୍ତ ଯେବେ ଗୋ ହୁଅଇ
ପାଇଲା ଧନକୁ କେଭେ କେହୂ ନ ଛାଡ଼ଇ ।
ଏହି ଅଳଙ୍କାର ସବୁ କରି ଆଭରଣ
କୀଚକ ମନ୍ଦିରେ ଏବେ ଚଳ ଏହିକ୍ଷଣ ।
ଅନେକ ଚାଟୁ ବଚନେ କହିଲା ସେ କଥା
ଶରୀର କମ୍ପେ ଦେବୀଙ୍କ କୋପ ଅପ୍ରମିତା ।
ଆଲୋ ସ୍ତିରୀକୁଳେ ଜାତ ହୋଇଲୁ ଚଣ୍ଡାଳି
ପର ପୂରୁଷକୁ ମନ ଖଟାଉ ହିୟାଳି ।
ପୂର୍ବର ପାପରେ ପରପୂରୁଷ ପ୍ରାର୍ଥନା
ଯାହା ଅର୍ଜିଥାଇ କଳନ୍ତର ଭୋଗସିନା ।
ବିଟପୀ ନାରୀ ତୁମ୍ଭେ ଲୋ ପରଘରେ ପଶ
ସୁଜନ ଲୋକର ଭଲ କଥାରେ ନ ରସ ।
ଦୁଷ୍ଟପଣ କଥା କହ ସତ ଜନଙ୍କୁ ହିଁ
ଯହିଁ ନାଶଯିବ ଇଷ୍ଟ କରି ଘେନ ତହିଁ ।
ଏହି ଜନ୍ମରେ ତୁମ୍ଭେ ଲୋ ଅଟ ମହାପାପୀ
ଆମ୍ଭଙ୍କୁ ମନ୍ଦବାଣୀ ଲୋ ବୋଲଛୁଅଦ୍ୟାପି ।
ଆମ୍ଭଙ୍କୁ ଭର୍ତ୍ସନା ତୁହି କରୁ ଅନୁକ୍ରମେ
ଉଚ୍ଛିଷ୍ଟକୁ ଭୁଞ୍ଜିବୁଟି ଏହି ଅନୁକ୍ରମେ
ତୁ ଛାର ପାମରୀ ଆଲୋ ଦୁଷିତା ତୁ ହୀନ
ତୋତେ ସ୍ତିରୀକୁଳରେ କେ କରଇ ଲିଖନ ।
ପୋଡୁ ପୋଡୁ ତୋ ବଦନ ନପାଇବୁ ଲଜ୍ଜା
ବରଠାରେ ଯାଇ ପଶ ସ୍ୱାମୀ କର ତେଜ୍ୟା
କେବଣ ନର ତୋତେ ଲୋ ହୋଇବ ବିବାହ
ସ୍ତିରୀକୁଳେ ଦୂଷିତଲୋ ଅନ୍ୟେଦେଇ ଦେହ ।
ସୈରିନ୍ଧ୍ରୀ କଥା ଶୁଣିଣ ଗଲା ସେ ଚତୁରୀ
କୀଚକ ଆଗେ କହଇ ସେ ବିନୟ କରି ।
ସ୍ୱାମୀହେ ପ୍ରବୋଧ କରି କହିଲି ମୁଁ ବାଣୀ
ପାଷାଣେ ଜଡ଼ିତ ପ୍ରାୟ କର୍ଣ୍ଣେ ସେ ନଶୁଣି ।
ଏମନ୍ତ ସୁନ୍ଦରୀ ସ୍ତିରୀ ନାହିଁ ନାରୀକୁଳେ
କେମନ୍ତ ବିଧାତା ତାକୁ ଗଢ଼ିଲା କୌଶଳେ ।
ଜଗନ୍ମୋହନ ଘରେ ସେ ଅଟେ ଅଧିକାରୀ
ସଜ୍ଜନ ଲୋକର ନାମ ଅଟେ ସୈରିନ୍ଧ୍ରୀରୀ ।
କୀଚକ ଶୁଣିଲା ଯହୁଁ ନାସ୍ତି କଲା କଥା
ପରଦାରା ହରଣରେ ଲାଗେ ମନେ ବ୍ୟଥା
ଦ୍ୱିଗୁଣରେ ସୁହାଗ ଯେ ବଢ଼େ ପୁଣ ପୁଣ
ପୁରୁଷ ବିରହୀ ଲାଗେ ତାକୁ କାମବାଣ ।
ନିରାଶ ବଚନ ଶୁଣି ଖେଦ ହେଲା ତାର
ଅସାଷ୍ଟମ ହୋଇଣ ଯେ ପଡ଼ିଲା ଭୂମିର ।
ଠାବେ ଠାବେ ପଡ଼ି କ୍ଷଣେକ୍ଷଣେ ମୋହଯାଇ
ଅବିରତ ଚିତ୍ତ ଛନ୍ନ କାମବାଣେ ବାଇ ।
ଆହାଲୋ ସୈରିନ୍ଧ୍ରୀ ମୋର ଅଟୁ ପଞ୍ଚଭୂତ
ନିରାଶ ବଚନ ଶୁଣି ପ୍ରାଣ କଣ୍ଠାଗ୍ରତ ।
କୋଳେ ଧରି ସେ ପୋଇଲୀମୁଖେ ଜଳସିଞ୍ଚି
ସାଷ୍ଟାମ କରିଣ ତାକୁ ଆଲଟରେ ବିଞ୍ଚି ।
ସଚେତ ହୋଇଣ ଉଠି ସଙ୍କୋଚନ ବଳା
ପୁଣି ବୋଇଲେସୈରିନ୍ଧ୍ରୀତୁମୋ ଗଳାମାଳ ।
ଶରୀର ଦହଇ ମୋର ତୋହର ଅଭାବେ
ଲୋଟୁ ମୋହରଶରୀରେ ତୋ ବସିବା ଠାବେ ।
ତୋର ପାଦତଳିପାରେ ଯେ କୋମଳ କାନ୍ତି
ଦର୍ଶନେ ହୃଦୟ ମୋର ପକାଏ କରତି ।
କୀଚକ ବୋଇଲା ଦାସୀ କେ କରେ ସେବଇ
ମୁଦୁସୁଲୀ ବୋଲେ ତୁମ୍ଭ ଭଗ୍ନୀପାଶେ ଥାଇ ।
କୀଚକ ବୋଲଇ ରତ୍ନମାଳ ମୁଁ ଦେବଇଁ
ମୋହର ଅବସ୍ଥା ଭଗ୍ନୀଠାରେ କହ ଯାଇଁ ।
ବୁଡ଼ିଲା କ୍ଷତ୍ରୀୟପଣ ସର୍ବ କଲି ତେଜ୍ୟା
ଏ ମୋହର ଅବସ୍ଥାକୁ କେମନ୍ତ ତୁ ଭୁଞ୍ଜା ।
ସମସ୍ତ ତୁ କହ ଯାଇ ସେ ଠାକୁରାଣୀଙ୍କି
କିଛିମାତ୍ର ସଙ୍କୋଚ ତୁ ନକରି ତହିଁକି ।
ଅବଶ୍ୟ କହିବୁ ଆଲୋ ତାଙ୍କଠାକୁ ଯାଇ
ସୈରିନ୍ଧ୍ରୀକୁ ଦେବମୋର ପୁରକୁ ପଠାଇ ।
ମୋର ଜୀଇବାକୁ ଯେବେ ଅଛି ତାଙ୍କ ଆଶ
ସୈରିନ୍ଧ୍ରୀ ଭେଟାଇଦେଲେଆଣିମୋର ପାଶ ।
ଉପ୍ରୋଧରେ ତାକୁ ଯେବେ ନ ପାରିବ ବୋଲି
ତେବେ ବଳାତ୍କାରେ ତାକୁ ଆଣିବି ମୁଁ କାଲି ।
ମୁଦୁସୁଲୀ ଗଲା ତହିଁ ବିଦାୟ ହୋଇଣ
ଶାରଳାଦାସ କହଇ ଶାରଳା ଚିନ୍ତିଣ ।

—●—

## ସୁଦେଷ୍ଣା, ସୈରିନ୍ଧ୍ରୀଙ୍କୁ କୀଚକ ନିକଟେ ପ୍ରେରଣ ଓ ସୈରିନ୍ଧ୍ରୀଙ୍କର ସୂର୍ଯ୍ୟଙ୍କ ପ୍ରାର୍ଥନା

କହନ୍ତି ଅଗସ୍ତି ମୁନି ଶୁଣ ମନୁରାଣ
ଯାହାକଲା ସେ କୀଚକ କରୁଛି ବଖାଣ ।
ଚଳିଗଲା ମୃଦୁସୁଲୀ ପ୍ରଭୁ ଆଜ୍ଞା ଘେନି
ସେ ଦିନ ଯାତ୍ରା ସାରିଣ ଚଳନ୍ତି ସଇନି ।
ମଦନମୋହନ ଦେବ ନଗ୍ରେ କଲେ ବିଜେ
ନିଜ ଆସ୍ଥାନେ ବିଜୟ କଲେ ଦେବରାଜେ ।
ସ୍ନାହାନ ଭୋଜନ ଆଦି ସର୍ବ ନିତ୍ୟକର୍ମ
ସାରିଣ ଯେ ବାହୁଡ଼ନ୍ତି ପ୍ରତିଦିନ ଧର୍ମ ।
ଆରଦିନ ପ୍ରଭାତେ ସେ ପଞ୍ଚମୀର ଦିନ
ପଶଇ ସେ ମୃଦୁସୁଲୀ ସୁଦେଷ୍ଣା ଭୁବନ ।
ବହୁ ଅଳଙ୍କାର ଥୋଇ ରାଣୀଙ୍କର ଛାମୁ
କୀଚକର ଦାସୀ ମୁହିଁ କରେ ପରଣାମୁ ।
ଝାଳେ ଝୀନବାସ ତିନ୍ତି ନ ହୁଏ ଗଞ୍ଜାଳି
ସୁଦେଷ୍ଣା ବୋଇଲେ ଏହୁ କିଏ ଲୋ ଜଞ୍ଜାଳି
କରୁଣା ଦାସୀକି ଚାହିଁ ପୁଚ୍ଛେ ମହାଦେଈ
କୀଚକ କିଏ ସାମଗ୍ରୀ ମୋତେ ଅଛି ଦେଇ ।
ଦାସୀ ବୋଲେମାତଃ ତୁମ୍ଭେ ସର୍ବରିପୁ ଧ୍ୱଂସି
ଭୋଗ କରିବ ଅମୂଲ୍ୟ ଏହି ରତ୍ନରାଶି ।
ଆଲୋ କରୁଣାପିତା ମୋ ଛନ୍ତି ନା କୁଶଳେ ।
କ୍ଷମେ ରହିଅଛନ୍ତି ନା କୁଟୁମ୍ବ ସକଳେ ।
କୀଚକ ସହିତେ ମୋର ଏକଶତ ଭ୍ରାତ
କୁଶଳରେ ଅଛନ୍ତି ନା ସେମାନେ ସମସ୍ତ ।
ସବୁ କୁଶଳ କହଇ ଚତୁରୀ ରମଣୀ
ସକଳେ କୁଶଳେ ଛନ୍ତି ଶୁଣ ଠାକୁରାଣୀ ।
ଏକା କୀଚକର ହୋଇଅଛି ଗୁରୁବ୍ୟାଧି
ସକଳ ରାଜ୍ୟରୁ ଲୋଡ଼ି ଆଣିଲୁ ଔଷଧି ।
ଅନ୍ନ ନ ରୁଚେ ତାମ୍ବୁଳ ହେଲା ବିଷବତ
ପଲ୍ୟଙ୍କ ତେଜି ଭୂମିରେ ଗଡ଼ଇ ନିୟତ ।
ପିନ୍ଧିଲା ବସନ ସବୁ ଦିଅଇ ପାଲଟି
ଲଲାଟରେ କରମାରି ଭୂମିରେ ସେ ଲୋଟି ।
ନୟନରେ ଅଶ୍ରୁଜଳ ହୁଏ ଛନ ଛନ
ଗତପ୍ରାଣ ପ୍ରାୟ ତାର ଦିଶଇ ବଦନ ।
ରାତ୍ରେ ତାକୁ ନିଦ ନାହିଁ ଦିନେ ନାହିଁ କ୍ଷୁଧା
କେବଣ ରୋଗ ଘୋଟିଲା ଲାଗେ ବଡ଼ବାଧା ।
ବାରଣ ନ ଗଲା ବ୍ୟାଧି ହୁଏ ଏ ଚରିତ
ଶୁଣି ମହାଦେଈ ହେଲେ ଅତ୍ୟନ୍ତ ଆରତ ।
ଧର୍ମ ଧର୍ମ ସୁମରନ୍ତି ବିରାଟଙ୍କ ନାରୀ .
ରାଜାଙ୍କୁ କହି ଔଷଧ ଆଣ ବେଗ କରି ।
ଆଲୋ ବହୁ ଧନରତ୍ନ ମୋର ତହୁଁ ନିଅ
ବୈଦ୍ୟଙ୍କୁ ଲୋଡ଼ି ତୁମ୍ଭେଲୋ ଶୀଘ୍ର ଆଣିଦିଅ ।
କହୁ କହୁ ସୁଦେଷ୍ଣା ଯେ ହୋଇଗଲା ମୋହ
ବୁଦ୍ଧିମାନ ଭାଇଯେହ୍ନେ ହେଉମୋର ଥୟ ।
ମୃଦୁସୁଲୀବୋଲେ ଦ୍ରଷ୍ଟା ନ ହୁଅଗୋମାୟେ
ଅନେକ ବଇଦ ଆସି କଲେଣି ଉପାୟେ ।
କେବେହେଁ ନ ଘୁଞ୍ଚିଲା ସେ ଅନଙ୍ଗରବ୍ୟାଧି
ତୁମ୍ଭଠାରେ ଅଛି ଭଲ ହେବାର ଔଷଧି ।
ସୁଦେଷ୍ଣା ବୋଲେ ଔଷଧି ପାଇବି ମୁଁ କାହିଁ
କେଉଁ ମହୌଷଧି ମୋତେ ନ କହକିପାଇଁ ।
କରୁଣା ବୋଲେ ସୈରିନ୍ଧ୍ରୀ ଅଛି ତୁମ୍ଭଠାଇଁ
ସେହି ଗଲେ ନିଶ୍ଚେ ଭଲ ହେବ ତାଙ୍କ ଦେହୀ
ନାନା ମନ୍ତ୍ର ଜାଣଇ ସେ ଜାଣଇ ମୌଷଧି
ଏହା ଶରୀର ନିମନ୍ତେ ଭଲହେବ ବ୍ୟାଧି ।
ଶୁଣିଣ ସାଷ୍ଟାମ ହୋଇ ସୁଦେଷ୍ଣାବୋଇଲେ
ସୈରିନ୍ଧ୍ରୀ ନିକଟକୁ ସେ ଆପେ ବିଜେକଲେ
ଅନ୍ତଃପୁର ମଧ୍ୟରେ ଯେ ଥିଲେ ମହାସତୀ
ଧାଡିକାରେ ଉଠିଣ ସେ ବିଜେକଲେ କତି
ସୁଦେଷ୍ଣାଙ୍କ ନିକଟରେ ହୋଇଲେ ସେ ଉଭା
ବାଳଅର୍କ ରାଜା ପ୍ରାୟ ଦିଶେ ତାଙ୍କ ଶୋଭା ।
ରାଣୀ ବୋଇଲେ ଆସିଛି ମୁଁ ତୁମ୍ଭ କତିକି
ମନ୍ତ୍ର ମହୌଷଧି ତୁମ୍ଭେ ଜାଣ କି ବ୍ୟାଧିକି ।
କୀଚକ ମୋହର ଅଟେ ସହୋଦର ଭ୍ରାତ
ତାହାର ବାହୁବଳରେ ମୋ ରାଜ୍ୟ ରକ୍ଷିତ
ଚତୁର୍ଯୁଗ ରାଜାଙ୍କର ଅଟଇ ଏ ଭୂମି
ଏଥେ ରାଜ୍ୟ କରୁଥିଲା ଦୈତ୍ୟ କାଳନେମି ।
ଏ ମହାଦେଶର ରାଜା ଅଟଇ ତ୍ରିଗର୍ତ୍ତ
ଏ ଦୁହିଁଙ୍କୁ ଜିଣି ମୁହିଁ ରାଜ୍ୟକରେ ଏଥ ।
କୀଚକର ଦର୍ପେ ରାଜ୍ୟ ଅଟଇ ମୋହରି
ଏହି କଥା ବିଚାର ଗୋ ମନେ ସୁକୁମାରୀ ।
କେଉଁ ମହାମ୍ୟାଣୀ ତୁ ଗୋ କହକିନା ମୋତେ
ଭାଇ ଦାନ ଦିଆଅ ଗୋ କହୁଛି ମୁଁ ତୋତେ
ସୈରିନ୍ଧ୍ରୀ କହିଲେ ତହୁଁ ଶୁଣ ମହାଦେଈ
ମନ୍ତ୍ର ମହୋଷଧି କଥା ମୁହିଁ ନ ଜାଣଇ ।
ପୁଣି ବୋଇଲେକ ତୁମ୍ଭେ ପବିତ୍ର ପୟୋଧି
ତୁମ୍ଭଙ୍କୁ କି ଅଗୋଚର ଏ ଚତୁରୀ ବୁଦ୍ଧି ।

ମୋ ରୂପ ଦେଖି କୀଚକ୍ ମୋତେ କଲାଇଚ୍ଛା
ଅଟଇ ସକଳ ମିଥ୍ୟା କୂଟବୁଦ୍ଧି ତୁଚ୍ଛା ।
ସୈରିନ୍ଧ୍ରୀଙ୍କର ମୁଖରୁ ଏହିକଥା ଶୁଣି
ସ୍ତମ୍ଭୀତ ହୋଇ ରହିଲେ ତହୁଁ ଯୋଷାମଣି ।
ନିଶ୍ଚୟ ଭାଇର ମୋର ଶିରୀ ହେଲା ଚ୍ୟୁତି
ଭଗ୍ନୀଠାକୁ କେମନ୍ତ ସେ ପେଷିଲାକ ଦୁତୀ ।
ମୋତେ କହିବାକୁ କି ସେ ନ ପାଇଲାଲଜ୍ଜା
ବିପଦକାଳେ ପ୍ରାଣୀଙ୍କୁ ହୀନବୁଦ୍ଧି ଖଞ୍ଜା ।
ଦଇବ ବୁଦ୍ଧିରେ ବେଗ ହୋଇ ସେ ମରଇ
ପର ସ୍ତିରୀ ରତ୍ନ ଧନେ ଯେ ଆଶା କରଇ ।
ସତ୍ୟ କ୍ରିୟା ଛାଡ଼ି ସେହୁ ଅସତ୍ୟେ ରହଇ
ପରମାୟୁ ଥାଉଁ ଥାଉଁ ସେ ପ୍ରାଣୀ ମରଇ ।
ନିସତକାଳେ ଯେ କାଳ ଭୋଗଇ ପୁରୁଷ
ଅର୍ଥ ତେଜ୍ୟାକରି କରେ ନିଅର୍ଥରେ ଆଶ ।
ଯେତେ ପରିବାରୀମାନେ ଥିଲେ ଅନ୍ତଃପୁରେ
ବହୁତ କଟାଳ କରି କହିଲେ ଛାମୁରେ ।
କ୍ରୋଧାନଳେ ଜରଜର ହୋଇଣ କରୁଣା
କୋପରେ ବଚନ ବୋଲେ ସେ ଜଗତଜିଣ ।
କେ ତୋହରମାତାପିତା କେତୋହସୋଦର
ତୋତେ ଦେଖିଣ ବାଇ ମୋ କୀଚକଠାକୁର ।
ବହୁତ ପ୍ରତି ଉତ୍ତର ଦିଅଇ ପୋଇଲୀ
ସମସ୍ୟାକୁ ତ ଦିଅନ୍ତି ଦ୍ରୁପଦ ଦୁଲାଳୀ ।
ସୁଦେଷ୍ଣା ବୋଇଲେ ତୁହି ଶୁଣଲୋ କରୁଣା
ମୋହର ଏ ଆଜ୍ଞା ବୋଲି ନୃପତିଙ୍କୁ ଜଣା ।
ଯାଅ ଲୋ ଯାଅ ଦାସୀ ତୁ କହି କୀଚକକୁ
ଏହି ନୀଚ କଥା ସବୁ ନ ଆଣୁ ମନକୁ ।
ଆଜ୍ଞା ପରମାଣେ ତହୁଁ ଚଳିଲା କରୁଣା
କୀଚକ ସେନାପତିର ବୁଦ୍ଧି ହେଲା ବଣା ।
ମୃଦୁସୁଲୀର ଯିବାକୁ ବିଳମ୍ବ ସେ ଦେଖି
ବିଚାରେ ଆଣିବ ନିଶ୍ଚେ ଏବେ ସୈରିନ୍ଧ୍ରୀକି ।
ନୋହିଲେ ବିଳମ୍ବ କିମ୍ପା କଲାକ କରୁଣା
ବିଳମ୍ବ ଘଟିଲେ କାର୍ଯ୍ୟ ସିଦ୍ଧି ହୁଏ ସିନା ।
ଏମନ୍ତ କାଳେ ପ୍ରବେଶ ହେଲା ମୃଦୁସୁଲୀ
ପଚାରିଲେ କିସ କିସ କଥା ହେଲା ବୋଲି ।
ମୃଦୁସୁଲୀ ବୋଲେ ଶୁଣ ଜ୍ଞାନୀ ଶିରୋମଣି
ସୁଦେଷ୍ଣା ଅମଙ୍ଗ ହେଲେ ତୁମ୍ଭ ବାକ୍ୟଶୁଣି
ବୋଇଲେ କେଡ଼େନିର୍ଲଜ ସୋଦରମୋହରି
ଏହାର ଦେହ ଛୁଇଁଲେ ହେବ ହତଶିରୀ ।
ମୋର ରାଜ୍ୟେ ଅଛି ଜାଣ ସେହୁ ଦାସୀପଣେ
ନୀଚରେ ବଶ କିମ୍ପାଇଁ ହେଲା ଅକାରଣେ ।
ଅପରରେ ଅଙ୍ଗଭୋଗ ଦେଇତ ନପାରି
ଶିରୀ ହାନୀ ହୋଇ ଅପଖ୍ୟାତି ହେବ ଭାରି
ସ୍ୱାମୀ ମୁଁ କହିଲି ଯାଇଁ ତୁମ୍ଭର ଅବସ୍ଥା
ବହୁତ ବିକଳ ଶୁଣି ହେଲେ ଜନ୍ମଦାତା ।
ବୋଇଲେ ସେ ଯେତେଧନନେଉ ଏ ଭଣ୍ଡାରୁ
ଶତେ କନ୍ୟା ଆଣି ରାଜା ପୁଣି ବିଭାକରୁ ।
କୀଚକ ବୋଲେ ନଦୀର ବୋହିଲାକ ଜଳ
ସେପରି କାମେ ବଢ଼ିଲେ ଅପ୍ରମିତ ବଳ ।
କାର ବୋଲ ନ କରିବି ମୁହିଁ କଦାଚିତେ
ଶରୀର ମୋହର ହୃଷ୍ଟ ସୈରିନ୍ଧ୍ରୀ ସହିତେ
ସୁବର୍ଣ୍ଣ ଶରୀର ମୁଁ ଯେ କରିବଇଁ ତ୍ୟାଗ
ଏମନ୍ତ ପ୍ରାଣୀକି ଆଉ କିଏ ଅଛି ଲାଜ ।
କରପତ୍ର ଯୋଡ଼ି ତହୁଁ କହେ ମୃଦୁସୁଲୀ
ମହଦ୍ଦେ ଠାକୁରାଣୀଙ୍କୁ ମୁହିଁ ଘେନିଗଲି ।
ବହୁତ ବିନୟ ତାକୁ ହେଲେ ଠାକୁରାଣୀ
ଭରସି କରିଣ କହି ନ ପାରନ୍ତି ବାଣୀ ।
କୀଚକ ବୋଇଲା ମୋତେ ସେ କଥା ନକହ
ସୈରିନ୍ଧ୍ରୀକୁ ଦେଇ ମୋର ରକ୍ଷାକର ଦେହ
ଯାଅଲୋ କରୁଣା ପୁଣି କହ ତୁ ରାଣୀଙ୍କି
ଯେମନ୍ତେ ହେଲେ ପଠାନ୍ତୁ ତାକୁମୋ ତହିଁକି
ଯେବେସୈରିନ୍ଧ୍ରୀକୁ ମୋରପାଶେନ ଛାଡ଼ିବେ
ନିଶ୍ଚୟେସେ ଭ୍ରାତୃହତ୍ୟା ଦୋଷେଭାଗୀ ହେବେ
ଏହି ପରକାରେ ଯାଇ କହଲୋ ପୋଇଲୀ
ସ୍ୱାମୀ ଆଜ୍ଞାକୁ ମସ୍ତକେ ଧରି ଚଳେ ବାଳୀ
ପ୍ରବେଶ ହୋଇଲା ଯାଇ ନବର ଭିତରେ
ନିଉଛାଳୀ କଲା ବାଳୀ ସୁଦେଷ୍ଣା ପୟରେ ।
ଉଭାହୋଇ କରଯୋଡ଼ି ବୋଲଇ କରୁଣା
ସମସ୍ତ କହିଲେ ଭାଇ ଶୁଣି ହେଲେ ବଣା ।
ସୈରିନ୍ଧ୍ରୀକୁଯେବେ ମାଗୋନଦେବତାହାଙ୍କୁ
ନିଶ୍ଚୟ ହତ୍ୟାର ଦୋଷ ଲାଗିବ ତୁମ୍ଭଙ୍କୁ ।
ଯେବେ ସୈରିନ୍ଧ୍ରୀକୁନିଶ୍ଚେ ନଦେବଗୋମାଏ
ତେବେ ପ୍ରାଣ ହରାଇବ ସଙ୍କୋଚ ତନଯେ
ଶୁଣି ସୁଦେଷ୍ଣା ଚାହିଁଲେ ସୈରିନ୍ଧ୍ରୀ ମୁଖକୁ
କିସ ବୋଇଲା ପୋଇଲୀ ଶୁଣିଲକି ତାକୁ ।
ସୈରିନ୍ଧ୍ରୀ ବୋଇଲେ ମୁହିଁ ଯାହା ଅଛିମାଗି
ସମସ୍ତ ବୋଲିବ ମୋତେ ମୁହିଁ ପରିତ୍ୟାଗୀ
ପଶ୍ଚିମେ ଉଦୟ ଯେବେ ହେବେ ଦିନକର
ରସାତଳେ ପଡ଼ିବ ଗୋ ଯେବେ ମହାଭାର ।
ପର୍ବତ ଉପରେ ଯେବେ ଫୁଟିବ କମଳ
ହେଲେ ମଧ ଏହା ମୋର ବଚନ ଅଟଳ ।

ମୁହିଁ ତୀର୍ଥବାସିନୀ ଗୋ ଅଟେ ଦେଶାନ୍ତରୀ
ଏହି କଥା ଗୋଟି ସତ ଅଟଇ ମୋହରି ।
ଶୁଣଗୋ ସୁଦେଷ୍ଣା ରାଣୀ କହୁଛି ତୁମ୍ଭଙ୍କୁ
ପଞ୍ଚ ଗନ୍ଧର୍ବ ଅଛନ୍ତି ମୋତେ ରଖିବାକୁ ।
ମୋତେ ଯେ ଆଶା କରିବ ମାରିବ ତାହାକୁ
ନରଖି ପାରିବେ ଚନ୍ଦ୍ର ସୂର୍ଯ୍ୟ ଆଦି ତାକୁ ।
ଶୁଣିଣ ସୁଦେଷ୍ଣା ତହୁଁ ହୋଇଲେ ମଉନ
ଧର୍ମକୁ ସୁମରି ମନେ ଚାହିଁଲେ ଗଗନ ।
ନିକଟେ ଡାକି ବୋଇଲେ ଆଗୋ ମୃଦୁସୁଲୀ
ଶୁଣିଲଟି ସକଳ ମୁଁ ଯେତେକ କହିଲି ।
ସାମାନ୍ୟ ନୁହଇ ସେ ଲୋ ଅଟେ ବଡ଼ଜାଣ
ସାମାନ୍ୟ ହେଲେକି କେବୁ ଛାଡ଼ନ୍ତାଣି ପୁଣ ।
ସାମାନ୍ୟ ହୋଇଥିଲେକେ ଭାଗନ୍ତାମୋବାଣୀ
ଶୁଣିଲୁଟିକି ପ୍ରତ୍ୟକ୍ଷେ ସେ ପରମା ଯୋଗ୍ନି
କୀଚକକୁ ବୋଲେ ଯାଇ ଦେଖୁ ଦାସୀପରି
ତାହାରି ଦେହ ଛୁଇଁଲେ ହେବ ହତଶିରୀ ।
ଏ ସବୁ କହିଲେ ଯେବେ ନ ଶୁଣିବ ଅବା
ଉପାୟ କରି କୀଚକ ପୁରକୁ ପେଷିବା ।
ଦିନ ଚାରି ଥୟ ହୋଇ ସ୍ଥିର କରୁ ମତି
ମୁହିଁ ଜାଣିଲିରେ ସ୍ତିରୀ ଅଟେ ମହାସତୀ ।
ସୈରିନ୍ଧ୍ରୀକି ଡାକି ପୁଣି ବୁଝାଇଲେ ରାଣୀ
ଶୁଣିଛନ୍ତି ଯଶସ୍ୱିନୀ ନ ଭାଷିଣ ବାଣୀ
ପାଣ୍ଡବଙ୍କର ଭାରିଯା ଦ୍ରୁପଦ ଦୁହିତୀ
ତାହାଙ୍କୁ ଦେଖି ପ୍ରାପତ ହେଲା ଭଦ୍ରପତି ।
ଦ୍ରୌପଦୀ ବୋଇଲେ ଏହା ନୁହଇ ଯୁକତେ
ଯତି ସତୀ ବିନା ପୃଥ୍ୱୀ ରହନ୍ତା କେମନ୍ତେ ।
ଚନ୍ଦ୍ର ହରଣ କରିଲା ତାରା ମହାସତୀ
ବୃହସ୍ପତି ପାଶେ ରାହୁ ଗଲେ ତାଙ୍କମୂର୍ତ୍ତି ।
ଇନ୍ଦ୍ର ଚରଣ କହିଲା ଗଉତମ ପତ୍ନୀ
ଋଷିଶାପେ ଦେହ ହେଲା ସହସ୍ରେକ ଯୋନି
ସୀତାକୁ ଚୋରାଇ ସେଇ ରାବଣ ମରିଲା
ସୁଗ୍ରୀବ ଭାରିଯା ହରି ବାଳୀ ଭସ୍ମ ହେଲା ।
ଶକୁନ୍ତଳା ହରଣେ ଗୋ ନାଶ ଶମ୍ଭୁ ମନୁ
ତିରିଣ ପ୍ରମାଣେ ଯମ କାଟିଲା ତା ତନୁ ।
ସ୍ୱାମୀ ସେବା ନ କଲେ କି ସେବକହିଁ କୀର୍ତ୍ତି
ତପୋଧନ ତହିଁ ରାଜା କଲାକି ଅନୀତି ।
ସ୍ୱାମୀ ହୋଇ ସେବକକୁ ଯେବେ ହୁଏ ରାଗୀ
ସହସ୍ରେ ଅର୍ଜିଲେ ସୁଦ୍ଧା ନହୋଏସେଭୋଗୀ ।
ମୁଁ ଏବେ ତୁମ୍ଭରାଜ୍ୟରୁ ଯାଉଛି ଗୋମାୟେ
ମୋର ଥିଲେ ପଡ଼ିବଟି ଅନେକ ଉପାୟେ ।

ସୁଦେଷ୍ଣା ବିଚାର କଲେ ଏସ୍ଥାନରୁ ଗଲେ
ପୁର ନିଶ୍ଚେ ପୋଡ଼ିଯିବ ଏହୁ ପିଠିକଲେ ।
ନେଇସୁଦେଷ୍ଣା କୋଳରେ ବସାଇଲେ ସତୀ
ବୋଲେ ଦୋଷ କ୍ଷମାକର ବୋଲିବା ଅନୀତି ।
ଶୁଣି ପ୍ରତ୍ୟୁତ୍ତର ତହୁଁ ଦେଲା ମୃଦୁସୁଲୀ
ରାଗେ ବୋଇଲାଥାଅଲୋ ପୋବନାପୋଇଲି
ପର୍ବତଯାକ ଭାଙ୍ଗିଣ ସବୁ କଲେ ଚୁନା
ଏ ମହୀସ୍ଥଳ ଭିତରେ ସିଂହଦର୍ପସିନା ।
ଅନଙ୍ଗ ପ୍ରାୟ ମୂରତି ସର୍ବ ଗୁଣନିଧି
କୁବେର ସମାନ ଯାଇ ପ୍ରସରଇ ବୁଦ୍ଧି ।
ଆଗୋତାରଭାବିନୀ ତୁ ହେବୁଯେତେବେଳେ
ଦଶା ତୋର ଲେଉଟିଲାତୋ କର୍ମ ସୁଫଳେ ।
କେଉଁ ଜନ୍ମେ ପ୍ରୟାଗେ ତୋ ପଡ଼ିଥିଲା ଅସ୍ଥି
ତେଣୁ ବରିଲା ଲୋ ତୋତେ କୀଚକ ନୃପତି ।
ରାଣୀ ଆଦି ଖଟିବେ ଗୋ ତୋର ପାଦତଳେ
ଚରଣେ ଲକ୍ଷ୍ମୀ ପଡୁଛୁ କର୍ମର ଅବଳେ ।
କୀଚକ ବରିବା ପାଇଁ ଯେବେ ଇଚ୍ଛାକରେ
ରକ୍ଷାକରି ପାରିବେ କି ସ୍ୱର୍ଗର ଅମରେ ।
ଏହି କଥା ସତ୍ୟ ବୋଲି ମନେ ଥାଅ ଜାଣି
କେଶ ଧରିଣ ତୋତେ ଗୋ ନେବ ଏହିକ୍ଷଣି
ସୈରିନ୍ଧ୍ରୀ ବୋଇଲେ ଆଗୋ ଶୁଣ ମୃଦୁସୁଲୀ
ଅମହତ୍ତ୍ୱ ଲୋକର ମୁଁ କଥାକୁ ଜାଣିଲି ।
ମାଗୋ ସୁଦେଷ୍ଣା ସତ୍ୟକୁ ଲଙ୍ଘିଲେଟି ମହୀ
ସଚରାଚର ସମସ୍ତ ନ ବର୍ତ୍ତିବେ କେହି ।
ପୃଥିବୀ ମଧ୍ୟେ ଗୋ ଯେବେ ହେବଶସ୍ୟହାନୀ
ସର୍ବ ପ୍ରାଣୀ ବଞ୍ଚିବେକି ଆଉ ଏ ମେଦିନୀ ।
ଅତ୍ୟନ୍ତ ଅବିଧି ଯେବେ କରିବେଟି ରାଜା
କାହା ଆଗରେ କହିବେ ଆଉ ଜନପ୍ରଜା ।
ଦାସୀମାନଙ୍କ କଥାରେ ମଜ୍ଜିଣ ଦୁବୃତ୍ତ
ମୋ ସଙ୍ଗେ ଲାଗିଲେ ଆୟୁହେବ ତାରଚ୍ୟୁତ
ସୁଦେଷ୍ଣା ବୋଇଲେ ତହୁଁ ବହୁରତ୍ନ ଦେବ
ଭଲେ ଲଲେ ସୁଲକ୍ଷଣୀ ବିଭା ଦିଆଇବ ।
ବଢ଼ିଲା ରୋଗ ଗ୍ରାସିଲା ମାଗୋ ବଡ଼ ଶୋକ
ଉଛୁଳିଲା ନଦୀ ନିଶ୍ଚେ କରଇ ଗୋ ଭୋଗ ।
ବିରସରେ ମହାଦେଈ ଚିନ୍ତେ ହୃତଗତେ
ବିରାଟ ସମ୍ପଦ ନାଶ ଯିବ ହୁଏ ପ୍ରତେ ।
ବର୍ତ୍ତିବ ଆବର କିଗୋ ଜୀବନେ ମୋ ଭାଇ
ଯାହାଅର୍ଜିଛି କେମନ୍ତ ଭୋଗିବ ଯେ ସେହି
ସୁଦେଷ୍ଣା ବୋଇଲେ ତୁହି ଅଟୁ ମହାସତୀ
ବଚନେ ନ ବାକ୍ୟ ହୁଡ଼ିବା କେମନ୍ତେ ଅପ୍ରୀତି ।

ମାଗୋ କଥାଏ ମାଗିବି ତୋତେ ପ୍ରିୟଭାବେ
କୁହ ଭଲ ନୋହିଲେ ନ କହି ଆନଠାବେ ।
ସୈରିନ୍ଧ୍ରୀ ବୋଇଲେ ପୂର୍ବୁ ଯାହାଅଛିମାଗ
ସମସ୍ତ ବୋଲଇ ତାକୁ କରି ପରିତ୍ୟାଗ ।
ଉଚ୍ଛିଷ୍ଟ ଛୁଇଁବ ନାହିଁ ପାଦ ନଛୁଇଁବ
ପୁରୁଷ ପାଶେ ନ ପେଷିକଟ ନ ବୋଲିବ
ଆବର ଯେତେକ ମୋତେ କହିଥିଲ ବାଣୀ
ତାହା ଅବଜ୍ଞା ନକରି ବିଚାରି ଗୋ ପୁଣି ।
ସୁଦେଷ୍ଣାଙ୍କ ବାକ୍ୟରୋଧ ଦେଲା ରୀତି ଦେଖି
ଅବାକ ହୋଇ ରହିଲେ ତହିଁ ଶଶିମୁଖୀ ।
ରାଗେ ତମ ତମ ହୋଇ ବୋଇଲା କରୁଣା
ତୁ ଛାର ପାମରୀ ଆଲୋ ଅଟୁ ଜଗଜ୍ଜିଣା ।
ଆଲୋ ଭିକାରୁଣୀ ତୁହି ଅଟୁ ଦେଶାନ୍ତରୀ
କେ ତୋହର ପିତାମାତା କାହାର ତୁ ନାରୀ
ଆଲୋ ପୁରୁଷ ଘାତକୁ ସେହୁ ମନ୍ଦବାଇ
ତୋ ରୂପରେ ମଜ୍ଜିଛନ୍ତି ଧିକତାଙ୍କ ଦେହୀ ।
ଏହା କହି ଦାସୀମାନେ ସେଠାରୁ ଚଳିଲେ
କୀଚକ ନବରେ ଯାଇ ପ୍ରବେଶ ହୋଇଲେ ।
କରୁଣା ବୋଇଲା ଏହି ଅଳଙ୍କାର ଦେଲି
ଅମୂଲ୍ୟ ରତନ ସବୁ ପାଦେ ଦେଲା ପେଲି ।
ସ୍ୱାମୀ ମୁଁ ତାହାର ଗୁଣ କି ବାହୁନି ପାରେ
ସୁବର୍ଣ୍ଣ ଗଛିଲା ନାହିଁ ତାର ଚରଣରେ ।
ଏହାଠାରୁ ଅଧିକ ଯେ ତାର ପାଦତଳି
ମର୍କତ ନ ଗଛେ ଦେବ ତାହାର ଅଙ୍ଗୁଳି ।
ଅଷ୍ଟରତ୍ନକୁ ଥୋଇଲୁ ନେଇ ତାର କତି
ରତ୍ନରୁ ଅଧିକ ଦେହ ଅଟେ ତାର ଜ୍ୟୋତି ।
ଦେବସ୍ତିରୀ ରତ୍ନ ସେହୁ ମଧପୁରେ ନାହିଁ
ତାହାର ରୂପକୁ ଦେବ କିସ ବର୍ଣ୍ଣିବଇଁ ।
ତା ନିକଟେ ଦାସୀପ୍ରାୟ ଦିଶନ୍ତି ସୁଦେଷ୍ଣା
ତାହାଶୁଣି କୀଚକର ବଢ଼ିଗଲା ତୃଷା ।
ଦେବ କିଈତରେ ସେହୁକହେ ଯେବେ ବାଣୀ
ପିକମାନେ ଦୂରୁଗଲେ ତାର ବାକ୍ୟ ଶୁଣି ।
ଅପାର ଗୁଣ ତାହାର କହନ୍ତେ ବିଶେଷି
କୀଚକକୁ ଘୋଟିଗଲା ଆସି ମୋହଫାଶି ।
କୀଚକ ବୁଡ଼ିଣ ଗଲା ମଦନ ଆବେଗେ
ଯାଇଣ ରାଣୀଙ୍କୁ ଜଣା ତୁ ମୋ ପରିତ୍ୟାଗେ ।
ସେ ମୋହର ଠାକୁରାଣୀ ମୋତେ ସେ ରଖନ୍ତୁ
ଉପାୟ କରିଣ ମୋର ଘରକୁ ପେଷନ୍ତୁ ।
ଶୁଣି ମୃଦୁସ୍ୱୁଲୀ ଗଲା କୀଚକ ବଚନେ
ସନ୍ଦେହ କହିଲା ଯାଇ ରାଣୀ ସନ୍ନିଧାନେ ।

ସହୋଦରେ କାର୍ଯ୍ୟକିବାସୈରିନ୍ଧ୍ରୀରେକାର୍ଯ୍ୟ
ସୈରିନ୍ଧ୍ରୀ ବିହୀନେ ଭାଇ ପ୍ରାଣ ଦେବ ଆଜ
ସୁଦେଷ୍ଣା ବୋଲେ କୀଚକ ନାହିଁ ତା ଯୁକତେ
ଗଲେ ମାରିବ ନ ଗଲେ ମରିବ ନିର୍ଣ୍ଣିତେ ।
ଯେମନ୍ତେ ସେ ଅର୍ଜିଅଛି ଭୁଞ୍ଜୁ ତାର କର୍ମ
ଏହିକଥା ପାଇଁ ସେହୁ ହୋଇଅଛି ଜନ୍ମ ।
ଆଲୋଦାସୀ ଯାଅବୋଲି ଧରିଥାଉ କାୟେ
ଦିନ ଚାରି ପରେ ତାକୁ ପେଷି ଦେବେ ମାଏ ।
ଚଳିଲେ ଚତୁରୀ ଦୂତୀ ଅତି ପରିତାପେ
ଜଣାଇଲେ ଯାଇକରି କୀଚକ ସମୀପେ ।
ଚାରିପାଞ୍ଚଦିନ ପରେ ଦେବ ସେ ପଠାଇ
କ୍ଷୁଧା ହେଲେ ବେନିହସ୍ତେ କିଏକି ଭୁଞ୍ଜଇ ।
ଯେବେ ସେ ନ ଦେବ ଆମ୍ଭ ଭୁବନକୁ ପେଷି
କେଶ ଧରି ମୁଁ ଆଣିବି ଅନ୍ତଃପୁରେ ପଶି ।
ଯାତ୍ରା ସମାପତ ହେଲା ଏକବିଂଶ ଦିନେ
ମୁରୋଟ ଛାଡ଼ିଣ ରାଜା ରହିଲେ ଭବନେ ।
ବହୁ ନିଯୋଗୀମାନଙ୍କୁ ଦେଲେ ନେଇ ଶାଢ଼ୀ
କୌନ୍ତଙ୍କୁବୋଇଲେତୁମ୍ଭେ ରାଜ୍ୟେ ଅଧିକାରୀ
ବୈଶାଖ ଅନ୍ତେ ବିଷମ ଗ୍ରୀଷ୍ମ ପ୍ରବେଶିଲା
ଜ୍ୟେଷ୍ଠମାସ କୃଷ୍ଣପକ୍ଷ ଚତୁର୍ଥୀ ହୋଇଲା ।
ଭୌମବାର ମୂଳା ଯେ ନକ୍ଷତ୍ର ସେ ଦିନର
କୀଚକ ପାଶେ ସୈରିନ୍ଧ୍ରୀ ହେଲେ ଅଭିସାର
ମନେ ବିଚାରି ସୁଦେଷ୍ଣା ଲେଖେ ଅବଧାରୀ
ସଞ୍ଚିତ ପତରେ ତାହା ଲେଖନ ଯେ କରି ।
ଚିଟାଉ ପତ୍ର ଲେଖନ୍ତି ଘେନି ମହାସତୀ
ସୁଦେଷ୍ଣାର କୀଚକକୁ ଆଶୀର୍ବାଦ ନିତି ।
ବାବୁ ତୁହି ଜନ୍ମ ହେଲୁ ସଙ୍କୋଚନ ଘରେ
ଶ୍ରଦ୍ଧାରେ ବଶିଷ୍ଠ ତୋତେ ଧଇଲେ କ୍ରୋଡ଼ରେ
ସନ୍ତୋଷେକଲ୍ୟାଣ ଯେବେ କରିଲେ ସେବାଞ୍ଛା
ଶତସିଂହବଳ ତାର ହୋଇ ତୋତେସଞ୍ଚା ।
ତୁହି କାନ୍ଦି ହରାଇଲୁ ତୋର ବେନିପାଦ
ସେ ପାଦ ବାଜିଲା ଯାଇଁ ବଶିଷ୍ଠଙ୍କ ହୃଦ ।
ତହୁଁ ମୁନିଙ୍କ ହୃଦରୁ ରୁଧିର ଫୁଟିଲା
ଉତ୍ତନଶାୟୀ ହୋଇଣ ମୁନି ପଡ଼ିଗଲା ।
କୋପେ ପୁଣି ଶାପତୋତେ ଦେଲେ ଭଗବନ୍ତ
ଶତସିଂହବଳ ଏକା ସିଂହେ ହେଉ ହତ ।
ସୈରିନ୍ଧ୍ରୀ ପଞ୍ଚଗନ୍ଧର୍ବ ଅଛନ୍ତି ନା ହାଦେ
ସିଂହ ପରାକ୍ରମ ତେଣୁ ଅଛିଟି ପ୍ରମାଦେ ।
ସୈରିନ୍ଧ୍ରୀ ଯାଉଅଛଇ ଏବେ ତୋର ପୁର
ଅନେକ ଦଇନୀ ହୋଇ ଭକ୍ତି ତାକୁ କର ।

ଏହି ମହାମ୍ୟାଣି ତୋତେ କରନ୍ତୁ ସୁଦୟା
ଅକ୍ଷୟ ହୋଇ ଆରୋଗ୍ୟ ଥିବ ତୋରକାୟା ।
ମୋର ବଚନ ନକରି ଯେବେ ତୁ ଭୁଲିବୁ
ଶତସିଂହବଳ ଏକସିଂହେ ନାଶ ଯିବୁ ।
ପ୍ରତ୍ୟକ୍ଷରେ ପରସ୍ତିରୀ ଅଟନ୍ତି ଗୌରବୀ
ଗୌରବୀ ହରଣ କଲେ ହେବୁ ପରାଭବି ।
ମୋହର ଶପଥ ତୋତେ ଠାକୁରଙ୍କ ରାଣ
ଯାଇ ସୈରିନ୍ଧ୍ରୀ ଆସିବ ଜାଣ ଏହିକ୍ଷଣ ।
ବାବୁ ପାଞ୍ଚ ଗନ୍ଧର୍ବଙ୍କ ଭାର୍ଯ୍ୟା ସୈରିନ୍ଧିରୀ
ଛୁଇଁଲେ ଏହାଙ୍କୁ ମୃତ୍ୟୁ ଘଟିବ ତୋହରି ।
ଯେବେ ଜୀବନକୁ ତୋର ରହିଥାଏ ଆଶ
ଦୂରେ ହେବୁ ପ୍ରଣିପାତ ନ ଯିବୁ ତା ପାଶ ।
ବାବୁ ମସ୍ୟ ମଘଦେଶେ ତୁହି ଅଧିକାରୀ
ଏଡ଼େ ବଡ଼ ପ୍ରଭୁପଣ ନ ଦେରେ ତୁ ସାରି ।
ତୁ ବାବୁ ଅଟୁ ପଣ୍ଡିତ ପୁଣ୍ୟ ଭାଗ୍ୟବନ୍ତ
କ୍ଷତ୍ରୀୟବର ସୁନ୍ଦର ରୂପ ଗୁଣବନ୍ତ ।
ଲେଖି ଚନ୍ଦନର ମୁଦ ଦେଲେ ରାଜପତ୍ନୀ
ସୈରିନ୍ଧରୀକୁ ପାଶେ ଡାକି ହୋଇଲେବିନତି
ସୁରହରଷିତ ବଚନ ପଢ଼ଇ ହରଷେ
ସୁଦେଷ୍ଣା ସୈରିନ୍ଧ୍ରୀତୁଯେ ମଧୁର ଆଶ୍ୱାସେ
ମାଗୋ ତୁହି ଅଟୁ ମୋର ପରମା ବିଶ୍ୱାସୀ
ବିଶ୍ୱାସକାର୍ଯ୍ୟରେ ମାଗୋଅନ୍ୟକୁ ନପେଷି
ନବରର ନାରୀମାନେ ଅଟନ୍ତି ଚତୁରୀ
ବିଶ୍ୱାସ କଥା ରଖନ୍ତି ନାହିଁ ଗୋପ୍ୟକରି ।
ମାଗୋତୋହର କରେମୁଁ ଦେଉଛିଲେଖାଟି
କୀଚକ ପୁରରେ ଦେଇ ଆସ ତୁ ଲେଉଟି ।
କୀଚକର ଭାର୍ଯ୍ୟା ନାମ ଅଟେ ସୁରଭିକା
ତାହାରଗୋଚରେଲେଖାଗୋଟିନେଇଦେଖା ।
କୀଚକକୁ ଗୁପ୍ତେ ନେବୁ ଏହି କଥା ବୋଲି
ବହନ ହୋଇ ଆସିବୁ ସେ ସ୍ଥାନରୁ ଚଳି ।
ଘେନ ବୋଲି ମହାଦେଈ ଯାଚିଲେ ସେହସ୍ତେ
ସୈରିନ୍ଧ୍ରୀ ବୋଲନ୍ତି ଏହାମେଣ୍ଟିବିକେମନ୍ତେ
ଲୌକିକ କର୍ମକୁ ଭୃତ ପରାୟେକ ଦିଶି
ନ ଘେନିଲେ କ୍ରୋଧ ହେବ ବିରାଟ ପ୍ରେୟସୀ
ସ୍ୱାମୀଙ୍କ ବଚନ କେଭେ ସେବକ ନ ମେଣ୍ଟି
କେତେହେଁ ମେଣ୍ଟିବି ମୁହିଁଯାଙ୍କ ବାକ୍ୟଗୋଟି ।
ବିଚାରନ୍ତି ଦେବୀ ସେହି ଲେଖା କରେ ଘେନି
ଧର୍ମ ନାମ ସୁମରଣା କଲେ ଯାଜ୍ଞସେନୀ ।
ନଗଲେ କରିବ କୋପ ମୋତେ ମହାଦେଈ
ଗଲେତ କୀଚକ କେଭେ ଛାଡ଼ିଦେବ ନାହିଁ ।

ତୁ ଦେବ ପରମାନନ୍ଦ ପରଂବ୍ରହ୍ମ ଯୋଗୀ
ବଳବନ୍ତ ପୁରୁଷ ତୁ ଖଳ ପରିତ୍ୟାଗୀ ।
ଜୟ ଜୟ ନାରାୟଣ ଭକତ ବତ୍ସଳ
ଏ ମହାସଙ୍କଟୁ ମୋତେ ରଖହେ ଗୋପାଳ ।
ଯେମନ୍ତ ପାମର ମୋର ନ ଛୁଅଇଁ ଅଙ୍ଗ
ତହିଁକି ବିଚାର ତୁମ୍ଭେ କର ଶିରୀଅଙ୍ଗ ।
ଲେଖାକୁ ଦେଇ ସୁଦେଷ୍ଣା ଚଳିଗଲେ ପୁରେ
ଚଳିଲେ ସୈରିନ୍ଧ୍ରୀ ଅନ୍ତଃପୁରର ବାହାରେ ।
ନଗରର ପୂର୍ବଭାଗେ କୀଚକ ଭବନ
ଚଳିଲେ ସୈରିନ୍ଧ୍ରୀ ହୋଇ ଅତି ଦୁଃଖମନ ।
ପବନ ଗତି ପରାୟେ ଚଳନ୍ତି ପାଞ୍ଚାଳୀ
ଦେଖିଲେ ଆକାଶେ ଉଦେଛନ୍ତି ଅଂଶୁମାଳୀ ।
ଗମନ୍ତି ସେ ଯାଜ୍ଞସେନୀ ହୋଇ ନିରୀମାକ୍ଷୀ
କରନ୍ତି ବିନୟ ସେହି ଆଦିତ୍ୟଙ୍କୁ ଦେଖି ।
ଜୟ ତୁ କରତା ସ୍ୱାମୀ ଛାୟାଦେବୀ ପତି
ତିମିର ବିଦାରଣ ହେ ଫେଡ଼ ମୋ ଦୁର୍ଗତି ।
ଏକ ଚକ୍ରେ ଭ୍ରମୁନାଥ ସପ୍ତଅଶ୍ୱ ଯୋଚି
କରୁଣା ବତ୍ସଳ ନାଥ ଜୟ ତୁ ବିରଞ୍ଚି ।
ଉଦେ ନାରାୟଣ ପ୍ରଭୁ ଜୟ ମାରକଣ୍ଡ
ଅଶୀଲକ୍ଷ ଯୁଣ ଯାର ଅଟେ ଅକ୍ଷଦଣ୍ଡ ।
କୋଟିଏ ଯୋଜନେ ଚଳେ ସପ୍ତଅଶ୍ୱ ଯୋଚି
ଦିବସରେ ଉଦେଗିରି ନିଶା କାଳେ ପ୍ରାଚୀ
କିନ୍ନରୀକୁ ବିଦାରିଲୁ କଣୟ ପର୍ବତେ
ଅର୍କଦୈତ୍ୟକୁ ମାରିଲୁ କୋଣାର୍କର ତୀର୍ଥେ
ଜମ୍ବୁଦ୍ୱୀପ ଭୁତଖଣ୍ଡେ ପୃଥ୍ୱୀ ଅଗ୍ନିକୋଣ
ସେ ସ୍ଥାନେ ବାସ ବିରଞ୍ଚି ଦେବ ନାରାୟଣ
ହେ ସ୍ୱାମୀ ସଂଜ୍ଞବଲ୍ଲଭ ଅନନ୍ତ ଈଶ୍ୱର
ଦିବ୍ୟଚକ୍ଷୁ ପୁରୁଷ ତୁ ଅଟୁ ନିରାକର ।
ଚନ୍ଦ୍ରଭାଗାର ଦକ୍ଷିଣେ ମହୋଦଧିଭାଗେ
ବସିବ ନିଶ୍ଚିନ୍ତେ ସ୍ୱାମୀ ତୁମ୍ଭେ ଶୂନ୍ୟଭାଗେ ।
ଲକ୍ଷେକ ପରିମାଣରେ କୁସୁମ ପାଟଳି
ମର୍କତ ଲିଙ୍ଗ ଉପରେ ଦ୍ୟନ୍ତି ପୁଷ୍ପାଞ୍ଜଳି ।
ଏକଲକ୍ଷ ନବକୋଟି ସହସ୍ର ବରଷ
ଧ୍ୟାନରେ ଚିନ୍ତିଲେ ଦେବ ଅନାଦି ପୁରୁଷ ।
ଦୁଃସହ ତପକୁ ଦେଖି ପ୍ରଭୁ ନିରାକର
ପୁଷ୍ପେକ କଟିଲେ ଊଣା ହୋଇଲା ସଂଖ୍ୟାର ।
ସେକ୍ଷଣି ଜାଣିଲେ ପୁଷ୍ପ କେ ହରିଲା ଆଜ
ଏକ ପୁଷ୍ପକୁ ଅନ୍ତର କଲେ ଦେବରାଜ ।
ବିଚାରିଲେ ସେ ପୁଷ୍ପକୁ ଆଉ ମୁଁ ନ ଜାଣି
ଖଣ୍ଡିତ ନୟନ ମୁହିଁ କରିବି ଏକ୍ଷଣି ।

ଏ ସକଳ ପୂଜା ମୁହିଁ କରିବି କେମନ୍ତେ
ଦକ୍ଷିଣ ଚକ୍ଷୁ ତାଡ଼ିଲେ ପୁଷ୍ପର ନିମନ୍ତେ ।
ସନ୍ତୋଷ ହୋଇଲେ ଧରି ଆପଣାର ଡୋଳ
ଲିଙ୍ଗ ଉପରେ ନେଇଣ ଥୋଇଲେ ଚଞ୍ଚଳ ।
ସେହି ଲିଙ୍ଗ ବିଦାରିଣ ଦେଖିଲି ସ୍ୱରୂପ
ତୋତେ ତହୁଁ ଦିଗପାଳ କଲେ ଅନ୍ୟରୂପ ।
ଗୁପତରେ ପୁଷ୍ପ ତହୁଁ ହୋଇବ ପ୍ରସନ୍ନ
କମଳ ସଞ୍ଚାରେ ପୁଣି ଦିଶିଲା ଲୋଚନ ।
ତୁ ପ୍ରଭୁ ପଦ୍ମଲୋଚନ ନିରାକାର ସ୍ୱାମୀ
କିଞ୍ଚିତରେ ରକ୍ଷାକର ମୋତେ ଅନ୍ତର୍ଯ୍ୟାମୀ
ଋଷି ସତ୍ୟଯୁଗେ ନାଥ ତୋ ନାମ କେତୁକ ।
ଚଉଦ ବ୍ରହ୍ମାଣ୍ଡ ଭୋଗକଲେ ଶୂନ୍ୟେ ଏକା
ଶରଣ ରଖିଲି ସ୍ୱାମୀ ଆଦି ଧବଳକୁ
ଭକତ ପାଇଁ ଛାଡ଼ିଲ ଅନ୍ତର୍ଯ୍ୟାମୀ ତାକୁ ।
ବହୁତ ବିନୟ ହୋଇ ବୋଲୁଅଛି ତୋତେ
ଶରଣ ରକ୍ଷଣ ବାନା ନାଶିବ କେମନ୍ତେ ।
ଦ୍ୱିତୀୟ ଅବତାରରେ ପାର୍ବତୀଙ୍କ କଳା
ରୁଦ୍ରବାକ୍ୟ ଭଙ୍ଗୁ ଶାପ ଦେଲେକ କପିଳା
ତାରାବାକ୍ୟେ ପ୍ରାପ୍ତ ମୋତେହେଲେପାଞ୍ଚପତି
ବହୁବର୍ଷ ତପକଲି ଚିନ୍ତିଣ ପାର୍ବତୀ ।
ଏକବର୍ଣ୍ଣର ପାଟଳୀ କୋଟି କୋଟି ନେଲୁ
ତବପୁତ୍ର ଶନିଷ୍ଠରେ କନ୍ୟାଦାନ ଦେଲୁ ।
କୌରବ ସଭାତଳରେ ଦିବସନ କାଳେ
ପଞ୍ଚ ଶତ କୋଟି ବସ୍ତ୍ର ଦେଲେ ଏକାବେଳେ ।
ପରମାନନ୍ଦକ ସତ୍ୟଯୁଗେ ନାରାୟଣ
ତୋତେ ହରିଲା କୌଶିକ ନାମରେ ରାବଣ
ଆପଣା ସ୍ଥାନରେ ନେଇ ମନ୍ଦର ଥୋଇଲା
ଅନୁବ୍ରତେ ଲଙ୍କାରାଜ୍ୟ ଦିବସ ହୋଇଲା
ନବଦଣ୍ଡ ହୋଇଥିଲା ଆସିଣ ଯେ ରାତି
ତୁମ୍ଭପାଇଁ ମାନସରୁ ହୋଇଲି ଉତ୍ପତ୍ତି ।
ମୋତେ ପୁଣି ସେ ରାବଣ ନେଇଥିଲା ହରି
ବିଷମ କାଳରେ ରାମ ହେଲେ ଦ୍ୱନ୍ଦକାରୀ ।
ତବାର୍ଥେ ସେ ରାବଣକୁ ରାମ କଲେ ନାଶ
ତହୁଁ ଦିନକର ଜ୍ୟୋତି ସକଳ ପ୍ରକାଶ ।
ମୁହିଁ ତୋତେ ତୁହି ମୋତେ ବହୁବାରଜନ୍ମି
ଏ ସଙ୍କଟରୁ ଉଦ୍ଧାର ମୋତେ ବାରେସ୍ୱାମୀ
ଯେବେଣଜନ୍ମେରାବଣ ମୋତେନେବାବେଳେ ।
ମହାଖଳା ପଡି ସେହୁ ଥାଏ କମଣ୍ଡଳେ ।
ଏହି ପରକାରେ ମୁହିଁ ଥିଲି ଅବତରି
ତହୁଁ ଆଣିଲେ ଯେ ମୋତେ ଗଗନ ବିହାରୀ ।
ମୁହିଁ ଥିଲି ଶଙ୍କରଙ୍କ ପ୍ରିୟା ସେତେବେଳେ
ତୁହି ବିଚାରିଲୁ ନାଥ ତୋର ଦିବ୍ୟଡ଼ୋଳେ ।
ସ୍ୱାମୀ ଇନ୍ଦ୍ର ନାଶଗଲା ସ୍ରଷ୍ଟାର ବିବାଦେ
ପଞ୍ଚୁପାଣ୍ଡବ ରୂପରେ ଜନ୍ମିଲେ ସେ ହାଦେ ।
କର୍ମର ଅବେଳ ଆସି ପଡ଼ିଲା ଗୋସାଇଁ
ଅଜ୍ଞାନରେ ପଶିଲୁ ଯେ ଗୋପ୍ୟ ହେବାପାଇଁ ।
ସୈରିନ୍ଧ୍ରୀ ନାମରେ ମୁହିଁ ଏଥେ ଅଛି ପଶି
ହୋଇଅଛି ଆଜ୍ଞାକାରୀ ସୁଦେଷ୍ଣାଙ୍କ ଦାସୀ ।
କୀଚକଠାରୁ ପେଷିଲା ମୋତେ ଧର୍ମ ଲଙ୍ଘି
କେହି ମୋରସାହାନାହିଁ ମୋସାଙ୍ଗରେସଙ୍ଗୀ
ଅଥବା ପାମର ମୋତେ ନ ଚିହ୍ନିବ ବର୍ଣ୍ଣ
ଅଥବା ବଳାତ୍କାରରେ କରିବ ଲାଞ୍ଛନ ।
ଯଦ୍ୟପି କୀଚକ ମୋତେ ଧରିବାକ ବଳେ ।
ମୁହିଁ କି ଆଉ ବର୍ତ୍ତିବି କ୍ଷଣେ ମହୀତଳେ ।
ତୋର ପ୍ରାଣ ହରାଇବି କେଉଁପରି ମୁହିଁ
ପୂର୍ବଭାଗେ ବହୁକାର୍ଯ୍ୟ ମୋହର ଅଛଇ ।
ତୁ ଦେବ ଭକ୍ତବତ୍ସଳ ଅନନ୍ତ ଅନାଦି
ତୋର ସତ୍ୟ ତୁହି ଦେବ କର ଏବେସିଦ୍ଧି ।
ତୁହି ଦେବ ସଙ୍କଟରେ କାଳ ଉଦ୍ଧାରନ୍ତା
ତୁହି ଦେବ ଜଗତର ସାଧ ମନ୍ତ୍ରଦାତା ।
ତୋତେ ଲଙ୍ଘିଲା ସଂହିତା ତନୁଜ ଯେ ରାହୁ
ହିରଣ୍ୟ ବିଦାରକ ତୁ ଦେବ ବିଶ୍ୱବାହୁ ।
ତୁହି ଦେବ ଉତପତ୍ତି ପ୍ରଳୟାନ୍ତକାରୀ
ପରମାନନ୍ଦ ନାଥ ତୁ ସର୍ବ ଅଧିକାରୀ ।
ତୁହି ଦେବ ବିଶ୍ୱରୂପ ଜଗତର ଗୁରୁ
ତୁହି ଦେବ କୃପାଜଳ ସର୍ବ କୃପାକରୁ ।
ତୁହି ଦେବ ପତି ସପ୍ତପୁରୁଷ ଉତ୍ତମ
ତୁହି ଦେବ ଜାଣି ପୂର୍ଣ୍ଣକର ମନସ୍କାମ ।
ତୁହି ଦେବ କରୁ ଶୀତ ଗ୍ରୀଷମ ବରଷା
ତୁହି ଦେବ ଷଡ଼ଋତୁଙ୍କର ଆଦି ଭୂଷା ।
ତୁହି ଦେବ ମନ ଦୁଃଖ ବାରେ ହୁଅ ଦୁଃଖୀ
ଏ ଦୁରାପଦ କଷଣୁ ନିଅ ମୋତେ ରଖି ।
ଉଦୟ ନାଥ ଚରଣେ ଶରଣ ମୋ ନିତ୍ୟେ
ଶାରଳାଦାସ ବିନୟ ଭାବେ ଅନୁବ୍ରତେ ।

—●—

## ଛାୟାମାୟାଙ୍କ ସାହାଯ୍ୟେ ଦ୍ରୌପଦୀଙ୍କ ଗମନ ଓ କୀଚକର ଲାଞ୍ଛନା

ଏଥୁ ଅନନ୍ତରେ ଶୁଣ ମନୁ ନୃପବର
ଯେଉଁପରି କଥାହେଲା ଯାଜ୍ଞସେନୀଙ୍କର ।
ଦ୍ରୌପଦୀ ବଚନ ଶୁଣି କମଳ ଲୋଚନ
ନିଜ ମାନସ ମଧ୍ୟରେ ତାହା ବିଚାରିଣ ।
ଛାୟା ମାୟା ଦୁହିଁଙ୍କୁ ହିଁ ବୋଇଲେ ହକାରି
ମର୍ତ୍ତ୍ୟପୁରେ ସୈରିନ୍ଧ୍ରୀକୁ ଯାଅ ରକ୍ଷାକରି ।
କୀଚକ ପୁରକୁ ଯାଉଅଛି ଯାଜ୍ଞସେନୀ
ବହନ କରିଣ ତୁମ୍ଭେ ଆସ ତାଙ୍କୁ ଘେନି ।
ସ୍ୱାମୀଙ୍କ ବଚନେ ଛାୟାମାୟା ଦୁଇଭଗ୍ନୀ
ଦୁହେଁ ପ୍ରବେଶ ହୋଇଲେ ସ୍ୱାମୀଆଜ୍ଞାଘେନି
ଦେଖିଲେକ ମାହେଶ୍ୱରୀ ବେନିଦେବୀ କତି
ସାନନ୍ଦେ ସୈରିନ୍ଧ୍ରୀ ତହୁଁ କଲେ ପାଦଗତି ।
କୀଚକ ନବର ସନ୍ନିହିତେ ହେଲେ ଯାଇ
ସେ ବିଶ୍ୱାସୀ ମୃଦୁସୁଲୀ ବାରତା କହଇ ।
କୀଚକ ରହିଥିଲେ ଯେ ଚନ୍ଦ୍ରଶାଳା ପୁରେ
ଶୁଣିଲା ସୈରିନ୍ଧ୍ରୀ ଆସେ ଆମ୍ଭର ନବରେ ।
ତହୁଁ ଧାତିକାରେ ଉଠି ହେଲା ତୋଷମନ
ପାଇଲେ ଯେସନେ ଅନ୍ଧ ପୁଣି ଚକ୍ଷୁଦାନ ।
ବେଗ ବେଗ ବେଶଭୂଷା ହୋଇ ବୀରମଣି
ସିଂହାସନେ ବିଜେକଲା ହୋଇ ସିଂହଠାଣି ।
ଅନେକ ରତନ ସେହୁ ଆଭରଣ କରେ
ମୃଗନାଭି କସ୍ତୁରୀକୁ ଲେପଇ ଶରୀରେ
ବେଳ ପାଞ୍ଚଦଣ୍ଡ ଦିନକର ଆସି ହୋଇ
କୀଚକପୁରେ ସୈରିନ୍ଧ୍ରୀ ପ୍ରବେଶିଲେ ଯାଇଁ ।
ଅନ୍ଧାର ଘର ଦିଶିଲା ଅତି ଜ୍ୟୋତିର୍ମୟେ
ଅନେକ ପ୍ରଫୁଲ୍ଲ ହେଲା କୀଚକର କାୟେ ।
ବହୁ ଆଲଟ ଚାମର ବାଳାମାନେ ଧରି
ଖଟୁଛନ୍ତି ଲକ୍ଷେ ତହିଁ ବିଳାସିନୀ ନାରୀ ।
ପ୍ରଫୁଲ୍ଲ ହୃଦୟ ତାର ସୈରିନ୍ଧ୍ରୀକୁ ଦେଖି
ରେ ପ୍ରାଣବଲ୍ଲଭୀ ମୋତେ ରଖ ଶଶୀମୁଖୀ ।
ଶରଦ ପୂର୍ଣ୍ଣିମା ଚାନ୍ଦ ତୋର ମୁଖଗୋଟି
ଦରିଦ୍ର ଭବନେ କଲୁ କଣୟକୁ ଦୃଷ୍ଟି ।
ତୁହି ଯେବେ ମୋତେ ଇଚ୍ଛାକଲୁରେ ସଙ୍ଗାତ
ମୁଁ ମନ୍ଦମନ୍ଦ କରିଛି ଉଠାଇଣ ଦୂତ ।
ପରେ ଡକାଇଛି ମୁହିଁ କାର୍ଯ୍ୟ ନାଶକଲି
ମୁହିଁ ଲାଜ ପାଇ ତୋର ଶରଣ ପଶିଲି ।
ମୋର ମନ୍ଦପଣ ଦେଖି ମନେ କଲୁ କୋପ
ବାହୁପାଶେ ବାନ୍ଧି ମୋତେ ନାଶ ତୋରତାପ ।
ଅନେକ ଚାଟୁ ବଚନ କୀଚକ କହଇ
ସ୍ନେହବଶେ ସୈରିନ୍ଧ୍ରୀର ନିକଟକୁ ଯାଇ
ଏକଲୟ କରିଣ ସେ କରେ ଏକଦୃଷ୍ଟି
ସୈରିନ୍ଧ୍ରୀ ଥୋଇଲେ ସ୍ୱର୍ଣ୍ଣପାତ୍ରେ ଲେଖାଗୋଟି ।
ତହିଁପରେ ଚତୁଃସମ ଥୋଇଲେ ସେ ନେଇ
ତାରସମ୍ମୁଖରୁ ଗଲେ ପଛଘୁଞ୍ଚା ଦେଇ ।
ଝଟତି ସେ ଲେଉଟିଣ ପାଇ ମହାଭୟେ
ଦେଖି କୀଚକ ମନରେ ବିଷାଦିତ ହୁଏ ।
ଲେଉଟନ୍ତେ ଉଠିଲା ସେ କୀଚକ ତଡ଼ତି
କାହିଁ ଯାଉଅଛୁ ଚାଲି କହି ଏ ଭାରତୀ
କୋଳ କରିବାକୁ ଧାଏଁ ରହ ରହ ବୋଲି
ଅନ୍ତରୀକ୍ଷେ ଛାୟା ମାୟା ପକାଇଲେ ପେଲି ।
ଅସାଷ୍ଟମେ ପଡ଼ିଗଲା ବଦନକୁ ମାଡ଼ି
ଶରୀରରୁ ପଞ୍ଚଆତ୍ମା ଗଲା ପରି ଛାଡ଼ି ।
ପୁଣି ମହାବୀର ଉଠେ ହୋଇଣ ସାଷ୍ଟାମ
ସୈରିନ୍ଧ୍ରୀକୁ ଆକର୍ଷଇ ମତି ତାର ଭ୍ରମ ।
ସୈରିନ୍ଧ୍ରୀକୁ ଛିଞ୍ଚାଡ଼ି ଦେଲେ ବାମପାଦଗତେ
କନିଷ୍ଠ ଅଙ୍ଗୁଳି ବାଜିଗଲା ହୃଦଗତେ ।
ପୁଣି ବୋଲଇ କୀଚକ ମୋହ ଛାଡ଼ି ଉଠି
ଭୋ ପ୍ରାଣବଲ୍ଲଭୀ ବୋଲି ଧଇଲା ଲେଉଟି ।
ପୁଣି ଦରାଣ୍ଡି ଧରନ୍ତେ ପଡ଼ିଲା ଅଚଳ
ଭିଡ଼ିଣ କୀଚକ ତାହା ଭ୍ରମେ କରେ କୋଳ
ସତୀକୁ ଓଗାଳିଲେ ସେ ସକଳ ପୋଇଲୀ
କୀଚକ ଅସାଷ୍ଟାମରେ ଧରନ୍ତି ସେ ବାଳୀ ।
ରାଗଭରେ ପେଲିଦେଲେ ଦ୍ରୁପଦ ଦୁଲାଳୀ
ଧରିଥିବା ଦାସୀମାନେ ପଡ଼ିଗଲେ ଢଳି ।
ଭୋଳେ କୀଚକ ନ ଛାଡ଼େ ଦ୍ରୌପଦୀ ଅଞ୍ଚଳ
ସେ ସତୀ ମାଡ଼ିଆସନ୍ତେ ପଡ଼େ ମହୀତଳ ।
କ୍ଷଣକ୍ଷଣ ମୂର୍ଚ୍ଛାଯାଇ ପଡ଼େ ମହାବଳୀ
ବୋହି ପଡ଼ଇ ଶୋଣିତ ଶରୀରରୁ ଗଳି ।
ରୁଧିର ଲେପନ ହେଲା ତାହାର ଶରୀର
ମନ୍ଦାର କୁସୁମ ପ୍ରାୟେ ଦିଶଇ ଆକାର ।
ପୁର ମଧ୍ୟରୁ ବାହାର ହେଲେ ସଇନ୍ଧିରୀ
କୀଚକ ସୈରିନ୍ଧ୍ରୀ ଚେଳ ଆଣ୍ଟେ ଅଛି ଧରି
ସୈରିନ୍ଧ୍ରୀଙ୍କୁ ବେଢ଼ିଛନ୍ତି ଛାୟା ମାୟା ବେନି
ଆସ୍ଥାନ ତଳକୁ ବୋଲି ତାଙ୍କୁ ଗଲେ ଘେନି
ବିରାଟଙ୍କ ଆସ୍ଥାନରେ ଲାଗିଲା ଗହଳ
ରୋଦନ୍ତି ସୈରିନ୍ଧ୍ରୀ ଯାଇଁ ଆସ୍ଥାନର ତଳ ।

ସର୍ବେ ଚକିତ ହୋଇଲେ ଏହିପରି ଦେଖି
ଜନମନ ମୋହିନୀ ସେ ଶରଚ୍ଚନ୍ଦ୍ର ମୁଖୀ ।
ଆସ୍ଥାନେ ଅଛନ୍ତି ରାଜା ଆଉ କୌନ୍ତଭଟ୍ଟେ
ପଶା ଖେଳୁଛନ୍ତି ଦୁହେଁ ଅତି ମନତୁଷ୍ଟେ ।
କୀଚକର ଅବସ୍ଥାକୁ ସକଳେ ଦେଖିଣ
ଆଶ୍ଚର୍ଯ୍ୟ ହୋଇ ରହିଲେ କିଛି ନ ବୋଲିଣ ।
ଅଞ୍ଚଳ ଧରି କୀଚକ ଅଛଇ କତିରେ
ବିକଳ ହୋଇ ସୈରିନ୍ଧ୍ରୀ ରୋଦଇ ଉଚ୍ଚରେ
ସୈରିନ୍ଧ୍ରୀ ବୋଇଲେ ଶୁଣ ଆହେମତ୍ସ୍ୟପତି
ଏତୁମ୍ଭ ରାଜ୍ୟରେ ହେଲା ମୋର ଏତେଶାସ୍ତି
ଆଗେ ଶୁଣିଥିଲି ମୁଁ ଧାର୍ମିକ ତୁମ୍ଭେ ନୃପତି
ଦେଖ କି ଅବସ୍ଥା କରେ ଏ ପିଶାଚମତି ।
ତୁମ୍ଭର ନିକଟେ କେତେ ସେବା ନ କରନ୍ତି
ପ୍ରଭୁ ହୋଇଥିଲେ କି ବଳାତ୍କାରେ ଧରନ୍ତି
ରାଜାଙ୍କର ମନକଥା ଜାଣିବା କେମନ୍ତେ
ଅନାଥ ଲୋକେ ସୁଦୟା କରେ ଅନୁବ୍ରତେ
ପ୍ରଜାମାନେ ଗୋ ଗୋଧନ ଅନାଥ ନିର୍ମାକ୍ଷି
ମରଣ ସମ୍ପଦ ଯାହା ଏମାନଙ୍କୁ ଦେଖି ।
କ୍ରୋଧ ହୋଇଣ ସୈରିନ୍ଧ୍ରୀ ପୁନର୍ବାରପୁଚ୍ଛି
ବଳାତ୍କାରେ କୀଚକ ଯେ ମୋତେ ଧରୁଅଛି
ବିରାଟ କରିଲେ କୋପ ଦେବୀବାକ୍ୟ ଶୁଣି
ଦେଖ ଏ ମୋଢ଼ୀ ପ୍ରକୃତି କହେ ନଷ୍ଟବାଣୀ
ଯାର ବାହୁବଳେ ମଘ ମତ୍ସ୍ୟ ବେନି ରାଜ୍ୟ
ଆଳୋଟ ଭାର୍ଯ୍ୟାହୋଇଲେଭୋଗିବୁଐଶ୍ୱର୍ଯ୍ୟ ।
ନୀଚ ପୀରତି ହୋଇଲେ ଆପେ ହୁଏ ହୀନ
ଅମାର୍ଗ ବାଟ ପଶିଲେ ବପୁହୁଏ କ୍ଷୀଣ ।
କହୁ କହୁ ରାଗିଗଲେ ମତ୍ସ୍ୟ ଅଧିକାରୀ
ବୋଇଲେ ଆହେ କୀଚକ ନିଅ ତାକୁ ଧରି ।
ନିରାଧାର ବଚନକୁ ଶୁଣି ଦୁଷ୍ଟମତି
ସୈରିନ୍ଧ୍ରୀର କର ଧରି ଝିଙ୍କେ ସେନାପତି ।
ରାଜା ଅନ୍ୟାୟ କରିଲେ ନ ବର୍ତ୍ତନ୍ତି କେହି
କେବଣ ଗୁଣରେ ରାଜା ଥିବା ତୁମ୍ଭ ତହିଁ ।
କୀଚକ ଟାଣନ୍ତେ କେବେ ନଚଳେସୈରିନ୍ଧ୍ରୀ
ଯେସନେକ ନ ଚଳଇ ତିଳାର୍ଦ୍ଧେ ହିମାଦ୍ରୀ ।
ନିଅରେ କୀଚକ ଧରି ପୁଣି ରାଜା ବୋଲି
ବୋଇଲା ସୈରିନ୍ଧ୍ରୀ ତୋରଆଜିଠାରୁ ହେଲି ।
ବିରାଟ ବଚନେ ସେହୁ ଟାଣେ ବେନିକର
ଯେଉଁବଳେ କମ୍ପମାନ ହୁଏ ଗିରିବର ।
ସୈରିନ୍ଧ୍ରୀଙ୍କର ଦୁର୍ଦ୍ଦଶା ଦେଖିଣଯେ କୌନ୍ତ
ଧର୍ମସୁମରି ବସିଲେ ହେଠକରି ମାଥ ।

ଭୋ ବିଷ୍ଣୁ ପ୍ରତିକାରକୁ କର ବାସୁଦେବ
ଏହିକ୍ଷଣି ଏ ବିରାଟ ସମ୍ପଦ ସରିବ ।
ପାରିକର ଦେବ ନାରାୟଣ ଭାବଗ୍ରାହୀ
ଭ୍ରାତାମାନେ ଯେଉଁପରି ନଦେଖନ୍ତୁ କେହି
ଭୀମ ଅର୍ଜ୍ଜୁନ ଦେଖିଲେ ମରିବ ବିରାଟ
ନିମିଷକେ ନାଶହେବ୍‌ବେ ଯା ସମ୍ପଦ ଥାଟ ।
ମୁହିଁ ତ ଦିନ ବଞ୍ଚନ୍ତି ଏହିପୁରେ ରହି
କିଞ୍ଚିତ ଦୋଷେ ପ୍ରାଣରେ ନାଶଯିବ ଏହି ।
କୌନ୍ତ ବୋଇଲେ ଏସବୁ ନଯୋଗାଏ ବାବୁ
ଯେତେ ଦଣ୍ଡ ଦେବୁ ତୁହି ଅନୀତି ଅର୍ଜ୍ଜିବୁ ।
ସମୁଦ୍ର ଲଘିଂଲେ କାହିଁ ପୃଥ୍ୱୀହେବ ରକ୍ଷା
ଶିବସେନା ନ କଲେ କି ପୂରେ ମନବାଞ୍ଛା ।
ଷଣ୍ଡ ପ୍ରହାର କରନ୍ତେ ନ ବର୍ତ୍ତନ୍ତି ପାଦେ
ଧର୍ମ ଲଘିଂଲେ ବର୍ତ୍ତନ୍ତି ନାହିଁ ଅପ୍ରମାଦେ ।
ବିରାଟ ବୋଲନ୍ତି ଏହୁ ଅନୀତିର କର୍ତ୍ତା
କେବଣ ଭାଗ୍ୟେ କୀଚକ ହେବ ଏହା କର୍ତ୍ତା ।
ପ୍ରୟାଗରେ ଝାସିଥିଲେ ପୂରେ ମନବାଞ୍ଛା
କୀଚକର ପ୍ରସନ୍ନରେ ପୂର୍ଣ୍ଣହେବ ଇଚ୍ଛା ।
ଭୋଜନ ପାଇଲେକେଭେ ତେଜେ କି ବହ୍ନି
କୀଚକ ରତ୍ନ ପାଇଛି ଧନ୍ୟ ଏ କାମିନୀ ।
ବିପୁଳ ସମ୍ପଦ କିମ୍ପା ପେଲିଦିଏ ପାଦେ
ବହୁତ ଭୋଗ ଭୁଞ୍ଜିବ କୀଚକ ପ୍ରସାଦେ ।
ବିରାଟ ବୋଇଲେ ପୁଣ୍ୟେ ସୁନ୍ଦର ଯୁବତୀ
ବହୁ ପୁଣ୍ୟରେ ସୁନ୍ଦର ପୁଂସ ମିଳେ ପତି ।
ସୁଲକ୍ଷଣରେ ହୁଅନ୍ତି ଅଇସୁଲକ୍ଷଣୀ
ବହୁତ ପୁଣ୍ୟରେ ହୁଏ ଧନସୁତ ପୁଣି ।
ସୁଲକ୍ଷଣୀ ସ୍ତିରୀରତ୍ନ ପାଇଲା ସେ ପାଶ
ଧର୍ମ ବିଚାରେ ଏ ପାପ ଲଭିବ ଅବଶ୍ୟ ।
ସ୍ତିରୀଙ୍କର ତିନିଦଶା କ୍ଷଣକେ ତୁଟଇ
କୀଚକ ସୈରିନ୍ଧ୍ରୀଠାରେ ତା ଘଟି ଅଛଇ ।
ଗୋବିନ୍ଦଙ୍କ ନାମଧରି ମୌନଛନ୍ତି କୋଳେ
ବିଚାରିଣ ଦଇବ ତୁ କଲୁ ଏତେବେଳେ ।
ଅନଳ ଭିତରୁ ଜାତ ଯେଉଁ ଯାଜ୍ଞସେନୀ
ଏତେଦୂର ପରିଯନ୍ତେ କଲୁ ହୀନମାନି ।
ସୈରିନ୍ଧ୍ରୀ ବୋଇଲେ ଶୁଣଆହେଦେବକୌନ୍ତେ
ପ୍ରଶଂସନ୍ତି ତୁମ୍ଭ ଧର୍ମ ବିଚାର ନିମନ୍ତେ ।
ବିରାଟ ରାଜ୍ୟକୁ ଆସି ହେଲେ ନିରିମାଖି
ନିର୍ମାକ୍ଷୀ ଜନରେ ବାରେ ତୁମ୍ଭେ ହୁଅସାକ୍ଷୀ ।
ଧର୍ମଙ୍କୁ ପଚାରି ତୁମ୍ଭେ ସବୁ କଥା କୁହ
ମୁଁ ଦୁଃଖିନୀ ପାଇଁ ପଦେ କିପାଇଁ ନ କୁହ ।

ଆହେ ଧର୍ମ କୋନ୍ତ ପଣ୍ଡା ସାକ୍ଷୀ ହୁଅତିଲେ
ତୁମ୍ଭେ ଥାଇ ଏ କୀଚକ ଧରେ ମୋତେ ବଳେ
ଯୁଧିଷ୍ଠି ସମାନେ ରାଜା କରିଥାନ୍ତି ସେବା
କୀଚକ ହରଣୁ ମୋତେ ପାରିକରି ଦେବା ।
କହି ବିନୟେ ସୈରିନ୍ଧିରୀ ବହୁ ସ୍ତୁତି ବୋଲି
କୋନ୍ତକୁ ଚାହିଁ ପଡ଼ିଲା ହୋଇ ଗଡ଼ଘାଲି ।
କୋନ୍ତ ବୋଇଲେକ ଶୁଣ ଆଗୋ ସୈରିନ୍ଧ୍ରୀ
ରାଜା ହରିଲା କାହାକୁ କରିବା ଗୁହାରି ।
ତୋହର ପ୍ରାର୍ଥନା ଆମ୍ଭେ ଅନେକ ସହିଲୁ
କର ତୋହରକାର୍ଯ୍ୟଗୋ ଆମ୍ଭେତ ଦେଖିଲୁ
ସଇନ୍ଧିରୀ ବୋଲେଗୋସାଇଁମୁଁ ନୁହେଁଅନାଥା
ପଞ୍ଚ ଗନ୍ଧର୍ବ ମୋହର ଅଟନ୍ତି ହେ ଭର୍ତ୍ତା ।
ସବୁ ସହନ୍ତି ଅସହ୍ୟ ଅଟେ ସ୍ତ୍ରୀ ହରଣ
ଯେ ମୋତେ ହରିବ ତାର ଘେନିବେ ପରାଣ ।
ସଇରିନ୍ଧି ରୀ ବଚନଶୁଣି କୋନ୍ତ ବୋଲେ
ତୋ ପଞ୍ଚ ଗନ୍ଧର୍ବେ ଜୀଇଁ ଥାଉଁଥାଉଁ ମଲେ ।
ସୈରିନ୍ଧ୍ରୀ ବୋଇଲେଦେଖାଯିବ ବଳେସିନା
କୋନ୍ତ ବୋଲେ ରକ୍ଷାକରି ପାରଇ ଭାବନା ।
ବିରାଟ ବୋଇଲେ ଯାର ଶତସିଂହ ବଳ
ଯାର ଭୟେ ଯମଦଣ୍ଡ ଛାଡ଼ିଦିଏ କାଳ ।
ଗନ୍ଧର୍ବ ମାତ୍ରକେ ଛାର କେତେମାତ୍ର ହୋଇ
କୀଚକ ମହାବଳୀର ଛନ୍ତି ଶତେଭାଇ ।
ସୈରିନ୍ଧ୍ରୀ ବୋଇଲା ତୁମ୍ଭେ ଶୁଣ ମତ୍ସ୍ୟପତି
ପୁରୁଷ ମରାଇ ବୋଲି ନ ଦେବ ଅଖ୍ୟାତି ।
ସୈରିନ୍ଧ୍ରୀ ବଚନେକୋନ୍ତଭଙ୍ଗ ପୁଣିବୋଲେ
ସେ ପାଞ୍ଚ ଗନ୍ଧର୍ବ ତୋର ଜୀଇଁଥାଉ ମଲେ ।
ବିରାଟ ବୋଇଲେ ମତେ ନ କହ ଏ ଗୀର
ସେହି କଥାକୁ ନ ଡରେ ଏ କୀଚକବୀର ।
ନାରୀଏ ଶ୍ରୀହସ୍ତେ ତୋତେ କରାଇବେ ସ୍ନାନ
ଏତେ ଦାସ ଦାସୀଙ୍କୁ ଗୋ ଛାଡ଼ି ଅକାରଣ ।
ସୈରିନ୍ଧ୍ରୀବୋଇଲେ ହୋଇଅଛିରଜୋବତୀ
ଆଜହୁଁ ଚାରିଦିବସ ନ ହୋଇବ ପ୍ରୀତି ।
ଆହେ କୀଚକ ଅଶୁଦ୍ଧି ହୁଏ ଯେଉଁ ନାରୀ
ପ୍ରଥମ ଦିନେ ଛୁଇଁଲେ ଚାଣ୍ଡାଳରେ ସରି ।
ଯେଉଁ ଯେଉଁ ବସ୍ତ୍ର ପିନ୍ଧି ତାହାକୁ ଛୁଇଁବ
ସେ ବସ୍ତ୍ରକୁ ଧୋଇ ସ୍ନାନ କଲେ ପାପଯିବ ।
ଦ୍ୱିତୀୟ ଦିନେ ଛୁଇଁବେ ଯେବେ ସେହିନାରୀ
ଛୁଇଁଲେ ଅବଶ୍ୟ ବ୍ରହ୍ମହତ୍ୟା ସଙ୍ଗେ ସରି ।
ଅଶୁଦ୍ଧା ସ୍ତିରୀ ଛୁଇଁଲେ ତୃତୀୟ ଦିବସେ
ସ୍ତିରୀଲିଙ୍ଗ ଭଗ୍ନଦୋଷ ପାଆନ୍ତି ପୁରୁଷେ ।
ଚତୁର୍ଥ ଦିନ ଛୁଇଁଲେ ଅଶୁଦ୍ଧା ଯୁବତୀ
ଗୋହତ୍ୟା ବ୍ରହ୍ମହତ୍ୟା ଯେ ପୁରୁଷେ ପାଆନ୍ତି ।
ମହାପାତକୀ ଚତୁର୍ଥ ଦିନେ ଯେ ଛୁଅନ୍ତି ।
ପଞ୍ଚମେ ଶୁଦ୍ଧ ଅଗସ୍ତି ମୁନି କହିଛନ୍ତି ।
ବଳାତ୍କାରେ ଆସି ମୋର ଛୁଇଁଲେ ଶରୀର
ଶିରୀ ଆୟୁଷ ତୁଟିଲା ଜୀବନେ ତୋହର ।
କ୍ଷୁଧାରେ ପ୍ରାଣୀଏ ଯେବେ ଆରତ ହୁଅନ୍ତି
ଦେଖାନାହିଁ କେବେ ଦୁଇ ହାତରେ ଭୁଞ୍ଜନ୍ତି ।
ବିପ୍ର ହୋଇଣ ଜଳକୁ ଯେବେ ଭକ୍ଷକରି
କ୍ଷତ୍ରିୟ ହୋଇ ସମର ସ୍ଥାନୁ ଅପସରି ।
ବୈଦ୍ୟହୋଇକରିଯେବେନିଜେହୋଏରୋଗୀ
କେଶ ସାଜିଯାଏଯେବେ ହୋଇକରିଯୋଗୀ ।
ବ୍ୟାଧିମନ୍ତ ହୋଇ ଯେବେ ମତ୍ସ୍ୟସ୍ତିରୀଭୋଗୀ
ଏହିପରି କାମକଲେ ନାଶଯାନ୍ତି ବେଗି ।
ଅତ୍ୟନ୍ତ କୃପଣେ ନାଶ ଯାଆନ୍ତି ଯେ ସାଧୁ
ଅତ୍ୟନ୍ତ ପ୍ରୀତିରେ ନାଶ ହୋଇଯାନ୍ତି ବନ୍ଧୁ ।
ପୁରୁଷ ହୋଇଣ ଯେବେ ଅସତ୍ୟ ଆଚରି
ଏମାନେହିଁ ନ ବର୍ତ୍ତନ୍ତି ବୁଝ ତ ବିଚାର ।
ସୈରିନ୍ଧ୍ରୀ କହିଲେ ପୁଣ କୀଚକ ଅଗ୍ରତେ
ପଣ୍ଡିତ ନାଶ ଯାଆନ୍ତି ଅନ୍ୟାୟ ନିମନ୍ତେ ।
ବୃକ୍ଷର ଫଳ ପ୍ରାପତ ଯେବେ ହେବ କରେ
କିସ ଆଉ ଭୁଞ୍ଜିବା ଯେ ତାହା ବିଳମ୍ବରେ ।
ଯୁକତେ ମୋହର ଶୁଦ୍ଧ ସ୍ନାହାନର କାଳେ
ବେଶ ଭୂଷଣ ସାଜି ମୁଁ ଯିବି ସେତେବେଳେ
ଆଜକୁ ହୋଇଛି ଦୁଇଦିନ ପାକାସ୍ପର୍ଶ
ଉଚିତ ନୁହଇ ମୋତେ ଛୁଇଁବା ପୁରୁଷ ।
ଆହେ କାଲି ରଜନୀରେ ତୁମ୍ଭପୁରେ ଯିବି
ତୁମ୍ଭର ମନର ସୁଖେ ଭୋଗ ଦିଆଇବି ।
ଭାବେ ଭଣିଲା ଅଭୟା ଦେବୀ ଅନ୍ନପୂର୍ଣ୍ଣା
ସୈରିନ୍ଧ୍ରୀ ବାଣୀ ତାହାକୁ ମୋହବନ୍ଧ ସିନା
କୀଚକ ବିଚାର କରେ ହୃଦଗତେ ପୁଣି
ଚତୁରୀ ଶିରୋମଣି ଏ ସିଂହାଣେ ସିହାଣୀ ।
କୀଚକ ବୋଇଲା ତୋର ଯେତେ ଥିଲା ଇଚ୍ଛା ।
କେଉଁ ଅଭାଗ୍ୟରୁ ମୋତେ କରିଲୁ ତୁ କକ୍ଷା
ସୈରିନ୍ଧ୍ରୀ ବୋଇଲେହୁଏ ଚୋରିଶୃଙ୍ଗାରରେ
ଭାରିଯାରେ ନାଶ ଯାନ୍ତି କୁଳଶ୍ରେଷ୍ଠ ନରେ ।
ପଞ୍ଚଗନ୍ଧର୍ବ ମୋହର ଅଟନ୍ତି ଯେ ପତି
ସେହି ମୋତେ ଆଶା କରିଥିଲେ ନିତିପ୍ରତି ।
ଆସ୍ଥାନରେ ରାଜାମୁଖେ ଯହୁଁ ହେଲା ଆଜ୍ଞା
ଗନ୍ଧର୍ବେ ରାଗିଣ କିସ କରିବେ ପ୍ରତିଜ୍ଞା ।

ଆସ୍ଥାନରେ ବସ ତହୁଁ ଆଜ୍ଞା ଦେଲେ ରାଜା
କାଲିଠାରୁ ତୋହର ମୁଁ ହୋଇବଇଁ ଭାର୍ଯ୍ୟା ।
କୀଚକ ବୋଇଲା ଏଡ଼େ ଅଟୁ ତୁ ସୁଜ୍ଞାନୀ
ଆସିବୁଟିକି ସଙ୍ଗାତ ତୁ ଆଜ ରଜନୀ ।
ଏହା କହିଣ ସୈରିନ୍ଧ୍ରୀ ଚଳିଲା ଭବନ
କୀଚକ ପ୍ରବେଶ ହେଲା ଆପଣା ଆସ୍ଥାନ ।
ରଜନୀ ପ୍ରହରେ ପାଞ୍ଚଘଡ଼ି ହେଲା ଆସି
ଅନ୍ତଃପୁରକୁ ନଇଲେ ଯହୁଁ ସେ ସୁକେଶୀ ।
ସୁଦେଷ୍ଣା ବିଚାର କରେ ସୈରିନ୍ଧ୍ରୀ ଯେଗଲା
ଚାଣ୍ଡାଳ ଭାଇ ମୋହର ଆସି ତ ନ ଦେଲା ।
ଆଜ ରାତ୍ରଯାଏ ଦେବ ମୋତେ ଭଲେଭଲେ
କର୍ମ ସୁଫଳ ହୋଇବ ବିପଦ ନୋହିଲେ ।
ଭୋ ଧର୍ମ ଦେବତା ତୁମ୍ଭେ ବାରେ କରକ୍ଷମା
ସର୍ବ ସିଦ୍ଧ ହେଉ ମୋର ପୁରୁ ମନୋବାଞ୍ଛା ।
ନବରର ସିଂହଦ୍ୱାରେ ପ୍ରାଚୀର ଭିତରେ
କୋନ୍ତ ନିଦ୍ରା ଯାଇଛନ୍ତି ଏକାନ୍ତ ମନ୍ଦିରେ ।
ଚଳନ୍ତି ସୈରିନ୍ଧ୍ରୀ ତହୁଁ କୋନ୍ତଙ୍କ ଛାମୁକୁ
ସୁମରନ୍ତି ଭଗବାନ ଉଦ୍ଧାର ହେବାକୁ ।
ଆପଣ ଜାଣ ତ ନାଥ ମୋହର ଅବସ୍ଥା
କାହାକୁ ସାକ୍ଷୀ କରିବି ତୁ ସର୍ବ କରତା ।
ତବଯାତ୍ରାକୁ ଦେଖନ୍ତେ ହୋଇଲି ମୁଁ ଦୁଃଖୀ
କି ପାପ କରିଲି ମୋତେ ରଖ ଚକାଆଖି ।
ମୋହର କଷ୍ଟ କହିବି ସ୍ୱାମୀଙ୍କ ଅଗ୍ରତେ
ନିଶାରେ ଗମନ୍ତେ କେହୁ ନ ଦେଖନ୍ତୁ ମୋତେ ।
ଯେବଣ ଉଲୁକ ବିଦ୍ୟା ବ୍ୟାସ ଦେଇଛନ୍ତି
ସେ ବିଦ୍ୟା ପ୍ରଭାବେ ଦେବୀ ଗଲେ ନିଶାରାତି ।
ତୁଳସୀବଲ୍ଲଭ ନାମେ ବାରେ କର ଘେନା
ଶାରଳା ଦାସ କରଇ ମୁକତି କାମନା ।

—●—

## ପଞ୍ଚୁପାଣ୍ଡବଙ୍କ ନିକଟରେ ଦ୍ରୌପଦୀଙ୍କ କୀଚକ ମୃତ୍ୟୁର ଗୁପ୍ତ ପରାମର୍ଶ

କହନ୍ତି ଅଗସ୍ତି ମୁନି ଶୁଣ ମନୁରାଣ
ସତୀ କୋପାନଳେ ଯାହା ହୋଇଲା ଘଟନ ।
ବ୍ୟାସ ଦେଇଥିଲେ ଯେଉଁ ପାଦୁକା ମନ୍ତ୍ରଟି
ଏକ ପାଦକରେ କୋନ୍ତପାଶେ ଯାଇ ଭେଟି ।
ମନ୍ଦିରରେ ଶୋଇଛନ୍ତି ଧର୍ମଙ୍କ ନନ୍ଦନ
ଭୂତଳ ଉପରେ ନିଦ୍ରାବଶେ ଅଚେତନ ।
କଷାବସ୍ତ୍ର ପ୍ରହରଣ କଷାବସ୍ତ୍ର ପାଡ଼ି
ମସ୍ତକେ ସୀମନ୍ତ ଅତି ଯତନେ ସଜାଡ଼ି ।
ନିର୍ଦ୍ଧୂମ ଅଗ୍ନିକୁ ଜିଣି ବିକଶଇ କାୟେ
ଦେଖି ସୈରିନ୍ଧ୍ରୀ ଲଲାଟେ ବେନିକର ଦିଏ ।
ହେ ସ୍ୱାମୀ ରାଜାଧିରାଜ କଷ୍ଟା ଜଗଜ୍ଜେଠି
ମହିମା ବିକାଶ ଅଟେ ଯାର ନାମ ଗୋଟି ।
ହେ ସ୍ୱାମୀ ଯେ ପାଦପଦ୍ମେ ଲକ୍ଷେ ରାଜା ବନ୍ଦେ
ଶ୍ରୀ ନାରାୟଣ ନମନ୍ତି ଯାର ପାଦପଦ୍ମେ ।
ନାଗ ନର ଅମରାଦି ତ୍ରୈଲୋକ୍ୟର ସ୍ୱାମୀ,
ସର୍ବଦା ସେବା କରନ୍ତି ଯାକୁ ଅନ୍ତର୍ଯ୍ୟାମୀ ।
ସ୍ୱାମୀ ଗୋରୁ ଚୋରିକରି ଅନଳ ସୁରସି
ତ୍ରିଯୁଗାନ୍ତେ ତୋ ଦର୍ଶନେ ତୋ ଚକ୍ଷୁକୁ ଦିଶି ।
ସ୍ୱାମୀ ଅହିଂସା ଅପାପୀ ମହିମା ଅଶେଷ
ତୁମ୍ଭେ କି ନ ଜାଣ ନାଥ କହିବି ମୁଁ କିସ ।
କୋନ୍ତ ଶୁଣି ବୋଇଲେ ତୁ ବାତୁଳୀପରାୟେ
ବକବକ ହେଉଛୁସେ କି କଥା ଲୁଚାଏ ।
ପୁଣି ବୋଇଲେ ଏଠାରେ କ୍ଷଣକେ ନ ରହ
ପାରିଲେ ତୋହର କଥା ଭୀମଆଗେ କହ ।
ସେହି ତୋତେ ଦୟାକଲେ ରକ୍ଷାହୋଇପାରୁ
ଅଥବା ବଲ୍ଲଭ ଯାଇ ତାକୁ ଗୋପେ ମାରୁ ।
ବ୍ୟାଘ୍ର ମଲ୍ଲ ମାଇଲା ସେ ଜାଣୁ ପରାକ୍ରମ
ତାର ପାଦେ କହ ତୋତେ ରକ୍ଷାକରୁ ଭୀମ ।
କୋନ୍ତ ମୁଖୁ ନିରାଧାରେ ବଚନକୁ ଶୁଣି
ନିରାଶେ ସୁନ୍ଦରୀ ତହୁଁ କରିଲେ ପ୍ରୟାଣି ।
ନଗର ପଶ୍ଚିମଦ୍ୱାରେ ନଟପା ମନ୍ଦିରେ
ସୈରିନ୍ଧ୍ରୀ ପ୍ରବେଶ ଯାଇଁ ପିତାଙ୍କ କତିରେ ।
ଦିବ୍ୟପଲ୍ୟଙ୍କରେ ଶେଯ ଶେଯାଇ ସୁପାତି
ମାଣିକ୍ୟର ଦୀପାବଳୀ ଜଳେ ଚଉକତି ।
ଆନନ୍ଦ ଉତ୍ତର କନ୍ୟା ପୁଣି ବିନ୍ଧ୍ୟବାଳୀ
ଦୁଇପାଶେ ତିନିକନ୍ୟା ମଧ୍ୟେ ବୃହନ୍ନାରୀ ।
ସୁଲକ୍ଷଣ ସୁନ୍ଦର ସୁବଦନ ନିରେଖି
ନଇଁ ଅନାଇଁଲେ ତାଙ୍କୁ ସେ ଚନ୍ଦ୍ର ମାମୁଖୀ ।
ବାରଣ ନହେଲା ମୋତେ ତୋ ବଦନଗୋଟି
ଏସନକ ରୂପ ତୋର ହୋଇଲା କିରୀଟି ।
ଏହା ବିଚାରି କରରେ ଘେନି ଦୀପାବଳି
ଅର୍ଜ୍ଜୁନକୁ ନିରେଖିଣ ଚାହିଁଣ ପାଞ୍ଚାଳୀ ।
ମୁହିଁ ତୋହର ଆପଦ ଘେନି କିନା ପାର୍ଥ
ଏରୂପେ ଶୋଭିତ ତୋତେ ହେଲା ପ୍ରାଣନାଥ ।

ସଚେତ ହୋଇଣ ତହୁଁ ଉଠି ସବ୍ୟସାଚୀ
ମନ ମଧ୍ୟେ ଏହିପରି କଥା ସବୁ ପାଞ୍ଚି ।
କିଅବା ଅଜ୍ଞାତବାସ ହେଲା ଆସି ଶେଷ
ଠାକୁରଙ୍କ ଆଜ୍ଞାରେ କି ଆସିଛୁ ମୋପାଶ ।
ସୈରିନ୍ଧ୍ରୀ ବୋଇଲେ ତୁମ୍ଭ ନାମ ଫାଲଗୁନି
ଅରୁଣ ଉଦୟ ଜିଣି ତୁମ୍ଭ ଚକ୍ଷୁ ବେନି ।
ହେ ନାଥ ମୋହର କଥା ଶୁଣ ଧନଞ୍ଜୟ
ମହାଯଜ୍ଞ କରିଥିଲେ ପିତା ମହାଶୟ ।
ବ୍ରହ୍ମକର୍ମରେ ନିର୍ଜିତ ଯେଉଁ ମହାତମା
ମହାଅନଳ ବିଦାରି ଜାତ ଦେଲେ ବାମା ।
ଯଜ୍ଞୁ ଜାତ ହେଲି ବୋଲି ନାମ ଯାଜ୍ଞସେନୀ
ସ୍ୱୟମ୍ବର କଲେ ପିତା ଲକ୍ଷେ ରାଜା ଘେନି ।
ମହାଲାଖ ରାଧାଚକ୍ର ବିନ୍ଧଇ ହେ ପାର୍ଥ
ଲକ୍ଷେ ରାଜାଙ୍କ ସହିତେ କଲେକ ଅନର୍ଥ ।
ସମସ୍ତଙ୍କ ବଳ ଧ୍ୱଂସି ଆଣିଲ ହେ ମୋତେ
ନଟକାର ପ୍ରାୟେ ବିଭାହେଲେ ପଞ୍ଚଭ୍ରାତେ ।
ଏକା ବୋଇଣ ସହିଲି ପାଞ୍ଚଙ୍କ ଆର୍ଦ୍ଧୋଳି
ତଥାପି ନ ରହି ପାରି ହେଲି ଏତେ ଭାଳି ।
କନ୍ଦମୂଳ ଆହାରରେ କାଳଯାକ ଦୁଃଖୀ
କେଶ ଆକର୍ଷଣ କଲା ସର୍ବେ ଅଛ ଦେଖି ।
ତାହା ମଧ୍ୟ ସହିଲି ମୁଁ ଆଦରିଣ କର୍ମ
କାହାକୁ କହିବି ସବୁ ଦେଖିଛନ୍ତି ଧର୍ମ ।
ସଙ୍କୋଚନର ନନ୍ଦନ ବିରାଟର ଶଳା
ସୁଦେଷ୍ଣା ଭାଇ କୀଚକଦେଖୀ ହେଲାଭେଳା ।
ଗନ୍ଧପତ୍ର ଲେଖା ଦେଇ ପେଷିଲା ସୁଦେଷ୍ଣା
ମୋତେ ଦେଖିଣ ପାମର କରିଲାକ ତୃଷ୍ଣା ।
ପୁରେ ଚାଣ୍ଡାଳ ଧଇଲା ଆସି ମୋତେ ବଳେ
ତାପେ ଉଭାହେଲି ଆସି ଆସ୍ଥାନର ତଳେ ।
ବିରାଟ କୋନ୍ତ ବସିଣ ଥିଲେ ଯେ ଆସ୍ଥାନେ
ବହୁ ପାରିଦଣ୍ଡ ରାଜା ଥିଲେ ବିଦ୍ୟମାନେ ।
ଦେଖିଣ ମୋତେ ବୋଇଲା ମତ୍ସ୍ୟ ଅଧିକାରୀ
ନିଅରେ ମୋଢ଼ୀ ସୈରିନ୍ଧ୍ରୀ ବାଳ ଧରିକରି ।
କହୁଁ କହୁଁ ରୋଦନ ହେ କଲେ ଯାଜ୍ଞସେନୀ
ବିରାଟ ଅନ୍ୟାୟ କଲା ବୋଲନ୍ତି ଫାଲଗୁନି ।
ରାଜାଙ୍କ ବଚନ ଶୁଣି କୋନ୍ତ କି ବୋଇଲେ
କୀଚକକୁ ଅଙ୍ଗଭୋଗ ଦିଅ ତୁ କହିଲେ ।
ଅନାଥର ବାନ୍ଧବ ଯେ ଅଟ ନାଥ ତୁହି
ତୁ କିସବୋଲିବା ପାଇଁ ଅଇଲି ତୋ ତହିଁ ।
ବୃହନ୍ନାରୀ ବୋଲେ କୋନ୍ତ କହିଲେଟିଯାହା
ପାଷାଣର ରେଖା ଆନ ହରିବ କେତାହା ।

ଆମ୍ଭେ ଯେବେ ତାହାଙ୍କର ଭାଙ୍ଗନ୍ତୁ ବଚନ
ଆନକୁ ସମ୍ପଦ ଦେଇ କିମ୍ପା ଯାନ୍ତୁ ବନ ।
ପଶା ଖେଳରେ ସମସ୍ତ ହାରିଛନ୍ତି ସେହି
ସଭାରେ ବଦନ ଟେକି ନ ପାରିଲୁ କେହି ।
ସେହି ଆମ୍ଭର ଠାକୁର ଅଟନ୍ତି ଯୁଧିଷ୍ଠି
ତାଙ୍କ ବଚନେ ଆମ୍ଭର ନିରାଧାର ଗୋଟି ।
ଆମ୍ଭେ ଯେବେ ତାହାଙ୍କର ବଚନ ମେଣ୍ଟାନ୍ତୁ
କହ ଆମ୍ଭେ ସଭାତଳେ କିମ୍ପାଇଁ ବସନ୍ତୁ ।
ସଭାତଳେ ବସାଇଣ ବହୁ ଗାଳି ଦେଲେ
କେଶ ଧରି ତୋତେ ପୁଣି ବିବସନ କଲେ ।
ଆଜ୍ଞାକୁ ଅନାଇଥିଲି ନ ବୋଇଲେ ବାଣୀ
ସାନଭାଇଙ୍କୁ ନାଶି ମୁଁ ଥାଆନ୍ତି ସେକ୍ଷଣି ।
ମାରବୋଲିନବୋଇଲେମୋତେକଦାଚିତେ
ଏଥକୁ ଗୋ କିସ ବୋଲ ଆମ୍ଭର ଅଗ୍ରତେ
ରାଜାଆଜ୍ଞାରେ ଆମ୍ଭର ଅଟେ ଯେଉଁ ଲଜ୍ଜା
ମୁଁ ଏବେ ବୋଲୁଛି ହୁଅ କୀଚକ ଭାରିଯା ।
ସୈରିନ୍ଧ୍ରୀ ବୋଇଲେ ତୁମ୍ଭ ଜୀବନକୁ ଧିକ୍
ପାଞ୍ଚଜଣରେ ଭାରିଯା ମୁହିଁ ଅଟେ ଏକ ।
ମୋତେ ଆନକୁ ଦେଇଣ ହସ୍ତିନାକୁ ଯିବ
କେମନ୍ତେ ରାଜସଭାରେ ମୁଖ ଦେଖାଇବ ।
ଏବେତ ଛାଡ଼ିଲି ଲାଜ ହେଲ ନଟ ପ୍ରାୟ
ପୁରୁଷ ରୁପୁଁ ବାହାର ତୁମ୍ଭେ ଧନଞ୍ଜୟ ।
ନଜାଣି ଗୋଲକବୋଲିବୋଲନ୍ତି କୌରବେ
ରାଜ୍ୟ ସାଧିବାକୁ ଯିବ ତୁମ୍ଭେ ଯେଉଁଭାବେ ।
ଅର୍ଜ୍ଜୁନ ବୋଇଲେ ନ ଝିଙ୍ଗାସ ସଙ୍ଗାତୁଣୀ
ଠାକୁରଙ୍କ ଆଜ୍ଞା ଥିଲେ ମାରନ୍ତି ଏକ୍ଷଣି ।
ସୈରିନ୍ଧ୍ରୀ ବୋଇଲେମୋତେକହିଛନ୍ତିକୋନ୍ତେ
ଭୀମଙ୍କୁ ତୁ କହ ଯାଇ ମାରିବ ଗୁପତେ ।
ଅର୍ଜ୍ଜୁନ ବୋଇଲେ ତେବେ ଚଳ ମହାପ୍ରାଣି
ଆଉ ଝିଙ୍ଗାସୀ ନ ବୋଲମୋତେ କଟୁବାଣୀ ।
ଅର୍ଜ୍ଜୁନ ବଚନେ ତହୁଁ ଗଲେ ଯାଜ୍ଞସେନୀ
ରାତ୍ରଅର୍ଦ୍ଧ ହୋଇଅଛି ଅନ୍ଧାର ରଜନୀ ।
ଗମନ କଲେ ସୁନ୍ଦରୀ ନାରାୟଣ ସ୍ମରି
ଏ ଦୁଃସହ ସଙ୍କଟରୁ ଉଦ୍ଧାର ଶ୍ରୀହରି ।
ଉତ୍ତର ଗଡ଼ଦ୍ୱାରରେ ଅଛି ଅଶ୍ୱପାଳ
ଖଟିଛନ୍ତି ପାଞ୍ଚଲକ୍ଷ ତହିଁ ବାଜିପାଳ ।
ନକୁଳକୁମାର ତହିଁ ବାଜିପାଳ ରୂପ
ପାଟବନ୍ଧା ବାଖରଙ୍କ ପାଳକ ସ୍ୱରୂପ ।
ଉଆଳି ତିରଣପରେ ପାରି ବସ୍ତ୍ରଗୋଟି
ନିଦ୍ରା ଅସାଷ୍ଟମ କାଳେକୁ ନକୁଳ ଭେଟି ।

ବାଖର ଗୋଟିଏ ଦେଇଛନ୍ତି ସୀମସ୍ଥାନ
ନିଦ୍ରାବଶେ ଅଚେତନ ମାଦ୍ରିଙ୍କ ନନ୍ଦନ ।
ଏହି ସ୍ୱରୂପେ ନକୁଳ ତହିଁ ଶୋଇଅଛି
ଏହା ଦେଖି ସୈରିନ୍ଧ୍ରୀଙ୍କୁ ନ ସ୍ଫୁରଇ କିଛି ।
ହେ ନକୁଳ କ୍ଷତ୍ରିବର ଅଟ ଯେ ଗରିଷ୍ଠ
କୁମରପଣେ ତୁମ୍ଭଙ୍କୁ ଇନ୍ଦ୍ର ଦେଲେ ପାଟ ।
ପୃଥ୍ୱୀ ଧରିବାକୁ ଶକ୍ତି ଅଛି କୋନ୍ତମୁନେ
ଏ କଷ୍ଟ ଅବସ୍ଥା ନାଥ ସହୁଛ କେସନେ ।
ତୁମ୍ଭ ଶରୀରରେ ମାଛି ବସିଲେ ଗୋଟିଏ
ଶତେପଳ ଚନ୍ଦନ ଯେ ତହିଁ ଲେପା ହୁଏ ।
ରତ୍ନ ପଲ୍ୟଙ୍କର ଶେଯ ସୁପାତି ମୁଚୁଳି
ପୁଷ୍ପ ପାଖୁଡ଼ା ଉପରେ କର୍ପୂରର ଧୂଳି ।
ଆଲଟ ଚାମର ଲକ୍ଷେ ଘେନି ବିଳାସିନୀ
ଖଟିଲେ ନିଦ୍ରା ତୁମ୍ଭଙ୍କୁ ନୁହେଁ ବୀରମଣି ।
ଏଡ଼େ ସୁଖକୁ ତୁମ୍ଭର ଏବେ କାରେ ଦେଲ
ଏ ଛାର ତିରଣ ଶଯ୍ୟା ପାରିଣ ଶୋଇଲ ।
କାନ୍ଦନ୍ତେ ସୁନ୍ଦରୀ ନେତ୍ରୁ ବହେ ଅଶ୍ରୁଜଳ
ଚେତନା ପାଇଣ ବେଗେ ଉଠିଲେ ନକୁଳ ।
ଦେଖିଲେ ପାଞ୍ଚାଳୀଙ୍କର ଦିବ୍ୟ ମୁଖଗୋଟି
ଅନ୍ଧାର ମନ୍ଦିରେ ଯେହ୍ନେ କଣୟର ଦୃଷ୍ଟି ।
ସୈରିନ୍ଧ୍ରୀଙ୍କ ମୁଖ ଚାହିଁ ସେ ନକୁଳବୀର
ଅଜ୍ଞାତ ସରିଲା ଭାବି ଉଷତ ଅପାର ।
କୁମାର ବୋଇଲେ ମୁହିଁ ପୁଚ୍ଛାକରେ ତତେ
ତୁ କି ବିଜେକଲୁ ମୋର ଦେଖିବା ନିମନ୍ତେ ।
ବେନି ନୟନରୁ ତୋର ଅଶ୍ରୁଜଳ ଗଳି
ନକୁଳ ବଦନ ଚାହିଁ ବୋଲନ୍ତି ପାଞ୍ଚାଳୀ ।
ତୁମ୍ଭ ତହିଁକି ଅଇଲି ମୁହିଁ ନିଶାକାଳେ
କୀଚକ ପାମର ମୋତେ ହରି ଇଚ୍ଛା ବଳେ ।
ଆମ୍ଭାନେ ବିରାଟ ପୁଣି କୋନ୍ତଙ୍କ ସହିତେ
ପାରିଦଣ୍ଡ ରାଜା ଥିଲେ ଥିଲେ ଯେ ଅମାତ୍ୟେ
ବିରାଟ ଆବର କୋନ୍ତମୋତେ ଆଜ୍ଞାଦେଲେ
କୀଚକର ନାରୀ ହୁଅ ଯାଇଣ ତୁ ଭଲେ ।
ଉପାୟ ଚିନ୍ତିବା ପାଇଁ ଆସିଲି ଏ ରାତି
ପ୍ରଭାତରେ ନେବ ମୋତେ କୀଚକ ଦୁର୍ମତି ।
ନକୁଳ ବୋଇଲେ ସ୍ୱଭାବେ ଠାକୁର ତ ଥିଲେ
ତୋହର ଅବସ୍ଥା ଦେଖି ସେ କିସବୋଇଲେ
କୋନ୍ତ ବୋଇଲେ କୀଚକ ଯୁଦ୍ଧେ କେହୁସରି
ଯାଅ ଏହାର ଭାରିଯା ହୁଅ ବେଗକରି ।
ନକୁଳବୋଇଲେସ୍ୱାମୀ ଯେବେଦେଲେଆଜ୍ଞା
ସେବକ ମାତ୍ରକ କରି ପାରେ କି ଅବଜ୍ଞା ।

ଯାଅ ଯାଅ ସଖି ଆମ୍ଭେ ଥାଇକି କରିବୁ
ନିଶ୍ଚୟ ତ ବୀରବର ଭାରିଯା ହୋଇବୁ ।
ଏସନ ବଚନ ଯହୁଁ ଶୁଣିଲେ ପାଞ୍ଚାଳୀ
ରାଗ ହୋଇ ନକୁଳକୁ ତହୁଁ ଦେଲେ ଗାଳି ।
ଧିକ୍ ଧିକ୍ ହେଉ ତୁମ୍ଭ ଏ ଜୀବନ ଜାତି
ସଂସାରେ ବୋଲନ୍ତି ପାଞ୍ଚପାଣ୍ଡବ ଯୁବତୀ ।
ନଟକାର ପ୍ରାୟ ହେଲା ତୁମ୍ଭର ପ୍ରକୃତି
ବୃତ୍ତିହେତୁ ପରେ ଦିଅ ନିଜର ଯୁବତୀ ।
ନକୁଳ ବୋଇଲେ ଆଗୋ ଶୁଣ ପ୍ରାଣସଖୀ
ଯାଅ ପ୍ରିୟତମେ ତୁମ୍ଭେ ଭୀମଙ୍କ କତିକି ।
ସୈରିନ୍ଧ୍ରୀବୋଇଲେଯାଇନପାରେ ମୁଁ ରୋଷେ
ନକୁଳ ବୋଇଲେ ତାଙ୍କୁ ଅତ୍ୟନ୍ତ ସରୋଷେ ।
ମୋତେ ଆଜ୍ଞା ଦେଇଥିଲେ ଯୁଧିଷ୍ଠି ଠାକୁର
ଅବଶ୍ୟ ମାରନ୍ତି ଯାଇ ତାହାର କତିର ।
ସୈରିନ୍ଧ୍ରୀ ବୋଇଲେନାଥତୋରନ୍ନୁହେକିଛି
ଦୁଇମାସ ପାଞ୍ଚଦିନ ଅଜ୍ଞାତ ରହିଛି ।
ନକୁଳ ବୋଇଲେ ଭୀମ ବଧ କରୁ ତାକୁ
ସେ ଯେବେ ନାସ୍ତି କରିବେ କହିବୁ ଆମ୍ଭଙ୍କୁ ।
ଏମନ୍ତ ପ୍ରତିଜ୍ଞା ଦେଖି ସାନନ୍ଦ ପାଞ୍ଚାଳୀ
ରାତ୍ର ଅର୍ଦ୍ଧାଧିକେ ସହଦେବ ପାଶେ ମିଳି ।
ଦକ୍ଷିଣ ମଇଦାନର ବାହାର ନିକଟ
ତହିଁର ସନ୍ନିଧାନରେ ସୁରଭିଙ୍କ ଗୋଷ୍ଠ ।
ଦୁଆଁଳିଆ ବେନିପଦ୍ମଛନ୍ତି ଗୋଷ୍ଠେ ଗାଈ
ନବଲକ୍ଷ ଗୋରୁପାଳ ରହିଛନ୍ତି ଶୋଇ ।
ଗୋଗୋଷ୍ଠର ମଧ୍ୟସ୍ଥଳେ ବତ୍ସାଙ୍କ କୁଣ୍ଡଳୀ
ତିନିବୃନ୍ଦ ବତ୍ସାଙ୍କରେ ସହଦେବ ମିଳି ।
ବେଢ଼ିଛି କଡ଼ରେ ପାଞ୍ଚ ଅୟୁତେକ କିଳା
ମଧ୍ୟଦେଶେ ବସିଛନ୍ତି ମାଦ୍ରୀଦେବୀ ବଳା ।
ଗୋଷ୍ଠ ଭିତରେ ପଶିଲେ ଦେବୀ ଅତିଖରେ
ପ୍ରବେଶ ହୋଇଲେ ତନ୍ତ୍ରପାଳ ସନ୍ନିଧିରେ
ଉଲୁକବିଦ୍ୟା ପ୍ରସାଦେ ନ ଦେଖଇ କେହି
ଆବର ଗୋପାଳେ ଛନ୍ତି ଅଚେଷ୍ଟରେଶୋଇ
ସହଦେବ ବୋଲେ ତୁମ୍ଭେ ଆସିବାର ଜାଣି
ରାତି ଯାକ ଉଜାଗରେ ବସିଛି ମିତଣି ।
ପାଞ୍ଚାଳୀ ବୋଇଲେ ମୁହିଁ କି କହିବି କଥା
କୀଚକ କରିଲା ମୋତେ ଯେତେକ ଅବସ୍ଥା ।
ତନ୍ତ୍ରିପାଳ ବୋଲେ ଦୁଃଖହେଉଅଛି ତୋତେ
ଅଜ୍ଞାତବାସ ଆମ୍ଭର କୀଚକ ନିମନ୍ତେ ।
କୀଚକ ଭାରା ଧରଣୀ ନ ପାରିଲା ସହି
ଗୁହାରି କରିଲା ଦେବସଭା ତଳେ ଥାଇ ।

ବସୁଧା ପାଇଁ ଚିନ୍ତିତ ହୋଇ ଦେବ ପିତା
ଅଜ୍ଞାତବାସ ଆମ୍ଭଙ୍କୁ ଆଜ୍ଞାଦେଲେ ଧାତା ।
ଯାହା ସେ ନିର୍ମିତ କଲା ଚିନ୍ତି ପ୍ରଜାପତି
କୀଚକ ମରିବ ତୁମ୍ଭ ହରଣେ ସମ୍ପ୍ରତି ।
ସୀତା ହରଣେ ରାବଣ ଯେ ରୂପରେ ମଲା
ଏ କଥା କି ଆନ ଭେଦ ଧାତାର ଏ କଲା
ଚଳ ଆଗୋ ମାହେଶ୍ୱରୀ ନ ରହ ତୁ ଏଥେ
କୀଚକ ମରିବ ବୋଲି ଭୀମଙ୍କର ହସ୍ତେ ।
ଆବର ଚରିତ ଶୁଣ କହୁଛୁ ଭବିଷ୍ୟ
ଶତ ସହୋଦର ଘେନି ଆପେ ହେବ ନାଶ
ଭୀମସେନ ମାନିଛନ୍ତି ଅନଳ ଦେବଙ୍କୁ
ତହୁଁ ମୁକ୍ତହେବ ଦେଇ ଶତ କୀଚକଙ୍କୁ ।
କୀଚକବଂଶ ନାଶିନୀ କୌରବ ଧ୍ୱଂସିନୀ
ଭାରାନିବାରିଣ ଆଗୋ ଯାଅ ତୁ ବହନି ।
କ୍ଷତ୍ରିୟ ଅନର୍ଗଳ ଗୋ ଅଟେ ଭୀମସେନ
ଝିଙ୍ଗାସୀ ବୋଇଲେ ତାଙ୍କୁ ହୋଇବକାରଣ
ଚଳିଯାଅ ମହାସତୀ ଶୁଭ ଅନୁକୂଳେ
ହୃଦଗତେ ଚିନ୍ତି ଦେବୀ ଶ୍ରୀ ସର୍ବମଙ୍ଗଳେ ।
ଶ୍ରୀ ସର୍ବମଙ୍ଗଳା ମାତା ତୋତେ ରକ୍ଷାକରୁ
ପୃଥ୍ୱୀଭାର ଉଶ୍ୱାସ କୀଚକ ବେଗେ ମରୁ ।
ଆଗୋ ମାହେଶ୍ୱରୀ ଆଉ ଏକ କଥା ଶୁଣ
କାଲି ନିଶ୍ଚେ କୀଚକର ହୋଇବ ମରଣ ।
ଶତସିଂହ ପରାକ୍ରମ ଅଟଇ ତାହାର
ତୋର କର ଛୁଇଁଲାଣି ମରିବ ଏଥର ।
ସହଦେବଙ୍କ ବଚନେ ଗଲେ ମହାସତୀ
ରୋଷଭରେ ଯାଉ ଚଉବିଂଶ ଦଣ୍ଡରାତି ।
ଆହେ ଚଇତନ ସେହୁ ଯେଉଁ ରୋଷଶାଳ
ଭୀମସେନ ନିଃଶ୍ୱାସରେ ପଡ଼େ ଉଠେଚାଳ ।
ବାହୁଡ଼ି ସଞ୍ଚାରେ ବସେ ନିଃଶ୍ୱାସ ଟାଣନ୍ତେ
ଦେଖିକରି ସୈରିନ୍ଧ୍ରୀ ଯେ ମୋଦବହି ଚିତ୍ତେ
ବିଚାରିଲେ ତୋ ଜୀବନ ସାଧୁ ଅଟେ ଭୀମ ।
ତୋହର ତହିଁ ନିଶ୍ଚୟ ଅଛି ପରାକ୍ରମ ।
ମୁଁ ଅନାଥ ବାରେ ମୋର ସହାୟ କିହେବ
ଆମ୍ଭର ଠାକୁର ତୁମ୍ଭେ ରକ୍ଷା ଯେ କରିବ ।
ଦେଖିଲେ କବାଟେ ଅଛି ଗୋଟିଏ କିଳଣି
ସୈରିନ୍ଧ୍ରୀ ମାରନ୍ତେ ହାତ ଫିଟେସେହିକ୍ଷଣି ।
ଭିତରରେ ଶୋଇଛନ୍ତି ଭୀମ ମହାବଳୀ
ସନ୍ନିଧିରେ ପ୍ରବେଶିଲେ ଦ୍ରୁପଦ ଦୁଲାଳୀ ।
ପାଷାଣରେ ଶଯ୍ୟାକରି ଶୋଇଛି ବଲ୍ଲଭ
ଦେଖିଲେ ପାଞ୍ଚାଳୀ ଭୀମସେନଙ୍କର ରବ ।
କଣୟ ପର୍ବତେ ଯେହ୍ନେ ମେଘ ଘଡଘଡ଼ି
ସେହିପରି ଶୁଭୁଅଛି ନିଃଶ୍ୱାସର ରଡ଼ି ।
ବାମ ଡାହାଣ ବାହୁକୁ ବିସ୍ତାରିତ କରି
ଶୋଇଛନ୍ତି ନିରାଳୟେ ବୀରଙ୍କ କେଶରୀ ।
ବଲ୍ଲଭଙ୍କ ସନ୍ନିଧିରେ ବସି ଯାଜ୍ଞସେନୀ
ବୋଇଲେ କିସ ବିଚାର ଆହେ ବୀରମଣି ।
ବୋଇଲେ ପାଞ୍ଚାଳୀ ବେଗେ ଉଠ ବୀରବର
କିସ ଅର୍ଥେ ଏତେ ନିଦ୍ରା ଯାଇଛ ନେତ୍ରର ।
ବ୍ରାହ୍ମଣ ଯୁବତୀ ସ୍ତିରୀ ଯୋଗିନୀ ଯେ ଯୋଗୀ
ସାଧୁବେପାରି ପ୍ରବାସୀ ନିଦ୍ରା ପରିତ୍ୟାଗୀ
ନାଥ କ୍ଷତ୍ରୀହୋଇ କିମ୍ପା ତୋର ଏଡ଼େନିଦ୍ରା
ତେଜ ଆହେ ସୂପକାର ଏବେ ଯୋଗନିଦ୍ରା
ବହୁତ ପ୍ରକାର କରି ଯୁବତୀ ବୋଲଇ
ସୂପକାରଙ୍କର ନିଦ୍ରା କେଭେ ନ ଭାଗଇ ।
ଯୁକତରେ ରାଜପୁତ୍ର ବିଶେଷରେ ଯୋଗୀ
କି ହେତୁ ନିଦ୍ରା ନତେଜ ଦେହ ହେବରୋଗୀ
ବାରମ୍ୱାର ବୋଲନ୍ତେ ସେ ନିଦ୍ରା ନ ଭାଜିଲା
ଯେତେ ଉପାୟ କରିଲେ ସବୁ ବ୍ୟର୍ଥହେଲା
ରଜନୀ ପାହିବ ବୋଲି ଦ୍ରୌପଦୀ ବିକଳ
ବେନି ନେତ୍ରରୁ ତାଙ୍କର ବହେ ଅଶ୍ରୁଜଳ ।
ବିଳାପ କରନ୍ତେ ତହୁଁ ସୂପକାର ଚେତି
ଦ୍ରୌପଦୀର କେଶ ଯାଇ ଧଇଲେ ତଡ଼ତି ।
ବିଜେ କର୍ଣ୍ଣକଟାରୀକି ଧଇଲେ ସେ ଆଣି
ପଚାରିଲେ ପିଶାଚୀ ତୁ କିଅବା ଡାକିନୀ ।
ଆଲୋ ତୁ କେଉଁଡାକିନୀ ଏଡ଼େ ତୋଭରସା
ଇଷ୍ଟଦେବତା ସୁମର ଛେଦିବି ତୋ ନାଶା
ସୈରିନ୍ଧ୍ରୀ ବୋଇଲେ ତୁମ୍ଭେ ଶୁଣ ସୁପକାର
ମୁହିଁ ଅଟେ ଯାଜ୍ଞସେନୀ ବଲ୍ଲଭୀ ତୁମ୍ଭର ।
ପାଣ୍ଡବ ସୁନ୍ଦର ଶୁଣି ଛାଡ଼ିଲେ ତା ବାଳ
ଦରହସିତ ବଦନେ ବସାଇଲେ କୋଳ ।
ମୁଖରେ ଚୁମ୍ୱନ ଦେଇ ବୋଇଲେ ପାବନି
ମୁହିଁ ତୋହର ଆପଦ ଘେନେ ଯାଜ୍ଞସେନୀ ।
ଏକା ତୁ ସହିଲୁ ଆଗୋ ପାଞ୍ଚଙ୍କ ଆର୍ଦ୍ଧୋଳି
କାମେ ଅସାଷ୍ଟାମ ହୋଇ ନ ପାରିଲୁ ପାଳି ।
ଶରୀରକୁ ବହି କେତେ ପାରିବୁ ତୁ ସହି
ଅଜ୍ଞାତବାସେ ଗୋ ଏତେ ଦିନେ ଅଛୁ ରହି ।
କଷ୍ଟ ତ ସହିଲୁ ବାରବରଷ ପର୍ଯ୍ୟନ୍ତେ
ରାଜପତ୍ନୀ ହୋଇ ଦୁଃଖ ସହିଲୁ ଏମନ୍ତେ ।
କାମେ ଅସାଷ୍ଟମ ହୋଇ ଧର୍ମ ପରିତ୍ୟାଗୀ
ସହି ନପାରି ଅଇଲୁ ଅଭିପ୍ରାୟ ମାଗି ।

ତୁହି ଅଇଲୁ ଯେବେ ଗୋ ନ ଜାଣିଲୁ କାଳ
ରାତ୍ର ଶେଷ ହୋଇବାକୁ ଅଛି ଅଳ୍ପବେଳ ।
ରାତ୍ର ବେନିଦଣ୍ଡ ଅଛି କି ସୌଖ୍ୟ ପ୍ରକାଶ
ଭୋଜନରେ ସୁଖ ନାହିଁ ନିଦ୍ରାରେ ଅଳସ ।
କଳହ ନ କରିବା କି ଶାସ୍ତ୍ର ନ ପଢ଼ିବା
ସମସ୍ୟା ନ ଦେବା ଅବା ମୌନବ୍ରତେ ଥିବା
ସନ୍ଧ୍ୟାକାଳ ପଡ଼ିଲେ ଗୋ ମୂଖ ଜନ୍ମେଜନ୍ମେ
ପଣ୍ଡିତ ହୋଇ ଶୋଇଲେ ପଡ଼େ ମତିଭ୍ରମେ
କ୍ରୀଡ଼ା କରିଲେ ଗୋ ଜନ୍ମେ ପୁତ୍ର ନ ପାବନ୍ତି
ଜନ୍ମରୋଗୀ ହୁଅଇ ଗୋ ଜନ୍ମିଲେ ସନ୍ତତି
ସୂର୍ଯ୍ୟବେଳରେ ଭୋଜନ କଲେ ହୁଏ ପଙ୍କ
ଦଶଦଣ୍ଡ ଉଚ୍ଚାଟ ଗୋ କାମଦେବତାଙ୍କ ।
ପ୍ରୟାଣ କରଇ ଆଗୋ ପଞ୍ଚଦଣ୍ଡ ରାତି
ଚନ୍ଦ୍ରବଳେ ହୋଇଲେ ଗୋ କାମରସ ପ୍ରୀତି
ଦଶ ଦଣ୍ଡରୁ ଚଉଦ ଦଣ୍ଡଯାଏ ପୁଣ
ନାନା କଉତୁକ କଲେ ବାଞ୍ଛା ହୁଏ ପୁଣ ।
ଶରୀର ପ୍ରକମ୍ପମାନ ଦେଖି ହୁଏ ବୁଦ୍ଧି
ଆୟ ବର୍ଦ୍ଧମାନ ହୁଏ କାର୍ଯ୍ୟ ହୁଏ ସିଦ୍ଧି ।
ଆଗୋ ଷୋଳ ଦଣ୍ଡରେ ଯେ ହୁଏ ଅର୍ଦ୍ଧ ରାତି ।
ଆକାଶ କ୍ଷେପି କରିଣ ବୁଲି ଚଉକତି ।
ଅଠର ଦଣ୍ଡରୁ ମଧ ଜାଣ ବିଂଶଦଣ୍ଡ
ଏକାଳେ ଶୃଙ୍ଗାର ଜାତ ହୁଏ ରସଖଣ୍ଡ ।
ବାଇଶି ଦଣ୍ଡରୁ ଜାଣ ଚୌବିଂଶ ଦଣ୍ଡର
ଯୋଗବଳେ ଅନଙ୍ଗ ବିଶ୍ରାମେ ତତପର ।
ଯେବେ ଇଚ୍ଛା କରୁ ତୁହି ହେବ ସତଭଙ୍ଗ
ଶୃଙ୍ଗାରରେ ହତ୍ୟାଦୋଷ ଭଗ୍ନହେବ ଲିଙ୍ଗ ।
ନବ ଘଡ଼ିରୁ ଏଣିକି ରତିଭଙ୍ଗ କଲେ
ତସ୍କର ବା ଯୋଗୀ ହୁଏ ସନ୍ତାନ ଜନ୍ମିଲେ ।
ଦୁହିତା ଜନ୍ମ ହୋଇଲେ ହୁଅଇ ଦୋଚାରୀ
ଜନ୍ମରୋଗୀ ହୁଏ ପୁତ୍ର ନୁହଇ ତାହାରି ।
ଅଢ଼ାଇ ପ୍ରହର ରାତ୍ର କାମ ଯୋଗବଳେ
ତାହା ସେହୁ ଭଗ୍ନକଲେ ଶୁଭନୁହେଁ କାଳେ
ବଲ୍ଲଭୀ ବୋଲେ ତୁ ବୁଦ୍ଧିମତୀ ସ୍ଥାନତ୍ୟାଗୀ
ବେଳ ଜାଣି ନ ଅଇଲୁ ଅଭିପ୍ରାୟ ମାଗି ।
ଦ୍ରୌପଦୀ ବୋଇଲେ ତୁମ୍ଭେ ଏଡ଼େ ନୀଚମୁଖ
ଅପଣ୍ଡିତ ପ୍ରାୟେକ କଥା କୁହ ଯେ ବାଳକ ।
ଯଥା ଅନୁରୂପେ ଆପେ ତଥା ବାକ୍ୟ ଭାଷି
ଆସିନାହିଁ ଶୃଙ୍ଗାରରେ ହୋଇଣ ପ୍ରୟାସୀ ।
ଅଜ୍ଞାତ ସତୁରୀ ଦିନ ଆଉ ବାକି ଅଛି
ବଲ୍ଲଭ ବୋଲେ ମୁଁ କର୍ମ ଆଦରି ରହିଛି ।

ମୋହର ବଳ ବୀର୍ଯ୍ୟକୁ ମତ୍ସ୍ୟେଶ୍ୱର ଦେଖି
ସର୍ବଦା ସମ୍ପଦ ମୋତେ ଦିଏ ଶଶୀମୁଖୀ ।
ଲୋକେ ଦେଖିଲେ ବାରତା କହିବେ ରାଜାକୁ
ବିରାଟ ଶୁଣିଲେ ପ୍ରତେ ଯିବ ତା ମନକୁ ।
ବୋଲିବେ ବଲଭ ଥାଇ ମନ୍ଦକୃତ୍ୟ କଲା
କାହାର ବୋହୂ ଝିଅକୁ ହରଣ କରିଲା ।
ସୈରିନ୍ଧ୍ରୀ ବୋଇଲେ ଶୁଣ ଶୁଣ ଏବେ ମୂର୍ଖ
ତୁମ୍ଭଙ୍କୁ ମୁଁ ସେବାକରି ହୋଇଲି ନିରେଖ ।
ବିରାଟ ଶଳା କୀଚକ ଯେହୁ ମହାବୀର
ସେହୁ ମୋତେ ହରି ଇଚ୍ଛା କରି ବଳାତ୍କାର
ବିରାଟ ସହିତେ ସବୁ ଆସ୍ଥାନରେ ଥିଲେ
କୋନ୍ତ ଆଦକରି ମୋତେ କୀଚକକୁ ଦେଲେ
ବଲ୍ଲଭ ବୋଇଲେ ଯେବେ ସମର୍ପିଲେ କୋନ୍ତେ
ଆମ୍ଭର ବଳେ କି କରି ହୁଅଇ ଯୁକତେ ।
ତୁହି ଅବା କୀଚକକୁ ସ୍ୱୀକୃତେ କହିଲୁ
ତେଣୁ ସିନା ସଭାମଧ୍ୟେ ଆସି ଠିଆ ହେଲୁ ।
କଦାଚ ସଭାରେ ରହି ନୁହଇ ଅଦିତି
ତେଣୁ ହେଲୁ କୀଚକକୁ ତୁହି ପ୍ରିୟବତୀ ।
ସୈରିନ୍ଧ୍ରୀ ବୋଲେ ତୁମ୍ଭର ପ୍ରାଣ ଧିକ ଧିକ
ରାଜ୍ୟଭାର ଆନ ଦେଇ ମାଗ ତୁମ୍ଭେ ଭିକ ।
ଏକ ସ୍ତିରୀକି ହୋଇଲେ ତୁମ୍ଭେ ପାଞ୍ଚପତି
ପାଞ୍ଚ ସ୍ୱାମୀ ଥାଉଁ ଥାଉଁ ମୋର ଏଡ଼େ ଶାସ୍ତି ।
ସିଂହ ବୋଲିକରି ମୁଁ ବରିଲି ତୁମ୍ଭଙ୍କୁ
କୋଇନ୍ତା ଜାତ କରିଛି ଶୃଗାଳ ଛୁଆଙ୍କୁ ।
ତୁମ୍ଭେ ଜୀଇଁ ଥାଉଁ ହେବି ମୁଁ ଯେ ଅନ୍ୟ ଭାରିଯା
ନିର୍ଲ୍ଲଜ୍ଜ ପ୍ରାଣ ତୁମ୍ଭର ନ କରୁଛ ତେଜ୍ୟା ।
କାଳେବର ଗଦା ତୁମ୍ଭେ ଧର ବେନି ହସ୍ତେ
ତାହା ଧିକ ଧିକ କିନା ଧିକ ହେଉ ତୋତେ
ବୃକୋଦର ଆମ୍ଭା ତୁରେ କେଉଁଗୁଣେ ବହୁ
ନିର୍ଲ୍ଲଜ ମୁଖକୁ ତୋର ଗୃଧ୍ରପକ୍ଷୀ ଖାଉ ।
ରାଜ୍ୟଭାର ସମ୍ପଦାଦି ଅର୍ପିଲ ଅନ୍ୟକୁ
ଏକ ଭାରିଯାକୁ ଏବେ ଦେଲ କୀଚକୁ ।
ହସ୍ତିନା ସଭାକୁ ଯାଇ ଚାହିଁବା କା ମୁଖ
ଏମାନ ସହି ବର୍ତ୍ତିବା ହୋଇବ କି ସୁଖ ।
ସୈରିନ୍ଧ୍ରୀ ମୁଖରୁ ଏହି ବାକ୍ୟ ସବୁ ଶୁଣି
କୋପେ ଗର୍ଜ୍ଜଇ ପାବନୀ କାଳସର୍ପ ଜିଣି ।
ମୋତେ ଝିଙ୍ଗାସିକହିଲୁ ଯେତେତୋରତୁଣ୍ଡେ
ସ୍ତ୍ରୀ ନୋହିଥିଲେ କାଟନ୍ତି ତୋର ମୁଣ୍ଡ ଚାଣ୍ଡେ ।
କହ ଆମ୍ଭଙ୍କୁ କି ଆଜ୍ଞାଦେଲେ ସେ ଠାକୁରେ
ସ୍ୱରୂପ କରିଣ କହ ମୋହର ଆଗରେ ।

ସେ ବୋଇଲେ ବଲ୍ଲଭଙ୍କୁ ଯତ୍ନେ କହିପାରୁ
କେହି ନ ଜାଣିବେ ଗୁପ୍ତେ ଭୀମ ତାକୁ ମାରୁ
ଭୀମସେନ ଉଷତ ଯେ ହେଲେ ତାକୁ ଶୁଣି
ମାରିବି କୀଚକ ସଖି କାଲିର ରଜନୀ ।
ହର ବ୍ରହ୍ମା ଆଦିକରି ନ ରଖିବେ ତାହା
କୀଚକ ମୁଣ୍ଡ ମୋଡ଼ିବି ଉପାଡ଼ିଣ ବାହା ।
ଉତ୍ସବ ନବରେ ପ୍ରିୟେ ଅଛି ନଦୀକୂଳେ
ତହିଁକି ବଢ଼ାଇ ନେବୁ ନିଶା ଅର୍ଦ୍ଧକାଳେ ।
ତାହାକୁ ପଠାଇ ତୁହି ଗୋପନେ ରହିବୁ
ପ୍ରୀତି ଉପୁଜାଇ ତୁ ଗୋ ନିଜପୁରେ ଥିବୁ ।
ଯେବେ କୀଚକକୁ ମୁହିଁ କାଲି ନ ମାରଇ
ଗୁରୁ ପିତା ମାତାଠାରେ ଦ୍ରୋହୀମୁଁ ହେବଇଁ
କରତା ଥାଳରେ ବିଷ ଦେବଇଁ ମୁଁ ନେଇ
ଦେବରାଜାଙ୍କର ପାଦପଦ୍ମେ ହେବି ଦ୍ରୋହୀ
ଭୀମ ପ୍ରତିଜ୍ଞା କରନ୍ତି ତହିଁ ଅପ୍ରମିତ
ତୋର ଦେହକୁ ଛୁଉଁଛି ଆରେ ପ୍ରାଣମିତ ।
ଯେବେ କୀଚକକୁ ମୁହିଁ କାଲି ନ ମାରିବି
ଗୋଶାସନ ଭୂହରଣ ଦୋଷ ମୁଁ ଲଭିବି ।
କାଲି କୀଚକକୁ ଯେବେ ନ କରେ ବିନାଶ
ବିଧବା ହରଣ ଦୋଷ ପାଇବି ଅବଶ୍ୟ ।
ମିଥ୍ୟା ଅପବାଦ ଦୋଷ ହେବ କୋଟିକୋଟି
କୀଚକ ପକ୍ଷରେ ବସି ନ ମୋଡ଼ିଲେ ତୋଟି
କାଲି ରଜନୀରେ ଯେବେ ତାକୁ ନ ମାରଇ
ପରବୃତ୍ତି ନାଶ ଦୋଷ ମୁହିଁ ପାଇବଇଁ ।
ଶୁଣି ପାଞ୍ଚାଳୀ ମନରୁ ଭ୍ରାନ୍ତି ଗଲା ଫିଟି
ଭାନୁ ପ୍ରକାଶନ୍ତେ ଯେହ୍ନେ ଦିଶେ ନବସୃଷ୍ଟି
ସେହିପରି ସାନନ୍ଦ ଯେ ହେଲେ ମହାଦେଈ
ବହୁତ ପ୍ରଶଂସା କଲେ ହୋଇଣ ବିନୟୀ ।
ବାବୁ ହେ ଲାଖ ବିନ୍ଧିଲେ ପାଣ୍ଡବ ଅର୍ଜ୍ଜୁନ
ସମର କରି ଜିଣିଲେ ସର୍ବ ରାଜା ମନ ।
ତୁମ୍ଭେ ସମର କରିଣ ମୋତେ ଆଣି ଜିଣି
ତେଣୁ ସିନା ହେଲି ମୁହିଁ ପାଣ୍ଡବ ଘରଣୀ ।
ରଜନୀ ପ୍ରଭାତ ଏବେ ହେଉଅଛି ନାଥ
ଉତ୍ସବ ନବରେ ତୁମ୍ଭେ ଯିବଟି ନିୟତ ।
ସାନନ୍ଦ ହୋଇଣ ତହୁଁ ଗଲେ ଯାଜ୍ଞସେନୀ
ଅନ୍ତଃପୁରେ ପ୍ରବେଶନ୍ତେ ପାହିଲା ରଜନୀ ।
ଆହେ ଉଦେ ନାରାୟଣ ଘେନ ମୋ ଆରତ
ବିରାଟ ପୁରୁଷଙ୍କର ତୁମ୍ଭେ ଅଟ ନେତ୍ର ।
ତୁମ୍ଭ ଆଜ୍ଞାବଶେ ମହୀ କରେ ଶସ୍ୟଦାନ
ସର୍ବ ଦେବଙ୍କ ଉପରେ ତୁମ୍ଭ ଅଧିଷ୍ଠାନ ।
ସ୍ୱର୍ଗ ମର୍ତ୍ତ୍ୟ ପାତାଳରେ ତୁମ୍ଭ ଅଧିକାର
ସର୍ବ ପ୍ରାଣୀଙ୍କର ତୁମ୍ଭେ ପ୍ରାଣର ଆଧାର ।
ତୁମ୍ଭ କଞ୍ଜ ଚରଣକୁ ସଦା ଅଭିଳାଷ
କହଇ ଶାରଳାଦାସ ପୁରାଅ ମାନସ ।

—●—

## ଭୀମ କର୍ତ୍ତୃକ କୀଚକ ବଧ

ଏଥୁ ଅନନ୍ତରେ ପୁଚ୍ଛେ ମନୁ ନରପତି
ଅଗସ୍ତିଙ୍କ ପାଦତଳେ କରିଣ ଭକତି ।
ହେ ମୁନି ନାୟକ ତୁମ୍ଭେ ବୋଇଲଯେ କଥା
ତାହା ଶୁଣିଣ ମନରୁ ଛାଡ଼ିଗଲା ବ୍ୟଥା ।
କୀଚକ ମାରିବା ପାଇଁ ଭୀମ କଲେ ରଣ
ଦ୍ରୌପଦୀ ହରଷ ହୋଇ କରିଲେ ପ୍ରୟାଣ ।
ଅନ୍ତଃପୁରେ ଯାଇଁ ପୁଣି କଲେ କି ବିଚାର
କୁହ ସେହି କଥା ମୋତେ ଆହେ ମୁନିବର ।
ଅଗସ୍ତି ବୋଇଲେ ଶୁଣ ବିଲଙ୍କ ରାଜନ
ଏ ଉତ୍ତାରୁ ଯାହା ହେଲା ବିଚିତ୍ର ଘଟନ ।
ନିତ୍ୟକର୍ମ ବିଧିସାରି ପାଞ୍ଚାଳକୁମାରୀ
ମନରେ ଆନନ୍ଦ ମୁଖେ କେ କହୁ ତାଙ୍କରି ।
ଚତୁଃସମ ଗୋଟିଏ ସେ ସମ୍ପାଦନା କଲେ
କୀଚକର ନବରକୁ ବହନ ଚଳିଲେ ।
ସ୍ନାହାନ ସାରିଣ ବୀର ପିନ୍ଧିଣ ବସନ
ବିଜୟ କରିଛି ଯାଇ ରତ୍ନସିଂହାସନ ।
ସହସ୍ର ଚାମର ଧରିଛନ୍ତି ପରିବାରୀ
ଧୀର ଧୀର ହୋଇଣ ସେ ପହଣ୍ଡ ଯେ କରି ।
କଣୟ ଭୁବନ ଦିଶେ ବାରସ୍ୱତୀ ଜିଣି
ସନ୍ନିଧେ ପ୍ରବେଶ ହେଲେ ପାଣ୍ଡବ ଘରଣୀ ।
ପଥ ନିରେଖି କୀଚକ ଚିନ୍ତେ ହୃଦଗତେ
ଏକାଳେ ସୈରିନ୍ଧ୍ରୀ ଯାଇ ବିଜୟ ତୁରିତେ ।
ଦେଖିଣ ବୋଇଲେ ଆସ ଆମ୍ଭ ଜୀବଧନ
ତବ ଲୟରେ ମୋହର ମଜ୍ଜିଅଛି ମନ ।
ତବ ଇଚ୍ଛା ମୋ ଉପରେ ଅଛି କି ସଙ୍ଗାତ
ସୈରିନ୍ଧ୍ରୀ ବୋଲଇ ନେବା ହେଉଗନ୍ଧପାତ୍ର ।
କୀଚକ ବୋଲଲା କୋଳେ ବସରେ ସଙ୍ଗାତ
ଦ୍ରୋପଦୀ ବୋଲେ ଏ କଥା ନୁହଇ ବିହିତ ।
ପୁଣି ବୋଇଲେ ଅପ୍ରତେ ତବ ହେବିବୋଲି
ରାଣୀ ଛାମୁକୁ ନ ଯାଇ ଏ ସ୍ଥାନେ ଆସିଲି ।
ନାସିକାରେ କର ଦେଇ ହସେ ସେନାପତି
ସ୍ୱାମୀଙ୍କୁ କରିଣ ସେବା ସେବାକରେ ରୀତି ।

ଆଜ୍ଞ ପରିବାରୀ ପଣେ ଖଟିବ ସେ ତୋତେ
କାହିଁକି ଆରେ ସୁନ୍ଦରୀ ଭୟ କରୁ ଚିତ୍ତେ ।
ସୈରିନ୍ଧ୍ରୀ ବୋଲେ ସୁଦେଷ୍ଣା ମୂଳସିନାସବୁ
ତାହାର ପ୍ରସାଦେ ମୋତେ ତୁ ସିନାପାଇବୁ ।
ସୁଦେଷ୍ଣାଙ୍କୁ ମୁଁ ଅଲେଖ ତିଳକ କରାଇ
ମଧ୍ୟରାତ୍ରି ସମୟରେ ଆସିବି ତୋ ତହିଁ ।
ଉତ୍ସବ ନବର ସଜକର ବୀରବର
ସେ ସ୍ଥାନରେ ଭେଟ ହେବତୋହରମୋହର ।
କୀଚକ ହସିଲା ତହୁଁ ସୈରିନ୍ଧ୍ରୀର ବୋଲେ
ବଚନରେ ଭଣ୍ଡିଦେଇ ବାହୁଡ଼ି ଅଇଲେ ।
କୀଚକ ବିଚାରେ ମନ ସୈରିନ୍ଧ୍ରୀତ ତୁଷ୍ଟ
ଆଜି ଏହା ସଙ୍ଗେ ମୋର ହେବନିଶ୍ଚେ ଭେଟ
ଚାରମାନଙ୍କୁ ବରଗି ଉତ୍ସବ ନବରେ
ବେଗେ ମଣ୍ଡଣି କରାଏ ତହିଁ ବୃତ୍ତାକାରେ ।
ଅଲେଖ ପୁର ସୈରିନ୍ଧ୍ରୀ ବିଜୟ ତତତି
ଲାଜରେ ସୁଦେଷ୍ଣା ରାଣୀ ନ ଆସନ୍ତି କତି ।
ସୁଦେଷ୍ଣାଙ୍କ ନିକଟରେ ମିଳି ସୈରିନ୍ଧ୍ରୀରି
ନିତ୍ୟକର୍ମ ବିଧାନରେ ଅଲେଖକୁ କରି ।
ସୁଦେଷ୍ଣାବୋଇଲେମୋଗୋଲେଖାଗୋଟିଦେଲୁ
ତ୍ରିଗର୍ତ୍ତ ବାହିଛି ବୋଲି କିମ୍ପା ନ କହିଲୁ ।
ସୈରିନ୍ଧ୍ରୀ ବୋଇଲେ ମୁହିଁ କହିଲି ସମସ୍ତ
ବଧିର ପ୍ରାୟ ତୁମ୍ଭର ନ ଶୁଣିଲେ ଭ୍ରାତ ।
ତାହା ଶୁଣି ମହାଦେଇ ନ ଦେଲେ ସମସ୍ୟା
ସ୍ତମ୍ଭୀଭୂତହୋଇଣ ଯେ ବସିଲେ ସୁଦେଷ୍ଣା ।
ଅଲେଖ ତିଳକ ଚତୁଃସମ କଲେ ଲାଗି
ରାନ୍ଧଣା ନିମନ୍ତେଦେବୀ ବିଜେକଲେ ବେଗି ।
ନିଜେ ରାନ୍ଧଣା କରନ୍ତି ଦେବୀ ପ୍ରତିଦିନ
ପୁଣହିଁ ସ୍ନାହାନ କରି କରନ୍ତି ଭୋଜନ ।
ଆଚମନ ସାରି ଚତୁଃସମ ଘେନି ପାତ୍ରେ
କୀଚକ ମନ୍ଦିରେ ପୁଣି ଚଳିଲେ ତୁରିତେ ।
ଅଢ଼ାଇ ପ୍ରହର ଦିବା ରବି ଗଗନରେ
ପ୍ରବେଶ ହୋଇଲେ ଯାଇ କୀଚକ ମନ୍ଦିରେ ।
କୀଚକକୁ ଦାସୀମାନେ କରନ୍ତି ବେଗରେ
ସୈରିନ୍ଧ୍ରୀ ସୁନ୍ଦରୀ ଦେବ ଆସୁଅଛି ପୁରେ ।
ଶୁଣି କୀଚକ ସାନନ୍ଦ ଅତିଶ୍ରୟ ହେଲା
ନବମ ଅବସ୍ଥା ପ୍ରାପ୍ତେ ଦେହ କ୍ଷୀଣ ଥିଲା ।
ସୈରିନ୍ଧ୍ରୀ ଆଗତ ଜାଣି ପଶିଲା ତା ପ୍ରାଣ
ବେଗେ ଉଠିଲା କୀଚକ ବୀର ମହାରାଣ ।
ଏମନ୍ତ ସମୟେ ଦେବୀ ପ୍ରବେଶିଲେ କତି
ଆସ ଆସ ବୋଲି ଡାକେ କୀଚକ ଦୁର୍ମତି ।
ଆସ ଆସ ଆଗୋ ସଖି ବସ ମୋର କତି
ରୋହିଣୀ ଦର୍ଶନେ ଯେହ୍ନେ ତପ୍ତ ନିଶାପତି ।
ଚତୁଃସମ ଖୁରୀ ଦେବୀ ନିକଟେ ତା ଥୋଇ
ଉଭା ହୋଇଣ କହିଲେ ବଚନ ବିନୟୀ ।
ବୋଇଲେକ ମଧ୍ୟସ୍ଥାନେ ଛନ୍ତି ଦିବାକର
ଏତେବେଳେ ସ୍ତିରୀସଙ୍ଗ ନୁହଇ ବେଭାର ।
ଆଦିତ୍ୟ ମଧ୍ୟାହ୍ନ ଯେହୁ ଚିନ୍ତେ ନାରୀହୃଦ
ଅବଶ୍ୟ ସେ ପୁରୁଷର ହୁଏ ଶିରଚ୍ଛେଦ ।
ସ୍ତିରୀ ହୋଇକରି ଯେହୁ ସମର୍ପଇ ପ୍ରୀତି
ଯହିଁର ଦୋଷରେ ନାସା ଛେଦନ ହୁଅନ୍ତି ।
ସୂର୍ଯ୍ୟକାଳେ କାମକଳା କଲେ ବଧ ହୁଏ
ଚନ୍ଦ୍ରକଳାକୁ ଘେନିଣ ଚଳେ କାମ ରାୟେ ।
ଯହିଁ ନାଶଯିବ ତାହା କେଭେ ନ କରିବ
କହିଲେ ନିଶ୍ଚୟ ପ୍ରାଣ ତହିଁ ନାଶଯିବ ।
ପ୍ରାଣଘାତ ତହିଁ ଶ୍ରଦ୍ଧା କେଭେ ନ କରିବ
ଜୀବ ଗଲେ ଶ୍ରଦ୍ଧା ପୁଣ ଆଉ କି ରହିବ ।
ଯେବଣ ପୁରୁଷ ରତି କରନ୍ତି ଦିବସେ
ଅଳପ ଆୟୁଷ ହୋଇ ଯାଆନ୍ତି ବିନାଶେ ।
ସୁଦେଷ୍ଣାଙ୍କର ଅଲେଖ ତିଳକ କରାଇ
ଆଣେ ଆସିବାକୁ ମୋତେବେଳ ଅଛିକାହିଁ ।
ଉତ୍ସବ ନବର ମୁହିଁ ଯିବି ସେହିବାଟେ
ତୁମ୍ଭେ ମୋତେନଚାହିଁଣ ଶୋଇଥିବ ଖଟେ ।
କୀଚକ ବୋଲେ ଲହରି ଉଠେ କାମଜଳେ
ରେ ପ୍ରାଣବାନ୍ଧବୀ ତୋତେଧରିକିନାକୋଳେ ।
ଯେତେବେଳରେତୋରମୋର ଭେଟାଭେଟି
ଅସଂଖ୍ୟ ସୁତ ଜାତରେ ହେବି ସିନା ତୁଷ୍ଟି ।
ସତୀ ପ୍ରଥମେ ବୋଇଲେ ଲଜ୍ଜାଭାବ କରି
ଦିବସରେ କଦାଚ କି ତାହା କରିପାରି ।
ସୁଅବକାଶରେ ଜାଣ ଭୋଜନ ଶୃଙ୍ଗାର
ପଣ୍ଡିତ ଲୋକେ ଯେ ସିନା କରନ୍ତି ବିଚାର ।
ଯାତ୍ରା ତ ସରିଗଲାଣି ନବର ତ ତୁଚ୍ଛା
ସେ ସ୍ଥାନେ ତୁମ୍ଭ ଆମ୍ଭର ପୁରାଇବା ବାଞ୍ଛା ।
କୀଚକ ହସିଲା ସୈରିନ୍ଧ୍ରୀଙ୍କ କଥା ଶୁଣି
ସନ୍ନିପାତର ମଲୁକୁ ରୁଚେ ଯେହ୍ନେ ପାଣି ।
ଏଣେ ସୈରିନ୍ଧ୍ରୀ ବାହାର ପ୍ରୀତିକି ଦେଖାଇ
ଗୋପ୍ୟ ହୋଇଣ ରହିଲେ ଅନ୍ତଃପୁରେ ଯାଇ ।
ବେଶ ଭୁଷଣ କୀଚକ ହୁଏ ପୁଣ ପୁଣ
ସୈରିନ୍ଧ୍ରୀକୁ ସୁମରନ୍ତେ ଆକୁଳ ତା ପ୍ରାଣ ।
ଆଦିତ୍ୟ ଦେବତା ଅସ୍ତ ହୋଇବ କେମନ୍ତ
ପୁନଃ ପୁନଃ ବୃଷ୍ଟି କରେ ଆକାଶର ପଥ ।

ବେନି ପ୍ରହର ଆସିଣ ହେଲେ ଦିନକର
ଅର୍ଘ୍ୟ ଘେନି କୀଚକ ଯେ ନବରୁ ବାହାର ।
ପଶ୍ଚିମ ମୂରତିହୋଇ ଚଳନ୍ତି ଭାସ୍କର
ଜୟ ଜୟ ଦିନନାଥ ଛାୟା ଦେବୀ ବର ।
ଜୟ ଜୟ ଭାସ୍କର ତୁ ଗଗନ ବିହାରୀ
ଯୋଗୀଜନ ଚିନ୍ତାମଣି ପଦ୍ମାନନ୍ଦକାରୀ ।
ଜୟ ତୁ ତିମିର ବିଦାରଣ ମାରତଣ୍ଡ
ଶୃଙ୍ଗାର ସମ୍ପଦେ ମୋର ତୃପ୍ତ କର ପିଣ୍ଡ ।
ସ୍ୱାମୀ ତୁହିତ ହରିଲୁ ଗୌତମ ରମଣୀ
ତୋର ଗୃହ ଭଗ୍ନରେ ଶାପ ଦେଲେ ମୁନି ।
ପର ଦାରା ହରଣରେ ଏମନ୍ତ ଅବସ୍ଥା
ତୁହି ଦେବ ଅଟୁ ନିଜେ କରତା ବିହନ୍ତା ।
ସୈରିନ୍ଧ୍ରୀ ନିମନ୍ତେ ମୋର ଦେହ ପଞ୍ଚଆତ୍ମା
ବେଗ ହୋଇ ଅସ୍ତ ହୁଅ ହେ ସୂର୍ଯ୍ୟ ମହାତ୍ମା ।
ସୈରିନ୍ଧ୍ରୀ ସଙ୍ଗେ କରିବି ମୁହିଁ ନବରଙ୍ଗ
ମେରୁ ପ୍ରଦକ୍ଷିଣ ନାଥ ହୁଅ ବେଗ ବେଗ ।
ହେ ସଂଜ୍ଞାବଲ୍ଲଭ ଦୟା ବଡ଼ ଅନୁରାଗେ
ଏହି ଭିକ୍ଷା ଦିଅ ପ୍ରଭୁ ପ୍ରଭୁ ତବ ପାଦେ ।
ଦିବସ ତା ଦିବାକର ଯାର ନାମଗୋଟି
ଶୁଦ୍ରମୁନି ଶାରଳା ତ ଯେ ପାଦରେ ଲୋଟି ।
ଦିନନାଥଙ୍କୁ ବହୁତ ବିନୟ ସେ କରି
ଆପଣା ମନ୍ଦିରେ ଗଲା ପୁନର୍ବାର ଫେରି ।
ମୃଗନାଭି କସ୍ତୁରୀକୁ ଲେପିଲା ସେ କାୟ
ସୁଗନ୍ଧ ତଇଳ ଘେନି ପଖାଳିଲା ଦେହ ।
ପୁନଃପୁନଃ ଚତୁଃସମ ଦେହେ ହୁଏ ବୋଳି
ବାକୁଳ ପରାୟେ କ୍ରିୟା କରେ ଭଳି ଭଳି ।
ପୁନଃ ବନ୍ଧାଇ ଶିରରେ ଆନ ଆନ ଗଭା
ଆନ ଆନ ଅଳଙ୍କାରେ ହେଉଥାଏ ଶୋଭା ।
ଘରୁ ବାହାର ହୋଇ ସେ ବେଳକୁ ଦେଖଇ
ପୁନର୍ବାର ସୂର୍ଯ୍ୟଙ୍କୁ ସେ ବିନୟ ହୁଅଇ ।
ଦହନରେ ଅଶକତ ହୋଇ ତାର ଦେହୀ
କିଛିକଥା ମନ ମଧ୍ୟେ ରହି ନ ପାରଇ ।
ପୁଣି ବିଚାର କରଇ ସୈରିନ୍ଧ୍ରୀ ଅଇଲେ
ଦେଖିଲେ ରୁଷି ବଦେହେ ଭୂଷଣ ନଥିଲେ ।
ପୁନର୍ବାର ଆନ ବେଶ ହୁଏ ତତ୍‌କ୍ଷଣ
ପୁରୁ ବାହାର ହୋଇଣ ପୁଚ୍ଛଇ ପ୍ରୟାଣ ।
ପଞ୍ଚଦଶ ଘଡ଼ିକରେ ବିଜେ ଅଂଶୁମାଳୀ
ରାଗ ହୋଇଣ କୀଚକ ତାଙ୍କୁ ଦିଏ ଗାଳି ।
ତୁହି ଦିନକର ଅଟୁ ଅତିଅନ୍ତ ଦୋଷୀ
ନୋହିଲେ କି ଶାପ ଦେଲେ ଗଉତମ ଋଷି ।

ପ୍ରଳୟ ବିବାଦେ ତୋତେ ଦେଖିଲି ସୁବାହୁ
ନ ଜାଣିକି ତୋତେ ଗ୍ରାସ କରେ କିରେରାହୁ ।
ଅହଲ୍ୟାକୁ ଭଣ୍ଡିଲୁ ତୁ ଅତିଭଣ୍ଡପଣେ
ଗଉତମ ଶାପ ତୋତେଦେଲା ସେ କାରଣେ ।
ଚନ୍ଦ୍ରଭାଗା ତୀର୍ଥେ ତୋର ଅଛି ଅଗ୍ନିଶ୍ରୁତି
ଭାସ୍କର ପୁରାଣ ଭଣ୍ଡ ଭଣ୍ଡ ହିଁ ସବୁନ୍ତି ।
ମକର ମାସ ଶୁକଳପକ୍ଷ ସପତମୀ
ହୁଅନ୍ତି ବହୁତ ଜନତୀର୍ଥ ଅନୁଗାମୀ ।
ଅଷ୍ଟାଦଶ ପୁରାଣ ଯେ ସବୁ ଭଣ୍ଡ ଗ୍ରନ୍ଥ
ତୋହର ଛାମୁରେ ଯେହୁ ହୋଇଲା ଉକତ
ଏହି ପରକାରେ ଅଛି ତୋହର ତ କଥା ।
ଆକାଶ ମାର୍ଗରେ ଅଟୁ ଅଭୁତ ଦେବତା ।
ଭାରିଯା ନିମନ୍ତେ କେହୁ ଛିଦ୍ର କରେ କାୟା
ଆରତ ଜନ୍ତୁମାନଙ୍କୁ ନ ବସେ ତୋ ଦୟା ।
କର ପାଆନ୍ତା ଯଦ୍ୟପି ଆଣନ୍ତି ମୁଁ ଧରି
ତୋତେ ମାରି ବଢ଼ାନ୍ତି ମୁଁ ଆଜକ ଶର୍ବରୀ ।
ଦିନକର ନାଥ ତହୁଁ ମେରୁପୃଷ୍ଟେ ଗଲା
ବାହୁଡ଼ି କୀଚକ ନିଜ ପୁରକୁ ଅଇଲା ।
ଆନ ବେଶ ହୁଅଇ ସେ ବୀର ସେନାପତି
ସୈରିନ୍ଧ୍ରୀ ବ୍ୟତୀତ ଆନେ ନ ବଳଇ ମତି ।
ଏହି କାଳରେ ପାଣ୍ଡବ ସୂପକାର ବୀର
ବେଳ ଥାଉଁ ସାରିଲା ସେ ରନ୍ଧନାଦି ତାର ।
ସୁଶୀତଳ ଜଳେ ଯାଇ ପଖାଳିଲା କାୟ
କୀଚକ ବ୍ୟତୀତ ତାର ଅନ୍ୟେ ନାହିଁ ଲୟ ।
ମଣୋହୀ କରାଇ ନୃପେ ବେଗେ ବୀରମଣି
ପ୍ରହରକ ଉତ୍ତାରୁ ସେ ପାଞ୍ଚଘଡ଼ି ଜାଣି ।
ସ୍ତ୍ରୀ ବେଶରେ ଅଳଙ୍କାର ପିନ୍ଧିଲା ବଲ୍ଲଭ
ତ୍ରିଲୋକ୍ୟ ମଧ୍ୟେ ଯାହାର ମହିମା ଦୁର୍ଲ୍ଲଭ ।
କବୀର ଭାରେ ଦିଶଇ କୁସୁମ ମଞ୍ଜୁଳ
କୁନ୍ଦଫରୁଆ କାଞ୍ଚଲା ପିନ୍ଧେ ବକ୍ଷସ୍ଥଳ ।
ଚନ୍ଦନ ଚତୁଃସମ ଯେ ଆବର କସ୍ତୁରୀ
ଗନ୍ଧଚୁଆ ମସ୍ତକରେ ବିଲୋପନ କରି ।
ଚମ୍ପା ଯାଇ ଯୁଈ ଫୁଲ ବକୁଳ ସେବତୀ
ସମସ୍ତ ଭୂଷଣ କରି ଖୋଷାକୁ ବାନ୍ଧନ୍ତି ।
ଶିରେ ମୁକୁତାର ଜାଲି ଲଲାଟରେ ପାଟି
କର୍ଣ୍ଣେ ତାଟଙ୍କ ହୃଦରେ ରତ୍ନମାଳ ଗୋଟି ।
କରେ ଶୋଭାବର୍ଣ୍ଣ ଦିଶେ କଣୟର ଚୁଡ଼ୀ
ପାଦେ ନୂପୁର ବାଜଇଦେଇ ଘୋର ରଡ଼ି
ଝୀନ ବସନ ପିନ୍ଧିଣ ଭାଲ ସୂପକାର
ବୃଷମାସ ଶୁକ୍ଳପକ୍ଷ ଦଶମୀ ତିଥିର ।

ଅର୍କବାର ନକ୍ଷତ୍ରର ଅଟେ ନାମ ହସ୍ତା
ରାତ୍ର ଦୁଇଘଡ଼ି କାଳେ ବିଜେ ବଳବନ୍ତା ।
ଉତ୍ସବ ନବରେ ବିଜେ କଲେ ନିଶାକାଳେ
ଦେଖି ଦୂରରୁ ଲୁଚିଲେ ସେଠା ଦ୍ୱାରପାଳେ ।
ସୁବର୍ଣ୍ଣପୁର ଭିତରେ ପଶିଣ ବଲ୍ଲଭ
ଦେଖିଲେ ସେ ପରିମଳ ଅତ୍ୟନ୍ତ ସୁଲଭ ।
ଜଳୁଅଛି ଦୀପାବଳୀ ଗୃହ ଚଉକତି
ଭୀମ ଲୋଡ଼ି ନ ପାଏ କୀଚକ ସେନାପତି ।
ବିଚାରଇ ମନେ ମନେ କିବା ଫେରିଗଲା
ମୋହର ଆସନ୍ତେ ଅବା ବିଳମ୍ବ ହୋଇଲା
ଦିବ୍ୟ ପଲ୍ୟଙ୍କରେ ଅଛି ମଶୁରୀ ସୁପାତି
ଶ୍ରଦ୍ଧେଶୋଇଲେ ପାବନି ହୋଇ ଭୋଳମତି ।
ଜଳନ୍ତା ପ୍ରଦୀପ ସବୁ ଦେଲା ସେ ଲିଭାଇ
ନିଶ୍ଚିନ୍ତରେ ଭୀମସେନ ଶୋଇଲାକ ଯାଇଁ ।
ନିଶାରାତ୍ର ବାରଦଣ୍ଡ ଅତୀତର ପର
କାଳବେଳା ହୋଇଅଛି ବେଳ ଶନୈଶ୍ଚର ।
ଅନେକ ବେଶ ଭୂଷଣ ହୋଇ ସେନାପତି
ପୁରୁ ବାହାରିଲା ଦେଢ଼ ପ୍ରହର ଯେ ରାତି ।
ଏମନ୍ତ ଶୁଭଯୋଗରେ ହୋଇଲା ବାହାର
ଯମର ପାଟଣାକୁ କି ହେଲା ଆଗୁସାର ।
ମନ୍ଦ ବେଳାରେ କୀଚକ ବାହାର ହୋଇଲା
ପହଣ୍ଡ ଉଠାନ୍ତେ ଆଗେ ଆପଣେ ଛିଙ୍କିଲା ।
କାମରେ ବିହ୍ୱଳ ତାକୁ ନ ସ୍ଫୁରଇ କିଛି
ମଧୁଲୋଭ ଲୁବ୍‌ଧଯେହ୍ନେ ହୋଇଥାଏମାଛି ।
କଟକୁ ବାହାର ହୋଇ ପଶ୍ଚିମ ମୂରତି
ଆଗେ ବାଟରେ ଉରଗ ଫଣା ଟେକିଅଛି ।
ବାଟଛାଡ଼ି ଆଡ଼ ହୋଇଗଲା କାମଦେଶେ
ବଇରୀବନ୍ଧନେ ଯେହ୍ନେ ଚଳଇ ସନ୍ତୋଷେ ।
ଆଗରେ ଛିଙ୍କନ୍ତି ତହିଁ ବିଧବା ବନିତା
ଅଦଭୂତରେ ଉଲୁକ ରାବେ ଅପ୍ରମିତା ।
ଛାମୁରେ ବିକଟାଳରେ ରାବଇ ଭେରଣ୍ଡା
ଭୁଜରୁ ଝଡ଼ିପଡ଼ିଲା ଧରିଥିବା ଖଣ୍ଡା ।
ଆଣ୍ଠୁରେ ବାଜିଣ ପୁଣି ବହିଲା ରୁଧିର
ଜାଣି ନ ପାରିଲା କାମେ ଥିବାରୁ ଆତୁର ।
ବାମ ନୟନ ତାହାର ଘନ ଘନ ସ୍ଫୁରେ
ପଛରେ ଥାଇଣ ଶ୍ୱାନ ରାବଇ ଉଚ୍ଚରେ ।
ଅଗ୍ରେ କହେ ପ୍ରିୟମ୍ୱଦା ନାମେ ମୃଦୁସ୍ଥୂଳୀ
ହେ ଦେବ ବଡ଼ ଅଶୁଭ ସପନ ଦେଖିଲି ।
ସ୍ୱାମୀ ଏମନ୍ତ ଅଶୁଭେ ଯେବେ ପଥବାହି
ଗଲେ ନ ବର୍ତ୍ତନ୍ତି କେହି ନ ଆସନ୍ତି ଜୀଇ ।
ସ୍ୱାମୀ ଏକ ବଡ଼କଥା ଶୁଣ ମହାକ୍ଷତ୍ରୀ
ତୁରାପଦ ସ୍ୱପ୍ନ ମୁହିଁଦେଖିଲଇଁ ରାତି ।
ପଥ ତୁମ୍ଭେ ଯାଉଁ ଯାଉଁ ପଡ଼ିଲ ଅଗାଧ
ଅସ୍ଥି ମାଳାରେ ଶୋଭିତ ହୋଇଥିଲା ହୃଦ ।
ଠାକୁରାଣୀ ହସ୍ତୁ ଚୂଡ଼ୀ ତୁଟିଗଲା ପୁଣି
ତୁମ୍ଭର ଶିରେ ସେ ଚୂଡ଼ୀ ପ୍ରହାରିଲା ଆଣି ।
କୁଟୁମ୍ବ ସକଳ ଏକ ନାବେ ବସିଯାନ୍ତେ
ମଧ୍ୟସାଗରେ ବୁଡ଼ିଲା ସୁଗୋତ୍ର ସହିତେ ।
ଅନେକ ବିପଦ ବୋଲି କହେ ପ୍ରିୟମ୍ୱଦା
ଶୁଣିଣ ରାଗେ କୀଚକ ବୁଲାଇଲା ଗଦା ।
ବୁଲନ୍ତେ ସେ ଗଦା ନିଜ କପାଳରେ ବାଜି
ଲଲାଟ ଫାଟି ରୁଧିର ବହେ ଗଳଗାଜି ।
କୀଚକ ବିମୁଖେ ଗଦା ହସ୍ତରୁ ପକାଏ
ବଧିର କି କମ୍ବୁସ୍ୱନ ଶୁଣିବାକୁ ପାଏ ।
ସେତେବେଳେ ପ୍ରାଣୀପ୍ରାଣ ଛାଡ଼େ ନିଜଦେହ
ବନ୍ଧୁଜନ ଦେଖିଲେ ସେ ରାଉଥାଇକୋହ ।
ଏଡ଼େକ ବିପତ୍ତିକଥା ଘଟିଗଲା ବାଟେ
କିଛିହିଁ ନ ଜାଣିଲା ସେ କାମର ଉଚ୍ଚାଟେ ।
ମହାବାତେକ କାଳେ କହିଲା ସେ ଅଭୁତେ
ଦିହୁଡ଼ିର ହୁଳାସବୁ ଲିଭିଲା ତୁରିତେ ।
ଅନ୍ଧାର ମନ୍ଦିରେ ବିଜେକଲା ବୀର ବେଗେ
ପୁର ଚଉକତି ଖୋଜେକାମର ଆବେଗେ ।
ସୈରିନ୍ଧ୍ରୀ ସୈରିନ୍ଧ୍ରୀ ବୋଲିଧୀରେଦିଏଡାକ
ପ୍ରାଣର ବଲ୍ଲଭୀ ମୋର ପଞ୍ଚପ୍ରାଣ ରଖ ।
ବଚନ ସଂପ୍ରତେ ମୋତେସୈରିନ୍ଧ୍ରୀ ଯେକଲା
ନିରାଶ ହୋଇଣ ଅବା ଆସି ଫେରିଗଲା ।
ଦ୍ୱାରପାଳବୋଲେ ଆମ୍ଭେ ଦେଖିଲୁ ଆସନ୍ତେ
ଠାକୁରାଣୀଙ୍କୁ ଦେଖିଣ ରହିଲୁ ଗୁପତେ ।
ଦୃଢ଼ କରିଣ କୀଚକ ଖୋଜେ ବେନିହସ୍ତେ
ଭୂଜ ପଡ଼ିଗଲା ଯାଇଁ ଭୀମସେନ ଗାତ୍ରେ ।
ଦରିଦ୍ର ହସ୍ତରେ ଯେହ୍ନେ ପଡ଼ଇ ରତନ
ସେହିପରି ଆନନ୍ଦିତ କୀଚକର ମନ ।
ତା ଦେହ ଆଉଁସି ଶିରେ ଦେଲା ନେଇକର
କୁଞ୍ଚିତ କବରୀ ସନ୍ଧି ଘଞ୍ଚ ଖୋଷା ସାର ।
ଆରେ ସଖି ଅଟୁ ତୁହି ପଞ୍ଚପ୍ରାଣ ସମ
ପ୍ରବନ୍ଧ ଖୋଷା ତୁମ୍ଭର ଦମ୍ଭ ହରେ ସମ ।
ଏକଖଣ୍ଡ କପୋଳ ତୋ ପାଷାଣ କି ଜାଣି
ଏସନକ ସଞ୍ଜାତ ତୁ ଅଟୁ ସଙ୍ଗାତୁଣୀ ।
କଳାଭ୍ରମରକୁ ଜିଣି ତୋର ଚକ୍ଷୁବେନି
ଅତି ସୁନ୍ଦର ଯୁବତୀ ଚନ୍ଦ୍ରମା ବଦନୀ ।

ଅତୁଳିତ ତିଳଫୁଲ ପ୍ରାୟେ ତୋର ନାସା
ଅଧର ତୋ ବିମ୍ବଫଳ ଜିଣି ଦିଶେ ଭୂଷା ।
ଅଣ୍ଡିରା କୋକିଳ ଜିଣି ଅଟେ ତୋର ସ୍ୱନ
ଏବେ ତୋତେ ନିଉଛାଳି କରୁଛିରେ ଧନ ।
କନକର ଚମ୍ପାକଢ଼ି ସମ ତୋ ଅଙ୍ଗୁଳି
ଚନ୍ଦ୍ରମା ମଣ୍ଡଳ ଜିଣି ତୋର ମୁଖସ୍ଥଳୀ ।
ରକତ କୁମୁଦ ଜିଣି ପାଦତଳ ଲେଖି
ନିଶ୍ଚିନ୍ତେ ଶୋଇଲୁ କିମ୍ପା ଉଠ ଶଶୀମୁଖୀ ।
ଅନେକ ଚାଟୁ ବଚନ ବୋଲଇ ବାହୁନି
ବିରହେ ନବମ ଦଶା ଅଛି ସେହୁ ଘେନି ।
ପୁଣ ପୁଣ ବୋଲେ ସଖି ମନ୍ଦ ମୁହିଁ ପାପୀ
ମୋହର ବିଳମ୍ବ ଦେଖି ହେଲୁ କିବାକୋପୀ
ତହିଁପାଇଁ କୋପ କି ଗୋ କରିଲୁ ତୁ ମନ
ନିଜ ବେନିଭୁଜେ ମୋତେ କର ତୁ ବନ୍ଧନ ।
ନଖ ଦନ୍ତଘାତ ସଖି କର ମୋହ ଦେହୀ
ଅନଙ୍ଗ ଶରାଘାତେ ମୁଁ ହେଉଅଛି ଦହି ।
ତୋର ଅଙ୍ଗ ସଙ୍ଗ ଲାଗି ହେବ ତାହା ଶାନ୍ତି
ରେ ପ୍ରାଣବାନ୍ଧବୀ ଭାଷ ମଧୁର ଭାରତୀ ।
ପୁରୁଷଦର୍ପ ଧ୍ୱଂସିନୀ ତୋର ଯୋଗମୁଦ୍ରା
ବିରହିଣୀ ବାମା ତୋର କିସଅର୍ଥେ ନିଦ୍ରା ।
ଅନେକ ଚାଟୁ ବଚନ କହଇ ଆରତେ
ଆବୋରିଶୋଇଲା ତାକୁ ଧରି ବେନିହସ୍ତେ ।
ଉପରେ ଲଦିଲା ନେଇ ବାମ ପାଦ ଗୋଟି
ଦକ୍ଷିଣ ହସ୍ତ ଫେଇଲା ସେ ବକ୍ର କପଟୀ ।
କଦଳୀ ପତ୍ରକୁ ଜିଣି କମ୍ପେ ଭୀମ ଅଙ୍ଗ
ଗର୍ଜନ କରି ଉଠଇ ଯେହ୍ନେ ନରସିଂହ ।
କୀଚକ ମଉନବ୍ରତ ହୋଇ ମତିଭ୍ରମେ
କିଛିହିଁ ବୋଲି ନପାରେ କାମ ଅସାଷ୍ଟମେ ।
ଶୁଣ ଆହେ ମନୁରାଜା କାମଦୁଃଖ ଏହ୍ନେ
କୀଚକ ବାରି ନ ପାରେ ସ୍ତ୍ରୀପୁରୁଷ କେହ୍ନେ
ଭୀମସେନ କୀଚକକୁ ଧରିଲା ଆକର୍ଷି
କୀଚକ ଲେଉଟାଇଣ ଭୀମେ ମାଡ଼ି ବସି ।
ହୃଦେ ବସିଣ କୀଚକ ମୁଖେ ଦିଏ ଚୁମ୍ବ
ବିଚାରଇ କରଇ ଭୀମ ଏ ବଡ଼ ଅଦମ୍ଭ ।
ଶତଶୃଙ୍ଗ ଶାପ ତାକୁ ଅଛି ବାଲ୍ୟକାଳେ
ସେହି ଦୋଷେ ଭୀମସେନ ପଡ଼ିଅଛି ତଳେ ।
ପୁଣ ପୁଣ କୀଚକ ଯେ ଚୁମ୍ବେ ଭୀମମୁଖେ
ଶରୀର ବୁଡ଼ିଛି କାମ ଗରଳର ଦୁଃଖେ ।
ଶତଶୃଙ୍ଗ ପର୍ବତକୁ ସୁମରନ୍ତି ଭୀମ
ବୃକୋଦର ମୂର୍ତ୍ତି ଦିଶେ ଦ୍ୱିତୀ କାଳଯମ ।
ପୁଣ ପୁଣ ସୁମରଣା କରେ ଜଗନ୍ନାଥ
ତୁହି ପରମ ପୁରୁଷ ଅଟୁ ପରମାର୍ଥ ।
ଏ ଦୁଃସହ ସଙ୍କଟରୁ ରଖ ନାରାୟଣ
ପଞ୍ଚପାଣ୍ଡବ ଦେବ ହେ ତୁମ୍ଭର ଶରଣ ।
ବଳେ କୀଚକକୁ ମୁହିଁ ନୁହେଁ ସମସରି
ରଖ ରଖ ନାରାୟଣ କୀଚକ ସଂହାରି ।
ଭୀମ ଶରୀରେ ନୃସିଂହି ହେଲେ ପରବେଶ
କୋଟିସିଂହ ବଳ ତହୁଁ ହୋଇଲା ବିକାଶ ।
ଖମ୍ଭୁ ନାରାୟଣ ଯେହ୍ନେ ହିରଣ୍ୟକଶିପୁ
ଆକର୍ଷଣରେ ବଢ଼ିଲା ବାରଯୁଣ ବପୁ ।
ସେହି ପରକାରେ ତେଜ ପାଇଲା ବଲ୍ଲଭ
ଗୁପତ ପ୍ରତିଜ୍ଞା ତହିଁ କରଇ ଦୁର୍ଲ୍ଲଭ ।
ଲେଉଟାଇ ମାଡ଼ିଣ ସେ ବସେ ବକ୍ଷସ୍ଥଳେ
ରେରେକୋରଙ୍କେଶିଭଢେ ବୋଲେକୋପାନଳେ ।
ଆରେ ରେ ମାନବତୋର ଏଡ଼େଅଟେ ଦର୍ପ
ହୀନ ହୋଇ ଦେଖାଉଛୁ ଏଡ଼େ ବଡ଼ ଧାପ
ରେ ରେ ଚାଣ୍ଡାଳ ଗନ୍ଧର୍ବ ଭାରିଯାତୁ ହରୁ
ଦେଖୁ ଦେଖୁ ଆସି ତୁହି ଅନଳରେ ମରୁ ।
ଆରେ ରେ ପାମର ଆଜି ପୂରିଲା ତୋ ଜୀବ
ରଖି ନ ପାରିବେ ଆଉ ତୋତେ ଇନ୍ଦ୍ରଶିବ ।
ଆରେ ରେ ପାମର ପଞ୍ଚଗନ୍ଧର୍ବଙ୍କୁ କାଲି
ସଭାତଳେ ଅବଜ୍ଞା ତୁ କରିଲୁ ଶୁଣିଲି ।
ରେ ରେ ମାନବ ସୁମର ତୋର ପିତାମାତା
ସୁମର ଆରେ ମାନବ ତୋ ଇଷ୍ଟଦେବତା ।
ରେରେ କୀଚକ ପୂରିଲା ମୋର ମନବାଞ୍ଛା
ଆୟୁଷ ପୂରିଲା ତୋର କରୁ କେହୁ ରକ୍ଷା ।
ରେ ପାମର ତୋର ପାଇଁ ଆମ୍ଭ ଗୁପ୍ତବାସ
ଏ ପଞ୍ଚପାଣ୍ଡବ ଆମ୍ଭେ ଅଛୁ ମତ୍ସ୍ୟଦେଶ ।
ଦାରାବଇରୀ ତୁହିରେ ଅଟୁତୁ ମୋହର
ଦ୍ରୌପଦୀଙ୍କି ହରିଲୋଡୁ ଏତେ ଦର୍ପ ତୋର ।
ରୋଷ ବହି ଭୀମସେନ ଭିଡ଼େ କୋପଭରେ
ଅର୍ଦ୍ଧଜୀବନ ଉଡ଼ିଲା ଏକ ଘାନ୍ତିକରେ ।
ରେ ରେ ପାମର ମୋହର ଜୀବ ଶେଷକାଳ
ନିଶ୍ଚୟ ଯିବୁ ତୁ ସଂଯମନୀର ମଣ୍ଡଳ ।
ରେ ରେ ମାନବ ବିରାଟ ଆସିତୋତେ ରଖୁ
ଚିରଣ ପ୍ରାୟ ବିଦାର କରିବି ତା ବୁକୁ ।
ରେ ରେ ପାମର କୀଚକ ଧିକ ତୋରବୁଦ୍ଧି
ନିଷ୍ଠେ ବୁଡ଼ାଇଲୁ ତୁହି ବିରାଟ ସମୃଦ୍ଧି ।
ବହୁ ପ୍ରତିଜ୍ଞା କରଇ ପବନର ଚାଟ
ବେନି ପାଟିକୁ ଚାପିଣ ଓଷ୍ଠ କଲା ପୁଷ୍ଟ ।

ନୃସିଂହାବତାର ପ୍ରାୟେ ଦେଖାଯାଏ କାୟ
ବେନି ଚକ୍ଷୁ ଭ୍ରମେ ଯେହ୍ନେ କାଳଚକ୍ରପ୍ରାୟ ।
ବକ୍ଷସ୍ଥଳେ ପାଦ ଦେଇ ଭାଙ୍ଗିଲା ତା ବୁକୁ
ନେଇ ପୂରାଇଲା ଜାନୁ ଭିତରେ ମଥାକୁ ।
କଡ଼ କଡ଼ ଶବଦ ଯେ ଶୁଭେ ମହାଘୋର
ଚତୁରୀ ଯୁବତୀ ତହିଁ କରନ୍ତି ବିଚାର ।
ବୋଲନ୍ତି ସୈରିନ୍ଧ୍ରୀ ଅଟେ ସାମାନ୍ୟ ରମଣୀ
ଏଡ଼େ ଧାପକୁ କେମନ୍ତେ ସହିବ ସେ ପୁଣି ।
ଶତସିଂହ ପରାକ୍ରମୀ ଅଟେ ମହାରାଣ
ସୈରିନ୍ଧ୍ରୀ ମାତ୍ରକ ଛାର ତହିଁକି ଭାଜନ ।
ବହୁତ ଉପହାସରେ କୁଚବନ ବୋଲି
ନିଶି ଅର୍ଦ୍ଧେ ଯେଝାପୁରେ ଚଳିଲେ ପୋଇଲୀ ।
ଦୁଇ ଜାନୁ ମଧେ ଶିର ପକାଇଲା ଆଣି
ହୃଦ ବିଦାରଇ ବେନିପାଦ ଟାଣି ପୁଣି ।
ଭୁଜକୁ ଛନ୍ଦିଲା ନେଇ ପଛକତି କରି
ବୁକୁ ବିଦାରିଲା ତହିଁ ଦଶନଖ ଭରି ।
ମୁଣ୍ଡମାଡ଼ି ତଳକୁ ସେ ପ୍ରହାରିଲା ମୁଥେ
ଗୁହ୍ୟ ଭିତରେ ପଶିଲା ମସ୍ତକ ତ୍ୱରିତେ ।
ମୁଣ୍ଡକାଟି ଜାନୁକୁ ସେ କରିଦେଲା ଲୋଟା
କୁଷ୍ମାଣ୍ଡ ଫଳ ପ୍ରାୟେକ ତାକୁ କଲା ମେଞ୍ଚା ।
ସେହି ମାଂସ ପିଣ୍ଡଗୋଟି ବେଗ କରି ନେଲା
ସେ ଗୃହ ଓରାରେ ତାକୁ ଯତ୍ନେ ରଖିଦେଲା ।
ଏହା ଶୁଣି ବୈବସ୍ୱତ ମନୁ ପୁଚ୍ଛାକଲା
କୀଚକର ଶତସିଂହ ବଳ କେଣେ ଗଲା ।
ଅଗସ୍ତି ବୋଇଲେ ଶୁଣ ମନୁ ମହାରଥୀ
ଶତସିଂହ ପରାକ୍ରମ ଯେବଣ ବାରତା
ସୈରିନ୍ଧ୍ରୀଙ୍କ କରକୁ ସେ ଛୁଇଁଲା ଯେକାଳେ
ଶିରୀ ତାର ଚ୍ୟୁତହେଲା ଆକର୍ଷିଲା ବେଳେ ।
ନିଜ ଶରୀର ତୁଟିଲା ହେଲା ବପୁ କ୍ଷୀଣ
ଏକସିଂହେ ନାଶଯିବ ବିଧାତା ଲିଖନ ।
ବଶିଷ୍ଠଙ୍କ ଶାପେ ମଲା କୀଚକ ଦୁର୍ମତି
ଭୀମସେନ ବାହାର ଯେ ଦେଢ଼ଘଡ଼ି ରାତି ।
ଅଙ୍ଗୁ କାଢ଼ିଣ ସ୍ତ୍ରୀବେଶ ହେଲେ ସୂପକାର
ରାତ୍ରେ ଆଉଁ ପଶିଲେ ସେ ରାନ୍ଧଣାର ଘର ।
ସୁଗନ୍ଧ ଜଳରେ ତହୁଁ ଅଙ୍ଗକୁ ପଖାଳି
ଚନ୍ଦନ ଅତର ଚୂଆଦେହେ ହେଲେ ବୋଳି
ଆପଣ ଶଯ୍ୟାରେ ଯାଇଁ କରିଲେ ଶୟନ
ଯୁଦ୍ଧ ପରିଶ୍ରମ ତହୁଁ ହୋଇଲା ହରଣ ।
ଜୟ ଜୟ ଜଗନ୍ନାଥ ପ୍ରଭୋ ଦଇତ୍ୟାରି
ବଡ଼ ଦେଉଳରେ ବସି ଶୁଣୁଛ ଗୁହାରି ।
କଳା ଶ୍ରୀମୁଖକୁ ଦେଖି ଘୋର ପାପୀମାନେ
ଚଳି ଯାଉଛନ୍ତି ସ୍ୱର୍ଗେ ବସିଣ ବିମାନେ ।
ଶୁକମୁନି ଶାରଳାକୁ ବାରେ ଦୟା ହେଉ
ଶ୍ରୀମୁଖକୁ ଦେଖୁ ଦେଖୁ ତହିଁ ପ୍ରାଣ ଯାଉ ।

—●—

## କୀଚକର ମୃତଦେହ ଦର୍ଶନେ ବିରାଟର ଶୋକ

କହନ୍ତି ଅଗସ୍ତି ମୁନି ଆହେ ରଘୁରାଣ
ଏଥୁଅନ୍ତେ ଯାହାହେଲା ଶୁଣ ବିବରଣ ।
ପ୍ରଭାତ ହୁଅନ୍ତେ ନିଶି ସ୍ନାନକଲେ ରାୟେ
ପୁରୋହିତ ଦେବାର୍ଚ୍ଚନା ଆସିଣ କରାଏ
ବିଜୟ କଲେ ଆସ୍ଥାନେ ମତ୍ସ୍ୟ ଅଧିଶ୍ୱର ।
ବିପରୀତ ସ୍ୱପ୍ନ କଲେ କୋନ୍ତଙ୍କ ଛାମୁର ।
ସ୍ୱପ୍ନ ବିବରଣ ଶୁଣ ହେ କୋନ୍ତ ପଣ୍ଡାଏ
ରାତ୍ର ନବଘଡ଼ି ମଧେ ସୁସ୍ଥ ଅଛି କାୟେ ।
ଅଦଭୂତ ସ୍ୱପନ ମୁଁ ଦେଖିଲି ନିଦ୍ରାରେ
ନାଚନ୍ତି କବନ୍ଧଗଣ ଗଡ଼ନ୍ତି ମହୀରେ ।
ଏକାଜଣକେ ଅନେକ ଲୋକ କଚାଡ଼ିଲା
ଟେଳାପରି ସମସ୍ତଙ୍କୁ ନେଇ ଫିଙ୍ଗିଦେଲା ।
କେଶ ବାସ ଅସମ୍ଭାଳ ଚୂଡ଼ା ଭାଙ୍ଗି ବାଳୀ
ନବରର ଚଉକତି ଛାଡ଼ନ୍ତି ବୋବାଳି ।
ମୁଣ୍ଡ ଖୋଳାର ଅସ୍ଥିରେ ଶୋଣିତ ପୂରାଇ
ଛାମୁରେ ଏକ ଯୁବତୀ ଥୋଇଲାକ ନେଇ ।
ମୋହର କାଂସ୍ୟ ପାତ୍ରରେ ରୁଧିର ପୂରାଇ
ମଣୋହି ସ୍ଥାନରେ ତାକୁ ରଖିଦେଲା ନେଇ ।
ମନୁଷ୍ୟ ମୁଣ୍ଡ ମାଳକୁ ଲମ୍ବାଇ ମୋ ହୃଦ
ପୁଣି ସେ ଯୁବତୀ ଟାଣେ ଧରି ମୋର ପାଦ ।
ଏ ମୋହର ବିଚାରକୁ ନ ଯୋଗାଇ ତୁଳେ
ଆବର ଦିନମାନ କି ଯିବ ମୋର ଭଲେ ।
ବୋଲେକୋନ୍ତ ହେ ରାଜନହୋଇଲକିବାଇ
ସୁଲଭ କି ଅସୁଲଭ ଏ ସ୍ୱପନ କହି ।
ବିରାଟ ବୋଇଲେ କୋନ୍ତ ଷଡ଼ ଦଣ୍ଡବେଳ
ଏକାଳେ ଅମାତ୍ୟେଆସିସର୍ବେ ହେଲେମେଳ
ଅନେଶ୍ୱତ ଶଳାମାନେ ପ୍ରବେଶିଲେ ଆସି
କୀଚକ ନଦେଖି ରାଜା ମୌନେ ଛନ୍ତି ବସି ।
ଆସ୍ଥାନେ ବସି ବିରାଟ ବିଚାରନ୍ତି ତହିଁ
ସଭା ନ ଦିଶଇ ଶୋଭା କୀଚକର ପାଇଁ ।

ଟାରବୋଇଲେହେଦେବସୈରିନ୍ଧ୍ରୀବିନୋଦେ
ଉତ୍ସବ ନବରେ ଛନ୍ତି କ୍ରୀଡ଼ାରସ ଛନ୍ଦେ ।
ବିରାଟ ବୋଇଲେ ଆରେ ଡାକିଆଣ ଯାଇ
କେମନ୍ତ ମଣିଲ କୋନ୍ତ ବୋଲି ନାହିଁନାହିଁ
ନାଗରୀ ସ୍ତ୍ରୀମାନଙ୍କର ବେଭାର ଏସନ
ନିଗମ ଭୂମିକୁ ନେଲା ମନୋହର ସ୍ଥାନ ।
ରାତ୍ର ପାହିଗଲା ବେଳ ପ୍ରହର ହୋଇଲା
ଏତେବେଳପରିଯନ୍ତେ ଛାଡ଼ି ସେ ନଦେଲା ।
ରାଜାଙ୍କ ବଚନ ଶୁଣି ଚଳିଲେ ଦୂତେ
ଉତ୍ସବ ନବରେ ଯାଇ ମିଳିଲେ ତୁରିତେ ।
ଭିତର ବାହାର ହୋଇ ଲୋଡ଼ନ୍ତି ଚୌକତି
ହେ କୀଚକସ୍ୱାମୀ ବୋଲି ଉଚ୍ଚରେ ଡାକନ୍ତି ।
ଜାଣି ନ ପାରିଲେ ଯହୁଁ ଭୁବନି ଚୌପାଶେ
ଦିହୁଡ଼ି ଜାଳି ପଶିଲେ ଗୃହେ ଅବଶେଷେ ।
ଦେଖିଲେ ଓରାରେ ଏକ ମେଦ ଅଛି ପୂରି
ରାଜାଙ୍କୁ କହିଲେ ଯାଇ ତହୁଁ ବେଗକରି ।
କୀଚକ ନାହାନ୍ତି ଦେବ ଉତ୍ସବ ନବରେ
ମେଦଗୋଟି ଦେଖିଲୁ ସେ ଘରର ଓରାରେ ।
ପଟାନ୍ତର ଦେବାକୁ ହିଁ ନାହିଁ ସମସରି
ଯେସନେକ ଦିଶଇ ସେ ତାମ୍ର ବର୍ଣ୍ଣ ଗିରି ।
ବିରାଟ ବୋଇଲେ ଶୁଣି କୋନ୍ତ ମୁଖ ଚାହିଁ
ଉତ୍ସବ ନବରେ ଯିବା ଆସ ଆମ୍ଭ ବାହି ।
ଅଶ୍ୱ ଗଜ କେହି ନାହିଁ କଲେ ପାଦ ଗତି
ବାହାରେ ରହିଲେ ଯାଇ ମତ୍ସ୍ୟ ଅଧିପତି ।
ଗ୍ରାମକୁ ବୋଲି ତାହାକୁ ଆଣିଲେ ଗଡ଼ାଇ
ସକଳେ ଆଶ୍ଚର୍ଯ୍ୟ ହେଲେ ସେ ମେଦକୁ ଚାହିଁ
କେହୁ ବୋଇଲେ କୀଚକ କେବୋଲେ ଗନ୍ଧର୍ବ
ପ୍ରପଞ୍ଚେ ମାଇଲା ଭୀମ କରିଣ ଅପୂର୍ବ ।
ଏହିପରି ହୃଦମଧେ ବିଚାରନ୍ତି କୋନ୍ତ
ବିରାଟ ପୁଚ୍ଛନ୍ତି ପଣ୍ଡା ଏ ଅଟେ କେମନ୍ତ ।
ତୁମ୍ଭର ଦେଖିଲା କେବେ ଅଛି ଏହିପରି
ଜାଣିଥିଲେ କହ ମୋତେ ସକଳ ବିସ୍ତାରି ।
କୋନ୍ତ ବୋଇଲେ ଶୁଣ ହେମତ୍ସ୍ୟଦେଶନୃପ
ଗନ୍ଧର୍ବ ବାରେଣୀ ସିନା ଅଟେ ଏ ସ୍ୱରୂପ ।
ସୈରିନ୍ଧ୍ରୀଙ୍କ ଅପମାନେ ଗନ୍ଧର୍ବଙ୍କ କୋପେ
କୀଚକ ଯେ ନାଶଗଲା ଏମନ୍ତ ସ୍ୱରୂପେ ।
ବିରାଟ ବୋଇଲେ ମୋର ମନେ ନ ଆସଇ
ସ୍ୱରୂପ ଦେଖିବା କଥା କେମନ୍ତେ ଅଟଇ ।
କୋନ୍ତ ବୋଇଲେ ଏହାକୁ ପ୍ରପଞ୍ଚେ ମାଇଲା
ବାହାର ରୂପ ତାହାର ଭିତରକୁ କଲା ।
ଭିତରେ ସ୍ୱରୂପ ବର୍ଣ୍ଣକଲା ବାହାରକୁ
ଏମନ୍ତ କଥାଗୋଟି ଯେ ଆସେ ମୋ ମନକୁ ।
ନୁହଇ କୀଚକ ଏହୁ ବିରାଟ କହଇ
ଶତସିଂହ ପରାକ୍ରମ ଏକା ସେ ବହଇ ।
କୋନ୍ତ ବୋଇଲେ ତୁ ଆଣ ହେ ବଳବନ୍ତରାଇ
କର ଚରଣ ଦେଖିବା ତାହାର ଫିଟାଇ ।
ଧରିଣ ଶାବେଳି କରେ ପୁଣ ଏକମୁନ
କର ଚରଣ ଏହାର କରି ଭିନ୍ନ ଭିନ୍ନ ।
ଜଳମଧେ ଯେସେନକ କଚ୍ଛପ ଲୁଚ୍ଛଇ
ପିଠିର କଟିକି ତେହ୍ନେ ଅଙ୍ଗ ଲେଉଟାଇ ।
ଏପରି ବୋଲି କୋନ୍ତଭଟ୍ଟ ଠାରିଲେ ଅଙ୍ଗୁଳି
ଏହିଠାବେ ଦେବ ତାଡ଼ ଲଗାଇ ଶାବେଳି ।
କୋନ୍ତ ଆଜ୍ଞାରେତାଡ଼ିଲେ ସେହିସ୍ଥାନଗୋଟି
ଏକା ସନ୍ଧିଏ କାଢ଼ନ୍ତେ ଗଲା ସର୍ବ ଫିଟି ।
ମସ୍ତକ କର ଚରଣ ହୃଦେ ବକ୍ଷସ୍ଥଳ
ନିଜ ଦେହ କୀଚକର ଦିଶିଲା ସକଳ ।
ଦେଖି ହାହାକାର କଲେ ବିରାଟ ରାଜନ
ଛିନ୍ନତରୁ ପ୍ରାୟ ପଡ଼ି ହେଲେ ଅଚେତନ ।
ଶରୀରୁ କି ପ୍ରାଣ ଛାଡ଼ିଗଲା ଦେଖାଯାଏ
କୋଳ କଲେ ବିରାଟକୁ ସେ କୋନ୍ତପଣ୍ଡାଏ ।
ଧୀରେ ଧୀରେ ଆଉଁସିଣ ମୁଖେ ଜଳ ଦେଇ
ଚେତନା ପାଇ ଆଲଟ ପଙ୍ଖାକୁ ବିଞ୍ଚଇ ।
ଗତପ୍ରାଣପାଇ ରାଜା ଉଠିଲେ ସାଷ୍ଟାମେ
ଲଲାଟୁଁ ତ୍ରିପୁଣ୍ଡ ଝାଳ ବହେ ମହାଶ୍ରମେ ।
ହା ହା ମୋହର ଷୋଡ଼ଶ ଭାଇରେ କୀଚକ
ତୋର ନାମକୁ ଧଇଲେ ଡରି ସର୍ବଲୋକ ।
ଲକ୍ଷ ଲକ୍ଷ ସମରକୁ ନଡରୁ କୀଚକ
ଦିବ୍ୟ ଭୁବନ ଯାକରେ ତୋର ନାମ ଏକ ।
ଶୂରବନ୍ତ ସୁନ୍ଦରରେ କକ୍ଷା ଜଗତଜେଷ୍ଠୀ
ସର୍ବଦା ପ୍ରସନ୍ନ ଅଟେ ତୋର ମୁଖଗୋଟି ।
ସୁକୁମାର ସୁନ୍ଦରରେ ମୋର ଦୁଃଖେ ଦୁଃଖୀ
ମଘ ମତ୍ସ୍ୟଦେଶକୁରେ ତୁହି ଥିଲୁ ରଖି ।
ମୁହିଁ ଅଟେ ଅସମର୍ଥ ମୋର ନାହିଁ ଦର୍ପ
ତୁହିରେ ରକ୍ଷାପାଳକ ଉଦିତ ମୋ ତପ ।
ସଙ୍କୋଚନରେ ନନ୍ଦନ ଶରଣ ବିରଧୁ
ଈଶ୍ୱରଙ୍କ ମହିମାରେ ତୋ ଜୀବନ ସାଧୁ ।
ଅକାରଣକୁ କାରଣ ଶରଣ ରଖନ୍ତା
ପ୍ରସନ୍ନେ ପରମବନ୍ଧୁ ଦର୍ଶନରେ ଦାତା ।
ଶତସିଂହ ପରାକ୍ରମ ବାବୁ ଯାର ନାମ
ଯାହାର ଦଣ୍ଡ ଦେଖିଲେ ସ୍ଥାନ ଛାଡ଼େ ଯମ ।

ବାବୁରେ ମେଦିନୀ ଲାଞ୍ଛ ଦିଏ ମୋତେ ଦେଖି
କର୍ତ୍ତାପୁରୁଷ ମୋହର କଲୁ ତୁ ନିର୍ମାଖି ।
ବାବୁରେ ତୋ ଚନ୍ଦ୍ରମୁଖ ନ ଦେଖି ମୁଁ ବଣା
ଉଦ୍ଧାଳକ ଗୋତ୍ର ବାବୁ ତୁ ଥିଲୁ ରକ୍ଷଣା ।
ଲୌହ ପର୍ବତକୁ ଚୂର୍ଣ୍ଣ କରୁ ପଦାଘାତେ
ଗନ୍ଧର୍ବରେ ଆଘାତତୁହୋଇଲୁ କେମନ୍ତେ ।
ଆରେ କୀଚକ ମୋହର ହୃଦ ଯାଉ ଫାଟି
କେ ହରିନେଲା ମୋହର ଗୌରଚନ୍ଦ୍ର ଗୋଟି
ବୀର ଦର୍ପରେ ଅତୁଲ୍ୟ ଅଟୁ ମହାମଲ୍ଲ
ଏ ମଣ୍ଡଳ ମଧରେ ତୁ ବଇରିଙ୍କ ଶଲ ।
ବାବୁରେ ଅନାଥ ନାଥ ହେଲି ମୁଁ ଅନାଥ
କେଣେ ଛାଡ଼ିଗଲୁ ମୋତେରେ ପ୍ରାଣସଙ୍ଗାତ
ବାବୁ ପରରାଜ୍ୟ ନେଇ ରାଜ୍ୟଦେଲୁ ମୋତେ
ଏ ମହାଦ୍ୱନ୍ଦରେ ପୁଣି ଛାଡ଼ିଲୁ କେମନ୍ତେ ।
ରୋଦନ୍ତି ବିରାଟ ଦଶଦିଗକୁ ଅନାଇ
ଏ ଦୁଃଖ ସାଗରୁ ମୋତେ କେ କରିବତ୍ରାହି
ପୃଥ୍ୱୀ ଉପାଡ଼ିବା ପାଇଁ ତୁହି ସାମରଥା
ମେରୁ ପର୍ବତ ପକାଇ କେ ପୋତିବ ମଥା ।
କେଉଁ ସ୍ଥାନେ ଠାବକରି ମାଇଲରେ ଆଜ
ଅଗ୍ନିରୁ ପ୍ରଖର ହେଲା ତାହାର ତ ତେଜ ।
ବ୍ରହ୍ମାଣ୍ଡ ଚାପିବାକୁ ଯେ ଅଟ ସାମରଥା
କେହିହେଲେ ସଂଗ୍ରାମରେ ନାହାନ୍ତି ଜିଣନ୍ତା
ରାତ୍ରକୁ କଲା ଦିବସ ଦିବା କଲା ରାତି
ସିନ୍ଧୁ ମନ୍ଥନ ହୋଇଣ କେ ପୁଂସ ଉତ୍ପତ୍ତି ।
ସେ ଯେ ସାମରଥା ତୋତେନୋହିଜିଣିବାକୁ
ଏହି କଥା ନିଶ୍ଚୟରେ ରହେ ଉପରକୁ ।
ଦଶଦିଗ ଅନ୍ଧାରରେ କରିଗଲୁ ମୋତେ
ତୋ ପ୍ରଭା ସୋଦର ମୋରମାରିଲେକେମନ୍ତେ
ହେ କୋନ୍ତ କେଉଁ ସମୁଦ୍ରେ ପଶିବି ମୁଁ ଯାଇ
ଦଶ ଦିଗ ଅନ୍ଧକାର ମୋତେ ତ ଦିଶଇ ।
କାଳର ବର୍ଣ୍ଣ ଜିଣିଲା ତୋର ମୁଖଗୋଟି
ହସିକରି କହ କଥା ପ୍ରାଣ ହେଉ ତୁଷ୍ଟି ।
ନାମ ସୁମରନ୍ତେ ନର୍କୁ ତରିଯାନ୍ତେ ପ୍ରାଣୀ
ତୋର ନାମଗୋଟି ମୋତେତେସନକ ଜାଣି
କାମିନୀ ମନରଞ୍ଜନ କାମିନୀଙ୍କ ମେଳୋ
ଶତସିଂହ ବଳ ତୋର ତେଜ ଅନର୍ଗଳା ।
ଜଗଜ୍ଜନ ମୋହନରେ କେଉଁଆଡ଼େ ଗଲୁ
ଅଗାଧ ସମୁଦ୍ରେ ମୋର ଭେଳା ବୁଡ଼ାଇଲୁ ।
ତୋହର ଅଭାବେ ବାବୁ ପଶିବି ମୁଁ କାହିଁ
ଏ ନିର୍ଲ୍ଲଜ ଆତ୍ମା କିମ୍ପା ମୋର ଯାଉ ନାହିଁ ।
ବାବୁ ରଣେ ଶୂରବନ୍ତ ଦାନେ ଶୂରବନ୍ତ
ମାନେ ଶୂରବନ୍ତ ପୁଣି ନାରୀ ରଣଜିତ ।
ଶତେ ଭାର ସ୍ୱର୍ଣ୍ଣ ତୋତେ ଦିଏ ବସୁମତୀ
ଋଷି ବିପ୍ର ତପୋଧନେ ଦାନ ଦେଉ ନିତି ।
ତୋର ପାଳନେ ନ ଥିଲା ଉପଦ୍ରବ ସର୍ବ
ଏକା ଜଣକ ନିଶ୍ଚିନ୍ତେ ଥିଲିରେ ବାହିବ ।
ଆହେ କୀଚକ ମୋହର ବାରେ କଥା ଶୁଣ
ଅନେକ ତୋ ସ୍ତିରୀମାନେ କରନ୍ତି କାରୁଣ୍ୟ ।
ତୋତେ ବାହୁନି କାନ୍ଦନ୍ତି ତୋ ସର୍ବକାମିନୀ
କଥା ନ କହୁ ବାବୁରେ କିମ୍ପା ଅଛୁ ତୁନି ।
ବାବୁ ତୋ ଅଭାବେ ସର୍ବେ ହେଲେନିରିମାଖି
ଦୟା କିମ୍ପା ନ ବସୁଛି ଯାଙ୍କ କଷ୍ଟ ଦେଖି ।
ରୋଦନ୍ତି ନଗର ପୁର ସର୍ବ ନର ନାରୀ
ସମରାଜ୍ୟ ଲୋକମାନେ ରୋଦନହିଁ କରି ।
ବିରାଟକୁ ସାଷ୍ଟାମ ଯେ କରି କୋନ୍ତଭଟ୍ଟ
ବୋଲନ୍ତି ଆମ୍ଭର କଥା ଶୁଣ ହେ ବିରାଟ ।
ତୁମ୍ଭର ବଇରୀ ଯେଉଁ ତ୍ରିଗର୍ତ୍ତ ଅଟଇ
ରାଜ୍ୟ ଛାଡ଼ି ପଳାଇଛି ହତପାଟ ହୋଇ ।
କୀଚକ ମହାବୀରଙ୍କ ହତ ଯିବା ଶୁଣି
ନ ପୁଣ ତ୍ରିଗର୍ତ୍ତ ବାହେ ବାହିନୀ ଏକ୍ଷଣି ।
ହତହେଲେପ୍ରାଣୀକେବେ ଫେରେକେଉଁଯୁଗ
ଏ ମୃତପିଣ୍ଡକୁ ଦାହ କରାଅନ୍ତୁ ବେଗ ।
କେହି ନ ଜାଣନ୍ତୁ ଏହି କଥା ଗୋପ୍ୟ କର
ଶୋକ ସମ୍ଭାଳ ଯାଇଣ ବନ୍ଧୁମାନଙ୍କର ।
କୋନ୍ତ ବଚନେ ବିରାଟ ହେଲେ ଶାନ୍ତବୁଦ୍ଧି
ଶୋକବନ୍ତ ଲୋକକୁ ସେ କହିଲେ ପ୍ରବୋଧି ।
ଚିତା ଆରୋପଣ କଲେ ସେହି ନଦୀକୂଳେ
ବ୍ରାହ୍ମଣମାନଙ୍କୁ ଡାକି ବହୁଦାନ ଦେଲେ ।
ଆଦିତ୍ୟ ଦେବତା ଅସ୍ତ ଗଲେ ଯେଉଁକାଳେ
ବିରାଟ ବୋଇଲେ ତୁମ୍ଭେ ଶୁଣ ହେ ସକଳେ ।
କୀଚକର ଅନେଶ୍ୱତ ଭାଇ ଅଛ ରହି
କୀଚକ ମରିଲା ସିନା ସୈରିନ୍ଧ୍ରୀର ପାଇଁ
ଯାଅରେ ସମସ୍ତେ ପଶି ମୋର ଅନ୍ତଃପୁରୀ
ସେ ସୈରିନ୍ଧ୍ରୀ ମୋଢ଼ୀକୁରେ ଆଣ ଚୁଟିଧରି
ଅନଳ ଦହନ କର କୀଚକର ତୁଲେ
କିଏ ଶରୀର ଧରିବ ସୈରିନ୍ଧ୍ରୀ ଦେଖିଲେ
ନିଶ୍ଚେ ଯେ ଜାଣ ସେହିଟି ଅଟେ ମୋରବୈରୀ
ଦେଖିବା କିଏ ସେ ତାକୁ ପାରେ ରକ୍ଷାକରି
କହଇ ଶାରଳା ଦାସ ମନେ ଦୁଃଖ ବହି
ଦ୍ରୌପଦୀକୁ ରକ୍ଷାକର ଆହେ ଭାବଗ୍ରାହୀ ।

—●—

## ଭୀମ କର୍ତ୍ତୃକ କୀଚକର ଅନେଶ୍ୱତ ଭ୍ରାତାଙ୍କୁ ନିଧନ

ଆହେ ମନୁରାଣ ତହୁଁ ଗଲେ ସର୍ବଭ୍ରାତେ
ରେ ରେ କାର କରିଣ ଯେ ଧାଇଁଲେ ସମସ୍ତେ
ସୈରିନ୍ଧ୍ରୀ ସୈରିନ୍ଧ୍ରୀ ବୋଲିଡାକିଲେ ବାଟରେ
ପେଲିଣ ପଶିଲେ ଯାଇ ସର୍ବେ ଅନ୍ତଃପୁରେ ।
ସୁଦେଷ୍ଣା ରାଣୀ ଅଇଲେ ଭାଇଙ୍କ ଦୁର୍ଣ୍ଣୟେ
ଦ୍ୱାର ଆବୋରିଣ ରାଣୀ କହନ୍ତି ବିନୟେ ।
ରାଣୀଙ୍କୁ ଦେଖି ପ୍ରଣାମ କଲେ ଭାଇ ସବୁ
ବୋଇଲେ ସୈରିନ୍ଧ୍ରୀ ଦିଅ ବାଳଧରିନେବୁ
ସୁଦେଷ୍ଣା ବୋଇଲେ ସ୍ଥିର ହୋଇ ଶୁଣବାପ
ପକ୍ଷୀନ୍ଦ୍ର ତୁଲେ କି ରକ୍ଷା କରେ କାଳସର୍ପ ।
ବନଜନ୍ତୁ ସର୍ବେ ଯଦି ହୁଅନ୍ତି ପ୍ରବଳ
କେଶରୀ ବିବାଦେ ସେ କି ହେବ ସମତୁଲ ।
କୀଚକେ ମାଇଲେ ପାଞ୍ଚ ସେ ଗନ୍ଧର୍ବ ବୀରେ
ତୁମ୍ଭେମାନେ ଯାଇ କକ୍ଷା କର ତା ସଙ୍ଗରେ
ପୁଣି ଯଦି ସୈରିନ୍ଧ୍ରୀର ଦେଖିବେ ସେ କଷ୍ଟ
ଏହିକ୍ଷଣି ଅନେଶ୍ୱତ ଭାଇ ଯିବେ ନଷ୍ଟ ।
ବାବୁ ଶତପୁତ୍ର ଜାତ କଲେ ସଙ୍କୋଚନ
ନ କରାଅ ତାଙ୍କୁ ଅପୁତ୍ରିକର ସମାନ ।
ବହୁତ ଚାଟୁ ବଚନ ସୁଦେଷ୍ଣା ବୋଇଲେ
ପଳା ତୁ ବୋଲିଣ ତାଙ୍କୁ ପେଲିଫିଙ୍ଗିଦେଲେ ।
ଯାଇଣ ପଶିଲେ ଅନ୍ତଃପୁରର ଭିତରେ
ଧର୍ମ ନାମ ସୁମରନ୍ତି ପାଞ୍ଚାଳୀ ହୃଦରେ ।
ବେଗେ ବେଗକରି ଯାଇ ସମସ୍ତ ଚଣ୍ଡାଳେ
ଦୃଢ଼ କରି ପାଞ୍ଚାଳୀର ଧଇଲେ ସେ ବାଳେ ।
ଧରିଣ ଆଣନ୍ତି ଅନ୍ତରୀକ୍ଷେ ଯାଜ୍ଞସେନୀ
ସୈରିନ୍ଧ୍ରୀକୁ ମାର ମାର ଶୁଭେ ଘୋରଧ୍ୱନି ।
ବଜାବନ୍ତି ଝଞ୍ଜାଳ ଯେ ବାଜଣା ବିଚ୍ଛିନ୍ନେ
କାହିଁଅଛ ଆସ କିନା ରେ ଗନ୍ଧର୍ବ ମାନେ ।
କୀଚକ ପ୍ରହାର କଲା ପ୍ରାୟେ ଏବେ ବୁଝ
ଅସ୍ତ୍ରକୁ ଧରି କିମ୍ପାଇଁ ଛାମୁରେ ନ ଯୁଝ ।
ବେଙ୍କି ବେଙ୍କି କରି ବାଳ ଧରି ପାଞ୍ଚଜଣେ
ବେବା ଦଉଡ଼ି ଲଗାନ୍ତି ଧରି ଆନ ସ୍ଥାନେ ।
ଅନେକ ଅବସ୍ଥାଦେଲେ ଦ୍ରୌପଦୀ ଦେବୀଙ୍କି
ରୋଷଘରର ସନ୍ନିଧେ ଦେବୀ ଦେଲେ ଡାକି
ହେ ପଞ୍ଚଗନ୍ଧର୍ବେ ଆସି ରକ୍ଷାକର ମୋତେ
ସୈରିନ୍ଧ୍ରୀ ଦହନ ହୁଏ ତୁମ୍ଭର ଦେଖନ୍ତେ ।
ଜୟଶୂନ୍ୟ ପୁରୁଷ ପ୍ରତିଜ୍ଞା ବୀର ବାଞ୍ଛା
ଧାଆଁରେ ବାବୁ ବଲ୍ଲଭ ତାକୁ କର ରକ୍ଷା ।
ଧାଆଁ ହୋ ଜୟ ଜୟନ୍ତ ପୁଣି ଜୟସେନ
ଜୟନ୍ତର ଭାରିଯା ଯେ ପଶେ ହୁତାଶନ ।
ରାନ୍ଧଣା ଯୋଗାଡ଼େ ଲାଗିଅଛନ୍ତି ପାବନି
ସୈରିନ୍ଧ୍ରୀମାର ସୈରିନ୍ଧ୍ରୀ ମାର ଶୁଭେଧ୍ୱନି ।
ନଇଁକରି ଅନାଇଲେ ବଲ୍ଲଭ ପ୍ରଚଣ୍ଡ
କାହିଁତ ଶୁଭୁଅଛଇ ଦ୍ରୌପଦୀର ତୁଣ୍ଡ ।
ଚାହିଁଦେଲେ ଦ୍ରୌପଦୀଙ୍କୁ ନିଅନ୍ତି ଚଣ୍ଡାଳେ
ଶୂନ୍ୟରେ ନିଅନ୍ତି ପାଦ ନ ଲଗାଇ ତଳେ ।
ଦଇବରେ ବେନିଘଡ଼ି ହୋଇଛି ରଜନୀ
ବାଉଁଶ ଡାଙ୍ଗ ପକାଇ ଭୀମ ଶିର ଝୁଣି ।
ରେରେକାର କରିଣ ସେ ଦେଲେକ ଶବଦେ
ଦେଖିବୋଇଲେ ଗନ୍ଧର୍ବେ ଅଇଲେକ ହାଦେ
କାଳ କୃତାନ୍ତକ ରୂପ ଧରି ବାୟୁବସ୍ତ
ରୋଷେ ଉପାଡ଼ିଲେ ବେନିଗୋଟି ଶାଳବୃକ୍ଷ ।
ଆରେ ଆରେ ବୋଲି କୋପକଲେ ଗଳଗାଜି
ଊର୍ଦ୍ଧ୍ୱବାହୁ ପର୍ବତକି ପଡ଼ିଲାକ ଭାଜି ।
ପ୍ରାସକୀଚକ ବୀର କୀଚକ ଧାକୀଚକ
କନକ କୀଚକ ଜାନୁଭାନୁହିଁ କୀଚକ ।
ସମକୀଚକ ବାଣଞ୍ଚ ପୁଣିହିଁ ମେଞ୍ଚକ
ବିଚେକ ବଚନ ପୁଣି ସିଞ୍ଚଇ ମଚକ ।
ମଦନ ଯେ ବିଲେତକ ଦାତେକ ଧୃଚେକ
ତୁରରକ ମହତକ ଜାନୁ ମନ୍ଥନକ ।
ବଉଚକ ହରିତକ ପୁଣି ପ୍ରଚେତକ
ବାହୁ କୀଚକ ଅଙ୍ଗାର କାମଭୀମଚକ ।
ରାମିକଞ୍ଚେକ କୀଚକ କନୋ ମଜୋଚକ
ଦନୁଜ ମନୁକଚେକଦଚେକ ତନୁକ ।
ବାମ ଭାଗ ଅଭୟ ଯେ ସିଦ୍ଧ ଯେ କୀଚକ
ବାଧିଚ ବୃଚଚକ ଯେ ମଦନ କୀଚକ ।
ସଙ୍ଗତେକ ସମସେନା ହରିବିରେଚକ
କାଳଯମ ଭିରେଚେକ ବିଦୂର କୀଚକ ।
ବନଚେକ ଜଳଚେକ ଅରୁଣ ତରୁକ
ବରୁଣାନିକ ଦଚେକ ଅରୁଣ କୀଚକ ।
କରକ କୀଚକ ପୁଣି ନୀରତ କୀଚକ
ଉଚ୍ଚୈବରଣ କାରଣ ସମର କୀଚକ ।
ଚଉଚେକ ବଳଚେକ ରାହୁ କରେଚକ ।
ରଥେକ ବଞ୍ଚକ କର୍ଣ୍ଣବୀରକ ଉଞ୍ଚକ ।
ଧର୍ମରେକ ବ୍ରହ୍ମଚେକ ଗଗନେ ଦୃଷ୍ଟେକ
ଭଗଚେକ ଶରଗୃହ ନାମ ଯେ ଏତେକ ।
ଏ ବିଧିରେ ସଙ୍କୋଚନ ପୁତ୍ର ଉପୁଜାଏ
ଦୁର୍ବାସା ମନ୍ତ୍ରପ୍ରଭାବେ ଜନ୍ମିଲେ ଯେ ପୋଏ ।

ଏକେ ଏକେ ସେ ଅଟନ୍ତି ମହାବଳବନ୍ତା
ବୀର ବରମଞ୍ଜନ ସେ ଦୁଃସହ ଶକତା ।
ସୈରିନ୍ଧ୍ରୀ ଆବୋରି ଘେନିଯାଇଛନ୍ତି ବଳେ
ରଣରଙ୍କା ଭୀମସେନ ଗଲେ ସେହୁ କାଳେ ।
ଘୋରରଡ଼ି କରିଣ ସେ ଚାପୋଡ଼େ ପ୍ରହାରି
କାରେ ପଦାଘାତ କାରେ କଚାଡ଼ଇ ଧରି ।
ପାଞ୍ଚ ସାତ ପନ୍ଦରଙ୍କୁ ଦରାଣ୍ଡିଣ ହାତେ
ଧୂଳି ହେଉଛନ୍ତି ସର୍ବେ ଚାପୋଡ଼ା ମାରନ୍ତେ
ରଣରଙ୍କା ନିଷ୍ଠୁର ସେ ପୁଣି ଏକ ରାଗୀ
ପଳାଇଗଲେ ସକଳେତାକୁ ଛାଡ଼ି ବେଗି ।
ନିସତେ ପଳାନ୍ତେ ଦନ୍ତେ ଧରିଣ ତିରଣ
ଭୋ ଗନ୍ଧର୍ବେ ମୋତେ ରଖତୋରରେଶରଣ
ଦ୍ରୌପଦୀକି ଛଡ଼ାଇଣ ଡାକେ ମହାରାଣ
ପଳାବନ୍ତି ଛିନ୍ନଛତ୍ରେ ଫୁକାରି ଶରଣ ।
ଦ୍ରୌପଦୀ ଦେବୀ ଯେ ଚଳିଗଲେ ଅତିଖରେ
ଅନ୍ଧାରେ ପ୍ରବେଶହେଲେ ଯାଇ ଅନ୍ତଃପୁରେ
ଶୁଣ ଆହୋ ଚଇତନ ଭୀମଙ୍କ ମହିମା
କ୍ଷତ୍ରିୟ ମର୍ଦ୍ଦନ ଗୁଣସାଗର ମହିମା ।
ତରବରେ ତ ଶରଣ ନ ରଖେ ବଇରୀ
ସୈରିନ୍ଧ୍ରୀଙ୍କ କ୍ରୋଧ ଧରି ସମସ୍ତ ପ୍ରହାରି ।
ଦଶବିଂଶ ତିରିଶଙ୍କୁ ଧରିଣ କଚାଡ଼ି
ବେନିକରରେ କାହାକୁ ପକାବନ୍ତି ମୋଡ଼ି ।
ସବୁ କୀଚକଙ୍କୁ ମାରି କଲେ ନାରଖାର
ରାତ୍ର ହୋଇଲାଣି ଆସି ଦେଢ଼ ଯେ ପ୍ରହର ।
ବେଗେ ପଳାଇଣ ଗଲେ ଶ୍ମଶାନୁ ବିରାଟ
କୋଳେ ଧରିଣ ରଖନ୍ତି ତାଙ୍କୁ କୋନ୍ତଭଟ୍ଟ ।
ହେ ବିରାଟ କ୍ରସ୍ତ ନୁହ ଆମ୍ଭପାଶେ ରହି
ଏଠାରେ ଥିଲେ ପ୍ରମାଦ ତୋର କିଛି ନାହିଁ ।
ବିରାଟ ବୋଇଲେ କୋନ୍ତ ଗନ୍ଧର୍ବଯେକୋପି
ମୋତେ ରଖି ନ ପାରିବ ତୁମ୍ଭେ ତ କଦାପି ।
ବିରାଟେଣ ଦେଖନ୍ତେ ଯେ ମୋର ଶତବୀର
ଠୁଳକଲା ସେ ଅଗ୍ନିରେ ସବୁଙ୍କ ଶରୀର ।
ଘାତକୁମ୍ଭ ଆଣିଲାକ ଯାଇଁ ରୋଷଶାଳୁ
ଅନଳ ଯେ ତେଜୋବନ୍ତ ମହାଘୃତ ଢାଳୁ ।
ଭୀମସେନ ପ୍ରଣିପତ୍ୟ ହୋଇଲା ବହୁତ
ପୂର୍ବେ ଯାଚିଥିଲି ଦେଲି ତୋତେ ଶତଭ୍ରାତ ।
କାଳ କୃତାନ୍ତ ଦେବଙ୍କୁ କରିଣ ନମସ୍ତେ
ନମସ୍ତେ ହେ କୃତାନ୍ତକ ବୈଶ୍ଵାନରତୋତେ ।
ନମସ୍ତେଶୟଳ ଜନ ସଂହାର କରତା
ନମସ୍ତେ ଭାଗ୍ୟବର ହେ ଅଭୟ ଦିଅନ୍ତା ।
ଶ୍ଵେତରାଜା ଯଜ୍ଞେ ଘୃତ ଖାଇଣ ବିସ୍ତାର
ମନ୍ଦାଗ୍ନି ହୋଇଲା ଦେବ ତହିଁରୁ ତୋହର ।
ନମସ୍ତେ ହିରଣ୍ୟ ଦେବ ନମୋ କାଳାନଳ
ନମସ୍ତେ ହେ ସର୍ବଭୁଜ ଦେବ ଆଖଣ୍ଡଳ ।
ନମସ୍ତେ ହେ କ୍ରୋଧାନଳ ହର ତୁ ଦୁର୍ଗତି
ନମସ୍ତେ ତ୍ରିପୁର ଯାର ଅଟେ ସମଗତି ।
ନମସ୍ତେ ଅନଳ ପ୍ରଭୁ ସ୍ଵହାର ବଲ୍ଲଭ
ନମସ୍ତେ ନମସ୍ତେ ଅଗ୍ନିଦେବ ପଦ୍ମନାଭ ।
ସମସ୍ତେ ପଞ୍ଚଯୋଜନ ଅଟେ ତୁମ୍ଭ ଶିଖା
ନମସ୍ତେ ବାମନଦେବ ଅନଳର ରେଖା ।
ନମସ୍ତେ ଗୋପ୍ୟାନ ସ୍ଥାନ ସ୍ଥାପନ ଦୋହରା
ନମସ୍ତେ ହେ ବ୍ରହ୍ମନ୍ତକ ପିଙ୍ଗଳା ତ୍ରିପୁରା
ନମସ୍ତେ ସ୍ଵାହାବଲ୍ଲଭ ହେ ପ୍ରାଣର ଗୁରୁ
ନମୋ ସାଲଛା ପିନନ୍ତ ନାମ ଧରି ଫେରୁ ।
ନମସ୍ତେ ଖାଣ୍ଡବ ବନ ଦହନ ପୁରୁଷ
ନମୋ ନିରାକାର ଦେବ ସର୍ବ ଦେହେ ବାସ
ଶ୍ରୀ ଅନନ୍ତଦେବତା ହୋ ସାହାହୁଅ ମୋତେ
ପକ୍ଵ ହୁଅଇ ତୋହର ତରାସ ଲାଗନ୍ତେ ।
ଶୁଣ ଆହେ ଚଇତନ ବୃକୋଦର କଥା
ଅନେକ ସ୍ତୁତି କରିଲା ବହନି ଦେବତା ।
ସ୍ଵାମୀ ଜତୁଗୃହରୁ ମୁଁ ବାହାରିବା କାଳେ
ବିଳମଧ୍ଯୁ ପାଞ୍ଚଭାଇ ବାହାରି ବିକଳେ ।
ମୁହିଁ ଅନେକ ବିନୟେ ବୋଇଲଇଁ ଭାଳି
ମୋହର ସମାନେତୋତେ ଦେଲି ଶତେବଳି
ଯାଙ୍କ ତହୁଁ ବଳବନ୍ତା କରିବି ମୁଁ କାହିଁ
ତୃପ୍ତ ହୁଅ ସାଧୁ ଶତ କୀଚକଙ୍କୁ ଖାଇ ।
ଆଜହୁଁ ଭ୍ରାନ୍ତି ଫିଟିଲା ଦେବ ମୋର ଜାଣ
ସତ୍ୟବ୍ରତ ପାଳି ମୁହିଁ ଦେଲି ତୁମ୍ଭ ଋଣ ।
ସେହିଦିନ ନିଶିଶେଷେ ଅରୁଣ ପ୍ରକାଶେ
ଗୋପାନ୍ୟ ହୋଇବଲ୍ଲଭପ୍ରବେଶିଲେରୋଷେ
ଭୀମସେନ ବିଚାରଇ ଶ୍ରମ ମୁଁ ପାଇଲି
ସ୍ନାହାନ ସାରିଣ ବୀର ଲଗାଇଲେ ଚୁଲୀ ।
ଶ୍ରୀ ବୈଶ୍ଵାନର ଦେବତା ଶରଣ ମୁଁ ନିତ୍ୟେ
କରନ୍ତି ଶାରଳା ଦାସ ତୁମ୍ଭ ପଦାଗ୍ରତେ ।

—●—

# ନାରୀମାନଙ୍କର ଶୋକ, ଦ୍ରୌପଦୀଙ୍କର ଉପଦେଶ ଓ କୀଚକର ଶୁଦ୍ଧିକ୍ରିୟା

ମନୁ ରାଜାଙ୍କ ବଚନେ ମୁନି ହୋଇ ତୋଷ
ବୋଇଲେ କହୁଛି ଶୁଣ ତହିଁର ଭବିଷ୍ୟ ।
ଦ୍ରୌପଦୀଙ୍କୁ ଭୀମସେନ ଦେଲେ ମୁକୁଳାଇ
ଅନେଶ୍ୱତ କୀଚକକୁ ମାଇଲେ ସେ ଯାଇ ।
ଦ୍ରୌପଦୀ ଆସିଲେ ପୁଣି ରାଜା ନିକେତନ
ତାହାଙ୍କୁ ଦେଖିଣ ନରନାରୀ ହେଲେ ଛନ୍ନ
ସୈରିନ୍ଧ୍ରୀ ଆସୁଛି ପୁଣି ରାଜାର ଭବନେ
ଅଇଲା ଅଇଲା ବୋଲି ପକାଇଲେ ଜନେ ।
ଅନ୍ତଃପୁରରେ ପ୍ରବେଶ ହୋଇଲେ ବିରାଟ
ଦେଖିଲେ ସୁଦେଷ୍ଣା ଆଉ ଉତ୍ତରାର କଷ୍ଟ ।
ବିରାଟ ହୋଇଣ ଶତକୀଚକ ଭାରିଯା
ତାଙ୍କ ସନ୍ନିଧେ ପ୍ରବେଶ ହୋଇଲେକ ରାଜା
ତାହାଙ୍କ ଅବସ୍ଥା ଦେଖି ରାଜା ମୂର୍ଚ୍ଛାଗଲେ ।
ଚେତନା ପାଇ ବହୁତ ବିଳାପ ସେ କଲେ ।
କହି କେ ପାରଇ ତହିଁ ସୁଦେଷ୍ଣାର ଶୋକ
ଦେଖି ରୋଦନ କରନ୍ତି ତହିଁ ସର୍ବଲୋକ ।
ଶଙ୍ଖ ଶ୍ୱେତ ଉତ୍ତର ଯେ ରାଜା ପୁତ୍ର ତିନି
ମାତୁଳର ନାମ ଧରି ଲୋଟନ୍ତି ଧରଣୀ ।
ମାମୁଁ ଏ ଦର୍ପ ବହିଲୁ ପରଦର୍ପ ପୁଞ୍ଜି
ମତ୍ସ୍ୟ ମଘଦେଶ ମାମୁଁ ଏବେ ଯିବ ଭାଜି ।
କାହାକୁ ଘେନି ଆସ୍ଥାନେ ବସିବ ବିରାଟେ
କେହୁ ସମର କରିବ ଏବେ ପରଥାଟେ ।
ହେ ମାତୁଳ ତ୍ରିଗର୍ତ୍ତିତଅଟେ ମହାବଳୀ
କେ ତାର ସମ୍ମୁଖ ଯୁଦ୍ଧେ ପାରଇଟି ମିଳି ।
ସ୍ୱାମୀ ପାଞ୍ଚଲକ୍ଷ ଘର ହୋଇଲେ ନିରାଶା
ଏସନକ କଥା ଦେବ କଲୁ କି ମନୀଷା ।
ସୁଦେଷ୍ଣାଙ୍କୁ ପ୍ରବୋଧନ କରନ୍ତି ସୈରିନ୍ଧ୍ରୀ
ମାଗୋ ପରମା ସାଧବୀ ହେଉ କିମ୍ପା କ୍ରୋଧି
ଅନିତ୍ୟ ସଂସାର ମାଗୋ ଯାହା ଅଛି ଆଜି
ତୁଲ ଭଲ ମନ୍ଦ ହେଉ ତା ଅବଶ୍ୟ ଭୁଞ୍ଜି ।
ମାଗୋ ସକଳ ପ୍ରାଣୀଙ୍କି କଲେ ଉତକର୍ମ
ଶିରୀ ଆୟୁଷ ବର୍ଦ୍ଧିତ ହୁଏ ହାଦେ ଧର୍ମ ।
ଧର୍ମଲଘିଂବା ପାଇଁକି ଲୋଡ଼େ ଯେଉଁ ପ୍ରାଣୀ
ଆୟୁ କ୍ଷୟ ଯାଏ ତାର ଶିରୀ ହୁଏ ହାନି ।
ମାଗୋ ମାୟା ସଂସାରେ ଏ ଦଇବ ରଚନା
ଜଳବିମ୍ବ ପ୍ରାୟକ ଗୋ କ୍ଷଣେ ଆସି ସିନା ।
ଯେହ୍ନେ ବୃକ୍ଷତଳେ ବସି ପଥୁକୀ ସମୁହେ
ଶରୀରକୁ ସୁସ୍ଥ କରି ଯାନ୍ତି ଯେଝାଳୟେ ।
ଯେ ଯହୁଁ ଆସିଥିଲା ଗୋ ତହିଁ ଗଲେଫେରି
ସବୁରିଙ୍କ ମୃତ୍ୟୁଅଛି ଜାଣ ଗୋ ସୁନ୍ଦରୀ ।
ପର ଉପକାର ହୋଇ ଜନ୍ମେ ଯେ ମେଦିନୀ
କ୍ଷଣମାତ୍ରକେ ସେ ଛାଡ଼େ ନ ରହଇ ପୁଣି ।
ଭାରିଯା ପୁତ୍ର ପଉତ୍ର ବନ୍ଧୁଙ୍କୁ ମାଗନ୍ତେ
ମୋହର ମୋହର କରି ମାରେ ଅନିମିତ୍ତେ ।
ମାୟାପାଶ ଲଗାଇଛି ଜଗତ ମୋହନ
ଚିରକାଳ ଏ ପିଣ୍ଡରେ ନ ରହେ ଜୀବନ ।
କେହୁ କାହାର ପିଅର କେ କାହାର ପୁଅ
ଅଦଭୂତ ପାଟଣାରେ ଅଟେ ମାୟା ମୋହ ।
ମାଗୋ ନିରାପକ୍ଷ ଅଟେ ଏ ଯମ ସଂସାରେ
ଉପାୟ ମାରଇ ଦୋଷ ନ ନିଅଇ ଶିରେ ।
ଦୋଷ ଜାତ କରାଏ ସେ ମରିବା ନିମନ୍ତେ
ଜ୍ୱର ଆଦି ନାନାରୋଗ ହେଉଥାଏ ନିତ୍ୟେ ।
ଏକୁ ବହୁ ଅଦଭୂତ ଅଟଇ କହଣା
ତୁ ପରମ ସାଧବୀ ଗୋ ଜାଣୁ ଜାଣୁ ବଣା ।
ପୂର୍ବର କଥାମାନଙ୍କୁ ନାହୁଁ ତୁକି ଶୁଣି
ବୁଦ୍ଧିମତୀ ଅଟୁ ତୁ ଗୋ ଛାଡ଼ ମୋହ ବାଣୀ ।
ସୈରିନ୍ଧ୍ରୀ ବୋଇଲେଛାଡ଼ନକରଗୋ ଶୋକ
ତୋହର କ୍ରୋଧ କରନ୍ତେ ବିରାଟ ବିମୁଖ ।
ଅଥବା କ୍ରୋଧ ତୋହର ନୁହଇ ଯୁକତ
କାଳାନ୍ତକ ବଇରୀ ତୋ ଅଟଇ ତ୍ରିଗର୍ତ୍ତ ।
ପରରାଷ୍ଟ୍ର ଲୋକମାନେ ଅଛନ୍ତି ଗୁପତେ
ଅଇରୀ ବାରଣ ପ୍ରାୟ ଛନ୍ତି କେତେ ଦୂତେ ।
ଯେହୁ ଗଲେ ତାରେ ଆଉ ଲୋଡ଼ିଲେନପାଇ
ଶୋକ ଶାନ୍ତି କଲେ ଶୁଣି ତହୁଁ ମହାଦେଇ ।
ଯେଣୁ ଏହି ସ୍ୱୟଂ ଦେବୀ ଅଂଶେ ଅବତାର
ଶୋକ ବଞ୍ଚାଇଣ ନେଲେ କରି ବାକ୍ୟସାର ।
ସୈରିନ୍ଧ୍ରୀଙ୍କ ବଚନରେ ରହେ ଶୋକଧ୍ୱନି
ସୁଦେଷ୍ଣାଏ ବିଜେ କଲେ ବିରାଟକୁ ଘେନି ।
ସୈରିନ୍ଧ୍ରୀଙ୍କି ବିନୟରେ କହନ୍ତି ସୁଦେଷ୍ଣା
ବିରାଟକୁ ରଖ ମାଗୋ ତେଜି ତୋର ତୃଷ୍ଣା ।
ମାଗୋ କୀଚକ ଅଥବା ଥାଉ କିବା ଯାଉ
ଗନ୍ଧର୍ବଙ୍କୁ ଶାନ୍ତ କର ମୋ ବିରାଟ ଥାଉ ।
ସୈରିନ୍ଧ୍ରୀ ବୋଇଲେ ଆଗୋନକରତୁଭ୍ରାନ୍ତି
ମୋହର ଥାଆନ୍ତେ ତୋତେକାରେଅଛିଭୀତି
ସୈରିନ୍ଧ୍ରୀ ବଚନେ ରାଣୀ ମନ କଲେ ଶାନ୍ତି
ବନ୍ଧୁ ବାନ୍ଧବଙ୍କୁ ଘେନି ସ୍ନାହାନକୁ ଯାନ୍ତି ।

ଶୋକ ସନ୍ତାପକୁ ଶାନ୍ତିକଲେ ସର୍ବଜନେ
ପ୍ରେତ କାର୍ଯ୍ୟକୁ ସାରିଲେ ଏକାଦଶ ଦିନେ ।
ନାନା କଉତୁକ ଜାତ କରି ଦେବ ଧର୍ମେ
ପାସୋରି ଦେଲେବିରାଟକୋନ୍ତ ବାକ୍ୟକ୍ରମେ
ଜୟ କପିଳାସ ବାସୀ ପ୍ରଭୁ ଦିଗାମ୍ବର
ଗିରିରାଜା ସୁତଙ୍କର ଅଟ ତୁମ୍ଭେ ବର ।
ଯେହୁ ସେବାକରେ ପ୍ରଭୁ ତୁମ୍ଭଙ୍କୁ ନିରତେ
ସର୍ବଦା ସୁଖରେ ରହେ ଜଳ ଅନ୍ନ ବସ୍ତ୍ରେ ।
ଅନ୍ତେ ମୋହ ଦେଇ ତାକୁ ରଖ ନିଜପାଶ
ଶାରଳା ଦାସର ସଦା ଏହି ଅଭିଳାସ ।



## ପାଣ୍ଡବଙ୍କ ଅନୁସନ୍ଧାନାର୍ଥେ ଦୁର୍ଯ୍ୟୋଧନର ଦୂତ ପ୍ରେରଣ ଓ ତ୍ରିଗର୍ତ୍ତ ରାଜା ସହିତ ବିରାଟଙ୍କ ଯୁଦ୍ଧ

ଏଥୁଅନନ୍ତରେ ଶୁଣ ମନୁ ନୃପନାଥ
ସେ କଥା ଶୁଣିଲେ ମନୁ ଛାଡ଼ଇ ଦୂରିତ ।
ଏହି ଚରିତ ଅଟଇ ସୁଧାରୁ ଅଧିକ
ସେ କଥା କହୁଛି ଶୁଣ ହେ ନୃପ ନାୟକ ।
ପରରାଷ୍ଟ୍ରରେ ବାରତା ଶୁଭେ ଅପ୍ରମିତ
ମତ୍ସ୍ୟଦେଶରେ ବଲ୍ଲଭ ଅଛି ବଳବନ୍ତ ।
ବାଘ ମଲେ ମାଇଲା ସେ କିଞ୍ଚିତ ସମରେ
ସବୁ ଅଞ୍ଚଳ ଚଞ୍ଚଳ ନ ଆସନ୍ତି ଡ଼ରେ ।
କୋନ୍ତବୋଇଲେହେ ତୁମ୍ଭେଶୁଣ ମତ୍ସ୍ୟରାଜେ
ଦଣ୍ଡ ଘେନିକରି ସଙ୍ଗେ କର ଦିଗବିଜେ ।
ଆମ୍ଭ ଉତ୍ସାହ ନୋହିଲେ କଳିବେ ବଇରୀ
ଦଣ୍ଡ ଚଳୁଥିଲେ ଶତ୍ରୁ ଯିବେ ଭୟକରି ।
କୋନ୍ତଙ୍କ ବଚନେ ଶୁଣି ସାଜି ରାୟେଦଣ୍ଡ
ଜିଣଇ ତୁଲେ ଅନେକ ମଣ୍ଡଳ ଭୂଖଣ୍ଡ ।
ଚତୁର୍ଦ୍ଦିଗରେ ବାରତା ଶୁଭେ ପରରାଷ୍ଟ୍ର
ବଡ଼ କକ୍ଷାବନ୍ତ ଯେ ହୋଇଛି ନିରାଟ ।
ବୈଶାଖ ମାସେ ଚନ୍ଦନ ଯାତରା ହୋଇଲା
ଜ୍ୟେଷ୍ଠ ଅମାବାସ୍ୟାରେ ଯେ କୀଚକ ମରିଲା
ବୃଷଭ ମାସରେ ପିତୃକାର୍ଯ୍ୟଙ୍କୁ ସାରିଲା
ତହୁଁ ସେ ଦିଗବିଜୟ କରି ବାହାରିଲା ।
ମିଥୁନ କଙ୍କଡ଼ା ସିଂହ ତିନିମାସ ମଧ୍ୟେ
ଅନେକ ଖଣ୍ଡ ମଣ୍ଡଳ ସାଧ କଲା ଯୁଦ୍ଧେ ।

ଆବର କିସ ଚରିତ କରିଲା ଯୁକତେ
ବୁଝାଇ କହିବା ହେଉ ମୋହର ଅଗ୍ରତେ ।
କହ ଅଗସ୍ତି ମୁନି ଆହେ ବ୍ରହ୍ମବେତ୍ତା
ମନ ଦେଇ ଶୁଣ ଏବେ ବିରାଟର କଥା ।
ତ୍ରିଗର୍ତ୍ତ ସମୟପାଇ ପୁଣି ବିରୋଧିଲା
ଅପାର ସଇନ୍ୟ ତାର ସଙ୍ଗେ ଆଣିଥିଲା ।
ବୈବସ୍ୱତ ମନୁ ପୁଚ୍ଛାକରେ ଦିବ୍ୟରସ
କୁହନ୍ତି ତ୍ରିଗର୍ତ୍ତ ଯୁଦ୍ଧ କରିଣ ବିଶେଷ ।
କହନ୍ତି ଅଗସ୍ତି ଶୁଣ ବୈବସ୍ୱତ ମନୁ
ପାଣ୍ଡବେ ଗୋପ୍ୟ ଯେ ତୁଳ ପଞ୍ଚମୀରଦିନୁ ।
କନ୍ୟା ଶୁକ୍ଳପକ୍ଷ ତିଥି ପୂର୍ଣ୍ଣିମାର ଦିନ
ବିଜେ ଦୁର୍ଯ୍ୟୋଧନ ଇନ୍ଦ୍ରପ୍ରସ୍ଥର ଭୁବନ ।
ସଞ୍ଜୟ ଅନ୍ଧରାଜନ ବିଦୁର ସମେତେ
ଭୁରିଶ୍ରବା ବାହ୍ଲିକ ଯେ ଭୀଷ୍ମ ସୋମଦତ୍ତେ ।
ଶଲ୍ୟ କର୍ଣ୍ଣ ଅଶ୍ୱଥିମା ଆଚର୍ଯ୍ୟ ସହିତେ
ସଭାମଣ୍ଡପ କରିଣ ବସିଲେ ସମସ୍ତେ ।
ରଥୀ ସାରଥି ମୁକୁଟବନ୍ଧା ଯେଉଁ ସେନା
ଅଶୀ ପରାର୍ଦ୍ଧ ପଚିଶ ସସ୍ର ଥିଲେ ସେନା ।
ସାତପଦ୍ମ ଅମନାତ୍ୟ ଅନେକ ପଦାତି
ନକ୍ଷତ୍ରକୁ ଚନ୍ଦ୍ର ଯେହ୍ନେ ପୌର୍ଣ୍ଣମୀର ତିଥି ।
ତୋଡ଼ର ଗୁମ୍ଫା ବାହୁଟି ପୁଣି ଜଗଦ୍‌ବଳା
ମୁକୁଟ କର୍ଣ୍ଣାଞ୍ଚଳ ଶ୍ରୀଭୂଷା ହୃଦେ ମାଳା ।
ନବନତ ଆଲଟହିଁ ନୂଆ ପାଟଛତ୍ର
ନବନତ ଚାମର ଯେ ଚଢ଼ି ନିଜରଥ ।
କନ୍ୟା ଉତ୍ସବରେ ବଡ଼ ଆଡ଼ମ୍ବର ରାଜା
ବହୁ ଶାସକମାନଙ୍କେ ପାଆନ୍ତି ସେ ପୂଜା ।
ପାଣ୍ଡବେ ଅଜ୍ଞାତବାସ ଜ୍ଞାତ ହେବାପାଇଁ
ଗୁପତେ ପେଷିଲେ ଚାର କୁରୁକୁଳ ସାଇଁ ।
ଅନେକ ଧନ ରତନ ଦେଇ ଜିତି ଗ୍ରାମ
ଦିବ୍ୟଚକ୍ଷୁ ଫେଇ ଦେଖେ ପାଣ୍ଡବ ବିଶ୍ରାମ ।
ଅଜ୍ଞାତବାସର ଆଦ୍ୟ ଶେଷ ପରିଯନ୍ତେ
ବୁଲିବେ ବାରବରଷ ଅଗମ୍ୟ ବନସ୍ତେ ।
ଏହିପରି ନିୟମକୁ କଲେ ଯୁଧିଷ୍ଠିର
ତେଣୁକରି ଗୁପ୍ତଚର ପେଷେ କୁରୁବୀର ।
ଦେଶ ନଗର ମଣ୍ଡଳ ରାଷ୍ଟ୍ରାଦି ପାଟଣା
ତୀର୍ଥ ଯାତ୍ରାଦି ଖୋଜିଲେ ନ ମିଳେ ଠିକଣା ।
ବିରାଟ ରାଜ୍ୟକୁ ଯେଉଁ ଦୂତେ ଯାଇଥିଲେ
ବିଷ୍ଣୁଙ୍କର ମାୟାବଶେ ଜାଣି ନ ପାରିଲେ ।
ସମ୍ପର୍ବ ଆସନେ ବିଜେ ଦୁର୍ଯ୍ୟୋଧନ ସ୍ୱାମୀ
ଦକ୍ଷିଣ ଚାର ଜଣାଏ ହୋଇଣ ପ୍ରଣମି ।

କଳିଙ୍ଗ ମଗଧ ଆଉ ବେଳା ଗୁଜୁରାଟ ।
ମହୀନ୍ଦ୍ର ଚିରା ବିଚରା ଆବର ମହଙ୍ଗ ।
କନାଉଜ ଉଦେଗିରି ପୁଣି ଚନ୍ଦ୍ର ଗିରି
କାଞ୍ଚିଚନ୍ଦ୍ରପୁର ଆଉ ଉତ୍ତମ କାବେରୀ ।
ଚୌରମଣ୍ଡଳ କୋଶଳ ମଣ୍ଡଳ ମଲ୍ଲିକା
ପାଣ୍ଡବ ତଗର କୃଷ୍ଣାବେଣୀ ଷଡଞ୍ଚିକା ।
ଉଡ଼ଗ ମାତଙ୍ଗ ଭଦ୍ରା କୃଷ୍ଣ ଯେ ସୁନନ୍ଦା
ଗୋପନ ଭୋଗୀ ବିଜୟା ଆବର ଆନନ୍ଦା ।
ଶରଭଙ୍ଗ ସୁନିନ୍ଦ୍ରିକ କନାଉଜ ଭେଟ
ଖିନା ଗୋମତୀ କଜ୍ଜଳ ଆଦି ସର୍ବରାଷ୍ଟ୍ର ।
ନାଟ ଚୋଡ଼ଙ୍ଗ ଅବନ୍ତୀ ଆବର କାମାକ୍ଷୀ
ପଦ୍ମପୁର ଲକ୍ଷ୍ମୀପୁର ସରସ୍ୱତୀ ସୌରୀ
ବିଦ୍ୟମାଳ କନ୍ଧମାଳ ମହେନ୍ଦ୍ର ଯେ ଗିରି ।
ଦକ୍ଷିଣ ବନକନ୍ଦର ତୀର୍ଥ ରାଜ୍ୟ ଭୂମି
ପାଣ୍ଡବମାନଙ୍କୁ ଖୋଜି ନ ପାଇଲୁ ସ୍ୱାମୀ ।
ଶୁଣିଣ ମଉନବ୍ରତ ହେଲେ କୁରୁନାଥ
ପ୍ରବେଶ ଆସିଣ ପୂର୍ବ ପ୍ରଦେଶର ଦୂତ ।
କହେ ଦେଶାଉର ଦେବ ହୁଅ ଅବଧାରୀ
ଆମ୍ଭେ ହେ ଦେବ ବାସବ ଦିଗ ଦୂତକାରୀ
ଦେବେ ଭଦ୍ରଗିରି ଉଦେଗିରି ଲାଉଗିରି
ତାମ୍ରଗିରି ଲୌହଗିରି କର୍ଣ୍ଣାଟ ବିହାରୀ ।
ତୁଳସୀ ଦେବପୁର ଯେ ପୁଣି ଭ୍ରମଖଣ୍ଡ
ଜମ୍ବୁରାଷ୍ଟ୍ର ଉଡ଼ରାଷ୍ଟ୍ର ସ୍ୱର୍ଣ୍ଣ ମାରତଣ୍ଡ
ରୋହିଣୀ ମାର୍କଣ୍ଡ ଶ୍ୱେତଗଙ୍ଗା ଅର୍କତୀର୍ଥ
ମଣିକୁଣ୍ଡ ହୀରଦଣ୍ଡବଟୀ ଲୋକନାଥ ।
କାଞ୍ଚିପୁର ବାସପୁର ମଣି ଜ୍ୟୋତିପୁର
ସ୍ୱର୍ଣ୍ଣଭଦ୍ରା ଭାଗୀରଥି ହରିଣ୍ୟକାତୀର ।
ଗଙ୍ଗାସାଗରର ପୂର୍ବ କପିଳାସ ଖଣ୍ଡ
ଲବଣ ମହୀଖଣ୍ଡ ଯେ ଦଣ୍ଡ ହିଁ ଉଦଣ୍ଡ ।
ମାଳତୀ ମଥୁରା ମଧୁପୁର ଗୋପପୁର
କଣୟ ମାନଭଙ୍ଗ ଯେ ପୁଣି ଲୋହପୁର ।
ବଇନ୍ତାଳ କୂଳ ପୁଣି ବିଳାସ ମହ୍ଲାଇ
ଏକରଡ଼ା ଏକଚକ୍ରା ଚମ୍ପା ଶିବପୁର ।
ମଳୟ ବସନ୍ତ ଭାନୁ ମଣ୍ଡଳ ଲଳିତା
କାଳକାଳ ଉଜାଣି ଯେ ଆଜେବର ଜିତା ।
ଏ ବିଧିରେ ପୂର୍ବଦିଗେ ବହୁ ଭ୍ରମି ଭ୍ରମି
ପାଣ୍ଡବଙ୍କ ଚିହ୍ନବର୍ଣ୍ଣ ନ ପାଇଲୁ ସ୍ୱାମୀ ।
ହୃଦଗତେ ପାଞ୍ଚ ରାଜା ଗୁପତ ବଚନେ
ମାନଭଙ୍ଗେ ବସିଛନ୍ତି ନ ବୋଲି ମଉନେ ।
ଉତ୍ତର ଦିଗରୁ ଆସି ବୋଲେ ଦେଶାଉର
ଶୁଣ ବାରତା ଭୋଦେବ ଉତ୍ତର ଦିଗର ।
ସ୍ୱାମୀ ମନଭଙ୍ଗ ପୁଣି ଦେବାଙ୍ଗ ତ୍ରିହୁତି
ଭୋଟ ମହ୍ଲାର ନେପାଳ ପୁଣି ବାରସ୍ୱତୀ ।
ଶାଖାପୁର ଶ୍ରେଣୀପୁର ବୃନ୍ଦା ମହାରାଷ୍ଟ୍ର
ସିନ୍ଧ ମନ୍ଦର ମହଙ୍ଗ ପୁଣି ସଉରାଷ୍ଟ୍ର ।
ଭୁବମନୁ ଗଙ୍ଗାପୁରୀ ଆବର ଶ୍ରୀହଟ
ନନ୍ଦଗିରି ରାମଗିରି କପୋଳର ରାଷ୍ଟ୍ର ।
ଅଙ୍ଗବଙ୍ଗ କାଉଁରୀ ଯେ ସୁଶୋଣିତ ପୁରୀ
ନନ୍ଦପୁର ଶ୍ୱେତ ପାଟଣାକୁ ଆଦିକରି ।
ସୁବର୍ଣ୍ଣ କାଞ୍ଚନପୁର ଆଶ୍ଚର୍ଯ୍ୟ ମଣ୍ଡଳ
କାଉଁରୀ ଭେଟ ନଗର ଉଡ଼ଙ୍ଗ କୋଶଳ ।
ରଇବତ କୋଳାହଳ ପୁଣି ମଦ୍ରାପୁରୀ
ଶୋଣିତାକ୍ଷ ମଣ୍ଡଳ ଯେ ଅଯୋଧ୍ୟାଦି କରି ।
ଗୋମାତା ଗଣ୍ଡକୀମାଳାବତୀ ଶୂନ୍ୟଭଦ୍ରା
ଆରଣ୍ୟକ କାଶିପୁରୀ ପୁରୀ ଉର୍ମିରୁଦ୍ରା ।
ପ୍ରୟାଗ କାଶୀ କୌଶିକ କ୍ଷେତ୍ର ବାରାଣସୀ
ମାଲ୍ୟବନ୍ତ ହେମଗିରି ଜଳଦ ଅନ୍ୱେଷି ।
ସରସ୍ୱତୀ ଚକ୍ରପୁର ରଥି ଚନ୍ଦ୍ର କୋଣା
ହରିଣୀ ତାରିଣୀ ଗୁଣ କାମେ ଜଗଜ୍ଜିଣା ।
ଅନ୍ତରୀକ୍ଷ ହଟକେଶ ଏହି ଦୁଇ ପୁରୀ
ଦିବାରାତ୍ରରେ ଭ୍ରମିଲୁ ନଦୀ ବନ ଗିରି ।
ପାଣ୍ଡବଙ୍କୁ ନ ପାଇଲୁ ବହୁତ ଲୋଡ଼ିଲୁ
ଶ୍ରୀଚ୍ଛାମୁରେ ଆସି ତେଣୁ ନିବେଦନ କଲୁ ।
ଛିଦ୍ରାଛିଦ୍ର ନ ପାଇଲୁ ରାଜ୍ୟ ଖୋଜି ଖୋଜି
କାହିଁ ନ ଦେଖିଲୁ ସେହି ପାଣ୍ଡବଙ୍କୁ ଖୋଜି ।
ପଶ୍ଚିମ ଦିଗର ଚାର ଆସି ପରଣାମି
ବୋଇଲେ ସକଳ ରାଜ୍ୟ ଅଇଲି ଯେ ଭ୍ରମି ।
ଭଇରବ ପଦ୍ମାହୁତି ଅନ୍ତପାରାଧିକ
କର୍ଣ୍ଣାଟକ ଓଡ୍ରଙ୍ଗମାଳା ଶୁଭ ଭଇରକ ।
ଆବର ଡାହାଳ ଦେଶ ରାଉଳ ଝୋଲାଳ
ଗୁଜୁରାଟ ମାନଭଙ୍ଗ ମାଳବ ଭୂପାଳ ।
କାଉଁରୀଦେଶେ କୋଶଳ ପୁଣି ହିରଣାକ୍ଷୀ
ତାପତି ତେଲଙ୍ଗୀ ଦେଶ ଗଉରୀ କାମାକ୍ଷୀ ।
ରେତି ମେଦୁ ମଦ୍ଦ ନାଦି ଚାରିନଗ୍ରେ ବୁଲି
ବେଳାଉର ବେଳାନଗ୍ର ଗଲୁ ବେଳାବଳୀ ।
ସୁରବର ପାଟଣା ଯେ ନଗ୍ର ମୌଳାବତୀ
ହିରଣ୍ୟପୁର ଗଣ୍ଡକୀ ନଦୀ ଯେ ସୁମତି ।
ଭଇରବପୁର ଗଲୁ ଡେଇଁ ବହୁଗିରି
କାଳିକାପୁରେ ପ୍ରବେଶ ହେଲୁ ଯାଇକରି ।

କେନ୍ଦୁ ଗଣ୍ଡୁକୀ ସଲନ୍ତ ଜଇନ୍ତାଦି ପୁର
ଯୋଧପୁର କେଶପୁର ସମଲା ନଗର ।
ଶୁକ୍ଳାମ୍ବରପୁର ଶଙ୍ଖପୁର ଯୋମଯଗ୍ନି
ହରପାପଗଙ୍ଗା ବସ୍ତ୍ରହରଣ କାରୁଣୀ ।
ରାମକିପାଟଣା ଆଦି ନଗ୍ରେ ତୀର୍ଥେ ହେଲୁ
ଜାଣ ଚେରି ଅନ୍ତଃପୁର ପର୍ଯ୍ୟନ୍ତ ଯେ ଗଲୁ ।
ସ୍ୱାମୀ ଜାନୁମଣ୍ଡଳ ଯେ ଗନ୍ଧର୍ବ ପର୍ବତ
ଯହୁଁ ବିଶଲ୍ୟକରଣୀ ନେଲେ ହନୁମନ୍ତ ।
ମାରତଣ୍ଡ ସାତକଜ୍ଜ ହେଲେ ଯେଉଁ ଭୂମି
ମନୁଷ୍ୟଙ୍କ ଗତାଗତ ତହିଁ ନାହିଁ ସ୍ୱାମୀ ।
ଋଷ୍ୟମୁକ ପଞ୍ଚବଟୀ ଚିତ୍ରକୁଟ ବନ
ବାଗାନଳ କଳାପ ଯେ ବନ ମଧୁବନ ।
ନନ୍ଦା ଆଦି ଯମକୋଶ ଉତ୍ତରି ଦଣ୍ଡକା
ଗୋରେଖ ମଙ୍ଗଳପୁର ଦେଶ ଯାଜନିକା ।
ଅନିଳ ଅନଳପୁର କାମ ବିରୁପାକ୍ଷ
ଭୂମିକ ଅନ୍ଧକ ପୁଣି ଯମରାଷ୍ଟ୍ର ବସ୍ତ ।
ଋଷି ବଟ ବାଞ୍ଛାବଟ ହଟି ଯେ ଗୋଧିକା
ମଙ୍ଗଳ ଯେ ମାଙ୍ଗଳିକ ପୁର ସୁଗନ୍ଧିକା ।
ବୃନ୍ଦାହୋଳ ଭୂରିପର ଅବ୍ୟନ୍ତ୍ୟାଦି ପୁରୀ
ସମସ୍ତ ଦେଖିଲୁ ନାଥ ତନ୍ନତନ୍ନ କରି ।
ପଶ୍ଚିମେ ପାଞ୍ଚ ସହସ୍ର ନବଲକ୍ଷ ରଥ
ଏତେକ ପଥ ଗମିଲୁ ଦେବ ଦିବାରାତ୍ର ।
ସ୍ତ୍ରୀ ରୂପ ବାଳୁତରୂପେ ସ୍ଥାନେ ସ୍ଥାନେ ହେଲୁଁ
ପାଣ୍ଡବଙ୍କ ଚିହ୍ନବର୍ଣ୍ଣ କାହିଁ ନ ପାରିଲୁ ।
ଚତୁର୍ଦ୍ଦିଗ ବାର୍ତ୍ତା ପୁଣି ସେ ମାନଗୋବିନ୍ଦ
ହୃଦଗତେ ବିଚାରିଣ ହୋଇଲା ଆନନ୍ଦ ।
କର୍ଣ୍ଣ ହସ୍ତେ ହସ୍ତ ଦେଇ ମାନ ଚକ୍ରବର୍ତ୍ତୀ
ପୁଛଇ ବୁଝିଲେ କିସ ହେ ଶକୁନି ମନ୍ତ୍ରୀ ।
ଦୁର୍ଯ୍ୟୋଧନ ହର୍ଷ ଦେଖି ଶକୁନି ବୋଇଲେ
ଆମ୍ଭେ ଶୁଣିଲୁ ପାଣ୍ଡବମାନେ ନାଶଗଲେ ।
କର୍ଣ୍ଣ ବୋଇଲେକ ତହୁଁ ଶୁଣ ହେ ସମସ୍ତ
ସକଳେ ଜାଣି ଯୁଧିଷ୍ଠି କଲେ ଯେଉଁ ବ୍ରତ
ଅଠାଶୀସସ୍ର ମୁନିଙ୍କୁ ଦିଅ ଅନ୍ନଦାନ
ସମ୍ପୂର୍ଣ୍ଣ କରିଣ କାହୁଁ ପାଇବ ସେ ଅନ୍ନ ।
କଷଣେ ଝିଙ୍ଗାସି ଗଲେ ସର୍ବ ଋଷିମାନେ
ଭୋଜନ ନ ମିଳିବାରୁ ଉଦର ସମ୍ପୂର୍ଣ୍ଣ ।
ତାହାଙ୍କ ଝିଙ୍ଗାସ ପାଇ ରହି ଉପବାସ
ଅନ୍ନକ୍ଷୀଣେ ଯୁଧିଷ୍ଠିର ପ୍ରାଣେ ଗଲା ନାଶ ।
ଆହେ ସମସ୍ତ ଜାଣ ତ ଭୀମର ପ୍ରକୃତି
ତିନିଷଠି ପଉଟିରେ ତାର ହୁଏ ତୃପ୍ତି ।
ବନସ୍ତରେ ଏତେ କାହୁଁ ପାଇବ ସେ ଲୋଡ଼ି
ଅନ୍ନକଷ୍ଟ ପାଇ ଭୀମ ମଲା ବନେ ପଡ଼ି ।
ଅର୍ଜ୍ଜୁନକୁ ଦ୍ରୌପଦୀତ କରେ ବଡ଼ ଯୋଗ
ବିପଦେ ସୁନ୍ଦରୀ ଥିଲେ ପଡ଼ଇ ଦୁର୍ଯ୍ୟୋଗ ।
ଦମୟନ୍ତୀ ଛାଡ଼ି ଯେହ୍ନେ ଗଲେ ନଳରାଜା
ଶ୍ରୀରାମ କରିଲେ ପୁଣି ସୀତୟାଙ୍କୁ ତେଜ୍ୟା ।
ଭୀମ ଅର୍ଜ୍ଜୁନ ଯୁଧିଷ୍ଠି ଭୀମ କଷ୍ଟେ ମଲେ
ଆନ ଯୁବତୀ ଲୋଭରେ ପ୍ରାଣ ସେହୁ ଦେଲେ ।
ଦୈତ୍ୟ ଅଥବା ଗନ୍ଧର୍ବ ଅର୍ଜ୍ଜୁର୍ନଙ୍କୁ ମାରି
ଦ୍ରୌପଦୀକୁ ଘେନିଗଲେ ବଳାତ୍କାର ଧରି ।
ଅର୍ଜ୍ଜୁନ ଯେ ଗଲେ ପୁଣି ଦ୍ରୌପଦୀ ନିମନ୍ତେ
ନକୁଳ ସହଦେବ ଯେ ଝୁରିମଲେ ଅନ୍ତେ ।
ଏ କଥାହୁଁ ଅନ୍ୟକଥା ନୁହଇଟି କିଛି
ସଭାରେ ଶକୁନି ମନ୍ତ୍ରୀ ଏମନ୍ତେହିଁ ବାଛି ।
ମାନଗୋବିନ୍ଦ ବୋଇଲା ଶୁଣ ହୋ ମଇତ୍ର
ଏବେ ତ ଏକା ରାଜ୍ୟ ହେଲା ମୋର ସତ ।
ଶତ୍ରୁ ମର୍ଦ୍ଦନ ପତାକା ବାନ୍ଧି ସର୍ବେ ରଥେ
ଉତ୍ସବମାନ କରିଲେ ଥାଇଁ ଇନ୍ଦ୍ରପ୍ରସ୍ଥେ ।
ପୁଣି କହିଲେ ପଶ୍ଚିମଦିଗ ଚାରଗଣ
ସ୍ୱାମୀ ମତ୍ସ୍ୟଦେଶ କଥା ଶୁଣନ୍ତୁ ଆପଣ ।
ଦିବସେକ ରହିଲୁ ସେ ମତ୍ସ୍ୟର ନଗରୀ
ବିରାଟ ଶଳା କୀଚକ ଶତଭ୍ରାତ ମରି ।
ସୈରିନ୍ଧ୍ରୀ ବୋଲି ସୁଦେଷ୍ଣା ରାଣୀ ପରିଚାରୀ
ଉତ୍ସବ ନବରେ ଗଲା କୀଚକକୁ କରି ।
ଗନ୍ଧର୍ବେ ଥିଲେ ଗନ୍ଧର୍ବ ନାମ ନଦୀକୂଳେ
ଉତ୍ସବପୁରେ ମାଇଲା କୀଚକକୁ ବଳେ ।
କୀଚକକୁ ମଣ୍ଡାକାର କରି କଲା ଲୋଚି
ଚାରିଅଙ୍ଗ ଶିର ତାର ନ ପାଇଲେ କିଛି ।
ବିରାଟ ରୋଷେ ବୋଇଲା ସୈରିନ୍ଧ୍ରୀକି ଆଣି
କୀଚକର ତୁଲେ ଦାନକର ଏହିକ୍ଷଣି ।
ଅନେଶ୍ୱତ ଭାଇ ଆଣନ୍ତେ ସେ ସୈରିନ୍ଧରୀ
ତାହାକୁ ମାରି ଗନ୍ଧର୍ବ ହୁତାଶନେ ଭରି ।
ଏହି ପ୍ରକାରେ ଦେଖିଲୁ ମତ୍ସ୍ୟଦେଶେ ଥାଇ
ଦୁର୍ଯ୍ୟୋଧନ ହର୍ଷ ହେଲା ଏ ବାରତା ପାଇ
ଅନେକ ଧନ ରତନ ଦେଲେକ ବଧାଇ
ବଧାଇ ନେଲେ ପଶ୍ଚିମ ଦୂତମାନେ ତହିଁ ।
ଭୀଷ୍ମ ମୁଖ ଚାହିଁ ଦୁର୍ଯ୍ୟୋଧନ ଯେ ବୋଇଲା
ଏ ମହୀତଳେ କୀଚକ ଭୟ ମୋର ଥିଲା ।
ଦଇବର ବଶେ ସେହି ଏବେ ନାଶଗଲା
ଆବର କାହାକୁ ଭୟ ଅଛଇ ବୋଇଲା ।

ସୁକର୍ମଦଶା ପ୍ରାଣୀଙ୍କୁ ହୁଏ ଯେତେବେଳେ
ତେଣୁ ସୁବିଧାନ ହେଉଥାଇ କର୍ମଫଳେ ।
ପାଣ୍ଡବେ ମଲେ କୀଚକ ଏଣେ ନାଶକଲା
ଏ ଜମ୍ବୁଦ୍ୱୀପ ମୋହର ଏକଛତ୍ର ହେଲା ।
କୀଚକକୁ ଭୟକରି ପାଳଇ ତ୍ରିଗର୍ତ୍ତ
ଦୁର୍ଯ୍ୟୋଧନ ପାଶେ ଥିଲା ହୋଇରାଜ୍ୟଚ୍ୟୁତ
ପାରିଦଣ୍ଡ ସଙ୍ଗତରେ ତହିଁ ବସିଥିଲା
କୀଚକ ମଲା ଶୁଣିଣ ନିଉଛାଳି କଲା ।
ସ୍ୱାମୀ କକ୍ଷାଜଗଜ୍ଜେଠି ଶରଣ ବୀରଧୂ
ମହୀମଣ୍ଡଳେ ମହିମା ଅଟ ତୁମ୍ଭେ ସାଧୁ ।
ସ୍ୱାମୀ ମଘଦେଶେ ରାଜ୍ୟ ଯୁକତେ ମୋହର
କୀଚକ ଛଡ଼ାଇ ନେଲା ବଳରେ ତାହାର ।
ମୋହର ରାଜ୍ୟକୁ ଦେବ ଘେନିଲା ଯେବଳେ
ବିରାଟ ସାମାନ୍ୟ ଦେବମୋତେଯୁଦ୍ଧଗୋଳେ ।
ନିଜରାଜ୍ୟ ନିଜବଳ ତୁଷ୍ଟ ପୁଣ୍ୟବଳେ
ଦିଅ ମୋତେ ଆଜ୍ଞାଦାନ ଯିବି ଅଙ୍ଗଛଳେ ।
ସ୍ୱାମୀ ଅଛନ୍ତି ତାହାର ଦୁଇପଦ୍ମ ଗାଈ
ତାହା ଆଣି ତୁମ୍ଭଙ୍କୁ ମୁଁ ଦେବଇଁ ବଧାଇ ।
ଶରଣ ଉଦ୍ଧାରଣ ହେ କକ୍ଷାଜଗଜ୍ଜେଠି
ମହୀତଳେ ଉଦେ ହେବ ତୁମ୍ଭ ନାମଗୋଟି ।
ଦୁର୍ଯ୍ୟୋଧନ ଆଜ୍ଞା ଦେଲେ ତାର କଥା ଶୁଣି
କେତେ ଦଣ୍ଡନେଲେ ତାକୁ ପାରିବହେ ଜିଣି ।
ଭଲ ଭଲ କରିଣ ହୋ ରଥ ଗଜ ବାଛ
ଯେତେକ ପାରିବେ ସୁଖେ ସୈନ୍ୟ ଘେନି ଗଛ ।
ଦୁଇପରାର୍ଦ୍ଧ ରଥ ଯେ ଷୋଳଗୁଣେ ହସ୍ତୀ
ସହସ୍ରେକ ଅଶ୍ୱ ଶତକ୍ଷଉଣୀ ପଦାତି ।
ଏତେକ ବାଛିଣ ଦେଲେ ସେ ତ୍ରିଗର୍ତ୍ତରାୟେ
ଆଜ୍ଞା ପ୍ରମାଣରେ ସମଦଣ୍ଡ ସଜ ହୁଏ ।
ଆସ୍ଥାନ ମଉଳନ୍ତେ ଯେ ବିଦୁର ଏ ଯୋଗେ
ପଶ୍ଚିମ ଦିଗରେ ଚାର ହକାରିଣ ଆଗେ ।
ଆରେ ଶତ କୀଚକ କି ଗନ୍ଧର୍ବ ମାଇଲା
ଚାର ଯେ ବୋଲେ ଦେଖିଲ ଅଗ୍ନିରେ ଭରିଲା ।
ବିଚାର କରି ବିଦୁର ଭାଳେ ହୃଦଗତେ
ଆଜର ଦିନ ସଫଳ ହୋଇଲା ନା ମୋତେ ।
ବିରାଟ ରାଜ୍ୟରେ ଯୋଏ ଗୁପତ ହୋଇଲେ
ଦ୍ରୌପଦୀ ପାଇଁ କୀଚକେ ତହିଁ ବଧକଲେ ।
ଅନେକ ବଧାଇ ଦେଲେ ବିଦୁର ମହାତ୍ମା
ବହୁତ ଆନନ୍ଦ ହେଲେ ତାର ନାହିଁ ସୀମା ।
ଦ୍ରୋଣ ଭୀଷ୍ମ ଦୁହେଁ ଶୁଣି ହୋଇଲେ ଉସତ
ସ୍ୱରୂପ କି ପଚାରିଲେ ହକାରିଣ ଦୂତ ।

ସ୍ୱରୂପ କଥା କହିଲେ ତାଙ୍କୁ ଚାରଗଣ
ସୈରିନ୍ଧ୍ରୀ ଅର୍ଥେ କୀଚକ ମଲେ ଶତେଜଣ ।
ଭୀଷ୍ମ ବୋଇଲେହେ ଦ୍ରୋଣକେମନ୍ତେ ଏକଥା
ଦ୍ରୋଣ ବୋଇଲେ ପାଇଲୁ ପୁତ୍ରଙ୍କ ବାରତା ।
ବିରାଟ ରାଜ୍ୟରେ ପୁତ୍ରେ ରହିଲେ ପାଣ୍ଡବେ
ନୋହିଲେ ମଞ୍ଚମଣ୍ଡଳେ ଥାନ୍ତି କି ଗନ୍ଧର୍ବେ ।
ଭୀଷ୍ମ ବୋଇଲେସୈରିନ୍ଧ୍ରୀ ନିଶ୍ଚେ ଯାଜ୍ଞସେନୀ
ଅଜ୍ଞାତବାସ ମେଣ୍ଟିବେ ଏହି ନାମ ଘେନି ।
ସେ ଜଗତ ମୋହିନୀକି କୀଚକ ବାଞ୍ଛିଲା
ଭୀମ ତାହା ନ ସହିଣ ସବୁଙ୍କୁ ମାଇଲା ।
ବହୁତ ଆନନ୍ଦ ହେଲେ ଚିତ୍ତେ ଭୀଷ୍ମ ଦ୍ରୋଣେ
ଅନେକ ବଧାଇ ଦେଲେ ସେହୁ ଚାରଗଣେ ।
ରଜନୀ ପ୍ରଭାତେ ସେହୁ ବିଜୟେ ଆସ୍ଥାନେ
ସଭାରେ ବିଜୟ ହେଲେ ସଭାପତିମାନେ ।
ମାନଗୋବିନ୍ଦ ବୋଲଇ ଶୁଣିମା ଗୁରୁହେ
ଏଡ଼େବଡ଼ କଥା ମୋତେ ଲାଗିଲା ସନ୍ଦେହେ ।
ତ୍ରିଗର୍ତ୍ତ ଆସି ଶରଣ ପଶେ ଆମ୍ଭ ତହିଁ
ତାହାର ନିମନ୍ତେ ମଘଦେଶେ ଯିବା ବାହି ।
କୀଚକ ଥିଲେ ହୁଅନ୍ତା ସିନା ବଡ଼ ମନ୍ଦ
ଦଇବରେ ନାଶଗଲା ପାପିଷ୍ଠ ଦୁର୍ମଦ ।
ତ୍ରିଗର୍ତ୍ତ ଯାଇ ଅଛଇ ବହୁସୈନ୍ୟ ଘେନି
ସାହାଯ୍ୟ କରିବା ଚାଲ ନେଇ ଅନୀକିନୀ ।
ଭୀଷ୍ମ ବୋଇଲେବାବୁହେ ମୋର ବୋଲଶୁଣ
ଯାଉ ତେବେ ସେ ତୋହର ଦଣ୍ଡକୁ ଘେନିଣ ।
ପରକାଳକୁ ଅଟଇ ପୁଣି ପରରାଷ୍ଟ୍ର
ସାମାନ୍ୟ ଜଣେ ନୁହେଁଟି ସେ ରାଜା ବିରାଟ ।
ତୁମେ ତ ସୁବିଜ୍ଞ ଜାଣି ନ ପାରକି ତାହା
ଆମ୍ଭେ ଜାଣୁ ବିରାଟକୁ ଅଛି ଜଣେ ସାହା ।
ଯେଉଁ ଗନ୍ଧର୍ବ ମାଇଲା ଆସି କୀଚକକୁ
ସମର କରିଲେ ସାହା ହେବେ ବିରାଟକୁ ।
ଦୁର୍ଯ୍ୟୋଧନ ବୋଲେ ଚାହିଁ ହସ୍ତିନା ଥାଟକୁ
ମୋ ଥାଟ ଭୟ କରେ କି ଛାର ଗର୍ନ୍ଧବକୁ ।
ଆହେ ତ୍ରିଗର୍ତ୍ତ ବୋଲିଣ ଡାକିଲେ ଶକୁନି
ଶୁଭଯୋଗ ଆସ ତୁମ୍ଭେ ଗୋଧନକୁ ଘେନି ।
ମାର୍ଗଶିର କୃଷ୍ଣପକ୍ଷ ପୁଣି ଚନ୍ଦ୍ରବାର
ଆଦ୍ରାନକ୍ଷତ୍ର ଭୋଗ ଅଛି ସେ ଦିନର ।
ବିଷ୍ଟି ନାମରେ କରଣ ଅତିଗଣ୍ଡ ଯୋଗ
ବିଛା ସଂକ୍ରାନ୍ତିରେ ହୁଏ ନବଦିନ ଭୋଗ ।

ରାତ୍ର ପାହିବାକୁ ବାକି ଅଛି ତିନି ଦଣ୍ଡ
ମତ୍ସ୍ୟଦେଶକୁ ତ୍ରିଗର୍ତ୍ତ ପ୍ରୟାଣ ପ୍ରଚଣ୍ଡ ।
ଅନେକ ରଥ କୁଞ୍ଜର ବାଦ୍ୟର ଶବଦେ
ମେଦିନୀ କମ୍ପୁଛି ହସ୍ତୀ ଅଶ୍ୱଙ୍କର ନାଦେ ।
ଆଲଟ ପାଟରେ ଛତ୍ର ଦଣ୍ଡ ପାଟ ଲକ୍ଷି
ଗର୍ଜ୍ଜନ୍ତି ଯୋଦ୍ଧା ସକଳ ଗଜ ଜ୍ୟୋତିଦେଖି
ଚଳଇ ତ୍ରିଗର୍ତ୍ତେଶ୍ୱର ଦୁର୍ଯ୍ୟୋଧନେ ବନ୍ଦି
ହରଷେ ବଳେ ଆଣିବ ବିରାଟକୁ ବାନ୍ଧି ।
ଯମୁନାର ତୀରେ ତୀରେ ଚଳେ ସମଦଣ୍ଡ
ଗର୍ଜନନାଦି ଶବଦେ କମ୍ପଇ ବ୍ରହ୍ମାଣ୍ଡ ।
ଚଳନ୍ତି ତ୍ରିଗର୍ତ୍ତ ସୈନ୍ୟ ପଶ୍ଚିମ ମୂରତି
ପ୍ରଥମ ଦିନ ପ୍ରୟାଣ ଯୋଜନ ତ୍ରିଂଶତି ।
ଆରେକ ଦିନ ଚାଳିଶ ଯୋଜନ ଗମିଲେ
ଆରେକ ଦିନ ପଞ୍ଚାଶ ଯୋଜନ ଭ୍ରମିଲେ ।
ବାଆନ ଯୋଜନ ପୁଣି ଅନ୍ୟ ଦିନେ ଯାଇ
ଏକାଦଶ ଦିବସ ଯେ ଏରୂପେ ଚଳଇ ।
ଗୋପାଳୀ ନଦୀର କୂଳେ କଣୟନ ବନେ
ସେ ସ୍ଥାନରେ ଯାଇ ଥାଟ ରହିଲେ ଗୋପନେ
ଆସ୍ଥାନରେ ବିଜେ କରିଅଛନ୍ତି ବିରାଟ
ପଶା ଖେଳୁଛନ୍ତି ତାଙ୍କ ସଙ୍ଗେ କୋନ୍ତଭଟ୍ଟ
ଯାଚକେଶ୍ୱର ମନ୍ତ୍ରୀ ଯେ ପୁଣି ପୁରୋହିତ
ପାଶେ ବେଢ଼ି ରହିଛନ୍ତି ଅକାଳ ଅମାତ୍ୟ
ଦେଶାନ୍ତର ବାରତାକୁ ପାଇ ସ୍ଥାନେସ୍ଥାନେ
ସ୍ୱାମୀ ତ୍ରିଗର୍ତ୍ତ ବାହିଲା ଅମନାତ୍ୟମାନେ ।
ଗୋପାଳୀ ନଦୀର କୂଳେ ଗଲେକ ଭିଆଇ
ପାଞ୍ଚଯୁଣ ମାଡ଼ିଛନ୍ତି ସୈନ୍ୟବଳ ତହିଁ ।
ସ୍ୱାମୀ ଶରଣ ପଞ୍ଜର ସେ ମାନଗୋବିନ୍ଦ
ଦେଲା ରଥ ଅଶ୍ୱ ଗଜ ପଦାତିକ ବୃନ୍ଦ ।
ପରିଜନଙ୍କ ସଙ୍ଗତେ ରହି କଲି ପୂଜା
ଶୁଣିଣ ବିରାଟେଶ୍ୱର ପଡ଼ି ହେଲେ ମୂର୍ଚ୍ଛା
କୋଳ କରିଣ ଧଇଲେ ତାଙ୍କୁ କୋନ୍ତଭଟ
ଆହା କୀଚକ ବୋଲିଣ ତାଡ଼ଇ ଲଲାଟ ।
ଷୋଡ଼ଶ ସୁନ୍ଦର ବାବୁ ତୁହି ସାମରଥା ।
ତୋହର ଅଭାବେ ହେଲା ମୋର ଶତ୍ରୁଚିନ୍ତା
କୋନ୍ତ ବୋଇଲେ ବିରାଟ ସ୍ଥିରେ ରୁହ ରୁହ
କରିବା ସୁମର କିମ୍ବା କରୁଛ ସନ୍ଦେହ ।
ପରଦେଶୀ ଚାରଗଣ ଥାନ୍ତିଟି ଗୁପତେ
ସମସ୍ତେ କଳିବେ ସିନା ତୁମ୍ଭର ରୋଦନ୍ତେ ।
ବିରାଟ ବୋଇଲେ କୋନ୍ତ କହୁଛି ତୁମ୍ଭଙ୍କୁ
ମୁହିଁ ସମରରେ ସରି ନୁହେଁ ତ୍ରିଗର୍ତ୍ତକୁ ।
ଏବେ ଚାଲ ରାଜ୍ୟ ଛାଡ଼ି ଯେ ଯୁଆଡ଼େ ଯିବା
ମୋର ଅଭାଗ୍ୟ ତୁମ୍ଭଙ୍କୁ ନ କରିଲି ସେବା
ସଦା ଅନୁଗ୍ରହ କରିଥିବ ହେ ଆମ୍ଭଙ୍କୁ
ନିଜ ରାଜ୍ୟ ତେଜ୍ୟାକରି ଯିବି ମୁଁ ବନକୁ ।
ଛାଡ଼ିଲି ମୁଁ ନିଜ ରାଜ୍ୟ ସମ୍ପଦର ଆଶା
ଗମନ କରିବି ମନେ ପିନ୍ଧି ବସ୍ତ୍ର କଷା ।
କୋନ୍ତ ବୋଇଲେ ହେ ରାଜା ନୁହଇଁ ଏମନ୍ତ
ଏ ଯୁଦ୍ଧୁ ପଳାଇ ଯିବା ଅଟେକି ଯୁକତ ।
ଦଣ୍ଡ ଘେନି ଆମ୍ଭେ ଯିବା ହାଦେ ତହିଁପେଲି
ଦଣ୍ଡ ସାଜ ବେଗବେଗ ଚାର ପ୍ରତିବୋଲି ।
କୌଣସି ପ୍ରକାରେ ଯେବେ ଶତ୍ରୁକୁ ନ ପାରି
ତେବେ ସିନା ରାଜ୍ୟୁ ଆମ୍ଭେ ଯିବା ଅପସରି ।
ମୋହର ତ ଆଶା ନାହିଁ ବୋଲଇ ବିରାଟ
ତୁମ୍ଭର ଭରସା ଥିଲେ ସାଜ ବେଗେ ଥାଟ ।
କୋନ୍ତବୋଇଲେ ତୁ ପୁଣ ଆହେଅମନାତ୍ୟେ
ସଜକର ରଥ ଗଜ ସଇନି ସହିତେ ।
କୋନ୍ତଙ୍କ ବଚନ ଶୁଣି ସାଜିଲେ ସଇନି
ବାଜଇ ବୀରତୁର ଯେ କମ୍ପଇ ମେଦିନୀ ।
ମଣ୍ଡନ କରନ୍ତି ଯୋଦ୍ଧା କଣୟର ରଥ
ବହୁତ ଚଳନ୍ତି ମହାବଳୀ ଯେ ସାମନ୍ତ ।
ଧାମନ୍ତି ଯୋଦ୍ଧା ଅମାତ୍ୟ ଆଦି ପାରିଦଣ୍ଡ
ପଞ୍ଚାନବେ ଫରୀ ଯୋଦ୍ଧା ଚଳନ୍ତି ପ୍ରଚଣ୍ଡ ।
ଆପଣେ ଉଭା ହୋଇଣ ନିଜେ କୋନ୍ତଭଟ୍ଟ
ମଣ୍ଡନ୍ତି ରହୁବର ସେ କଣୟ ଜଡ଼ିତ ।
ହୀରା ନୀଳା ବଇଦୁର୍ଯ୍ୟ ପୋହଳା ମୁକୁତା
ସୂର୍ଯ୍ୟ କିରଣ ଦିଶଇ ଅତ୍ୟନ୍ତ ଶୋଭିତା ।
ହୀରା ନୀଳାରେ ମଣ୍ଡିତ ଲମ୍ବନ୍ତି ଘଣ୍ଟିକା
ଆଦିତ୍ୟ ତେଜ ପରାୟେ ଦିଶେ ରଥଶିଖା ।
ସୁବର୍ଣ୍ଣେ କଳଶ ନେତ ଉଡ଼ଇ ଉତ୍ତମେ
ରଥକୁ ଛାଉଣୀ କଲେ ଶାର୍ଦ୍ଦୂଳର ଚର୍ମେ ।
ରଥ କଳସ ପତାକା ଦିଶେ ଶ୍ୱେତବର୍ଣ୍ଣ
ଧବଳ ବକ ପରାୟେ ଉଡ଼ନ୍ତି ଗଗନ ।
ଗଜ ତୁରଙ୍ଗମାନଙ୍କୁ ନାନାରଙ୍ଗେ ସାଜି
ମହାମତ୍ତ ତୁରଙ୍ଗମ ତେଜରେ ବିରାଜି ।
ଅଶ୍ୱଙ୍କର ସାନ୍ନିଧିରେ ସୈନ୍ୟମାନେ ଚଳି
ପୂର୍ବର ପ୍ରାନ୍ତରେ ଯାନ୍ତେ ଗଗନ ଉଛୁଳି ।
ଆପଣେ କୋନ୍ତ ଗୋଟିଏ ରଥକୁ ମଣ୍ଡାନ୍ତି ।
ବେନିପାଶରେ ହୀରାର ଚିରାଳ ଉଡ଼ାନ୍ତି ।
ଯେମନ୍ତେ ମାତଲି ସ୍ୱର୍ଗ ରଥ ଆଣେ ସାଜି
ବାଛିଣ ରଥେ ଯୋଚିଲେ ଚାରିଗୋଟି ବାଜୀ ।

ନିରତେ ପତାକାମାନ ଉଡ଼େ ଫରହରେ
ବାସୀନେତ ଫରହର ଉଡ଼ଇ ଉପରେ ।
ବୀରବେଶରେ ମଣ୍ଡିତ ହୋଇ ମତ୍ସ୍ୟପତି
କମାଣ କୋଦଣ୍ଡ ନେଇ ଥୋଇଲେ ଶକତି ।
ଛେଲ ଛତ୍ର ନାରାଚାଦି ଅସିପତ୍ର କୋଟି
କଙ୍କପତ୍ରୀ ଲୋହମୁନା ମୁଦ୍‌ଗର ଯେ ଯାଠି
ଭୂଜରେ ତାଡ଼ ବାହୁଟି ଗୁମ୍ଫାଦି ସରଳା
ହୃଦରେ ଭୁଷଣ ହେଲେ ପଦକ ମେଖଳା ।
ଆପଣେ କୋନ୍ତ ବିରାଟ ଆଜ୍ଞା ଅବଧାରୀ
ଏମନ୍ତେଯୋଦ୍ଧାଙ୍କୁ ଶାଢ଼ୀ ଦେଲେନେଇକରି
ସର୍ବେ ଭଣ୍ଡାର ଫେଡ଼ିଣ ଅର୍ପିଣ ଯୋଦ୍ଧାଙ୍କୁ
ରଥେ ବସାଇଲେ ନେଇ ବିରାଟ ରାଜାଙ୍କୁ ।
ମଙ୍ଗଳ ଭାଷନ୍ତି ଦ୍ୱିଜ ଶୁଣି ଚଣ୍ଡପୁତ୍ର
ହୁଳହୁଳିର ଶବଦ ଶୁଭେ ଅପ୍ରମିତ ।
ଘେନିଲେ ଯେ ବେନିଲକ୍ଷ ଯୋଦ୍ଧାହନ୍ତକାରୀ
ହେଲେ ସେ ଲଙ୍ଘି ପାରନ୍ତି ମେରୁ ଆଦିକରି ।
ଯାଚକେଶ୍ୱର ମନ୍ତ୍ରୀ ଯେ ଅଟେ ଆଗୁ ଆଣି
ନବଲକ୍ଷଯୋଦ୍ଧାମାନେ ତା ତୁଲେ ପଳାଣି ।
ସୁମରଣା କଲେ ମନେ ଶ୍ରୀଦୁର୍ଗା ମାଧବ
ଆହେ ଚକ୍ରଧର ତୁମ୍ଭେ ସୁଗତି ବାନ୍ଧବ ।
କୋନ୍ତ ଥାଟକୁ ଚଳାନ୍ତେ ଚଳେ ଅବହେଳୁ
ଇନ୍ଦ୍ରକି ବିଜୟ କଲେ ଅମର ମଣ୍ଡଳ ।
କୋନ୍ତବୋଇଲେହୋ ରାଜା ଶୁଣ ମତ୍ସ୍ୟେଶ୍ୱର
ସନ୍ନିଧକୁ ଡାକିଆଣ ତୋର ଗ୍ରନ୍ଥି କାର ।
ରାଇ ଆଣିଲେ ତାହାଙ୍କ ଆଜ୍ଞା ଅବଧାରୀ
ଶ୍ରୀକରରେ ଶାଢ଼ୀ ଦେଲେ କୋନ୍ତଭଙ୍ଗ ଧରି
ଅଶ୍ୱ ଚଢ଼ି ଗମିବୁ ତୁ ଠାକୁରଙ୍କ କତି
ସୈନ୍ୟଙ୍କୁ ତୁ ନା ଛାଡ଼ିବୁ ଯୁଦ୍ଧେ ଦିବାରାତି ।
କୋନ୍ତବୋଇଲେହୋ ରାଜାଶୁଣ ମତ୍ସ୍ୟେଶ୍ୱର
ହକରାଇ କରି ଆଣ ବଲ୍ଲଭ ତୁମ୍ଭର ।
ଦିଶଇ ବ୍ରାହ୍ମଣ ଗୋପ୍ୟ ପୁରୁଷ ପରାୟେ
ଦଶବିଂଶ ବଳେ ବାଳୀ ପାଶେ ଥାଉ ରାୟେ ।
ବ୍ୟାଘ୍ର ମଲ୍ଲେ ମାଇଲା ସେ ଦେଖିଛ ପ୍ରତ୍ୟକ୍ଷେ
ଅନବରତରେ ଥାଉ ସେ ଆମ୍ଭ ସମକ୍ଷେ ।
ବିରାଟ ବୋଇଲା ତହୁଁ ଦେଶାଉର ରାଇ
ବଲ୍ଲଭ ସୂପକାରକୁ ଡାକିଆଣ ଯାଇ ।
ରାଜାଙ୍କର ଆଜ୍ଞା ପାଇ ସେହି ଦେଶାଉରେ
ଉଚ୍ଚରେ ଡାକ ଦିଅନ୍ତି ଯାଇ ରୋଷଘରେ ।
ଆହେ ଗୋସାଇଁ ବଲ୍ଲଭବୋଲି ଡାକିଦେଇ
ଠାକୁରଙ୍କ ଆଜ୍ଞା ତୁମ୍ଭେ ଆସବେଗ ହୋଇ ।
ପୁନଃ ପୁନଃ କରି ଡାକ ଦେଲେ ଚାରଗଣେ
ରାନ୍ଧଣାରେ ପଶି ଡାକ ନ ଶୁଣଇ କର୍ଣ୍ଣେ ।
ଉଚ୍ଚସ୍ୱରେ ଡାକନ୍ତେଣ ଚାହିଁଲା ଲେଉଟି
କିଏ ଠାକୁର ବୋଲିଣ ଚାହେଁ କୋପଦୃଷ୍ଟି ।
ଦୂରେ ଥାଇଣ ସେ ଦୂତେ ହୋଇ ପରମାଣି
ଆଜ୍ଞା କରିଛନ୍ତି ଚାଲ ବିରାଟ ଯେ ସ୍ୱାମୀ ।
ରୋଷେ ଲୋଚନ ବୁଲାଇ ତହୁଁ ସୂପକାର
ବୋଇଲେ ବିରାଟ ଛାର କାହାର ଠାକୁର ।
ଦ୍ୱାରୀ ମୁଁ କି ବଚସ୍କର ଯିବଇଁ ଆସ୍ଥାନେ
ଗଲେ ସେ ଦ୍ୱନ୍ଦହୁଁ ମୋତେନପେଷଇଆନେ ।
କେବେବୋଲେବାଘମାର କେବେ ମାଲମାର
ଏଡ଼େ ହୋଇକରି ବଶହେଲି କି ତାହାର ।
ବାହୁଡ଼ିଣ ଦୂରେ ଯାଇ କହିଲେ ରାଜାଙ୍କୁ
ତବାଜ୍ଞା ମେଣ୍ଟି ଅବଜ୍ଞା କରିଲା ତୁମ୍ଭଙ୍କୁ ।
ରୋଷଭରେ ଚାହିଁଲା ସେ ପୁଣ ସୂପକାର
ବୋଇଲା ବିରାଟ ଛାର ମୋର କି ଠାକୁର ।
ତାହାର କ ବଶ ମୁହିଁ ନ ଯିବି ଆସ୍ଥାନ
ଶୁଣି କୋନ୍ତ ସୁମରଣା କଲେ ଭଗବାନ ।
ଏଡ଼େ ଦୁଷ୍ଟ ଘେନି ଧର୍ମେ ବଞ୍ଚୁଅଛି ଦିନ
କେମନ୍ତେ ଗୃପତ ବାବୁ ରଖ ନାରାୟଣ ।
ବିରାଟ ବୋଇଲେ ସୂପକାରକୁ ନ ରାଗ
ସେ ବଡ଼ ରାଗିଛି ଧରାଇଲୁ ଦିନୁ ବାଘ ।
ସେହି ରାଗ ଧରି ମନେ ନ ଆସେ ଛାମୁକୁ
ପଣ୍ଡା ହେ କୋପ ନ କର ତୁମ୍ଭେ ବଲ୍ଲଭକୁ ।
କୋନ୍ତ ମୁଁ ତୁମ୍ଭଙ୍କୁ ରାଜ୍ୟଭାର ସମର୍ପିଲି
ବଲ୍ଲବେ ଡକାଇ ଆଣ ତୁମ୍ଭ ଆଜ୍ଞା ବୋଲି ।
କୋନ୍ତ ବୋଇଲେରେ ଦୂତ ଯାଅରେ ଝଟତି
ଆମ୍ଭର ଆଜ୍ଞା ବୋଲିଣ ଡାକିଆଣ କତି ।
କୋନ୍ତଙ୍କ ଆଜ୍ଞା ପାଇଣ ଗଲେ ଚାରଗଣେ
ରୋଷ ନବରେ ମିଳିଲେ ଯାଇ ତତ୍‌କ୍ଷଣେ ।
ହେ ବଲ୍ଲଭ ସୂପକାର ଶୁଣିମା ଗୋସାଇଁ
କୋନ୍ତଙ୍କର ଆଜ୍ଞା ଆସ ତୁମ୍ଭେ ବେଗେଧାଇଁ ।
ସ୍ୱାମୀଙ୍କର ଆଜ୍ଞା ସେହୁ ମସ୍ତକରେ ଘେନି
ରୋଷ ମଧରୁ ବାହାଣ ହୋଇଲେ ପାବନି ।
ସମଦଣ୍ଡକୁ ଘେନିର ବିରାଟ ବିଜୟେ
ସନ୍ନିଧେ ପ୍ରବେଶ ହେଲେ ପବନ ତନୟେ ।
ବିରାଟ କତିକି ସେହୁ ଅଙ୍ଗସାରି ଦେଇ
ପ୍ରଣିପାତ ସୂପକାର କୋନ୍ତ ମୁଖ ଚାହିଁ ।
ଜିତ ମହାପ୍ରସାଦ ଏ ବିରାଟର ଗୀର
ନ ଉଠେ ରାଜା ବଚନ ଶୁଣି ସୂପକାର ।

କୋନ୍ତ ବୋଇଲେଠାକୁର ଆଜ୍ଞାହେଲାତୋତେ
ଉଠ ସୁପକାର ପ୍ରଣିପାତ ହେଉ କେତେ ।
ରୁଷ୍ଟ ହୋଇଥିଲେ ସେହି ବିରାଟ ବଚନେ
ଧାଡିକାରେ ଉଠେ କୋନ୍ତ ଆଜ୍ଞା ପରମାଣେ
ଶୁଣ ହେ ବଲ୍ଲଭବୋଲି ବୋଲେ କୋନ୍ତଭଟ୍ଟ
କୀଚକ ନାଶେ ତ୍ରିଗର୍ତ୍ତ ଆଣି ଅଛି ଥାଟ ।
ଆପଣେ ବିରାଟ ରାଜା ବିଜୟେ ସମରେ
ଆଜ୍ଞା ହୋଇଲା ତୁମ୍ଭଙ୍କୁ ଯିବାକୁ ସଙ୍ଗରେ ।
କୋନ୍ତଙ୍କର ନିରାଧାର ଆଜ୍ଞାକୁ ସେ ଶୁଣି
ଅଜ୍ଞାତବାସର ଶେଷ ସମୟକୁ ଜାଣି ।
ବଲ୍ଲଭ ସମ୍ମତ କରେ କୋନ୍ତଙ୍କ ବଚନେ
ଶାଢ଼ୀଦେଲେ ନେଇ ତାଙ୍କୁ ଧର୍ମଙ୍କ ନନ୍ଦନେ ।
ଡାହାଣ ପାଖରେ କୋନ୍ତ ବାମେ ଭୀମସେନ
ପଛରେ ନକୁଳ ମଧ୍ୟେ ବିରାଟ ରାଜନ ।
ଦଣ୍ଡ ଦେଖନ୍ତେ ଚଳନ୍ତି ତହିଁ ମତ୍ସ୍ୟପତି
କୋନ୍ତ ମୁଖକୁ ଅନାଇଁ ଅତି ପ୍ରଶଂସନ୍ତି ।
ଦଣ୍ଡ ସାଜିବାକୁ କୋନ୍ତେ ତୁମ୍ଭେ ତ ପାରଗ
ଅନ୍ୟର ରାଜ୍ୟକୁ ତୁମ୍ଭେ ମନ୍ତ୍ରୀପଣେ ଯୋଗ୍ୟ
ବିରାଟ ରାଜାଙ୍କ ମୁଖୁଁ ଏହିକଥା ଶୁଣି
ପବନନନ୍ଦନ କୋପେ ଶିର ଦେଲା ଝୁଣି ।
ଏଛାର ରାଜ୍ୟେଯୋଗ୍ୟ ହେଲେ ମନ୍ତ୍ରୀପଣେ
ଅନ୍ୟରାଜ୍ୟକୁଯେଯୋଗ୍ୟବୋଲେନ୍ତିକାରଣେ ।
ଦେଖିବା ବିରାଟ ଆଜି ଦଣ୍ଡ ଘେନି ଚଳେ
ତ୍ରିଗର୍ତ୍ତକୁ ଜିଣଇ କି ଆଜ ଏହା ବଳେ ।
ଚଳିଯାନ୍ତିସମଦଣ୍ଡ ମଣ୍ଡନ ଯୋଗ୍ୟରେ
ମଘ ପାରି ହୋଇ ପଶେ ଦଣ୍ଡ ପଟୁଆରେ ।
କାମିନୀ ଭଦ୍ରା ବୋଲିଣ ନଦୀ ଏକଗୋଟି
ଗଣ୍ଡୁକୀର ଧାର ସେହୁ ଦକ୍ଷିଣରେ ଫୁଟି ।
ସେ ନଦୀତଟେ ରହିଲେ ବିରାଟ ସଇନି
ଆକାଶ ଉଛୁଳି ପଡ଼େ ବାଦ୍ୟନାଦେ ପୁଣି ।
ସୈନ୍ୟବଳ ଘେନିକରି ଆସନ୍ତେ ତ୍ରିଗର୍ତ୍ତ
ମାନ ଭଙ୍ଗେ ଶୈଳି ଦୂତ ରହିଲା ଗୁପତ ।
ତ୍ରିଗର୍ତ୍ତଶ୍ୱରକୁ ଜାଣି ଆସିଲେ ବିରାଟ
ମାନ ଭଦ୍ରା ନଦୀକୂଳେ ଉଭାରିଲା ଥାଟ ।
କହୁଁ କହୁଁ ତ୍ରିଗର୍ତ୍ତ ଯେ କମ୍ପେ ଅତିରୋଷେ
ପଞ୍ଚଦଶଯୂଣ ଗଲେ ଏକଇ ଦିବସେ ।
ଅରୁଣ ପର୍ବତେ ଯାଇ ରଖାଇଲେ ଥାଟ
ଚାରି ଯୋଜନ ଅନ୍ତରେ ରହିଲେ ବିରାଟ ।
ସେନାପତିମାନଙ୍କୁ ସେ ନିକଟେ ବସାଇ
ତ୍ରିଗର୍ତ୍ତ ବୋଲଇ ତାଙ୍କୁ ବହୁଧନ ଦେଇ ।

ବିରାଟର ସଇନ୍ୟକୁ ମୋତେ ଦିଅ ଜିଣି
ପ୍ରତିଜ୍ଞା କରିଲେ ସେନା ରାଜା ବାକ୍ୟ ଶୁଣି ।
ତୁରଗ ଆରୋହୀ ସର୍ବେ ବୁଲାଇଣ ଯାଠି
ରେରେକାର କରି ସର୍ବ ସମଦଣ୍ଡ ଉଠି ।
ଧନୁ କୃଷ୍ଣ ଚତୁର୍ଦ୍ଦଶୀ ପୁଣି ଅର୍କବାର
ମୂଳାନକ୍ଷତ୍ରକୁ ଭୋଗ ଥିଲା ସେ ଦିନର ।
ବିଷ୍ଟି ନାମରେ କରଣ ବଇଧୃତି ଯୋଗେ
ବେନି ବଳ ଭେଟାଭେଟିହେଲେ ଏକଲାଗେ ।
ବେନିକଳ ଅନ୍ୟୋନ୍ୟରେ ପ୍ରୀତିଭାବ ଛାଡ଼ି
ତ୍ରିଗର୍ତ୍ତର ସୈନ୍ୟ ସର୍ବେ ପଡ଼ିଲେକ ମାଡ଼ି ।
କରୁଣାକର କଣୟ ବେନି ମହାଯୋଧୀ
ଆଗୁଆଣି ଥାଟେ ଥାଇ ସେହୁ ଶର ବିନ୍ଧି ।
ପ୍ରହରଣ ପଣେ ଥାଟେ ନ ଦେଖନ୍ତି ତାହା
ମାନଗୋବିନ୍ଦର ଆଜ୍ଞା ଯୁଦ୍ଧେ ଶସ୍ତ୍ର ବାହା ।
ଅଶ୍ୱମାନଙ୍କୁ ଦେଖାଇ ପଶିଲେ ସମରେ
ପାଞ୍ଚଲକ୍ଷ ଯୋଦ୍ଧା ଉଠି ଏକ ଯାବଡ଼ାରେ ।
ଝଲକାନ୍ତି ଲାଙ୍ଗିଆକୁ ମେଘପ୍ରାୟ ଗର୍ଜି
ଦୂରେ ଥାଇଣ ଦେଖନ୍ତି ମତ୍ସ୍ୟ ସୈନ୍ୟରାଜି ।
ବିରାଟଶ୍ୱରଙ୍କ ସୈନ୍ୟ ଅଛନ୍ତି ସ୍ୱଦେଶୀ
ଯୁଦ୍ଧ କରିଲେ ତ୍ରିଗର୍ତ୍ତ ସୈନ୍ୟବଳେ ପଶି ।
ବେନିବଳ ଗୋଳଯୁଦ୍ଧ କଲେ ହୋଇ ରୁଣ୍ଡ
ଚରଣେ ରେଣୁ ଉଡ଼ାନ୍ତେ ନ ଦିଶେ ମାର୍ତ୍ତଣ୍ଡ ।
ରଥୀଙ୍କୁ ରଥୀ ପଦାତି ପଦାତି ଆବୋରି
ଗଜାରୋହୀ ଗଜାରୋହୀ ହେଲେ ମରାମରି ।
ଅଶ୍ୱାରୋହୀଯୋଦ୍ଧାମାନହେଲେଭେଟାଭେଟି
ପଦାତି ପଦାତି ମିଶି ହୋଇ ପିଟାପିଟି ।
ଲାଗିଲା ଘୋର ସମର ନ ଘୁଞ୍ଚନ୍ତି ଦଣ୍ଡେ
ତର୍ଜନ୍ତି ଗର୍ଜନ୍ତି ପୁଣି ପଡ଼ନ୍ତି ପ୍ରଚଣ୍ଡେ ।
ମାରନ୍ତି କମାଣ କେହୁ ମାରେ ବଜ୍ରମୁନା
ଗାଢ଼ ଶରାଘାତେ ଫୁଟିଯାଏ କାର ସେହ୍ନା ।
ଅରୁଣ କିରଣ ଦୁଇ ବିରାଟର ରଥୀ
ତ୍ରିଗର୍ତ୍ତ ବେନି ଯୋଦ୍ଧାଙ୍କୁ ପାତିଲେ ତଡତି ।
ଶୋଣିତ ପଡ଼ନ୍ତେ ଉଠିଲାକ ବଜ୍ର ଯେହ୍ନା
ବୀରବର ଅମନାତ୍ୟ କ୍ଷତ୍ରିବର ସିନା ।
ଦଣ୍ଡବଳ ଯୋଦ୍ଧାଙ୍କୁ ଯେ କେ ପାରିବ କଳି
ଧାମନ୍ତେ ଉଠନ୍ତେ ପାଦେ କମ୍ପେ ମହୀସ୍ଥଳୀ ।
ଗଦା ମୁଦୁଗର ଚକ୍ର ଶର ଅସିପତ୍ର
ପିଟନ୍ତେ ଅଶ୍ୱ ଗଜହିଁ ପଡ଼ିଲେ ବହୁତ ।
ବିରାଟ ସୈନ୍ୟ ଉଠିଲେ ହୋଇ ଗଳଗାଜି
ତ୍ରିଗର୍ତ୍ତ ରାଜ ସଇନି ପଳାଇଲେ ଭାଜି ।

ପ୍ରଥମ ଯୁଦ୍ଧେ ହାରିଲା ରାଜନ ତ୍ରିଗର୍ତ୍ତ
ସଇନ୍ୟ ପଡ଼ିଲେ ନବ ଯୋଜନ ପର୍ଯ୍ୟନ୍ତ ।
ଗଜଯୋଦ୍ଧା ବେନି ସସ୍ର ଅଶ୍ୱଯୋଦ୍ଧାଲକ୍ଷେ
ପଦାତି ଯୋଦ୍ଧା ପଡ଼ିଲେ ଅସଂଖ୍ୟେଅସଂଖ୍ୟେ
ବେନି ସହସ୍ର ରଥୀଙ୍କୁ ନେଲେ ବନ୍ଦିକରି
କୋନ୍ତ ପ୍ରଶଂସିଲେ ସାଧୁବିରାଟ ତୁମ୍ଭରି ।
ଭଗ୍ନବଳ ସଙ୍ଗତରେ ଘେନିଣ ତ୍ରିଗର୍ତ୍ତ
ବିଶ୍ରାମ କରିଲେ ମାନଭଙ୍ଗ ପରବତ ।
ସ୍ନାନ ଦେବାର୍ଚ୍ଚନମାନ ସାରିଣ ବିରାଟ
ରଜନୀ ପ୍ରଭାତେ ପୁଣି ସଜକରେ ଥାଟ ।
ତ୍ରିଗର୍ତ୍ତ ପୁଚ୍ଛଇ ସେନାମାନଙ୍କୁ ବସାଇ
ଏହି ସମଦଣ୍ଡ ଘେନି ଯିବା ନ ଯୋଗାଇ ।
ଯୋଦ୍ଧାଏ ବୋଇଲେ ରାଜା ନ ହୁଅକାତର
ହାରିବା ଜିଣିବା ସିନା କ୍ଷତ୍ରୀଙ୍କ ବେଭାର ।
ଆହେ ଆଜର ସମର ରହିକରି ଦେଖ
ନିଶ୍ଚୟ ବିରାଟ ଆଜି ହୋଇବ ନିରେଖ ।
ସାଜ ସାଜ ସମଦଣ୍ଡ ମହାବଳବନ୍ତା
ତକ୍ଷଣେ ବାହାର ହେଲେ ସେନା ଅକଳନ୍ତା
ପାଞ୍ଚ ପରାର୍ଦ୍ଧ ଯୋଦ୍ଧାଙ୍କୁ ଘେନିଣ ତ୍ରିଗର୍ତ୍ତ
ନିଜେ ଉଠନ୍ତେ ଗଗନେ ଘୋଟିଗଲା ରଥ ।
ବଜାଇ ବୀର ଟମକ ହୋଇ ମହାଘୋର
ସମୁଦ୍ର ଗର୍ଜନ ପ୍ରାୟ ଶୁଭେ ଭୟଙ୍କର ।
କୋନ୍ତଙ୍କର ଅଗ୍ରତରେ ବିରାଟ ବୋଇଲେ
ଯୋଦ୍ଧାଙ୍କୁ ଘେନି ତ୍ରିଗର୍ତ୍ତଆପେ ବିଜେକଲେ ।
କୋନ୍ତ ବୋଇଲେ ଯେ ହୁଅ ସଜ ହେ ବିରାଟ
ସମର ଧର୍ମରେ ରାଜା ରାଜ ହେବେଭେଟ ।
ରଥୀ ରଥୀ ପାତ୍ର ପାତ୍ରଯୋଦ୍ଧା ଯୋଦ୍ଧାମାନ
ସଂଗ୍ରାମରେ ଏହିମତେ ଅଛଇଟି ଧର୍ମ ।
କୋନ୍ତଙ୍କ ବଚନ ଶୁଣି ଉଠିଲେ ବିରାଟ
ଡାହାଣ ପାଖର ରଥେ ବିଜେ କୋନ୍ତଭଟ ।
ବାମ ଦିଗରେ ବଲ୍ଲଭ ଆରୋହିଣ ଗଜ
ନକୁଳ ଅଶ୍ୱେକ ଚଢ଼ି ହୋଇଛନ୍ତି ସଜ ।
ତ୍ରିଗର୍ତ୍ତରେ ଜାନୁ ଭାନୁବୋଲି ବେନିଯୋଦ୍ଧା
ଦୁହିଁଙ୍କ ସଙ୍ଗେ ଅର୍ବୁଦେ ହସ୍ତୀଛନ୍ତି ରୁନ୍ଧା ।
ସେହୁ କରୀବରମାନେ ମହା ମହା ଦନ୍ତା
ଘୋଟିଲା ମହାସମର ଗଜ ବଳବନ୍ତା ।
ଥାଟକୁ ମନ୍ଥନ କଲେ ସେହି ବେନିଜଣ
ଦେଖି ମହାଭୟ କଲେ ପଦାତିକ ଗଣ ।
ବିଷଦ ସେନା ବୋଲିଣ ବିରାଟଙ୍କ ଭ୍ରାତ
ଆଗୁଆଣି ଥାଟେ ତିନିଲକ୍ଷ ଘେନି ରଥ ।
ନିଃଶଙ୍କା ହୋଇଣ ସେହୁ ବୁଲାଇଣ ଗଦା
ତ୍ରିଗର୍ତ୍ତ ରାଜାର ସୈନ୍ୟମାରି କଲା ପଦା ।
ପଞ୍ଚବିଂଶ ରଥ ପୁଣି ବିଶାଶଏ ହାତୀ
ବେନିଲକ୍ଷ ତୁରଙ୍ଗମ ନ'ଲକ୍ଷ ପଦାତି ।
ତ୍ରିଗର୍ତ୍ତ ଦେଖନ୍ତେ ପଡ଼ିମଲେ ଏତେ ସୈନ୍ୟ
ସମର ତେଜି ଘୁଞ୍ଚିଲା ନବଲକ୍ଷ ଯୁଣ ।
ଥାଟ ଭଗ୍ନ ଦେଖିଣ ଯେ ତ୍ରିଗର୍ତ୍ତ ଈଶ୍ୱର
ଆପଣେ ଉଠିଲା ସଙ୍ଗେ ଘେନି ସହୋଦର ।
ରେ ରେ ଶବଦ କରିଣ ସମରେ ସେ ଉଠି
ଏକଯାବଡ଼େ ଉଠିଲେ ସେନା ପାଞ୍ଚକୋଟି ।
ଛେଳିପଲ ଦେଖି ବ୍ୟାଘ୍ର ଯେସନ ଗର୍ଜଇ
ସେହିପ୍ରକାରେ ତ୍ରିଗର୍ତ୍ତ ଡାକେ ଦ୍ରାହିଦ୍ରାହି ।
ପ୍ରଥମ ସମର ସ୍ଥଳେ ଶୁରବନ୍ତ ବାହୁ
ବିରାଟଙ୍କର ସୋଦର ପଡ଼େ ରଣ ରାହୁ ।
ବେନିବୀର ପଡ଼ନ୍ତେ ସେ ଭାଜିଲେ ସଇନ୍ୟ
ଦୁଇଭାଗରେ ବିଭକ୍ତହେଲେ ସୈନ୍ୟଗଣ
ଗଦାତ୍ରିଶୂଳ ମୁଦ୍‌ଗର ଆବର ଶକତି
ଛେଲ କୁନ୍ତ ନାରାଚକୁ ନିରତେ ବିନ୍ଧନ୍ତି ।
ବେନି ଥାଟରେ ହୋଇଲା ଅତି ଗୋଳ ରଣ
ପଶିଲେ ସମରେ ଘୋଟିଲେକ ପାଞ୍ଚଯୁଣ ।
ଛେଲ କୁନ୍ତ ଅସିପତ୍ର ନାରାଚର ଘାଏ
ପଡ଼ନ୍ତି ଯୋଦ୍ଧାଏ ଏ ଘୁଞ୍ଚନ୍ତି ଏକ ପାଏ ।
ପର ଆପଣା ବୋଲିଣ ନ ପାରନ୍ତି ଚିହ୍ନି
ରୁଧିର ମାଂସେ କର୍ଦ୍ଦମ ହୋଇଲା ମେଦିନୀ ।
କେ ଶତେ ନାରାଚ କେହୁ ଶସ୍ତ୍ରେ ଶରମାରି
ମାରନ୍ତି ଏକର ଶର ଆନ ଚୋରି କରି ।
ସୂର୍ଯ୍ୟ ଅସ୍ତଗତ ହେଲେ ସନ୍ଧ୍ୟା ଅବଶେଷେ
ସେହି ପ୍ରକାରେ ଦିଅନ୍ତି ସେନାଦିଗବାସେ ।
ଉଭୟକୁଳ ସଇନି ପଡ଼ିଲେ ବହୁତ
ରକ୍ତମାଂସରେ କର୍ଦ୍ଦମ ହେଲା ଯୁଦ୍ଧ ଶତ ।
ତର୍ଜନ୍ତି ଗର୍ଜନ୍ତି କେହି ନ ଘୁଞ୍ଚନ୍ତି ରଣେ
ଅନେକ ପଦାତି ଆବୋରନ୍ତି ଏକ ଜଣେ ।
ମହୀଧର ବୃକ୍ଷହୀନ ଥିଲେ ଆଗୁଆଣି
ଆପଣେ ବିରାଟ ତାକୁ ପକାଇଲେ ହାଣି ।
ବିରାଟ ତ୍ରିଗର୍ତ୍ତ ଯୁଦ୍ଧ ହେଲା ଏହିମତେ
ଠିକ୍‌କରି ମୁଁ କହିଲି ସିନା ଶାସ୍ତ୍ରମତେ ।
ହେ ବୁଧଜନେ ନ ଘେନମୋହର ଯେଦୋଷ
ଭାବରେ ଲେଖିଲେ ଏହା ଶ୍ରୀଶାରଳାଦାସ ।

—●—

# ତ୍ରିଗର୍ତ୍ତସହ ଯୁଦ୍ଧରେ ବିରାଟର ବନ୍ଦୀ ହେବା

ଅଗସ୍ତି କହନ୍ତି ମନୁ ସାବଧାନେ ଶୁଣ
ଅପୂର୍ବ କଥନ ଏବେ କରିବି ବଖାଣ ।
ଦେବଅଂଶୁମାଳୀ ଅସ୍ତହେଲେ ଯେତେବେଳେ
ରଣଗୋଳ ହୋଇଲାକ ପୁଣି ନିଶାକାଳେ
ସେମାନଙ୍କୁ ଘେନିଣ ଉଠିଲେ ବିରାଟ
ତ୍ରିଗର୍ତ୍ତ ରାଜ୍ୟର ତୁଲେ ହେଲେ ଯାଇଭେଟ ।
ତ୍ରିଗର୍ତ୍ତ ବୋଲେ ବିରାଟ ପଡ଼ିଲୁ ମୋ ମୁଖ
ଆଜ ପାଶୋରିବି ମୁହିଁ ବନବାସ ଦୁଃଖ ।
କୀଚକକୁ ଘେନି ମୋର ଚିନ୍ତିଲୁ ପ୍ରମାଦ
ଶରଣ ରଖିଲେ ସିନା ସେ ମାନଗୋବିନ୍ଦ ।
ମୋର ଛାମୁରେ ତୋହର କିସ ଯୁଦ୍ଧଖେଳା
ବିରାଟ ବୋଲେ କୀଚକ ଅବା ସିନା ମଲା ।
ଏକର ବିରାଟ ଶତେ କୀଚକ ହୋଇଲା
ଆଜି ବଧ ହେତୁ ତୁହି ବହନରେ ପଳା ।
ମୁଁ ଜାଣଇ ତୁ ଆଉ କି ଭଲେ ଯିବୁ ବର୍ତ୍ତି
ମତ୍ସ୍ୟ ମଘଦେଶ ଜାଣ ହୋଇଲା ନିର୍ଭାତି ।
ଭୀମସେନ ଭାଳିଲା ହେ ବେନିରାଜା ଭେଟ
ଜାଣିବ ତ୍ରିଗର୍ତ୍ତ କେହ୍ନେ ଜାଣିବା ବିରାଟ ।
ବୋଇଲା ଅନ୍ୟ ରାଜାକୁ ଯୋଗ୍ୟ ମନ୍ତ୍ରୀପଣେ
କେମନ୍ତେ ତ୍ରିଗର୍ତ୍ତ କୋହ୍ନଜିଣିବି ଆପଣେ ।
ଏହିପରି ଘୁଞ୍ଚି ଭୀମ ସେ ସ୍ଥାନରୁ ଘୁଞ୍ଚି
ବିରାଟ ବାମ ପାଖରେ କାହାକୁ ନଦେଖି ।
ନକୁଳହିଁ ଘୁଞ୍ଚିଲେ ସମର ଉପେକ୍ଷି
ଏହି ପ୍ରକାରେ ବିରାଟ ଅବସ୍ଥାକୁ ଦେଖି ।
ଭୀମସେନ ନକୁଳକୁ ନ ଦେଖିଣ କତି
ଭୟେ କୋନ୍ତେ ବିରାଟଙ୍କୁ ଛାଡ଼ିଲେତଡ଼ତି ।
ତିଳେହିଁ ଯାଆନ୍ତେ ଭାଜିଗଲେ ସର୍ବସେନା
ତ୍ରିଗର୍ତ୍ତ ସଇନ୍ୟ ଯେ ନ ଯାଇ ଗଣନା ।
ତିନିପରାର୍ଦ୍ଧ ତୁରଗ ପାଞ୍ଚକୋଟି ହସ୍ତୀ
ଏକାଦଶ କୋଟି ଯୋଦ୍ଧା ଦ୍ୱିକୋଟିପଦାତି
ଏତେ ଘେନିଣ ତ୍ରିଗର୍ତ୍ତ ବେଢ଼େ ବିରାଟକୁ
ଜଣେହେଲେ କେହି ସଖା ନହେଲେ ତାହାକୁ
ସମଦଣ୍ଡ ଘେନିକରି ତ୍ରିଗର୍ତ୍ତ ନୃପତି
ଲକ୍ଷପୁରେ ବିରାଟକୁ ଘେନିଲା ଚୌକତି ।
ନ ଦେଖିଲେ ବଲ୍ଲଭକୁ ଯହୁଁ କୋନ୍ତଭଙ୍ଗେ
ନିଜ କରକୁ ନେଇଣ ତାଡ଼ନ୍ତି ଲଲାଟେ ।

ବିରାଟ ଚିନ୍ତନ୍ତି ମୁହିଁ ବୁଝି ନ ପାରିଲି
ଜଳର ପ୍ରଭା ସହିତେ ମଇତ୍ର ହୋଇଲି ।
ମୋହର ମରନ୍ତେ ଅବା ନେବ ଘେନି ରାଜ୍ୟ
ଶତ୍ରୁ ମିତ୍ର ନ ବୁଝି ମୁଁ କରିଲି କି କାର୍ଯ୍ୟ ।
ପୁଣି ବିଚାରେ କୀଚକ ଗଲା ମୋର ସଖା
ନିରେଖ ହୋଇଲି ମୋର ନାହିଁ ଆଉ ରକ୍ଷା ।
କର୍ମ ଆଦରି ବିରାଟ ବୀର ମହାଯୋଧୀ
ଜୀବନ ଆଶାକୁ ଛାଡ଼ି ଶରୀର ନିର୍ବନ୍ଧି ।
ଶଙ୍ଖ ଶ୍ୱେତ ଉତ୍ତର ଏ ବିରାଟଙ୍କ ପୁତ୍ରେ
କିଛି ବିଚାର ନ କରି ଘୁଞ୍ଚାନ୍ତି ଯେ ରଥେ ।
ଯୁଧିଷ୍ଠିର ହେଲେ ଯାଇ କୌପିନ ବିପିନେ
ସୈନ୍ୟମାନେକେ କୁଆଡ଼େ ଗଲେଅବିଚ୍ଛନେ ।
ଏକା ହୋଇଣ ବିରାଟ ବହୁ ଯୁଦ୍ଧ କଲେ
ପଞ୍ଚଷଠି ଯୋଦ୍ଧା ଏକା ବିରାଟ ମାଇଲେ ।
ନବଲକ୍ଷ ଯୋଦ୍ଧା ମିଳି ସେ ରଥକୁ ପିଟି
ଶତସହସ୍ର ଖଣ୍ଡ ଯେ ହେଲା ରଥଗୋଟି ।
ପାଦଗାମୀ ହେଲେ ତହୁଁ ବଇରାଷ୍ଟ୍ର ବଳା
କରେ ମତ୍ସ୍ୟାଧିପ ଘେନି ଖଡ଼ଗର ଫଳା ।
ବିକ୍ରମ ସିଂହ ଯେସନେ କରେ ପାଦଗତି
ତେସନେକ ଶୋଭାବନ ବିରାଟ ଦିଶନ୍ତି ।
ଛାଗପଲ୍ଲମାନ ଯେହ୍ନେ କ୍ଷେତେ ମତ୍ତବ୍ୟାଘ୍ର
ସେହି ପ୍ରକାରେ ବିରାଟ ଯୁଦ୍ଧ ଅତି ବେଗ ।
ଖଣ୍ଡାଏ ଘେନି ବିରାଟ ବେଗରେ ହାଣଇ
ଗଜ କୁମ୍ଭମାନ ବେନିଖଣ୍ଡ ଛିଡ଼ିଯାଇ ।
ସର୍ବେ ପ୍ରଶଂସା କରନ୍ତି ସାଧୁରେ ବିରାଟ
ଏକାହୋଇ ଜଣେ ମଛେ ତ୍ରିଗର୍ତ୍ତର ଥାଟ ।
ବିଂଶଶତ ହସ୍ତୀ ଘୋଡ଼ା ଯୋଦ୍ଧା ଆଦିକରି
ଏକା ହୋଇଣ ବିରାଟ ପକାଇଲେ ମାରି ।
ଘୋଟକ ମୁକୁଟ ଯୋଦ୍ଧା ନବଶତ ବୀର
ବିରାଟ ହସ୍ତେ ସମସ୍ତେ ହୋଇଲେକ ଚୂର ।
କେତନନାମେ ତ୍ରିଗର୍ତ୍ତଯୋଦ୍ଧାଧାଏଁ ବେଗେ
ବିନ୍ଧ୍ୟପର୍ବତ ସମାନ ଚଢ଼ି ଏକ ନାଗେ ।
ଜ୍ୱାଳାବଳି ଆୟୁଢେକ ବିରାଟେ ସେ ପିଟି
ତରକ ଯୁଦ୍ଧେ ବିରାଟ ତାକୁ ବେଗେଭେଟି ।
ଅସିପତ୍ର ବୁଲାଇଣ ପିଟେ ରୋଷଭରି
ସେ ଗଜର କୁମ୍ଭସ୍ଥଳ ପଡ଼େ ଛିଣ୍ଡି କରି ।
ସେ କେତନ ସେନାପତି ପଡ଼େ ମୁହଁ ମାଡ଼ି
ବିରାଟ ହାଣନ୍ତେ ତହୁଁ ଶିରଗଲା ଛିଡ଼ି ।
କେତନକୁ ବଧକରି ମତ୍ସ୍ୟେଶ୍ୱର ଖେଦି
ପାଞ୍ଚଶତେ ପଦ୍ମସୈନ୍ୟ ଘଡ଼ିକରେ ଛେଦି ।

କୋପ କରିଣ ଡାକଇ ତ୍ରିଗର୍ତ୍ତ ରାଜନ
ବଳ ମନ୍ଥନ କରୁଛି ଦେଖ ଏକଜଣ ।
ପୁଣି ଡାକ ଦିଅଇରେ ବେଗେ ବେଢ଼ିମାର
ଧର୍ମ ଅଧର୍ମ ବୋଲିରେ ବିଚାର ନକର ।
ତ୍ରିଗର୍ତ୍ତଠାରୁ ଏସନ ବାକ୍ୟ ଯହୁଁ ଶୁଣି
ବେଢ଼ିଲେ ବିରାଟେ ବଳ ପାଞ୍ଚ ଅକ୍ଷୌହିଣୀ
ଅବିରତରେ ବିନ୍ଧନ୍ତେ ବେଗେବେଗେ ଶର
ଯେସନେ ମେଘରୁ ପଡ଼େ ବରଷାର ଧାର ।
କେ ଫଳା ମାରିଲା କେହୁ ଖଡ୍ଗମୁଠା ଭାଜି
ତ୍ରିଗର୍ତ୍ତ ବୋଲେ ଯମ ପୋଛ ବିରାଟ ପାଞ୍ଜି ।
ଅଶ୍ୱ ଆରୋହଣ କରି ଡାକଇ ତ୍ରିଗର୍ତ୍ତ
ପ୍ରାଣେ ନ ମାରି ବିରାଟ ଧରରେ ଜୀବନ୍ତ ।
ରାଜାର ବଚନ ଶୁଣି କେହି ନ ମାଇଲେ
ଧର୍ମେ ତୁମ୍ଭେ ଯାହା ହୁଅ ବିରାଟ ବୋଇଲେ ।
ଅଶ୍ୱ ଏକ ଆରୋହିଣ ତ୍ରିଗର୍ତ୍ତେଶ ମଲ୍ଲ
ଆକର୍ଷିଣ ବିରାଟର ଧଇଲାକ ବାଳ ।
ପାଟରଜୁଏ ଘେନିଣ ବାନ୍ଧି ନିଜ ରଥେ
ଜୟ ଶବଦ କରିଣ ଚଳିଲେ ତ୍ରିଗର୍ତ୍ତେ ।
କୁଞ୍ଜବନ ବନେ ଧର୍ମ ପରାର୍ଦ୍ଧ ପର୍ବତେ
ସେ ସ୍ଥାନେ ଯାଇ ରହିଲେ ନୃପତି ତ୍ରିଗର୍ତ୍ତେ
ଅବସାନ୍ନ ଥାଟ ଉପବାସ ଦିନ ତିନି ।
ସୁଖେ ରାନ୍ଧଣା କରିଲେ ସକଳ ସଇନି ।
ମର୍ତ୍ତ୍ୟେ ରଙ୍ଗ ନୃତ୍ୟ ଜୟଜୟ ନାଦତୋଳି
ଗାଆନ୍ତି ଗୀତତ ଆନନ୍ଦେ ଦେଇ ହୁଳହୁଳି ।
ବିବସ୍ତ୍ର ହୋଇ ପଳାଇଗଲେ କୋନ୍ତଭଟ
ସୂପକାର ବାଜିପାଳ ପାଇଲେ ସେ ଭେଟ
ଚିହ୍ନିଲେ ବଟର ତଳେ ଦୁହେଁଛନ୍ତି ବସ
ଯୁଧିଷ୍ଠିର ମୁଖ ଚାହିଁ ବୃକୋଦର ହସି ।
କୋନ୍ତ ବୋଇଲେ ଏମନ୍ତ କଲୁ ଆରେଭୀମା
କେତେ ଉପକାର କଲେ ବିରାଟ ମହାତ୍ମା ।
ତିନିଷାଠି ପଉଟିରେ ନ ପୂରେ ତୋ ପେଟ
ନ ଜାଣୁ ବନେ ପାଇଛୁ ତୁହି ଯେତେ କଷ୍ଟ
ବାବୁ ତୋର ଅର୍ଦ୍ଧୋଳିକୁ ନ ସହନ୍ତି ନରେ
ଦୁର୍ଗତିରୁ ପାର ହେଲୁ ଏ ବିରାଟ ପୁରେ ।
କାମ ଚଡ଼ାଇ ପ୍ରକାରେ ହେଲା ତୋ ପ୍ରକୃତି
ଯେ ଅନ୍ନ ଦେଲା ତାହାର କରିଲୁ ଅନୀତି ।
ନିଷ୍କଣ୍ଟକ ରାଜ୍ୟ ସେହୁ ଭଲେ କରୁଥିଲା
ଅନାଥ ହେଲା କୀଚକ ଯହୁଁ ନାଶଗଲା ।
ତା ଶତ ଶଳାଙ୍କୁ ନାଶ କଲୁ ଅନିମନ୍ତେ
ଏବେସେବନ୍ଦୀହୋଇଲାମୋହରଦେଖନ୍ତେ ।
ବାବୁରେ ବୃକ୍ଷ ତଳରେ ସେତେବେଳେବସି
ତାହାର ଗୁଣ ସ୍ମରଣ କଲେ ଦିବାନିଶି ।
ଧିକ୍ ମୋହର ଜୀବନ ନ ଫୁଟେ ମୋ ଆଖି
ନିର୍ଲ୍ଲଜ ଆତ୍ମା ରହିଛି ରାଜା କଷ୍ଟ ଦେଖି ।
ଭୀମ ବୋଇଲେ ତୁମ୍ଭଙ୍କୁ ବୋଇଲା ବିରାଟ
ଅନ୍ୟରାଜ୍ୟେ ମନ୍ତ୍ରୀପଣେ ଯୋଗ୍ୟ କୋନ୍ତଭଟ ।
ସ୍ୱାମୀ ଏହା ଶୁଣି ମୁହିଁ ବିଚାରିଲି ହୃଦେ
ସେ ରାଗେ ଆସନ୍ତେ ଚାଳବନ୍ଦୀ ହେଲାହାଦେ
କୋନ୍ତ ବୋଇଲା ତୋହର ଆପଦ ଘେନଇ
ବିରାଟକୁ ବନ୍ଦୀରୁ ତୁ ଆଣ ମୁକୁଳାଇ ।
ବାବୁ ଯାହାର ଖାଇଲେ ତାର କାର୍ଯ୍ୟକରି
କଲା ଉପକାର ହୃଦଗତୁ ନ ପାଶୋରି ।
ଭୀମସେନ ବୋଲେ ଦେବ ସମରର ବିଦ୍ୟା
ମରଣୁ ରଖିଲେ କଥା ରହଇ ସର୍ବଦା ।
କୋନ୍ତ ବୋଇଲେ ବାବୁରେ ଏହିମତି ହେଉ
ମୋ ପୁଣ୍ୟବଳେ ବିରାଟ ବାରେ ରକ୍ଷାପାଉ ।
ବିରାଟକୁ ନ ଆଣିବୁ ଯେବେ ତୁ ଜୀବନ୍ତେ
ମୋତେ କି ପାଇବୁ ତୁହି ଆବର ଦେଖନ୍ତେ ।
ଯାଅ ବାବୁ ନାରାୟଣ ଚିନ୍ତି ହୃଦଗତେ
ସଂଗ୍ରାମ ସମ୍ପଦ ଭୋଗ ହେଉ ବାବୁ ତୋତେ ।
ଶତ୍ରୁମାରି କୁଶଳରେ ହୁଅ ବାବୁ ଉଭା
ଯେଉଁ ରୂପରେ ବିରାଟ ମୁକ୍ତ ହୁଏ ବାବା ।
ଭୀମସେନ ବୋଲାଇ ମୁଁ କରୁଛି ସମର
ଅଜ୍ଞାତବାସକୁ ପୁଣି କୋପହିଁ ନ କର ।
କୋନ୍ତ ବୋଇଲା ବାବୁରେ ଧର୍ମର ଆଶ୍ରିତେ
ପାପକୁ ଭୟ ନକର ବାବୁ କଦାଚିତେ ।
ଦଧିବାମନ ସୁମରି ଚଳ ଆରେ ଭୀମା
କୁଶଳେ ମୁକତ ହେଉ ବିରାଟ ମହାତ୍ମା ।
ଜୟ ତୁ ଦଧି ବାମନ ରୂପ ନାଥ ଆଦି
କଳ୍ପ କଳ୍ପ କୋଟି କୋଟି ପୃଥ୍ୱୀ ପାର ସାଧି ।
ଯାବତ ଯାତ୍ରା ଆଦି ସେ ସର୍ବ ଅନୁକୂଳେ
ଦଧିରୁଚିର ବଦନ ଯେ ସର୍ବମଙ୍ଗଳେ ।
ଶଙ୍ଖ ପଦ୍ମ ସର୍ବ ଶୁଭ ଯେଉଁ ମତ୍ସ୍ୟରୂପୀ
ସଦୟରେ ଯୋଗେଶ୍ୱର ସଂସାରକୁ ବ୍ୟାପି ।
ନାମ ସୁମରନ୍ତେ ସର୍ବ କାର୍ଯ୍ୟହୁଏ ସିଦ୍ଧି
ମହାବିଜ୍ଞ ଆହେ ନାଥ ପ୍ରାପ୍ତ ହେଉ ନିଧି ।
ଧୈର୍ଯ୍ୟବନ୍ତ ଗୁଣବନ୍ତ ନାମ ସୁମରନ୍ତେ
ଶାରଳା ଦାସର ଗତି ମୁକ୍ତି ହେତୁ ଅର୍ଥେ ।

## ଭୀମସେନଙ୍କର ଯୁଦ୍ଧ ଓ ବିରାଟ ରାଜାଙ୍କ ମୁକ୍ତି

ଶୁଣ ବୈବସ୍ୱତ ମନୁ କହେ ବ୍ରହ୍ମମୁନି
ନିଭ୍ରାନ୍ତିରେ ସପୁକାରେ ଆଜ୍ଞା ଶିରେ ଘେନି
ରାତ୍ର ପାଞ୍ଚଘଡ଼ି ପରେ ଅନ୍ଧାର ପ୍ରବେଶ
ଧାମନ୍ତି ଯେ ବୃକୋଦର ଯୁଦ୍ଧେ ଦେବେଝାସ
ବାମ ଡାହାଣରେ ବେନି ଶାଳବୃକ୍ଷ ଘେନି
ଯମ ଆସିଲେକି ସତେ ତେଜି ସଂଯମନୀ ।
ତାମ୍ରଗିରି ଜିଣି ଦିଶେ ଭୀମସେନ କାୟ
ବେନି ଲୋଚନ ଜିଣନ୍ତି କାଳଚକ୍ରପ୍ରାୟ ।
ସଙ୍ଗେ ଗ୍ରନ୍ଥିକାର ଛନ୍ତି ନାମ ସ୍ଥାନ ପାଳ
କରେ ଲୁହାବାଡ଼ି ଘେନି ଚଳନ୍ତି ନକୁଳ ।
ରାନ୍ଧଣା ସାରି ସଇନି ପ୍ରବେଶ ଭୋଜନେ
ଏହିସମୟେ ପ୍ରବେଶ ହେଲେ ଭୀମସେନେ ।
ରେରେକାରବୋଲିକରଘାତେଦେଲେଡାକ
ଏକା ଡାକରେ ପୂରିଲା ଏ ପୃଥିବୀଯାକ ।
ସତେ କି ମେରୁ ଉପୁଡ଼ି ପଡ଼ିଲାକ ଆସି
ନିର୍ଘାତ ବାଣକି କାହୁଁ ପଡ଼ିଲାକ ଖସି ।
ତେସନକ ଉଲ୍‌କାପାତ ଭୀମସେନ ଭାବେ
ମେଦିନୀ କମ୍ପେ ନିର୍ଘାତେ ଭୟକଲେଦେବେ ।
ପାଦ ମାରି ପଶୁଁତାର ଗଡ଼ ଗଲା ଭାଜି
ଭିତରରେ ଭୀମସେନ ପଶେ ଗଳଗାଜି ।
ଯେବଣ ମତ୍ତହସ୍ତୀରେ ବୀର ଚଢ଼ିଥିଲା ।
କରେ ଧରି ଭୀମସେନ ତାକୁ ବୁଲାଇଲା ।
ଦକ୍ଷିଣ କରରେ ବୃକ୍ଷ ବାମେ ଧରି ହସ୍ତୀ
ସଇନ୍ୟ ଉପରେ ଯାଇଁ ପିଟିଲା ମାରୁତି ।
ରଥେ ରଥ ଗଜେ ଗଜ କଚାଡ଼ଇ ଘେନି
ଏକକାଳେ ପ୍ରହାରିଲା ଧରି ଗଜ ବେନି ।
ଅଶ୍ୱକୁ ଅଶ୍ୱ ଉପରେ ବହନ କଚାଡ଼ି
ବ୍ରହ୍ମାଣ୍ଡ କମ୍ପିଲା ଭୀମସେନ ସିଂହରଡ଼ି ।
ନିଶାକାଳରେ ଉଠିଲା ତହିଁ ମହାଗୋଳ
ଏକ ପାଣ୍ଡବ ମନ୍ଥନ କଲା ମହାବଳ ।
ବିଶେଷରେ ଅନ୍ଧକାର ରଜନୀ ଅଟଇ
ଯାକୁ ଶତସିଂହ ବଳ ରଣରେ ଘୋଟଇ ।
ଦେବ ମାନବେ ଯାହାର ବଳ ଅପ୍ରମିତ
ଯାରମୂର୍ତ୍ତି ଦେଖି ଡରେ ଯମ ଦଇବତ ।
ବେଳୁବେଳ ଭୀମଙ୍କର ଜନ୍ମେ ମହାକ୍ରୋଧ
ଭୋଜନ ଶୟନ ରଣେ ଯାର ନାହିଁ ବୋଧ ।
ପରାର୍ଦ୍ଧେ କୁଞ୍ଜର ପାଞ୍ଚକ୍ଷଉଣୀ ପଦାତି
ଧର୍ମର ବଳରେ ଭୀମା ମାଇଲା ସବୁନ୍ତି ।
ଧର୍ମବଳ ଏହିପରି ଶୁଣ ନରସାଇଁ
ଏକ ପାଣ୍ଡବ ସମସ୍ତ ଦଳକୁ ମାରଇ ।
ନକୁଳ ଥିଲା ଯେ ସ୍ଥାନପାଳ ରୂପଧରି
ସେ ଅନେକ ସଇନ୍ୟଙ୍କୁ ଗୋଡ଼ାଇଣ ମାରି ।
ଅନେକ ରଥୀଏ ଥିଲେ ମହାବଳବନ୍ତା
ବଡ଼ ବଡ଼ କ୍ଷତ୍ରି ଥିଲେ ସଂଗ୍ରାମେ ସକତା ।
ଜଣେ ମଧ ସଂଗ୍ରାମ ନ କଲେ ଭୀମ ଆଗେ
ବାସହୀନ ପକ୍ଷୀ ଯେହ୍ନେ ଉଡ଼େ ଶୂନ୍ୟମାର୍ଗେ ।
ମିଥୁନମାସ ଆଦିତ୍ୟ ଯେସନେ ତରାସି
ସିଂହିକାନନ୍ଦନ ଯେହ୍ନେ ଘୋଟେ ରବି ଶଶୀ ।
ସେହିପରି ଭୀମସେନ କରୁଛନ୍ତି ଯୁଦ୍ଧ
କୋଟିଏ କୋଟିଏ ହୋଇ ହେଉଛନ୍ତି ବଧ ।
ଯେ ଯାହାର ବସ୍ତ୍ର ସବୁ ପକାଇଣ ଭୂମି
ବୋଲନ୍ତି ଯେ ରକ୍ଷାକର ରକ୍ଷାକର ସ୍ୱାମୀ ।
ନିର୍ଦ୍ଦୟ ନିରପେକ୍ଷ ଯେ ତାହାର ଶରୀର
ଶରଣଜନେ ଦ୍ୱିଗୁଣ କରଇ ପ୍ରହାର ।
ଅପାର ବଳ ଭାରୋଇମଲ୍ଲ ଯେଉଁ ବୀର
ମେଦିନୀ ସହି ନ ପାରେ ସେ ପୁରୁଷ ଭାର ।
ଏକାଦଶ ଯୁଣ ଯାଏ ପଡ଼ିଗଲେ ଥାଟ
ମୃତ ପିଣ୍ଡଘାତେ କେହୁ ନ ପାଆନ୍ତି ବାଟ ।
ରୁଧିରାକ୍ତ ଭୀମସେନ ନକୁଳଙ୍କ କାୟ
ଯେସନେ ଧନୁ ମାସରେ ଆଦିତ୍ୟ ଉଦୟ ।
ସତକ୍ଷୌଣୀ ବଳ ଘେନି ବାହିଲା ତ୍ରିଗର୍ତ୍ତ
ଚାରି ଅକ୍ଷୌହିଣୀ ପଡ଼େ ଗଜ ଅଶ୍ୱ ରଥ ।
ତିନି କ୍ଷୌଣି ବଳ ଘେନି ତ୍ରିଗର୍ତ୍ତ ପଳାଏ
ପ୍ରହାର କରିଣ ଭୀମ ପଛରେ ଗୋଡ଼ାଏ ।
ଏକପ୍ରହାରେ ପଡ଼ନ୍ତି ଦ୍ୱାବିଂଶ ତିରିଶ
ପାଦର ମନ୍ଥନ ଘାତେ କେତେ ଯାନ୍ତି ନାଶ ।
ତ୍ରିଗର୍ତ୍ତ ସଇନିକ ଯେ ସମରେ ଲେଉଟି
ଗଦା ମୁଦ୍‌ଗର ବ୍ରଜ ଆଦି ନେଇ ପିଟି ।
ଶତଶୃଙ୍ଗର ପ୍ରସାଦେ ବ୍ରଜ ଯାର ଅଙ୍ଗ
ସବୁ ଅସ୍ତ୍ରମାନ ପଡ଼ି ହୋଇଯାନ୍ତି ଭଙ୍ଗ ।
ବଜ୍ର ପଡ଼ଇ ଯାହାର ନ ତୁଟଇ କାୟ
ନାରାଚକୁ ତାହାର ବା ଅଛି କେଉଁ ଭୟ ।
ଯା ଅଙ୍ଗେ ଅସ୍ତ୍ର ପଡ଼ନ୍ତେ ଦ୍ୱିଗୁଣ ଉସତ
ଭାଜିଲେ ସଇନ ତହିଁ ହୋଇ ମହାତ୍ରସ୍ତ ।
ରକତ ବିଲେପନ ଯେ ସବୁଙ୍କର ଅଙ୍ଗ
ପଳାଇଯାନ୍ତି ସଇନି ହୋଇଣ ବିଭଙ୍ଗ ।

ରଥେ ରଥ ଗଜେ ଗଜ ଅଶ୍ୱେ ଅଶ୍ୱ ପିଟି
ଅଂସଖ୍ୟ ସୈନ୍ୟ ପଡ଼ିଲେ ତହିଁ ଭୂମି ଲୋଟି
ହସ୍ତୀମାନଙ୍କ ଶରୀରୁ ରୁଧିର ଯେ ଗଳି
ପଳାନ୍ତି ଯେ ମଉନାଗେ କୁମ୍ଭସ୍ଥଳ ଟେଳି ।
ପର ଆପଣା ବୋଲି ସେ ବାରଣ ନ ଯାଇ
ମୋହଗଲେ ନିଜେ ନିଜେ ମରାମରି ହୋଇ
ବିଶେଷରେ ଧନୁମାସପ କୃଷ୍ଣ ଚତୁର୍ଦ୍ଦଶୀ
ପ୍ରଭାତ ପର୍ଯ୍ୟନ୍ତ ଘୋର ଅନ୍ଧକାର ନିଶି ।
ବିକଳେ ପୁତ୍ର ଡାକିଲେ ନ ଶୁଣଇ ପିତା
ବୃକୋହର ରୂପ ଦେଖି ମହାବଳବନ୍ତା ।
ରଥ ଗଜ ଅଶ୍ୱ ଆଦି ଯାଉଛନ୍ତି ଭାଜି
ତାହାଙ୍କର ପଦାଘାତେ ବହୁସୈନ୍ୟ ମଜ୍ଜି ।
ପାରିଦଣ୍ଡ ପଳାବନ୍ତି ରକ୍ତର କର୍ଦ୍ଦମେ ।
ତ୍ରିଗର୍ତ୍ତ ବୋଲେ କାହିଁକି ଯିବି ଅପମାନେ ।
ସମସ୍ତ ସଇନି ତାର ମରାଇଲି ଏଥେ
ମାନଗୋବିନ୍ଦର ମୁଖ ଚାହିଁବି କେମନ୍ତେ ।
କୁଟୁମ୍ବ ମରାଇ ଯେହୁ ପ୍ରାଣୀ ଆଶ୍ରାକରେ
ନିଶ୍ଚୟ ସେ ପ୍ରାଣୀ ଜୀଇଁ ଥାଉଁ ଥାଉଁ ମରେ
କେବଣ ମହାତ୍ମା ଏହୁ ପଶିଛି ସମରେ
ସାମାନ୍ୟ ନୁହଇଁ ଏହି ଦିଗପାଳ ସୁରେ ।
ଏହାର ହସ୍ତରେ ମୁହିଁ ଯୁଦ୍ଧେ ଝାସ ଦେଲେ
ମୁକ୍ତ ହୋଇବି ବିଚାରି ତ୍ରିଗର୍ତ୍ତ ଫେରିଲେ ।
ରଥ ଲେଉଟାନ୍ତେ ଭୀମ ପ୍ରହାରିଲା ମୁଥେ
ତ୍ରିଗର୍ତ୍ତ ରଥ ଭାଜିଲା ଅଶ୍ୱର ସହିତେ ।
ବିରାଟ ତ୍ରିଗର୍ତ୍ତ ପଡ଼ିଲେକ ମହୀଭାଗେ
ତ୍ରିଗର୍ତ୍ତ ପିଟିଲା ଉଠି ଗଦାଧରି ବେଗେ ।
ଆରେ ରହ ବୋଲି ରାମ ବାମଅଙ୍ଗ ପାତେ
ଷାଠିଏ ଭାରର ଗଦା ଭାଙ୍ଗେ ତତ୍‌କ୍ଷଣାନ୍ତେ ।
ଗଦାଭଗ୍ନେ ବିଚାରଇ ତ୍ରିଗର୍ତ୍ତ ଭୂପାଳ
ଧାଇଁ ବଲ୍ଲଭ ଧଇଲା କରେ ତାର ଚୂଳ ।
ଦକ୍ଷିଣେ ତ୍ରିଗତ ବାମେ ବିରାଟର ବାଳ
ଧରି ଶୂନ୍ୟେ ନିଏ ପାଦ ନ ଲାଗଇ ତଳ ।
ପଛରେ ଗୋଡ଼ାଇଛନ୍ତି ନକୁଳ କୁମର
ଯୋଚା ମୁକୁଟ ସକଳ ଘେନିଛନ୍ତି ଭାର ।
ଯୁଧିଷ୍ଠି ବିଜେ ନିଳେନ୍ଦ୍ରୀ ନାମକ ଅରଣ୍ୟ
ଯେ ଦୁହିଙ୍କି ପାଦେ ଥୋଇ ଗମେ ଭୀମସେନ
ଭୀମ ବୋଇଲେ ହୋ କୋନ୍ତ ତୁମ୍ଭଆଜ୍ଞାପାଇ
ବିରାଟ ତ୍ରିଗର୍ତ୍ତିଙ୍କୁ ମୁଁ ଆଣିଲଇଁ ଯାଇଁ ।
ଶୁଣି ନୟନ ତରାଟି ବୋଇଲେକ କୋନ୍ତେ
ତ୍ରିଗର୍ତ୍ତକୁ ଛାଡ଼ିଦିଅ ଯାଉ ଇନ୍ଦ୍ରପ୍ରସ୍ଥେ ।
ଶୁଣ ଚଇତନ ତୁମ୍ଭେ ଯୁଧିଷ୍ଠି ମହିମା
ପରକାର୍ଯ୍ୟେ ଶତ୍ରୁନାଶ ନ କରେ ମହାତ୍ମା ।
ତେଣୁକରି ତ୍ରିଗର୍ତ୍ତଙ୍କୁ ଦେଲେ ମୁକୁଳାଇ
ପଳାଇଗଲା ତ୍ରିଗର୍ତ୍ତ ମୁଣ୍ଡେ ହାତ ଦେଇ ।
ବିରାଟ ପ୍ରଣତି କରେ ଯୁଧିଷ୍ଠିର ପାଦେ
ଜୀବଦାନ ପାଇଲି ମୁଁ ବଲ୍ଲଭ ପ୍ରସାଦେ ।
ସାଧୁ ସାଧୁ ଏ ବ୍ରାହ୍ମଣ ସୂପକାର ହୋଇ
ମହୀମଣ୍ଡଳ ଏସନ ଦେଖିଲା ତ ନାହିଁ ।
ହେ କୋନ୍ତ କୀଚକ ଥିଲା ବଡ଼ ବଳବନ୍ତ
ସେ ପୁଣି ଏହା ସମାନେ ନୋହେ ରଣଜିତ ।
ଏ କି ଇନ୍ଦ୍ର ପବନ ବା ଅଟଇ କୁବେର
କିବା ନାରାୟଣ ରୁଦ୍ର ଅବା ବୈଶ୍ୱାନର ।
ନ ଜାଣି ତୋତେ ବୋଲଇ ବଲ୍ଲଭ ବଲ୍ଲଭ
ଆଜହୁଁ ତୋର ମୋହର ବିନୟ ସ୍ୱଭାବ ।
କୋନ୍ତବୋଇଲେ କୀଚକେଯେଆସି ନାଶିଲେ
ସେହି ଗନ୍ଧର୍ବେ ଆସିଣ ଏବେ ରକ୍ଷାକଲେ ।
ହେ ବିରାଟ ସେ ଗନ୍ଧର୍ବେ ଏହା ସଙ୍ଗେ ପଶି
ଥାଟସହ ତ୍ରିଗର୍ତ୍ତର ଦର୍ପ ଦେଲେ ଧ୍ୱଂସି ।
ଅନାଥ ନକରି ରକ୍ଷାକଲ ଏତେବେଳେ
ମହତ୍ତବନ୍ତ ଗନ୍ଧର୍ବେ ସିନା ସଦାକାଳେ ।
ଦିବ୍ୟ ବଚନରେ ବୋଧହେଲେ ମତ୍ସ୍ୟରାୟେ
ନ ଜାଣି ବଣା ସେ ଦେଖି ପ୍ରତ୍ୟକ୍ଷ ମରାୟେ ।
ଜୟ ତୁ ଇକ୍ଷ୍ୱାକୁବଂଶ ରଘୁକୁଳ ରାୟ
ସାଧୁ ଅଟେ ସୂର୍ଯ୍ୟବଂଶେ ଯାହାଙ୍କ ଉଦୟ ।
ସାଧୁ ସେ ମହାତ୍ମା ଋଷ୍ୟଶୃଙ୍ଗ ମୁନିବ୍ରହ୍ମ
ତାହାଙ୍କର ମହାମନ୍ତ୍ରେ ତୁମ୍ଭର ଜନମ ।
ସାଧୁ ସାଧୁ ମହାତ୍ମାଣି ଦେବୀ କଉଶଲ୍ୟା
ଜଗତ୍ ବନ୍ଦନ ପୁରୁଷ ଗର୍ଭେ ଠାବ ଦେଲା ।
ଧନ୍ୟ କଉଶଲ୍ୟା ଦେବୀ ଧନ୍ୟ ତାଙ୍କ ଧର୍ମ
ଶ୍ରୀରାମଚନ୍ଦ୍ରଙ୍କ ମାତା ହୋଇ ଦେଲେ ଜନ୍ମ ।
ଜନକଦୁଲଣୀ ସୀତା ନାମେ ଯେଉଁ ଦେବୀ
ପରମା ଯୋଗିନୀ ରୂପା ତାହାଙ୍କୁ ଯେ ଭାବି ।
ସାଧୁ ବୋଲି କୁମ୍ଭକର୍ଣ୍ଣ ଆବର ରାବଣ
ଶ୍ରୀରାମଙ୍କ ତୁଲେ ଯୁଝି ହରାଇଲେ ପ୍ରାଣ ।
ନୀଳ ଇନ୍ଦୀବରରୂପେ ଯାର ରୂପଗୋଟି
ଶାରଳା ଦାସ ସେ ପାଦପଦ୍ମେ ସଦା ଲୋଟି ।

—●—

# ତ୍ରିଗର୍ତ୍ତର ପରାଜୟ ବାର୍ତ୍ତା ଶୁଣି ମାନଗୋବିନ୍ଦର ରଣସଜ୍ଜା

ଶୁଣ ଆହେ ମନୁରାଜା ଏଥୁ ଅନ୍ତନରେ
ଯାହାହେଲା କହୁଅଛି କଥା ପ୍ରସଙ୍ଗରେ ।
ଧନୁମାସ କୃଷ୍ଣପକ୍ଷ ପଞ୍ଚମୀର ତିଥି
ଶତଭିଷା ନକ୍ଷତ୍ର ଯେ ବାର ବୃହସ୍ପତି ।
ମାନଗୋବିନ୍ଦ ବିଜୟ କଲେ ଇନ୍ଦ୍ରପ୍ରସ୍ଥେ
ତ୍ରିଗର୍ତ୍ତ ବାରତାପାଇ ଜଣାଇଲେ ଦୂତେ ।
ଅବଧାନ ହେଉ ସ୍ୱାମୀ ମାନଚକ୍ରବର୍ତ୍ତୀ
ତ୍ରିଗର୍ତ୍ତ ଥାଟ ବାରତା ଅଟଇ ଯେ ଭୀତି ।
ଅଷ୍ଟାଦଶ ଦିବସରେ ପ୍ରବେଶିଲେ ଥାଟ
ସମଦଣ୍ଡ ଘେନି ଯୁଦ୍ଧ କରିଲା ବିରାଟ ।
ଦୁଇଦିନ ପରିଯନ୍ତେ ପଳାଇଲୁଁ ଭାଜି
ତୃତୀୟ ଦିନେ ଉଠିଲୁ ହୋଇ ଗଳଗାଜି ।
ଯୁଦ୍ଧ ହୋଇଲା ଆଦିତ୍ୟ ଅସ୍ତ ପରିଯନ୍ତେ
ବିରାଟକୁ ଛାଡ଼ି ପଳାଇଲେ ଅମନାତ୍ୟେ ।
ସ୍ୱାମୀ ଯେତେ ଯୁଦ୍ଧକଲା ବିରାଟହିଁ ଏକା
ଆମ୍ଭେ ଅକଳିତ ବଳ ହୋଇଲୁ ତାଟକ ।
ବେଢ଼ି ତ୍ରିଗର୍ତ୍ତ ବାନ୍ଧିଲା ତାହାକୁହିଁ ରଥେ
ତହିଁ ଆସି ବିଜେକଲୁ ରମ୍ୟକ ପର୍ବତେ ।
ବିରାଟ ରାଜା ସଇନି ପଳାଇଲେ ଛାଡ଼ି
ବସିବ ତ୍ରିଗର୍ତ୍ତ ଆରଦିନ ଦେଶ ମାଡ଼ି ।
ଗୋଧନପଲ ଆଣିବେ ଆମ୍ଭର ସଇନି
ଏହି ବାରତାକୁ ଆମ୍ଭେ ଆସିଅଛୁ ଘେନି ।
ଶୁଣି ସାନନ୍ଦ ହୋଇଲେ ତହୁଁ ଗଉରବେ
ପଞ୍ଚକଟକେ ଉତ୍ସବ କରାଇଲେ ଜବେ ।
ଦେଶାଉରମାନଙ୍କୁ ସେ ଦେଲେ ଉପହାର
କିଏ ସେ ମଣିବ ତାହା ନାହିଁ ପାରାବାର ।
ବିଜେ କୁରୁରାଣ ଧନୁଷଷ୍ଠୀ ଗୁରୁବାର
ପୁଣି ବାର୍ତ୍ତା ଜଣାଇଲେ ଆସି ଆନ ଚାର ।
ପ୍ରଥମ ଯୁଦ୍ଧରେ ସ୍ୱାମୀ ଜିଣିଲେ ବିରାଟ
ଜୟକରି ବାହୁଡ଼ିଣ ଆସେ ଆମ୍ଭ ଥାଟ ।
ସେ ରାତ୍ରେ ରନ୍ଧନ ପାନ କରିଲୁ ସମସ୍ତେ
ଉପବାସ ଥିଲୁ ତିନି ଦିବସ ପର୍ଯ୍ୟନ୍ତେ ।
ରାତ୍ର ହୋଇଅଛି ଦେଢ଼ ପ୍ରହର ପ୍ରବେଶ
ବନ୍ଧନେ ଅଛି ବିରାଟ ତ୍ରିଗର୍ତ୍ତର ପାଶ ।
ବଲ୍ଲଭ ପଣ୍ଡା ନାମରେ ଏକ ଦ୍ୱିଜ ଆସେ
ଆମ୍ଭ ଥାଟେ ରାତ୍ରକାଳେ ସେହୁ ଆସି ପଶେ ।
ସ୍ୱାମୀ ଏକା ବ୍ରାହ୍ମଣ ସେ ବହୁ ଯୁଦ୍ଧ କଲା
ଦେବେ ଦାନବେ ଆମ୍ଭର ଅଛି କେ ଦେଖିଲା ।
ଏକା ଜଣଣେ କ୍ଷେପଇ ଦ୍ୱାଦଶ ଯୋଜନ
ମହାବାତ ଜିଣି ତାର ଅଟଇ ଗହନ ।
ଚାରିଅକ୍ଷୌହିଣୀ ବଳ ରାତ୍ରେକ ମାଇଲା
ଯାଇଣ ରଥେ ତ୍ରିଗର୍ତ୍ତ ରାଜାକୁ ଭେଟିଲା ।
ମହାନିଶାକାଳରେ ସେ ନ କଲା ବାରଣ
ମୁଥେକ ତ୍ରିଗର୍ତ୍ତ ରଥ କରିଦେଲା ଚୂର୍ଣ୍ଣ ।
ବିରାଟ ତ୍ରିଗର୍ତ୍ତ ଏକ ଦୁଇଙ୍କର କେଶ
ଧରିଣ ନେଲା ବ୍ରାହ୍ମଣ ବହୁ ଦୂରଦେଶ ।
ଶୁଣି ଭୀଷ୍ମ ଦ୍ରୋଣ ଦୁହେଁ କରତାଳି ଦେଇ
ହସି ଉଠିଲେ ବିଦୁର ମୁଖକୁ ଅନାଇଁ ।
ସମସ୍ତେ ଏଥର କ୍ଷୀର ଖାଇବା ନିରତେ
ଦୁଇପଦ୍ମ ଗାଈ ଆଣୁଅଛନ୍ତି ତ୍ରିଗର୍ତ୍ତେ ।
ଭୀଷ୍ମ ବୋଇଲେହେ ଦ୍ରୋଣ ବହୁତ ଏସାଧ
ତ୍ରିଗର୍ତ୍ତ ପ୍ରସାଦେ ଏବେ ଖାଇବା ଯେ ଦୁଧ ।
ଭଗ୍ନବଳକୁ ଘେନିଣ ତ୍ରିଗର୍ତ୍ତ ଯେ ଆସେ
ଧନୁ ତ୍ରୟୋଦଶୀ ଦିନ ହସ୍ତିନାରେ ପଶେ ।
ସାତ ଅକ୍ଷୌହିଣୀ ବଳ ଘେନି ଯାଇଥିଲା
ପାଞ୍ଚଅକ୍ଷୌହିଣୀ ବଳ ସମରେ ପଡ଼ିଲା ।
ବର୍ତ୍ତିଣ ଅଇଲେ ଯେତେ ସର୍ବହେଲେ ଛୋଟି
ରଥେ ବାଡ଼େ ବଢ଼ ନାହିଁ ପଦାତିଏ ଫୁଟି ।
ଥାଟଯାକ ସମସ୍ତଙ୍କ ଦେହ ରକ୍ତମୟ
କ୍ଷତ ବିକ୍ଷତ ନ ହୋଇ ନାହିଁ କାହା କାୟ ।
ଅଙ୍ଗ ପ୍ରତ୍ୟଙ୍ଗ ଚାଳି ନ ପାରନ୍ତି ବିକଳେ
ତ୍ରିଗର୍ତ୍ତ ପ୍ରବେଶ ହେଲେ ଆସ୍ଥାନର ତଳେ ।
ଦେଖି ପଚାରିଲେ ତାଙ୍କୁ ସକଳ ସଇନି
କେବଣ ଅର୍ଥେ ତ୍ରିଗର୍ତ୍ତ ଅଛ ପ୍ରାଣଘେନି ।
ଆସ୍ଥାନ ତଳେ ତ୍ରିଗର୍ତ୍ତ ହୋଇଣ ପ୍ରଣମି
ବୋଲେ ସଂଗ୍ରାମର କଥା ଶୁଣ ଦେବ ସ୍ୱାମୀ ।
ପ୍ରଥମ ଯୁଦ୍ଧରେ ଦେବ ଜିଣିଲା ବିରାଟ
ଅନେକ ସଇନି ମାରି ଭଗ୍ନକଲା ଥାଟ ।
ବିରାଟକୁ ବାନ୍ଧିଣ ମୁଁ ପଳାଇଲି ରଥେ
ଘେନିଣ ଅଇଲି ବିଂଶ ଯୋଜନ ପର୍ଯ୍ୟନ୍ତେ ।
ତିନିଦିବସ ପର୍ଯ୍ୟନ୍ତେ ଘୋର ଯୁଦ୍ଧ ହେଲା
ସଇନି ଉପବାସରେ ଅନ୍ତ ନ ମିଳିଲା ।
ଯେତେବେଳେ ବନ୍ଦୀକରି ଆଣିଲି ବିରାଟ
ସୁସ୍ଥ ପାଇଣ ରନ୍ଧନ କଲେ ମୋରେ ଥାଟ ।

ରନ୍ଧନ କରିଣ କେବା କରୁଅଛି ସ୍ନାନ
ଥୋକାଏ ସଇନି ଦେବ କରନ୍ତି ଭୋଜନ ।
ସ୍ୱାମୀ ବଲ୍ଲଭ ନାମେଣ ଏକଇ ବ୍ରାହ୍ମଣ
ରାତ୍ରରେ ପ୍ରବେଶ ହେଲା ଥାଟରେ ଆସିଣ ।
ସ୍ୱାମୀ ଏକ ବ୍ରାହ୍ମଣ ସେ ହୋଇ ବିଶ୍ୱରୂପୀ
ଆସନ୍ତେ ମହାପର୍ବତ ସର୍ବେ ଗଲେ ବସି ।
ଏକଜଣେ ହୋଇଣ ଯେ ମନ୍ଥିଲା ମୋଥାଟ
ପଳାଇଯିବାକୁ ମୁହିଁ ନ ପାଇଲି ବାଟ ।
ଅନେକ ଅନେକ ଅସ୍ତ୍ର ପ୍ରହାରିଲୁ ଧରି
ତାହାର ଦେହରେ ପଡ଼ି ହୋଇଲେକ ଚୂରି
କହିବାକୁ ଅସମ୍ଭବ ତା ମହିମା ଗୁରୁ
କି ଅବା ଉପୁଡ଼ି ଆପେ ଅଇଲାକ ଗୁରୁ ।
ବିରାଟ ଓ ମୋର ଦୁହିଁଙ୍କର କେଶଧରି
ଶୂନ୍ୟେ ନେଲା ପବନହୁଁ ଅତିବେଗ କରି ।
ଦେବ କୋନ୍ତପଣ୍ଡା ବୋଲି ଏକଦ୍ୱିଜବର
ଦୁହିଁଙ୍କୁ ଦେଲା ନେଇଣ ତାହାଙ୍କ ଛାମୁର ।
ଆମ୍ଭ କେଶ ଧରି ତାର ଚରଣେ ଲୋଟାଇ
ଆପଣେ ପଡ଼ିଲା ଦେବ ଦଣ୍ଡବତ ହୋଇ ।
ବଡ଼ ମହତ୍ତ୍ୱ ଅଟନ୍ତି ସେ କୋନ୍ତ ବ୍ରାହ୍ମଣ
ମୋତେ ବନ୍ଦୀରୁ ଛଡ଼ାଇ ଦେଲେ ତତକ୍ଷଣ
ସେ ବ୍ରାହ୍ମଣ ଆଜ୍ଞା ଯେବେ ଦିଅନ୍ତା କିଞ୍ଚିତେ
ଶରୀର ଧୂଳି ହୁଅନ୍ତା ତାର ଏକମୁଥେ ।
କହନ୍ତି ବିଜ୍ଞେ ବିରାଟ ଦେଶର ଯେ କଥା
ସାଧୁ ସେ ମତ୍ସ୍ୟଦେଶରେ ଅଟେ ମହାରଥା
ବହେ କାବେରୀ ଗଣ୍ଡୁକୀ ପୁଣ କାଞ୍ଚନଦୀ
ଉତ୍ତର ଦକ୍ଷିଣ ପୁଣି ପଶ୍ଚିମ କୁ ଭେଦି ।
ଦୁହାଁଳ ଯେ ଦୁଇପଦ୍ମ ବାରଲକ୍ଷ ଗାଈ
ଅଣ୍ଡିରା ବତ୍ସା ଲକ୍ଷେକ ବେନଖର୍ବ ମାଈ ।
ହେ ସ୍ୱାମୀ ବତିଶଲକ୍ଷ ଅଟନ୍ତି ଗୋପାଳ
ତହିଁ ମଧରେ ଯେ ମୁଖ୍ୟ ଅଟେ ତନ୍ତ୍ରୀପାଳ ।
ହେ ସ୍ୱାମୀ ପୃଥୁନା ବୋଲି ଅଛି ଏକ ଗାଈ
କପିଳ ଅଂଶରେ ଦେବ ଉତପତ୍ତି ସେହି ।
ଏକଗାଈ କ୍ଷୀର ଦିଏ ଭାର ଶତଲକ୍ଷେ
ଗୁପତ ନୁହଇ ତାହା ଦେଖିଲି ପ୍ରତ୍ୟକ୍ଷେ ।
ପ୍ରଥମ ଚିର ଦୁହଁନ୍ତେ ଭୂମି ଯାଏ ଭେଦି
ସାତଘଡ଼ି ପରିଯନ୍ତେ ବହେ କ୍ଷୀର ନଦୀ ।
ଏ ଅପୂର୍ବ ବଚନକୁ ଶୁଣି କଉରବେ
ବିଚାରନ୍ତି ଏ ସମ୍ପଦ ବିରାଟେ ସମ୍ଭବେ ।
ମାନଗୋବିନ୍ଦ ବୋଇଲେ ଶକୁନିକୁ ଚାହିଁ
ମଘ ମତ୍ସ୍ୟ ଦେଶଯାଏ ଯିବା ଦଣ୍ଡବାହି ।

ବିରାଟେ ଜିଣି ତ୍ରିଗର୍ତ୍ତ ରାଜ୍ୟ ନେଇ ଦେବା
ଗୋଧନପଲ ହସ୍ତିନା ଅଡ଼ାଇ ଆଣିବା ।
ଭୀଷ୍ମ ବୋଇଲେ ସେଆଡ଼େ ପ୍ରୟୋଜନ କିସ
ପର ସମ୍ପଦ ଇଚ୍ଛିଲେ ଧର୍ମ ହୁଏ ନାଶ ।
ଗୋରୁ ଅପହରଣରେ ଦୋଷ ଅପ୍ରମିତ
ଧର୍ମଶାସ୍ତ୍ରମାନଙ୍କରେ ଅଛଇ ଉକତ ।
ଶକୁନି ବୋଇଲେ ତୁମ୍ଭେ ଜାଣନାହିଁ କିଛି
ଆମ୍ଭ ସୈନ୍ୟ ବଧକଲା ସେହୁ ବାଛି ବାଛି ।
ଯେବେ ଶରୀରେ ଥିବ କ୍ଷତ୍ରିୟଙ୍କ ଲକ୍ଷଣ
ମାନହୀନ କର୍ତ୍ତିବାର ଏ କିସ କାରଣ ।
ଦୁର୍ଯ୍ୟୋଧନକୁ ତ୍ରିଗର୍ତ୍ତ ଦୃଢ଼େ ଆଶାକଲା
ରାଜ୍ୟହିଁ ନ ପାଇ ପୁଣ ସୈନ୍ୟ ନାଶଗଲା ।
ମାନଗୋବିନ୍ଦ ଶରଣଜନ ଦୁଃଖେ ଦୁଃଖୀ
ସେ ଅନାଥଜନ ଦୁଃଖ ପାରିବ କି ଦେଖି ।
ଏପରି ବିଚାରୁ ହେଲା ଆହ୍ନିକର ବେଳ
ଆସ୍ଥାନ ମଉଳନ୍ତେ ଯେ ଗମିଲେ ସକଳ ।
ଭୀଷ୍ମ ଦ୍ରୋଣ ରହିଲେ ଯେ ଏକାନ୍ତଗୋପନେ
ବିଚାର କର ହେ ଭରଦ୍ୱାଜଙ୍କ ନନ୍ଦନେ ।
ବିଦୁର ବୋଲେ ପଡ଼ିଲୁ ଉଭୟ ସଙ୍କଟେ
ନିଶ୍ଚୟ ଜାଣିଲୁ ପୋଏ ରହିଲେ ବିରାଟେ ।
ଅନ୍ନ ନିମନ୍ତେ ପାଣ୍ଡବ ବୀର ବୃକୋଦର
ବଲ୍ଲଭ ନାମରେ ଯେହୁ ହେଲା ସୂପକାର ।
ଦୋହରା ପରସନ୍ନରେ ତାର ବାଳବୃଦ୍ଧ
ଜାଣେ ଗୌରୀ ସୌରୀ ନଳ ରାନ୍ଧଣା ତ୍ରିବିଧ ।
ଦ୍ରୋଣ ବୋଇଲେ ବିରାଟ ଯହୁଁ ବନ୍ଦୀହେଲା
ସହି ନ ପାରିଣ ଭୀମ ସମରେ ପଶିଲା ।
ସୈନ୍ୟମାରି ବିରାଟକୁ ତ୍ରିଗର୍ତ୍ତକୁ ଧରି
ଯୁଧିଷ୍ଠି ଆଗେ ପକାଏ ନେଇ କୋପକରି ।
ବଢ଼ାଇ ମହତ୍ତ୍ୱବନ୍ତ ଧର୍ମଙ୍କର ସୁତ
ଏଡ଼େ କକ୍ଷାବନ୍ତ ଜନେ ନୋହିଲା ବିକୃତ ।
ଭୀଷ୍ମ ବୋଇଲେ ଅଦୋଷେ ନମାରେବେଇରୀ
ଏଣୁକରି ତ୍ରିଗର୍ତ୍ତକୁ ଦେଲେ ପାରିକରି ।
କୁନ୍ତିଦେବୀ ଅଟନ୍ତି ଯେ ତାହାଙ୍କର ମାତ
କୋନ୍ତଭଟ ନାମେ ତେଣୁ ହୋଇଲେ ବିଦିତ ।
ଦ୍ରୋଣ ମୁଖ ଚାହିଁ ପୁଣି ଗାଙ୍ଗେୟ ଯେ ପୁଛି
ଅଜ୍ଞାତବାସ ତାଙ୍କର କେତେ ଦିନ ଅଛି ।
ଦ୍ରୋଣ ବୋଲେ ଏକାଦଶ ମାସ ଏବେଗଲା
ବରଷକୁ ନବଦିନ ପ୍ରବେଶ ହୋଇଲା ।
ଭୀଷ୍ମ ବୋଇଲେ ଗୋପନ କର ଏହି କଥା
ମାନଗୋବିନ୍ଦ ନ ଜାଣୁ ଏ ସବୁ ବାରତା ।

ବିଦୁର ବୋଇଲେ ଯିବା ଦୁର୍ଯ୍ୟୋଧନଗଲେ
ପୁଅମାନଙ୍କୁ ଦେଖିବା ଅଛନ୍ତି ନା ଭଲେ ।
ଅଛ ଅଛ କରିଣ ଯେ ଚଳାଇବା ଥାଟ
ଅଜ୍ଞାତବାସ ଗୁପତ ହୋଇଲା ନିକଟ ।
ଅଜ୍ଞାତବାସର ଦିନ ସମାପତ ହେଲେ
ବାହୁଡ଼ି ଆସିବା କାଳେ ଆଣିବା ନା ତୁଲେ
ଏହିପରି ବିଚାରନ୍ତେ ପ୍ରବେଶ ରଜନୀ
କର୍ଣ୍ଣ ଶକୁନି ଯେ ସଜ କରିଲେ ସଇନି ।
ଅଷ୍ଟାଦଶ ଅକ୍ଷୌହିଣୀ ସମଦଣ୍ଡ ସାଜି
ସାଜନ୍ତି ରଥ କୁଞ୍ଜର ମହାମତ୍ତ ବାଜୀ ।
ନବ ନବପରାର୍ଦ୍ଧ ଯେ ରଥ ହୟ ମତ୍ତ
ଦନ୍ତା ଦନ୍ତୀ ହାତୀ ତହିଁ ନାହିଁ ଯେ ତଦନ୍ତ ।
ମହାବାରଣ ତୁରଗ ପବନହୁଁ ଖର
ଆକାଶକୁ କ୍ଷେପ ଯିବା କିଞ୍ଚିତ ମାତର ।
ଅଷ୍ଟରତ୍ନ କଣୟରେ ରଥ ଗଜ ମଣ୍ଡ
ରଥେ ଥୋଇଲେ ନାରାଚ ଚକ୍ର ଯେ ଭୂଷଣ୍ଡ ।
କୃପାଚାର୍ଯ୍ୟ ଦ୍ରୋଣାଚାର୍ଯ୍ୟ ଶଲ୍ୟଙ୍କର ସଙ୍ଗ
ବିଂଶକୋଟି ରଥ ତ୍ରିଂଶକୋଟି ଯେରଥାଙ୍ଗ ।
ପଞ୍ଚଦଶ ପରାର୍ଦ୍ଧ ଯେ ଚଳେ ତୁରଙ୍ଗମ
ସମସ୍ତେ ଅଟନ୍ତି ଉଚ୍ଚୈଶ୍ରବା ଅଶ୍ୱ ସମ ।
ବେନିଲକ୍ଷ ଆଲମ୍ବ ଯେ ଅର୍ବୁଦେକ ହସ୍ତୀ
ପଞ୍ଚାଶତ ଏକଲକ୍ଷ ଜାଣ ସେନାପତି ।
ଚୋଖାର ତାଳୁଆ ରାଟ ପୁଣି କୃଷ୍ଣବର୍ଣ୍ଣ
ମୟୂରଝାଲ ସମସ୍ତ ଦିଶେ ମେଘବର୍ଣ୍ଣ ।
ଡାହାଣେ କର୍ଣ୍ଣ ଭାରୋଇମଲ ମହାରଥୀ
ତାହାସଙ୍ଗେ ଛନ୍ତି ତିନି ଅର୍ବୁଦ ଯେ ରଥୀ ।
ପାଞ୍ଚ ପାଞ୍ଚ ଅର୍ବୁଦ ଯେ ଆଉ ଅଶ୍ୱହସ୍ତୀ
ରଙ୍ଗବର୍ଣ୍ଣ ଅଶ୍ୱରଥ ପତାକା ଦିଶନ୍ତି ।
ଆଦିତ୍ୟ କିରଣ ଜିଣି ଦିଶନ୍ତି ପ୍ରତ୍ୟକ୍ଷ
ଅମରବୃନ୍ଦ ଘେନି କି ବିଜେ ସହସ୍ରାକ୍ଷ ।
ବାମରେ ଶକୁନି ଭୁରିଶ୍ରବା ଅଶ୍ୱଥାମା
ମାନବରେ ଅଗୋଚର ଯାହାର ମହିମା ।
ଶ୍ୱେତବର୍ଣ୍ଣ ରଥେ ଶ୍ୱେତ ପତାକାର ବର୍ଣ୍ଣ
ଆଲମ୍ବ ଶ୍ୱେତଚାମର ଶ୍ୱେତଚକ୍ର ଚିହ୍ନ ।
ଉଡ଼ନ୍ତି ଶ୍ୱେତଚାମର ତିନି ତିନି ଲକ୍ଷ
ଛାମୁରେ ଶଙ୍ଖ ସ୍ଫୁରଇ ତିନି ଯେ ମେବଛ
ଭୀଷ୍ମ ଦ୍ରୋଣ ମହାରଥୀ ବେନି ଥାଟ ମଧେ
କୁଞ୍ଜର ଦଶ ପରାର୍ଦ୍ଧ ରଥ ଏହା ଅଧେ ।
ଆଗରେ ଅଶ୍ୱସଇନି ଏଗାର କ୍ଷଉଣୀ
ଥାଟ ବେଢ଼ି ଆବୋରିଲେ ସକଳ ସଇନି ।

ମଧ୍ୟରେ ଯେ ବିଜେ ମାନଚକ୍ରବର୍ତ୍ତୀ ରଥ
କଣୟ ରଥ ସେ ଅଷ୍ଟରତନେ ଜଡ଼ିତ ।
ଶୁଦ୍ଧ ସ୍ଫଟିକ ଛାଡ଼ିଣ ସିଂହଲାଞ୍ଛ ଚିହ୍ନ
ଜୟନ୍ତକ ସାରଥି ଯେ ମଣ୍ଡଇ ବିମାନ ।
ବାମ ଡାହାଣରେ କର୍ଣ୍ଣ ଭୀଷ୍ମ ବେନିସେନା
ବିଶ୍ୱାସରେ ଖଟିଥାନ୍ତି ପୁଣ ମହାଜେନା ।
ନିର୍ଭୟେ ସେ ରାଜା କାମପାଳଙ୍କ ପ୍ରସାଦେ
ସମଦଣ୍ଡ ଚଳାଇଲେ ସେ ମାନଗୋବିନ୍ଦେ ।
ବେଦାଧ୍ୟୟନ କରନ୍ତି ଦିବ୍ୟ ଜନମାନେ
ଡାକନ୍ତି ସେ ଗଣ୍ଡପୁତ୍ରେ ବାସର ବିଧାନେ ।
ଶୁଭ ଅନୁକୂଳକୁ ଯେ କଲେ ଗ୍ରହକାରୀ
ମଙ୍ଗଳରେ ହୁଳହୁଳି ଦିଅନ୍ତି କୁମାରୀ ।
ମକର ଶୁକଳପକ୍ଷ ଦ୍ୱିତୀୟାର ତିଥି
ପୁଷ୍ୟାନକ୍ଷତ୍ରକୁ ପୁଣ ବାର ବୃହସ୍ପତି ।
ବାଳବନାମେ କରଣ ବ୍ରହ୍ମନାମେ ଯୋଗ
ମକର ସଙ୍କରାନ୍ତିକୁ ତିନିଦିନ ଭୋଗ ।
ସେଦିନ ଦଣ୍ଡ ବାହିଲେ ମାନଚକ୍ରବର୍ତ୍ତୀ
ମହୀଦେଶୁ ବିଜେ ରାଜ ପଶ୍ଚିମ ମୂରତି ।
ବିଦୁରେ ବିଜେ କରିଲେ ପାରିଦଣ୍ଡ ଘେନି
ଭଣ୍ଡାରରୁ ବହୁଅଛି ଅନେକ ସଇନି ।
ବହୁତ ବଳଦ ପୁଣି ମହିଷ ଲଦନେ
ବହୁତ ସରଞ୍ଜାମକୁ ବହିନେଲେ ଜନେ ।
ଅନେକ ରତ୍ନଭଣ୍ଡାର ବିଦୁରଙ୍କ ମୂଳେ
ବାଣ୍ଟି ଦିଅନ୍ତି ଯାହାକୁ ଯେବେ ଆଜ୍ଞା ମିଳେ ।
କାହାକୁ ତାଡ଼ ଦିଅନ୍ତି କାହାକୁ ତୋଡ଼ର
ଆପେ ସ୍ୱହସ୍ତରେ ବାଣ୍ଟି ଦିଅନ୍ତି ବିଦୁର ।
ଦ୍ୱିତୀୟାର ଦିନେ ଉଦେ ବେଳକାଳଯୋଗ୍ନି
ମାହେଶ୍ୱରୀ ଉତ୍ତରରେ ଶୁଭ ଯେ ବାହିନୀ ।
ବିଦୁରେ ବୋଇଲେ ଶୁଣ ମାନଚକ୍ରବର୍ତ୍ତୀ
ବଡ଼ ପ୍ରତାପୀ ତୁମ୍ଭେତ ଅଟ ମହାକ୍ଷତ୍ରୀ ।
ମାନେ ମାନଗୋବିନ୍ଦ ପନ୍ନଗ ନାରାୟଣ
ଅନୁଦିନେ ବରବେଶ ଅଂସଖ୍ୟ ପ୍ରମାଣ ।
ବାବୁରେ ବିଷ୍ଣୁ ପ୍ରତିମା ଦେବ ବିପ୍ର ଆଦି
ତାହାକୁ ତ ନମସ୍କାର ନକର ସମ୍ପାଦି ।
ଚୌରାଶୀ ଲକ୍ଷଣ ଚଉଷଠୀ ଗୁଣବନ୍ତା
ଅଭୟ ଶୁରବନ୍ତ ଯେ କ୍ଷତ୍ରି ଜଗଜ୍ଜିତା ।
ଶଙ୍ଖନିଧି ପଦ୍ମନିଧି ତୁମ୍ଭ କରତଳେ
ପାଷାଣ ରତ୍ନ ହୁଅଇ କର ଲଗାଇଲେ ।
ଚାଲନ୍ତେ ଅବେଷ୍ଟା ପଦ୍ମ ଫୁଲ ପାଦେ ଫୁଟି
ନାହିଁ ନ ଉପୁଜିବ ହେ ଏହି ନବସୃଷ୍ଟି ।

ଧାର୍ମିକ ବିବେକବନ୍ତ କକ୍ଷା ଜଗନ୍ନେଠି
ତ୍ରୈଲୋକ୍ୟ ତ୍ରାଣଇ ଶୁଣି ତୁମ୍ଭ ନାମଗୋଟି ।
ଭୂତ ଭବିଷ୍ୟତ ତୁମ୍ଭେ ସର୍ବ ବୁଝିଅଛ
କଥାଏ କହିବି ବାବୁ ହୁଅଇ ସଙ୍କୋଚ ।
ଦରହସିତେ ବୋଇଲେ ମାନଚକ୍ରବର୍ତ୍ତୀ
କହ ଖୋଲି ତାତ ମୋତେ ନ ରଖିଣ ଭୀତି ।
ବିଦୁର ବୋଇଲେ ଶୁଣ ବିରାଟର କଥା
ଆମ୍ଭେ କହିଛୁ ତୁମ୍ଭଙ୍କୁ ଯଥାର୍ଥ ବାରତା ।
କୀଚକ ମାରିଣ ପଞ୍ଚଗନ୍ଧର୍ବ ଯେ ବୀରେ
ରହିଅଛନ୍ତି ସେମାନେ ବିରାଟ ରାଜ୍ୟରେ ।
ସେହି ଗନ୍ଧର୍ବେ ମାଇଲେ ତ୍ରିଗର୍ତ୍ତର ଥାଟ
ତାହାଙ୍କର ଥିଲେ ବଶ ନୁହଇ ବିରାଟ ।
ଅନିମିତ୍ତ ସମରରେ ଦଣ୍ଡ ଘେନିଗଲେ
ଗନ୍ଧର୍ବେ ଯୁଝିବେ ନିଷ୍ଠେ ଆମ୍ଭସୈନ୍ୟତୁଲେ
ବିଦୁର କହିଲେ ଯେଉଁ ହିତକର ବାଣୀ
ମତ୍ତଗର୍ବେ କଉରବେ କିଛି ହିଁ ନ ଶୁଣି ।
ଅସୁର ସଭାରେ ତୁଚ୍ଛ ଯେହ୍ନେ ଧର୍ମ କଥା
ବଧିର ଶୁଣିବ କାହୁଁ ସୁମଧୁର ଗୀତା ।
ବିପଦକାଳେ କି ହୁଏ କେବେ ସମବୁଦ୍ଧି
ବାଳକ ବିବାହ କଲେ ପାରିବ କି ସାଧି ।
ବନ୍ଦଇ ଶ୍ରୀ ନାରାୟଣ ଜନ ଉଦ୍ଧାରଣ
ଭକତବତ୍ସଳ ଯୋଗୀଜନଙ୍କର ଧ୍ୟାନ ।
ଦୟାନିଧି ନାମ ପୁଣି ଅଟଇ ଯାହାର
ସେ ଦରିଦ୍ର ଜନଙ୍କର ଅଟଇ ସୋଦର ।
ଅରକ୍ଷୀତ ଲୋକଙ୍କର ଅଟୁ ତୁହି ବନ୍ଧୁ
ତେଣୁ ଯେ ତୁମ୍ଭର ନାମ ଅଟେ ଦୀନବନ୍ଧୁ
ପତିତପାବନ ବାନା ଜୟ ତୁ ଶ୍ରୀଧର
ଶାରଳା ଦାସକୁ ତୁହି ବାରେ ରକ୍ଷାକର ।

—●—

## ବିରାଟ ବୀରବାହୁସହିତ ଯୁଦ୍ଧେ ଗମନ, ଗୋଧନ ହରଣ ନିମନ୍ତେ କୁରୁସୈନ୍ୟ ବିରାଟରେ ପ୍ରବେଶ ଓ ପୃଥୁନା ସହଦେବ ସହିତ ଯୁଦ୍ଧ ।

ବୈବସ୍ୱତ ମନୁ ପୁଚ୍ଛାକଲେ ଅଗସ୍ତିଙ୍କି
ବିରାଟ ତେଣେ କି କଲେ ଘେନି ଯୁଧିଷ୍ଠିଙ୍କି
କହନ୍ତି ଅଗସ୍ତି ଶୁଣ ସେହି କଥାଗୋଟି
ବିରାଟକୁ ସାହାହୋଇ ରଖିଲେ ଯୁଧିଷ୍ଠି ।
ପିଟିଣ ତ୍ରିଗର୍ତ୍ତ ତହୁଁ ଏଣେ ପଳାଇଲା
ବିରାଟ ପାଣ୍ଡବେ ଘେନି ରାଜ୍ୟେ ପ୍ରବେଶିଲା ।
ସୈନ୍ୟମାନେ ପ୍ରବେଶିଲେ ଆପଣା ରାଜ୍ୟରେ
ଅପୂର୍ବ ରହସ୍ୟ ଶୁଣ ଏଥୁ ଅନନ୍ତରେ ।
କାଳନେମି ବୋଲିକରି ଏକ ରାଜା ଥିଲା
କୀଚକ ତାହାଙ୍କୁ ବଳେ ସଂହାର କରିଲା ।
ସେ କାଳନେମିର ପୁତ୍ର ନାମ ବୀରବାହୁ
ପିତାର ନିଧନ ଦେଖି ପଳାଇଲା ସେହୁ ।
କୀଚକର ଭୟେ ସେହୁ ନିଜ ରାଜ୍ୟ ଛାଡ଼ି
କଚ୍ଛଦେଶ ବଳାତ୍କାରେ ବସିଲାକ ମାଡ଼ି ।
ମଘଦେଶର ନୃପତି ନାମ ଧର୍ମାଗତ
ବଳେ କୀଚକ ତାହାକୁ ପ୍ରାଣେ କଲା ହତ ।
ତାହାର ପୁତ୍ର ତ୍ରିଗର୍ତ୍ତ ପଳାଇଲା ତ୍ରସ୍ତେ .
ପ୍ରାଣବିକଳେ ପଶିଲା ଯାଇ ଇନ୍ଦ୍ରପ୍ରସ୍ଥେ ।
ଦଣ୍ଡ ଘେନି ଆସି ସେହୁ ହେଲା ପରାଜୟ
ତାର ନିମନ୍ତେ ବାନ୍ଧିଲେ କୁଞ୍ଜରାଗଳରାୟ ।
ଏ ଅନ୍ତେ ତ୍ରିଗର୍ତ୍ତନଗ୍ରେ ଉତ୍ସବ କରାଇ
କଚ୍ଛ ଦେଶ ରାଜା ବୀରବାହୁ ତେଣେ ବାହି
ସାନନ୍ଦ ହୋଇ ବିରାଟ ଆସ୍ଥାନରେ ବିଜେ
ଦେଶାଉର ଜଣାଇଲା ଶୁଣ ଦେବରାଜେ ।
କଚ୍ଛିଦେଶ ରାଜା ନାମ ଅଟେ ବୀରବାହୁ
ଦଣ୍ଡ ବାହିଗଲା ଆସି ଯେସନକ ରାହୁ ।
ଶୁଣିକରି ମୋହପ୍ରାପ୍ତ ହୋଇଲେ ବିରାଟ
ଆରେ ମୋ କୀଚକ ବୋଲି ତାଡ଼ିଲେ ଲଲାଟ ।
ଦୁଇଦଳ ଜିଣି ମୋତେ ରାଜ୍ୟକଲୁ ପୂର୍ବେ
ଏବେ ରିପୁ ଦଳିଲେରେ ତୋହର ଅଭାବେ ।
ମୋହର ପରାୟେ ବନ୍ଧୁ ବାବୁ ତୋରନୋହୁ
ତୋ ପରା ଭାଇ ସର୍ବଦା ମୋତେ ମିଳିଥାଉ ।
ବିରାଟକୁ ବୁଝାବନ୍ତି ଧରି କୋନ୍ତଭଟ୍ଟ
କିମ୍ପାଇଁ ଅନିମିତ୍ତରେ ପାଉଅଛ କଷ୍ଟ ।
କାହିଁପାଇଁ ହେ ବିରାଟ ହେଉଅଛ ଦୁଃଖୀ
ପୁଣ୍ୟବଳ ଥିଲେ ଧର୍ମହୁଏ ସିନା ସାକ୍ଷୀ ।
ସୈନ୍ୟ ଘେନି ଯିବା ଚାଲ ସମର ମଣ୍ଡଳେ
ଜିଣିବା ସେ ବୀରବାହୁ ନିଷ୍ଠେ ଧର୍ମବଳେ ।
ଆପଣେ ଦଣ୍ଡ ସାଜିଲେ କହି ଦେବ କୋନ୍ତ
ଗ୍ରନ୍ଥିକାର ବାଜିପାଳ ବଲ୍ଲଭ ସହିତ ।
ଉତ୍ତର କୁମର ଜ୍ୟେଷ୍ଠ ବିରାଟଙ୍କ ବତ୍ସା
ମଘ ମତ୍ସ୍ୟ କଟକକୁ କରିଲେ ସେ ରକ୍ଷା ।
ରାଜ୍ୟଭାର ସିଂହାସନ ଦେଇଣ ତାହାକୁ
ଗଲେ ଦଣ୍ଡ ଘେନି ବୀରବାହୁର ଥାଟକୁ ।
ବୀରବାହୁ ସୈନ୍ୟଘେନି ଅଛି ମଧଦେଶେ
ଚାଳିଶଯୋଜନେ କେହି ନରହିଲେପାଶେ ।

ବୀରବାହୁର ଦାଉଣ୍ଡି ଅଟଇ ଅମାପ
ଯାହାର ବଳ ଅଟଇ କେବଣ କୌଣପ ।
ରାଜାରୋହୀ ଅଶ୍ୱାଦେବୀ ସୈନ୍ୟ ଆଦିକରି
ଗୋରୁ ବ୍ରାହ୍ମଣ ଭକ୍ଷନ୍ତି ପୋଡ଼ା ବଳିକରି ।
ମେଷ ଛାଗଳ ଘୁଷୁରୀ ଦେଖିଲେ ତ ମାରି
ବିଚାର ନଥାଇ ପୁଂସ ସ୍ତିରୀ ବୋଲିକରି ।
ବିହରନ୍ତି ନିରାପଦେ ତେଜି ଅନର୍ଗଳ
କାଦମ୍ବରୀ ପାନକରି ହୋଇ ମତିଭୋଳ ।
ପଞ୍ଚଦଶ ଯୁଣଯାଏ ଥାଟ ଚାଲେ ମାଡ଼ି
ମଦିରା ପାନେ ପ୍ରମତ୍ତ ମାଂସ ଖାନ୍ତି ପୋଡ଼ି ।
କଡ଼ା ବିଜିଘୋଷ ଆଉ ବାଜଇ ଘୁମୁରା
ଖିରା ମହ୍ଲାର ଆବର ବାଜଇ ତିମିରା ।
ଲଙ୍ଗଟା ପିନ୍ଧିଣ ଉର୍ଦ୍ଧ୍ୱ ଖାଙ୍କରହିଁ କେଶ
ବକ୍ର ଶରୀର ଆବର ବିକଟାଳ ବେଶ ।
ଓଟ ଗର୍ଦ୍ଦଭ ଗବୟ ଶାର୍ଦ୍ଦୂଳ ଆରୋହି
ବେଗ ବେଗ କରି ଥାଟ ଦିଅନ୍ତି ଚଳାଇ ।
ଏହି ପ୍ରକାରେ ଚଳଇ ନିଶାଚର ଥାଟ
ସରଯୁତୀରରେ ହେଲେ ଦୁଇଥାଟ ଭେଟ ।
କଳ୍କି ରାଜାର ନିମନ୍ତେ ନୃପଗଲେ ତେଣେ
ଦଣ୍ଡ ଘେନି ଦୁର୍ଯ୍ୟୋଧନ ବାହିଲାକ ଏଣେ ।
ପ୍ରଥମ ଦିନ ସଇନ ଅତିବେଗେ ଗଲେ
ସେଦିନ କୁଣ୍ଡଳୀ ବନ ମାର୍ଗରେ ରହିଲେ ।
ଆର ଦିବସ ପଞ୍ଚାଶ ଯୁଣ ବାହିଗଲେ
କୁଭାଣ୍ଡକ ବନେ ପୁଣି ଥାଟକୁ ରଖିଲେ ।
ଆରଦିନ ସତାଇଶ ଯୁଣ ଥାଟ ବଳି
ପୁଣିହିଁ ପଞ୍ଚାଶ ଯୁଣ ଦିନେ ଗଲେ ଚଳି ।
ହସ୍ତିନାରୁ ଗଲେ ଚଳି ନବମ ଦିବସେ
ଦଶଦିନେ ବିଶ୍ରାମିଲେ ସ୍କନ୍ଧ ନବଦେଶେ ।
ଦେଶାଉର ବାର୍ତ୍ତା ଯାଇ କହିଲା ଝଟତି
ମତ୍ସ୍ୟଦେଶରେ ନାହାନ୍ତି ମତ୍ସ୍ୟ ଅଧିପତି ।
ବୀରବାହୁ ଧାଡ଼ିଦେଲା ଯହୁଁ ବିରାଟକୁ
ସମଦଣ୍ଡ ବାହିଲା ସେ ତାର ଉପରକୁ ।
ଉତ୍ତରକୁମର ବୋଲି ତା ଜ୍ୟେଷ୍ଠକୁମର
ତାହାମୁଳେ ଦେଲା ଦେବ କଟକର ଭାର ।
କଳ୍କିରାଜାର ତହିଁକି କୁଣ୍ଡ ଗଲା ଘେନି
ରଥ ଗଜ ଅଶ୍ୱ ଆଦି ଯେତେକ ସଇନି ।
ଭୀଷ୍ମବୋଇଲେ ବାବୁ ହେ କର ତୁ ଅପେକ୍ଷା
ସୈନ୍ୟଘେନି ଫେରିଯିବା ତାର ପୁର ତୁଚ୍ଛା
ଶୁଣିଣ ବୋଇଲେ ତହୁଁ ଦୁର୍ଯ୍ୟୋଧନ ମଲ୍ଲ ।
ଅଇଲୁ ଯେବେ ତା ରାଜ୍ୟେ ଦେଖିଯିବା ଚାଲ ।
ତ୍ରିଗର୍ତ୍ତର ରାଜ୍ୟ ଅଟେ ମତ୍ସ୍ୟ ନାଗପୁର
ଏହା ରାଜ୍ୟରେ କରିବା ଯାକୁ ଦଣ୍ଡଧର ।
ଭୀଷ୍ମ ବୋଲେ ବିରାଟକୁ ଆଗେ ନ ଜିଣିଲେ
ରାଜ୍ୟମାଡ଼ି ବସିବକି ତୁମ୍ଭେ ଏହାବୋଲେ ।
ଭୀଷ୍ମଙ୍କ ବଚନ ଶୁଣି ବୋଲଇ ତ୍ରିଗର୍ତ୍ତ
ବିରାଟ ନ ଜିଣିଲେକି ରାଜ୍ୟ ହୁଏ ପ୍ରାପ୍ତ ।
ଶକୁନି ବୋଇଲେ ତେବେ ଯିବ କି ବାହୁଡ଼ି
ଆତ୍ଡ଼େ ଆରମ୍ଭେ ଅଇଲ ସର୍ବେ ଦଣ୍ଡଚଢ଼ି ।
ଶକୁନି ପୁଚ୍ଛେ ତ୍ରିଗର୍ତ୍ତେ ଗୋରୁପଲ୍ଲ କାହିଁ
ସୁରଭୀପଲ ପାରିଲେ ନେବା ଯେ ଅଡ଼ାଇ ।
ଗୋଗୋଷ୍ଠକୁ ବୋଲି ବାଟ କଢ଼ାଅ ଗୁପତେ
ଅଗ୍ରସର ହୋଇ ଚଳ ଚଳ ହେ ତ୍ରିଗର୍ତ୍ତେ ।
ବାରାହୀ ନଦୀ ତୀରରେ ଭାର୍ଗବର ବନ
ତହିଁ ଉପରେ ଗୋଧନ ପଲଙ୍କ ଦୋହନ ।
ଦୁହାଁଳ ଦୁଇ ଲକ୍ଷ ବରଡ଼ ବାରଲକ୍ଷ
ମାଈ ପାଞ୍ଚ ଅର୍ବୁଦ ଅଣ୍ଡିରା ତ୍ରିଂଶ ଲକ୍ଷ ।
ଗୋଟିଏ ଗୋଷ୍ଠରେଗୋରୁ ରହିଛନ୍ତି ଏତେ
କହିଲି ହେ ମନ୍ତ୍ରୀବର ଶୁଣ ଏକଚିତ୍ତେ ।
ଏକପଲ ବେନିଯୁଣ ମାଡ଼ି ମହୀସ୍ଥଳୀ
ଅନେକ ଗୋପାଳ ତହିଁ ଏତେ ମହାବଳି ।
ଧବଳ କମଳ ପରି ସୁସଞ୍ଚ ଗୋପାଳ
ତହିଁର ରକ୍ଷକ ନାମ ଅଟେ ତନ୍ତ୍ରୀପାଳ ।
ତହୁଁ ସମଦଣ୍ଡ ଘେନି ମାନଚକ୍ରବର୍ତ୍ତୀ
ସେଗୋଷ୍ଠେବେଢ଼ିଲେ ଯାଇ ରଜନୀ ପାହାନ୍ତି ।
ମକର ମାସ ଶୁକଳ ଦ୍ୱାଦଶୀ ତିଥିରେ
କୃତ୍ତିକାନକ୍ଷତ୍ର ପୁଣି ଦିନ ଭୃଗୁବାରେ ।
ବିଷ୍ଟି ନାମେଣ କରଣ ନାଗ ନାମେ ଯୋଗ
ଅଷ୍ଟମରେ ଶନି ରାହୁ ତୃତୀୟରେ ଭୋଗ ।
ରାତ୍ର ପାଞ୍ଚଘଡ଼ି ଥାଉଁ କଉରବ ବଳ
ଲକ୍ଷେପୁରରେ ବେଢ଼ିଲେଯାଇ ଗୋରୁପଲ ।
ବଜାନ୍ତି ବିଜୟଘୋଷ ଟମକ ନିଶାଣ
ଅନେକ ବାଜଇ ବାଦ୍ୟ ନାହିଁ ପରିମାଣ ।
ଭେରି ଦୋହରି ହେ ଢ଼ୋଲପୁଣିହିଁ କାହାଳୀ
ମୁଖରାବ ଶବଦରେ ଗଗନ ଉଛୁଳି ।
ହସ୍ତୀଙ୍କର ଘଣ୍ଟିନାଦ ଗର୍ଜ୍ଜନର ବାଣୀ
କ୍ଷତ୍ରୀଙ୍କ ଗୁଣ ଟଙ୍କାର ଅଶ୍ୱକ୍ଷୁର ଶାଣି ।
ଘଣ୍ଟି ଘାଗୁଡ଼ି ପୁଣି ଯେ ହ୍ରେଷା ଅଶ୍ୱରବେ
ଯେସନେ କି ମେରୁଗିରି ଭାଙ୍ଗଇ ଆହବେ ।
ମହୀକି ପ୍ରାସ କରଇ କିବା ବାରାନିଧି
ପୃଥ୍ୱୀ କମ୍ପମାନ ହୁଏ ତ୍ରାସଇ ଜଳଧି ।

ଶୁଣ ଆହେ ଚଇତନ ଲୋକ କମ୍ପମାନ
ଦିନକରପୁରୁଷ ଯେ ତେଜ୍ୟାକଲେ ଶୂନ୍ୟ ।
ଏଡ଼େଆଉମ୍ଭେ ଗୋଗୋଷ୍ଠଘେରିଲେ କୌରବେ
ଗୋପାଳେ ଜାଣିଲେ କାହିଁଗାଇହମ୍ବାରବେ
ଗାଈଙ୍କର ହମ୍ବାରବ ବସ୍ତାଙ୍କ ବୋବାଳି
ଗୋପାଳେ ଲଉଡ଼ିଘାତେ ତ୍ରିପୁର ଉଛୁଳି ।
ଧବଳୀ କମଳୀ ପୁଣି ଶ୍ୟାମଳୀ ବଉଳୀ
ବସ୍ତାଙ୍କୁ ଡାକନ୍ତି ତହିଁ ହମ୍ବାରବ ତୋଳି ।
ଏଡ଼େ ଆଡ଼ମ୍ବରେ ବେଢ଼ିଛନ୍ତି କୁରୁପତି
ଏହାଙ୍କର ବେଢ଼ିବାରେ ଗୌଡ଼େ ନ ଜାଣନ୍ତି
ଶୁଣ ହେ ଚୈତନ୍ୟ ଗଉଡ଼ଙ୍କ ବଡ଼ପଣ
ଦୋହନ ଛନ୍ଦନ୍ତେ ଲାଗିଅଛି ତାଙ୍କମନ ।
ବିଶେଷେ ମକରମାସ କୁହୁଡ଼ି ଆଛନ୍ନେ
ନୟନକୁ ନ ଦିଶନ୍ତି ଦୂରେ ଥିବା ଜନନେ ।
ରଜନୀ ପାହିଣ ବେଳ ପ୍ରହର ହୁଅନ୍ତେ
କୁହୁଡ଼ି ଛାଡୁ କୌରବବଳ ବିକାଶନ୍ତେ ।
ଦେଖି ଗୋପାଳେ ବୋଲନ୍ତି ଶୁଣ ତନ୍ତ୍ରୀପାଳ
କେଉଁ ରାଜା ବେଢ଼ିଛନ୍ତି ଗୋଧନର ପଲ ।
ଶୁଣି ସହଦେବ ବୃକ୍ଷ ଉପରରେ ଉଠି
ଦେଖିଲେ ସେ ସମଦଣ୍ଡ ବିଜେ ଧାତରାଷ୍ଟ୍ରୀ ।
ସୁବର୍ଣ୍ଣମୟ ରଥରେ ଉଡୁଛି ପତାଙ୍ଗ
କେଶରୀ ଲାଞ୍ଛର ଚିହ୍ନ ଉଡ଼ଇ ଉରଗ ।
ସହଦେବ ବୋଇଲେ ଏ କୌରବ ସଇନି
ଦୁର୍ଯ୍ୟୋଧନ ବିଜେ କଲା ନିଜ ବଳଘେନି ।
ବୃକ୍ଷ ଉପରୁ ଓହ୍ଲାଇ ତହିଁ ତନ୍ତ୍ରୀପାଳ
ବେଗେ ପ୍ରବେଶ ପୃଥୁନାଙ୍କର ପାଦତଳ ।
ଭୋ ମାତା କଚ୍ଛ ଦେଶରୁ ଚଳିଲେ ବିରାଟ
ତା ତୁଲେ ଗରିଷ୍ଠ ଗ୍ରନ୍ଥକାର କୋନ୍ତଭଟ୍ଟ ।
ବେନିରାଜ୍ୟେ ତୁଚ୍ଛା ଅଶ୍ୱ ଗଜ ସୈନ୍ୟନାହିଁ
ତ୍ରିଗର୍ତ୍ତର ଅପମାନେ ଦୁର୍ଯ୍ୟୋଧନ ବାହି ।
ବିରାଟ ଶିରୀ ସରିଲେ ନୋହିବଟି ଭଲ
ଗୋଧନକୁ ବେଢ଼ିଲେଣି କୁରୁସେନାପଲ ।
ଯଦ୍ୟପି ଗୋକୁଳପତି ନେବେ ସେହୁ ହରି
ନିଶ୍ଚୟରେ ନାଶ ଯିବ ବିରାଟର ଶିରୀ ।
ତୁ ମୁଁ ଥାନ୍ତେ କି ବିରାଟ ହୋଇବ ଅନାଥ
ତୁହି ଦେବୀ ଚିନ୍ତାମଣି ଜଗତର ମାତ ।
ତୁମ୍ଭେ ଥାଉଁ ଗୋରୁପଲ ସେହୁ ହରିନେଲେ ।
ବର୍ତ୍ତି ପାରିବି କି ମୁହିଁ ଭୀମ କୋପାନଳେ ।
ତୁହି ରକ୍ଷାକର ମାଗୋ ବିରାଟ ଆପଦ
ଯେମନ୍ତେ ଗୋଧନପଲେ ନ ପଡ଼େ ପ୍ରମାଦ ।

ସହଦେବଙ୍କର ସ୍ତୁତି ଶୁଣିଣ ପୃଥୁନା
ବୋଇଲେ ତୋହର ଦାସୀ ଅଟଇ ମୁଁ ସିନା ।
ଯେସନେକ ଚକ୍ରୀ ସାଜେ ଘେନିମାଟି ଲୋଚି
ତୁହି ଯିବୁ ଯେଣେ ମୁହିଁ ତେଣେ ଯାଉଅଛି ।
ତନ୍ତ୍ରୀପାଳଙ୍କୁ ବୋଲନ୍ତି ସଖା ହୋଇ ଚାଲ
ଏହିକ୍ଷଣି ଜିଣିବି ମୁଁ ରଣେ କୁରୁପଲ ।
ଏଥର ଚିତ୍ତରେ ତିଳେ ନ କରୁ ତୁ ଭୟ
ମୁହିଁ ଏହାଙ୍କୁ ଦେଖିଛି ଶୃଗାଳ ପରାୟ ।
ହେଉକିନା ଗଜ ଅଶ୍ୱ ହେଉକିନା ରଥ
ଏକ୍ଷଣି ମାଡ଼ ମାରିଣ ଧ୍ୱଂସିବି ସମସ୍ତ ।
ସମୁଦ୍ର ଲଘିଂଲେ କିବ ରହିବ ମେଦିନୀ
କେଶରୀ ଆଗରେ ମତ୍ତଗଜର କି ଧ୍ୱନି ।
ମୁହିଁ ଯେବେ ନାଶିବଇଁ ଏହାଙ୍କର ବଳ
ରଥ ଗଜ ସହିତରେ କରିବି ନିର୍ମୂଳ ।
ତୁହି ମାତ୍ର ମୋର ସଙ୍ଗେ ହୋଇଥିବୁ ସଖା
କାହିଁ ସମର କରିବି ତାହା ମୋତେ ଦେଖା ।
ପୃଥୁନାର ବାକ୍ୟ ଶୁଣି ବେଗେ ତନ୍ତ୍ରିପାଳ
ଧାଇଁଲେ ଲଉଡ଼ି ଘେନି ସମସ୍ତ ଗୋପାଳ ।
ଯାହାଙ୍କୁ ସପକ୍ଷ ମାତ୍ର ହୋଇବେ ପୃଥୁନା
ରଥ ଗଜ ଅଶ୍ୱ ମାରି କରିଦେବେ ଚୂନା ।
ବାସବ ବଚନେ ଯେହ୍ନେ ଯାଆନ୍ତି ଅମରେ
ସେହିପରି ବୀରମାନେ ଧାମନ୍ତି ସମରେ ।
କଟିତଟେ ମାଳିପୁଞ୍ଜି କାଛଟାନ୍ତ ଭିଡ଼ି
ବେନିକର ଧରି କେନ୍ଦୁଶରର ଲଉଡ଼ି ।
ଶରପରେ ଖୋଷିଛନ୍ତି ମୟୂରର ଝାଲି
ନାନାବର୍ଣ୍ଣେ ଭିଡ଼ିଛନ୍ତି ହସ୍ତେ ପାଟଫୁଲି ।
ଶଙ୍ଖ ଗରଗଡ଼ମାଳି ଗଳେ କେରା କେରା
ହସ୍ତେ ମୁଦ୍ରିକା ଜଡ଼ିତ ତହିଁପରେ ହୀରା ।
କଟୀରେ ଘଣ୍ଟି ଘାଗୁଡ଼ି ଅଛି ମାଳ ମାଳ
କେ ଭାଙ୍ଗିଣ ମାଥେ ଖୋଷିଅଛି ଜାମୁଡାଳ ।
ତନ୍ତ୍ରୀପାଳ ପ୍ରସାଦରେ ତାଙ୍କୁ କରେ ଭୟ
ମତୁଆଳ ତାଟ ନାଚୁଛନ୍ତି ବୀରଚୟ ।
ଲଉଡ଼ିକୁ ବୁଲାଇଣ ଧାମନ୍ତି ଗୋପାଳ
ଆଗେ ଆଗେ ଧାମନ୍ତି ବୀର ତନ୍ତ୍ରୀପାଳ ।
ଲକ୍ଷେ ଷଣ୍ଢ ଘେନିକରି ଚଳିଲେ ପୃଥୁନା
ବିହରନ୍ତି ମାତା ଯେହ୍ନେ ବିକଟାଳ ସେହ୍ନା ।
ପୃଥୁନାଙ୍କର ଆଗତ ଦେଖି ସର୍ବ ଗାଈ
ପଛେ ପଛେ ଗୋଡ଼ାଇଲେ ହମ୍ବାରବଦେଇ ।
ଗୋପାଳଙ୍କ ମତ୍ତଗର୍ବ ଦେଖି କଉରବେ
ଦ୍ରୋଣଙ୍କର ମୁଖ ଚାହିଁହସିଲେ ଗାଙ୍ଗବେ ।
କର୍ଣ୍ଣ ଶକୁନି ଆବର ଦୁଃଶାର ସହିତେ
ଉପହାସକୁ କରନ୍ତି ସମସ୍ତ ଅମାତ୍ୟେ ।

ଦେଖ ଗୋପାଳଙ୍କ ମୂଢ଼ ଅଜ୍ଞାନତା ପଣ
ଯମ ପାଶେ ଆସନ୍ତି କି ହୋଇଣ ବରଣ ।
କାଦମ୍ବରୀପାନେ ବାଇ ହୋଇ ମତୁଆଳେ
ନ ଚିହ୍ନି ଆପଣା ପର କି ଅବା ସକଳେ ।
ଗାଲତୁରି ବଜାଇଣ କରୁଛନ୍ତି ଧ୍ୱନି
କୋଳାହଳ ଶବଦରେ କମ୍ପଇ ମେଦିନୀ ।
ଦେଖି ସହଦେବବୋଲେ ଶୁଣ ଗୋ ପୃଥୁନା
ଉପହାସ କରୁଛନ୍ତି କଉରବ ସେନା ।
ପୃଥୁନା ବୋଇଲେ ସଖା ଆସ ମୋରସଙ୍ଗେ
ହାରିବ କୌରବ ବଳ ତୋର ଅନୁରାଗେ ।
ଅଛନ୍ତି ଯେତେ କୌରବ ମହା ମହାରଥୀ
ତାଙ୍କ ରଥେ ଶିଙ୍ଗ ମାରି ନାଶିବି ତଡ଼ତି ।
ସହଦେବ ବୋଲେ ମାତା ସର୍ବସେନାମାନେ
ଯାଆନ୍ତୁ ଥାଆନ୍ତୁ ଅବା ରାଜ୍ୟର ବଚନେ ।
ଏକପାର୍ଶ୍ୱେ ରହିଅଛି ଏ ମାନଗୋବିନ୍ଦ
ତାହାର ତୁଳେ ନିଶ୍ଚୟ ହେବ ମୋର ଦ୍ୱନ୍ଦ୍ୱ
ଗୋପାଳଙ୍କ ଉପଦ୍ରବ ଦେଖି କୁରୁବଳ
ଗାଙ୍ଗେୟ ସହିତେ ହସି ଉଠିଲେ ସକଳ ।
ଉପହାସକୁ କରନ୍ତି କଉରବ ବୀରେ
ଧାଇଁ ଯାଇ ସହଦେବ ମିଳିଲେ ସମରେ ।
କୁମାର ଯୁଦ୍ଧରେ ହେଳା କଲେ ଭୀଷ୍ମଦ୍ରୋଣ
ରାଜା ଛାମୁରେ ମିଳିଲେ ଯାଇ ଗୋପଗଣ ।
ସହଦେବ ଅତିବେଗେ ଲଉଡ଼ି ବୁଲାଇ
ଦୁର୍ଯ୍ୟୋଧନ ରଥପରେ ପ୍ରହାରିଲା ନେଇ ।
ଶୁଣ ଆହେ ଚଇତନ୍ୟ ଗୋପଙ୍କ ଚରିତ
ଆକାଶରୁ ଖସି କିବା ପଡ଼ିଲା ନିର୍ଘାତ ।
ସେହିମତି ପଡ଼ିଲା ହେ ସହଦେବ ଯଷ୍ଟି
ଶତଖଣ୍ଡ ହେଲା ଦୁର୍ଯ୍ୟୋଧନ ରଥ ଗୋଟି ।
ପୁଣି ଯଷ୍ଟି ଏ ପ୍ରହାରେ କୋପକରି ବେଗେ
ମୁର୍ଦ୍ଧନା ଫାଟି ପଡ଼ିଲେ ସେ ଚାରି ତୁରଗେ ।
ବିଜୟକେତନ ନାମେ ରାଜାର ସାରଥି
ଫାଟନ୍ତେ ଲଲାଟ ଢ଼ଳି ପଡ଼ିଗଲା କ୍ଷିତି ।
ବିରଥ ହୋଇଣ ତହୁଁ ସେ ମାନଗୋବିନ୍ଦୁ
ଅନ୍ୟରଥେ ଆରୋହିଲା କୁରୁ ନରଇନ୍ଦୁ ।
ସହଦେବ ସଙ୍ଗତରେ ଧାମଇଁ ପୃଥୁନା
ଶିଙ୍ଗ ମାରିକରି ରଥ କରିଦିଏ ଚୂନା ।
ଅଧମ ବିକାଶି ତହିଁ ଧାଇଁ ଗଳଗାଜି
ଶିଙ୍ଗ ତାଡ଼ନାରେ ରଥ ଯାଇଛନ୍ତି ଭାଜି ।
ଗୋପାଳ କରନ୍ତି ତହିଁ ଲଉଡ଼ିର ଘାତ
ଅସାକ୍ଷମ ସେନାମାନେ ହେଲେ ଭୂମିଗତ ।
ମହାନାଗ ଆରୋହିଣ ମାନଚକ୍ରବର୍ତ୍ତୀ
ସବୁରିଭାର ଗଦାକୁ ଧରି କୋପମତି ।
ଦୁଃଶାସନ ଦୁର୍ଜୟ ଯେ ଦୁର୍ବାର ଦୁଷ୍କର୍ଣ୍ଣ
ଦୁରାନ୍ତକ ଦୁର୍ମନ ଯେ ଦୁଶୀଳ ଦୁର୍ଜନ ।
ଦୁର୍ଗତି ଦୁର୍ଦ୍ଦିନ ପୁଣି ଦୁର୍ବଳ ଦୁନୟ
ଦୁର୍ଦ୍ଧର୍ଷ ଦୁର୍ମଦ ଆଦି ଦୁର୍ବର ଦୁର୍ଲୟ ।
ରାଜାଙ୍କ କଟାକ୍ଷ ଦେଖି ଏ ଶତ ସୋଦର
ଆସି ଓଗାଳିଲେ ସହଦେବଙ୍କୁ ଆଗର ।
କିମ୍ଭୁତ ପାମର ମୂଢ଼ରେ ଅଜ୍ଞାନ ପାପୀ
ରାହୁ ଆଗରେ କିଚନ୍ଦ୍ର ହୋଇପାରେକୋପୀ ।
ମଦିରାରସ ପାନରେ ମତୁଆଳ ହୋଇ
ମରଣ ଭୂଇଁ କି ତୁହି ନ ଚିହ୍ନୁ କିମ୍ପାଇଁ ।
ଆସିଅଛୁ ରାଜା ମାନଗୋବିନ୍ଦଙ୍କ ସଙ୍ଗେ
ଯୁଦ୍ଧକରି ଗୋରୁପଲ ହରିନେବୁ ରଙ୍ଗେ ।
ଚାଲ ଆମ୍ଭସଙ୍ଗେ ଗୋରୁପଲକୁ ଅଡ଼ାଇ
କୁଟୁମ୍ବ ପୋଷିବୁ ତୁହି ଅତି ସୁଖ ପାଇ ।
ରେ ମୁକି ଗୋପାଳ ପାତ୍ରପଣେ ଶାଢ଼ୀଦେବୁ
କୁଟୁମ୍ବ ତୁମ୍ଭର ଯଥାସାଧ୍ୟରେ ପାଳିବୁ ।
ମୁକୁଟ କର୍ଣ୍ଣାଞ୍ଚଳ ଯେ ବାହୁଟି ସକଳ
ସର୍ବ ଅଳଙ୍କାରକୁ ରେ ପିନ୍ଧିବୁ ଗୋପାଳ ।
ଏମନ୍ତ ବଚନେ ଶୁଣି ସେ ଦୁଃଶାସନର
କୋପେ ସହଦେବ କଲେ ତାହାକୁ ପ୍ରହାର ।
ଦୁଃଶାସନ ରଥ ରାଜି ହୋଇଗଲା ଚୂର
ତାର ପ୍ରହାରେ ତୁଟିଲା ଅଙ୍ଗ ସେନାଙ୍କର ।
ଅଶ୍ୱ ସାରଥିଙ୍କୁ ଧରି ପିଟିଲେ ଗୋପାଳେ
ବିରଥ ହୋଇଣ ବୀର ପଡ଼ିଲାକ ତଳେ ।
ଦୁଃଶାସନକୁ ବିରଥ ଦେଖିଣ ରାଧେୟ
ଆବର ସମର କରେ ମାଦ୍ରୀର ତନୟ ।
ରେ ରେ କାର କରି କର୍ଣ୍ଣ କରେ ଚାପ ଧରି
ଗୋପାଳକୁ ପ୍ରହାରିଲା ଧରି ଶର ଚାରି ।
ଲଉଡ଼ି ବୁଲାନ୍ତେ ତନ୍ତିପାଳ ଗୋପଜେନା
କର୍ଣ୍ଣଙ୍କର ଅସ୍ତ୍ରମାନ ଭାଙ୍ଗିକଲେ ଚୂନା ।
ସହଦେବ କଟାକିଲା କର୍ଣ୍ଣ ମହାରଥୀ
ପୁଣି ଶତେକ ନାରାଚ ବିନ୍ଧେ ତତ୍‌କ୍ଷଣାନ୍ତି ।
ଅଗ୍ନି ସମାନେ ଦିଶଇ ସେହି ତୀକ୍ଷ୍ଣମୁନା
ସହଦେବ ଲଉଡ଼ିରେ ବାଜି ହେଲା ଚୂନା ।
ଦେଖିଣ ପୃଥୁନା ତହିଁ ଧାଇଁ ଗଳଗାଜି
ଶିଙ୍ଗ ମାରନ୍ତେ କର୍ଣ୍ଣର ରଥ ଗଲା ଭାଜି ।
କର୍ଣ୍ଣ ବିରଥ ହୋଇଣ ଗଲା ଅପସରି
ଧାଇଁଲେ ଗୋପଳେ ତହୁଁ ଲଉଡ଼ିକି ଧରି ।
ରଡ଼ି ଦେଇଣ ଗୋପାଳ ବୀରେ ତହିଁ ଉଠି
ଯୋଦ୍ଧାଙ୍କ ଉପରେ ନେଇ ପ୍ରହାରିଲେ ଯଷ୍ଟି ।
ଯୋଦ୍ଧାଏ ବାଣ ବିନ୍ଧନ୍ତି ଯହିଁ ଅବିଚ୍ଛିନ୍ନେ
ଗୋପାଳଙ୍କୁଆବୋରିଲେଦୌଡ଼ିଗାଈମାନେ ।

ଗୋରୁଙ୍କର ହମ୍ବାରଡ଼ି ବଡ଼ଇ ପ୍ରଚଣ୍ଡ
ପୃଥୁନା ତୁଳେ ପଞ୍ଚାଶ ସହସ୍ର ଯେ ଷଣ୍ଢ ।
ଷଣ୍ଢଙ୍କର ଶିଙ୍ଗ ସବୁ ଅଟେ ତୀକ୍ଷ୍ଣମୁନା
ତହିଁ ପୋଡ଼ିଦେଲେ ଅଶ୍ୱଆଦି ବଜ୍ରସେହ୍ନା
ଗୋରୁଯୁଦ୍ଧ ଦେଖି ଭାଜିଗଲେ ବୀରଗଣ
ଅପସରିଣ ରହିଲେ ତହିଁ ଭୀଷ୍ମ ଦ୍ରୋଣ ।
ଭୀଷ୍ମ ଦ୍ରୋଣ ଜୟଦ୍ରଥ ଶଲ୍ୟ ଅଶ୍ୱଥାମା
ବାହ୍ଲୀକ ସୋମଦତ୍ତ ହେ ପୁଣି କୃପବ୍ରହ୍ମା ।
ସମସ୍ତେ ହିଁ ଭାଗିଗଲେ ଗୋରୁହତ୍ୟା ବୋଲି
ମାଡ଼ି ଗୋଧନ ପଶିଲେ ଯାଇଥାଟ ପେଲି ।
ମାରନ୍ତି ଯେ ଗୋରୁପଲ ହସ୍ତୀଙ୍କର ପାଦେ
ପଦାତି ସୈନ୍ୟ ପଡ଼ିଲେ ବିଷମ ପ୍ରମାଦେ ।
ଶିଙ୍ଗ ବାଜନ୍ତେ ଫୁଟିଣ ଗଲେ ସର୍ବ ହୟ
ଗାଈଙ୍କ କପାଳ ଦିଶେ ମନ୍ଦାର ପରାୟ ।
ପାଞ୍ଚଯୂଣ ପରିଯନ୍ତେ ପାଏଡ଼ା ପାଡ଼ିଲା
ଅନେକ ରଥ ଗଜହିଁ ତହିଁ ନାଶଗଲା ।
ଅନିବାର୍ଯ୍ୟ ହୋଇ ତହିଁ ଘୋଟିଲାକ ଯୁଦ୍ଧ
ବହୁତ ସୈନ୍ୟ ପଡ଼ିଲେ ସେହି ରଣମଧ ।
ଅସମ୍ଭାଳ ହୋଇ ତହିଁ ପଳାଇଲେ ଥାଟ ।
ପଡ଼ିଲା ବହୁ ପାଏଡ଼ା ନ ପାବନ୍ତି ବାଟ ।
ବନ କନ୍ଦରକୁ ସୈନ୍ୟ ନ ପାଇଣ ଗଲେ
ଗହଳ ହେତୁରୁ ତହିଁ କେତେ ଚୂର୍ଣ୍ଣ ହେଲେ ।
ପଞ୍ଚଦଶ ଯୂଣଯାଏ ପାଏଡ଼ା ପାଡ଼ିଲେ
ବହୁ ଅଶ୍ୱ ଗଜ ସୈନ୍ୟ ତାର ନାଶହେଲେ
ଦଶସସ୍ର ରଥ ନବ ଅଇବ୍ରତ ରଥୀ
ଅସଂଖ୍ୟ ତୁରଗ ତିନି ପରାର୍ଦ୍ଧେ ପଦାତି ।
ଏତେକ ସୈନ୍ୟ ପଡ଼ିଲେ ଗୋଧନ ସମରେ
ଭଗ୍ନବଳ ଘେନି ରାଜା ରହେ ନଦୀତୀରେ ।
ସହଦେବ ମୁଖ ଚାହିଁ ବୋଲଇ ପୃଥୁନା
କଟାଳ ନ କର ଏହୁ ଭଗ୍ନ ବଳ ସିନା ।
ଗୋପାଳ ଗୋଧନପଲ ଏଥୁ ଘେନିଯିବା
ମାନଗୋବିନ୍ଦ ବାହିଲେ ପୁଣହିଁ ଆସିବା ।
ଆଦିତ୍ୟ ଅସ୍ତ ହୁଅନ୍ତେ ହୋଇଲା ରଜନୀ
ଫେରିଲେ ଗୋପାଳେ ସୁରଭୀଙ୍କୁ ସଙ୍ଗେ ଘେନି
ବିରସେ ରହିଲେ ଯାଇ ବାରାହୀର କୂଳେ
ପାଦମଡ଼ା ସୈନ୍ୟମାନେ ରୋଦନ୍ତି ବିକଳେ
ଦୁର୍ଯ୍ୟୋଧନ ବୋଲେ ଭୀଷ୍ମ ଦ୍ରୋଣମୁଖଚାହିଁ
ଆସନ୍ତେ ବାରିଲେ ତାହା ନ ମାନିଲି ମୁହିଁ ।
ସେଥିପାଇଁ କୋପକରି ଆହେ ଗୁରୁଜନେ
ସମର ନ କରି ଘୁଞ୍ଚି ରହିଲେ ଯତନେ ।

ବହୁତ ଝିଙ୍ଗାସି ବୋଲେ ତାଙ୍କୁ କୁରୁପତି
ଶୁଣିଣ ପ୍ରତିଉତ୍ତର ଗାଙ୍ଗେୟ ଦିଅନ୍ତି ।
ଦେଖୁ ଦେଖୁ ଜାଣୁ ଜାଣୁ କରିବେ ଗୋହତ୍ୟା
ମାଇଲେ ଦୋଷ ହୁଅନ୍ତା ତୋର ଅପ୍ରମିତା ।
ଶସ୍ତ୍ରସବୁ ଧରିଥିବ ନିଜ ନିଜ କର
ସମରେ ମାଇଲେ ଗୋରୁ ଦୋଷଯାଏ ପାର
ତୁହି ପାଳକ ନରେନ୍ଦ୍ର ଅଟୁ କୁରୁନାଥ
ତୋର ସିନା ହେବ ବାବୁ ଏ ଦୋଷ ସମସ୍ତ ।
ବାବୁ ପାପ ପୁଣ୍ୟ କଲେ ଅଟଇ ତୁମ୍ଭର
ସେଥିପାଇଁକି ଉପେକ୍ଷା କରିଲୁ ସମର ।
ଦୁର୍ଯ୍ୟୋଧନ ବୋଲେ ତହୁଁ ସମରେ ପଶିଲେ
ହତ୍ୟା କି ଲାଗଇ ଗୋରୁ ବ୍ରାହ୍ମଣ ମାଇଲେ ।
ହତ୍ୟାଦୋଷ ଲାଗିବ ହେ ଯଦି ଆଜି ଯୁଦ୍ଧେ
ହେଉ ପାତକ ପଡ଼ନ୍ତୁ ଗୋରୁ ରଣମଧେ ।
କୃପାଚାର୍ଯ୍ୟ ବୋଲେ ବାବୁ ଶୁଣ ପୂର୍ବକଥା
ଗଙ୍ଗାସ୍ନାନ କଲେ ବିଜେ ଈଶ୍ୱର ଦେବତା
ନିତ୍ୟକର୍ମ ବିଧାନରେ କୁଶ ଥୋଇ କୂଳେ
ସ୍ନାହାନ ନିମନ୍ତେ ହର ପଶିଲେ ଯେ ଜଳେ ।
ଶୌଚ ଆଦି ସାରି ଦନ୍ତ କରିଲେ ଧାବନ
ଜଳେ ପଶି ସ୍ନାନ କଲେ ଦେବ ତ୍ରିଲୋଚନ ।
ସୁରଭି କନ୍ୟା ନନ୍ଦିନୀ ଆସେ ଚରି ଚରି
ଖାଇଗଲା ଈଶ୍ୱରଙ୍କ ସେହି କୁଶକେରୀ ।
ଜଳରୁ ବାହାର ହୋଇ ଦେବ ଅତି ବେଗେ
ମାଇଲେ ଗାଈକି ମୁଥେ ଅତିଅନ୍ତ ରାଗେ ।
ବେକମୂଳରେ ପଡ଼ିଣ ଦେବ ପର୍ଶୁଖଣ୍ଡ
ନିମିଷକେ ଛିଡ଼ିଗଲା ନନ୍ଦିନୀର ମୁଣ୍ଡ ।
ଛିଡ଼ିଯାଇ ସେହିମୁଣ୍ଡ ଆସି ଧାତିକାରେ
ତଳେ ନ ପଡ଼ି ନ ଲାଗିଲା ଈଶ୍ୱରଙ୍କ କରେ ।
ଅନେକ ତୀର୍ଥ ଭ୍ରମିଲେ ଦେବ ବିଶ୍ୱନାଥ
ତଥାପି ନ ଛାଡ଼ିଲେ ସେ ମୁଣ୍ଡ ତାଙ୍କ ହସ୍ତ ।
କୃପ ବ୍ରହ୍ମା ବୋଇଲେ ହେ ଶୁଣ କୁରୁପତି
ଭଇରବ ରୂପେ ମୁଣ୍ଡ ଧରେ ପଶୁପତି
ଆହେ ବାବୁ ସବୁ ଦୋଷ ହେଲେ ପାରଯାଇ
ଗୋ-ବ୍ରାହ୍ମଣ ହତ୍ୟାଦୋଷ କେଭେନଛାଡ଼ଇ ।
ଗୋହତ୍ୟା ତ ନ ଛାଡ଼ିଲା ଯହୁଁ କଦାଚିତେ
ତାହା ଛଡ଼ାଇଲେ ମଣିକର୍ଣ୍ଣିକାର ତୀର୍ଥେ ।
ଗୋହତ୍ୟା ଦୋଷଟି ବାବୁ ନ ଯାଇ କହଣା
ଦୁର୍ଯ୍ୟୋଧନ ବୋଲେ ମୋତେ ଏମାନ ନଶୁଣ ।
ଆହେ ମୋହରେ ଯାହାର ଅଛଇଟି ଆଶ
ଗୋଧନର ପାଇଁ ସେହୁ ହେଉଟି ବିନାଶ ।

ମହାମତ୍ତ ନାଗ ଚଢ଼ି ମାନଚକ୍ରବର୍ତ୍ତୀ
ସୈନ୍ୟ ଲେଉଟାଇ ବିଜେ କଲା କୁରୁପତି ।
ନିରାଧାର ବଚନକୁ ଶୁଣି ଭୀଷ୍ମ ଦ୍ରୋଣ
ମାର ବୋଲି ବାହୁଡ଼ିଲେ ସେମାନେ ତକ୍ଷଣ
ମହାଘୋର ଶୁଭେ ତହୁଁ ଅପ୍ରମିତ
ସହଦେବ ବୋଲେ ସୈନ୍ୟବାହୁଡ଼ିଲେ ମାତ
ଶରଣ ପଞ୍ଜର ସେହୁ କକ୍ଷାବନ୍ତକାରୀ
ଗୋହତ୍ୟାକୁ ନ ଡ଼ରିଣ ଆସିଲେ ସେଫେରି
ପୃଥୁନା ବୋଇଲେ ତହୁଁ ଆସୁଗୋଗୋଷ୍ଠକୁ
ଏଘାନ୍ତି ଜଣେ ଛାଡ଼ିବି ନାହିଁ ମୁଁ କାହାକୁ
ତୋର ସହୋଦର ବୋଲି ମୋରଉପରୋଧ
ତେଣୁ ଦିବ୍ୟଅସ୍ତ୍ର ଧରି ନ କରାଅ ଯୁଦ୍ଧ ।
ପରକାର୍ଯ୍ୟ ବୋଲିକରି ସୈନ୍ୟ ନ ନାଶିଲି
ସେଥି ନିମନ୍ତେ ରାଘବ ଯୁଦ୍ଧ ମୁହିଁ କଲି ।
ଏଘାନ୍ତି ସମର ମୋର ପ୍ରତ୍ୟକ୍ଷରେ ଦେଖୁ
ବୁଡ଼ାଇବ ବଂଶ ତାର ଏବେ କେହୁ ରଖୁ ।
ପବନହୁଁ ବେଗ ହୋଇ ଆସନ୍ତି ଗୋକୁଳ
ହସ୍ତଘେନି କଉରବେ କରିଲେ କଟାଳ ।
ଆଗରେ ଗୋଧନ ପଲ ପଛେ ତନ୍ତୀପାଳ
ଲଉଡ଼ି ବୁଲାଇ ଆସି ନାଶେ କୁରୁବଳ ।
ଲଉଡ଼ିର ପରିତାଳ ବାଜେ ତଡ଼ବଡ଼ି
ଚଉଦିଗେ ଉଚ୍ଛୁଳିଲା ଗୋପାଳଙ୍କ ରଡ଼ି ।
ସମଦଣ୍ଡ ରହିଲେ ଯେ ସ୍ତମ୍ଭୀଭୂତ ହୋଇ
ଭୀଷ୍ମ ପ୍ରଶଂସା କରନ୍ତି ଗୋପାଳଙ୍କୁ ଚାହିଁ ।
ଭୀଷ୍ମ ବୋଇଲେଧନ୍ୟରେ ତୁଗୋପାଳଗୋଟି
ପୁଣି ବୋଇଲେ ଦ୍ରୋଣ ସହଦେବ ସେଟି ।
ଭୀଷ୍ମ ବୋଇଲେ ସଫଳ ଆଜ ମୋର ଦିନ
ଶୁଭେ ଆସି ଦେଖିଲି ମୁଁ ପୁତ୍ରଙ୍କ ବଦନ ।
ବନସ୍ତ ଭିତରେ ଥାଇ ବହୁ ବିଦ୍ୟା ସାଧି
ହୋଇଲେ ଏ ବୀରବର ମହାମନ୍ତ୍ରେ ସିଦ୍ଧି ।
ସମର ସମ୍ଭାର ସର୍ବ ଗୋଳ ସେ ରହିଲା
ସହଦେବ ସମର ପୃଥୁନା ନ ଜାଣିଲା ।
ଗୋଧନପଲ ପୃଥୁନା ଘେନି ଚଳିଗଲା
ଏକା ସହଦେବ ମହାଗୋଳରେ ରହିଲା ।
ଗୋପାଳମାନେ ଚଳିଲେ ଗୋରୁଙ୍କୁ ଅଡ଼ାଇ
ସହଦେବ ରହିଲା ସେ ଏକା ରଣଭୂଇଁ ।
ପ୍ରଭାତେ ଯେଣୁ ଉଇଁଲେ ଗଗନ ବିହାରୀ
ଲକ୍ଷେପୁର କରି ଥାଟ ସହଦେବ ଘେରି ।
ଦୂରେ ଡାକ ଦିଅଇ କୌରବ ଶିରୋମଣି
ପ୍ରାଣେ ନ ମାରି ଗୋପାଳ ଧରି ଏହିକ୍ଷଣି ।
ଏହା ହିଁ ଧଇଲେ ମୋର ସର୍ବକାର୍ଯ୍ୟ ଭଲ
ତେବେଯେପ୍ରାପତହେବେ ମୋତେ ଗୋରୁପଲ
ମସ୍ୟଦେଶର ପାଇବା ସମସ୍ତହିଁ ଭେଦ
ଗୋପାଳ ଧରିଲେ ମୋର ବହୁତ ସଂପଦ ।
ସାଗର ଅଟଇ ହାଦେ କୌରବଙ୍କ ବଳ
ସହଦେହ ସିଂହପ୍ରାୟ ତହିଁକି ପ୍ରବଳ ।
ଯଦ୍ୟପି କୌରବ ସେନା ହେବ ମତ୍ତନାଗ
ଅପାର ଯୁଦ୍ଧ ହେବ କି କେଶରୀର ଆଗ ।
ମହାବିକ୍ରମ ସଭୟ ଯେହ୍ନେ ବାରାନିଧି
ଭରସି ଆସନ୍ତି ନାହିଁ ପାଶେ ସର୍ବ ଯୋଦ୍ଧୀ ।
ଶ୍ରୀକୃଷ୍ଣ ସ୍ମରଣ କଲେ ବୀର ସହଦେବ
ସଙ୍କଟୁ ଉଦ୍ଧର ମୋତେ ପ୍ରଭୁ ବାସୁଦେବ ।
ରଖ ରଖ ଜଗନ୍ନାଥ ଶରଣ ପଞ୍ଜର
ଏ କୁରୁ ସାଗରୁ ମୋତେ କେବଳ ଉଦ୍ଧର ।
ଜାଣି ଭୀଷ୍ମ ଦ୍ରୋଣେ ତହିଁ ଯୁଦ୍ଧ କଲେ ହେଳା
ବିହରନ୍ତି ସହଦେବ ତେଜି ଅନର୍ଗଳ ।
ପୁଣିହିଁ ଆଦେଶ ଦେଲା ସେ ମାନଗୋବିନ୍ଦ
ଧରି ନ ପାରିଲ ଯେବେ ଯୁଦ୍ଧେ ଶର ବିନ୍ଧ ।
ରାଜାର ବଚନେ ବୀର ଚଳାଇଲେ ବାଣ
ବେଢ଼ି ଯୋଦ୍ଧାଏ ବିନ୍ଧିଲେ ତାଙ୍କୁ ତତକ୍ଷଣ
କେହୁ ବିନ୍ଧେ ଶତେଶର କେ ବିନ୍ଧେ ଅୟୁତ
କେହି ଲକ୍ଷ ଲକ୍ଷ ବାଣ ବିନ୍ଧେ ଅବିରତ ।
ଯେସନେ କକଡ଼ା ମାସେ ବର୍ଷେ ଜଳଧାର
ତସନେ ଯୋଦ୍ଧା ବିନ୍ଧନ୍ତି ତାଙ୍କୁ ନିରନ୍ତର ।
କରେ ଲଉଡ଼ିକି ଧରି ବୀର ଚୂଡ଼ାମଣି
ବୁଲାଏ ଯେସନ କୁମ୍ଭକାର ଚକ୍ର ଜିଣି ।
ଯେବେ ନାରାଚ ବିନ୍ଧନ୍ତି ଯୋଦ୍ଧା କୋପକରି
ଲଉଡ଼ିରେ ବାଜି ସର୍ବ ହୋଇଯାଏ ଚୂରି ।
ସହଦେବ ଅନ୍ତରୀକ୍ଷେ ଲଉଡ଼ି ବୁଲାଏ
କୁରାଳ ଚକ୍ରକୁ ଜିଣି ସେହୁ ବୁଲୁଥାଏ ।
ଶୁଣ ଚଇତନ ଜଗନ୍ନାଥଙ୍କର ମାୟା
ସହଦେବ ବକ୍ଷୁ ଜନ୍ମ ହେଲା ବେନି ବାହା ।
କଠୋର ଦେଖି ପ୍ରସନ୍ନ ହେଲେ ଦେବରାଜ
ସହଦେବ ବିସ୍ତାରିଲେ ଯୁଦ୍ଧେ ଚତୁର୍ଭଜ ।
ଯେଉଁ ଦୁଇ ହାତ ଜାତ ହେଲା ଅଦଭୂତ
ପ୍ରତ୍ୟକ୍ଷେ ଅଟଇ ସେହୁ ଜଗନ୍ନାଥ ହାତ ।
ଯେଉଁ ବେଣୁସ୍ୱରେ ମୋହିଥିଲେଗୋପୀଜନ
ସମସ୍ତଙ୍କ ଅଙ୍ଗେ ପଶେ ହୋଇଣ ମଦନ ।

ବଂଶୀ ବଜାନ୍ତେ ଶୁଭିଲା ପୃଥୁନାର କର୍ଣ୍ଣେ
ଶବଦ ଶୁଭିଲା ପାଞ୍ଚଯୁଣ ବ୍ୟବଧାନେ ।
ଗୋଧନ ଘେନି ପୃଥୁନା ଅଇଲେ ଲେଉଟି
ବୋଇଲେ ପ୍ରାଣ ହାରିଲା ମୋର ପୁତ୍ରଗୋଟି
ଧାମନ୍ତି ଗୋପାଳବଂଶୀ ଶବଦକୁ ହେଜି
କୌରବଥାଟେ ପ୍ରବେଶ ହେଲେ ଗଳସାଜି ।
ହମ୍ବାରବ ଶବ୍ଦେ ଯହୁଁ ପଡ଼ିଲେ ସେ ମାଡ଼ି
ଭାଜିଗଲା ସମଦଣ୍ଡ ପଳାଇଲେ ଛାଡ଼ି ।
ଯେତେବେଳେ ସୈନ୍ୟହେଲେ ତହିଁ ଦୁଇଭାଗ ।
ପୃଥୁନା ପ୍ରବେଶ ଯାଇ ସହଦେବ ଆଗ ।
ବାଜିଲା ଯେ ବାଦ୍ୟମାନ ମର୍ଦ୍ଦଳ ଘୁମୁରା
ମଉରଙ୍ଗରେ ନାଚନ୍ତି ଗୌଡ଼ ମହାବୀରା ।
ତ୍ରାସକୁ ପାଇ ଘୁଞ୍ଚିଣ ଗଲେ କଉରବ
ଗୋଧନପଲ ଘେନିଣ ଚଳେ ସହଦେବ ।
ସାନନ୍ଦେପ୍ରବେଶ ହେଲେଗୋପାଳେଗୋଗୋଷ୍ଠେ
ପୁଣି ଗୋଧନ ବେଢ଼ିଲେ ଯାଇ କୁରୁଥାଟେ
ପୃଥୁନା ବୋଲନ୍ତି ସହଦେବ ମୁଖ ଚାହିଁ
ବାବୁ ଏ କଉରବଙ୍କୁ ଲାଜ ଟିକେ ନାହିଁ ।
ଏ ମୋତେ ବେଢ଼ିଣ ଥାନ୍ତୁ ରହି ଏହିଠାବେ
ବଳାତ୍କାରେମୋତେନେଇ ନ ପାରନ୍ତି କେବେ
ଯୁକତେ ନ ଯିବି ମୁହିଁ ଏହାଙ୍କର ପୁରୀ
ତ୍ରୈଲୋକ୍ୟରେକିଏ ମୋତେପାରେବଳେଧରି
ତୁହି ବହନ ହୋଇଣ ଯା ମତ୍ସ୍ୟଦେଶକୁ
ଉତ୍ତରକୁମାର ସଙ୍ଗେ ଆଣ ଅର୍ଜ୍ଜୁନକୁ ।
ଅର୍ଜ୍ଜୁନ ଆସିଣ କୌରବଙ୍କ ଦର୍ପ ଗଞ୍ଜୁ
ଦୁର୍ଯ୍ୟୋଧନ ରାଜାର ସେ ପ୍ରତିଜ୍ଞାକୁ ଭାଙ୍ଗୁ ।
ବହନ ଅର୍ଜ୍ଜୁନକୁ ତୁ ଘେନିଆସ ଯାଇ
ମୁଁଗୋଧନପଲଘେନି ଏ ସ୍ଥାନେଅଛଇ ।
ଅଜ୍ଞାତବାସ ତ ଆସି ସରିଲାଣି ଦିନ
ଉତ୍ତରକୁ ଘେନି ବେଗେ ଆସନ୍ତୁ ଅର୍ଜ୍ଜୁନ ।
ମୋର ବଚନରେ ଶୁଭ ଅନୁକୂଳେ ଘେନି
ଆଜୁଁ ହସ୍ତିନାରେ ତୁମ୍ଭେ ହେଲ ନୃପମଣି ।
ଚଳିଗଲେ ସହଦେବ ସିଂହଠାଣି କରି
ପ୍ରବେଶ ହୋଇଲେ ଯାଇ ବିରାଟ ନଗରୀ ।
ଜୟ ଜୟ ନମସ୍ତେ ଗୋ ଦେବୀଗୋଶାରଳା
ମାଡ଼ି ବସିଛୁ ତେନ୍ତୁଳିପଦା ମହାଖଳା ।
ଦୁଷ୍ଟ ନିବାରଣ କରି ସନ୍ଥଜନ ପାଳୁ
ତୁହି ମୋ ଅଗତିଗତି ପରମ ଦୟାଳୁ ।
ତୋର ପ୍ରସାଦେ ଦେଖିଲି ମୁହିଁ ଏ ଭାରତ
ଶାରଳାଦାସ ସେ ପାଦ ଚିନ୍ତେ ଅବିରତ ।

—●—

## ବୃହନ୍ନାରୀଙ୍କି ସାରଥିକରି ଉତ୍ତରର ଯୁଦ୍ଧଯାତ୍ରା

କହନ୍ତି ଅଗସ୍ତି ମୁନି ଆହେ ଚଇତନ
ଏଥୁଅନ୍ତେ ଯାହା ହେଲା ମନଦେଇ ଶୁଣ ।
ବିରାଟ ନନ୍ଦନ ଆସିଅଛନ୍ତି ଆସ୍ଥାନେ
ସନ୍ନିଧିରେ ବେଢ଼ିଛନ୍ତି ପୁରବାସୀ ଜନେ ।
ଝାଳ ରୁଧିରେ ତ୍ରିପଣ୍ଡ ହୋଇଅଛି କାୟ
ଶରୀର ଦିଶେ ମନ୍ଦାର ପୁଷ୍ପର ପରାୟ ।
ଏ ବେଶରେ ତନ୍ତ୍ରୀପାଳ କରଇ ଗୁହାରୀ
ସୁର ସୁନ୍ଦର ଦେବ ହେ ହୁଅ ଅବଧାରୀ ।
କୁଞ୍ଜଗଳଦେଶ ରାଜା ମାନଚକ୍ରବର୍ତ୍ତୀ
ଗୋଧନପଲ ଆମ୍ଭର ହରି ନେଉଛନ୍ତି ।
ଅନେକ ରଣ ଧନ୍ଦୋଳ କଲେ ଆମ୍ଭତୁଲେ
ଅପାର ସୈନ୍ୟ ମାଇଲେକେଭେ ନହୁଡ଼ିଲେ
ତନ୍ତ୍ରୀପାଳଙ୍କ ମୁଖରୁ ଏ ବଚନ ଶୁଣି
ଅଧର ଚାପିଣ କୋପେ ଉଠେ ଶିରଝୁଣି ।
କଦଳୀପତ୍ର ପରାୟେ କମ୍ପେ ତାର ଅଙ୍ଗ
ହିରଣ୍ୟ ଦେଖିଣ ଯେହ୍ନେ କମ୍ପଇ ନୃସିଂହ ।
ବାହାସ୍ଫୋଟ ମାରି ଆଣ୍ଠୁ ଉଭାଦେଇ ଜାନୁ
ତାମ୍ରବର୍ଣ୍ଣ ପ୍ରାୟ ଦିଶେ ବିରାଟର ସୁନୁ ।
ଯଷ୍ଟି ପ୍ରହାରେ ଯେସନେ ଗର୍ଜେ କାଳସର୍ପ
ମୋ ଗୋଧନ ହରିବାକୁ ତାର ଏଡ଼େ ଦର୍ପ ।
କାଳଚକ୍ର ପ୍ରାୟେ ସେହୁ ବୁଲାଇଲା ଡ଼ୋଳା
କି ଅବା ଭାଙ୍ଗି ପାରଇ ଯମଦଣ୍ଡ ମେଳା ।
କେଉଁ ଅର୍ଥେ ଦୁର୍ଯ୍ୟୋଧନ କଲା ଏଡ଼େ କକ୍ଷା
ଜାଣେନାହିଁ କି ଉତ୍ତର ରାଜ୍ୟ କରେ ରକ୍ଷା ।
ପୁନଃ ପୁନଃ ବିଚାରଇ ନିଜ ହୃଦଗତେ
ସାରଥି ଜଣେ କାହାକୁ ନେବି ମୋରସାଥେ ।
ପିନାଙ୍କର ଭୋଳପଣ ଶୁଣ ତନ୍ତ୍ରୀପାଳ
ରାଜ୍ୟଯାକ ତୁଚ୍ଛାକରି ଦେଲେ ସର୍ବବଳ ।
ତୁହୋ ଗୋପାଳ ମୋହରରାଜ୍ୟେ ଅଧିକାରୀ
ଅନ୍ତଃପୁରରେ ଚରଚା କଲେ ବୃହନ୍ନାରୀ ।
ସୈରିନ୍ଧ୍ରୀକି ଲାଗଇ ଯେ ସମସ୍ତଙ୍କ କଥା
ଯାଅ ମୁଦୁସୁଲୀ ପୁରେ ଦିଅ ତୁ ବାରତା ।
ଗୋରୁପଲ ହରି ନେଉଛନ୍ତି କୁରୁପତି
ଶୁଣିଣ ସୈରିନ୍ଧ୍ରୀ ପୁଣି ମାତା କି ବୋଲନ୍ତି
ଆଜ୍ଞାପାଇ ଚଳିଗଲା ମୁଦୁସୁଲୀ ବେଗେ
ବାରତା କହିଲା ଯାଇ ସୁଦେଷ୍ଣାଙ୍କ ଆଗେ ।

ସୁଦେଷ୍ଣା ଯାଇ କହନ୍ତି ସୈରିନ୍ଧ୍ରୀଙ୍କ କତି
ଭୋଦେବ ଗୋଧନପଲ ହରେ କୁରୁପତି ।
ସୁଦେଷ୍ଣା ସୈରିନ୍ଧ୍ରୀ ବିଜେ ପର୍ଷି ମନ୍ଦୁଆରେ
ଉତ୍ତରକୁମାର ଯାଇ ପ୍ରଣିପାତ କରେ ।
ତନ୍ତ୍ରୀପାଳ ବୋଲେ ଗୋରୁହରଣର କଥା
ସଂକ୍ଷେପିଣ ମୋର ଆଗେ କହ ଏ ବାରତା ।
ଉତ୍ତର କହଇ ମାତ କହୁଅଛି ଶୁଣ
ଗୋପାଳେ ସସୈନ୍ୟ ଭାଙ୍ଗି ଦେଇଛନ୍ତିଜାଣ
ମୁହିଁ ଯଦ୍ୟପି ଯିବଇଁ ରଥବାହି ତହିଁ
ମାରିପକାଇବି ଜଣେ ନବର୍ତ୍ତିବେ କେହି ।
ମୁହିଁ ହୀନବଳ ପିତା ଅଧରମ ପଣେ
ନ ଦେଇଗଲେ ସାରଥି ହୋଇ ଏକଜଣେ ।
ଏତେବୋଲି ଟଙ୍କାରିଲା ଧନୁ ଶିରଝୁଣି
କୋପଭରେ ଅଧରକୁ ଚାପେ ପୁଣିପୁଣି ।
ଦେବସୁମରି ଲଲାଟେ ମାଇଲେ ସେ ହସ୍ତ
ଏକାକୀ ଯିବଇଁ କେହୁ ବାହିବ ମୋ ରଥ ।
ସହଦେବ ମୁଖଚାହିଁ ସୈରିନ୍ଧ୍ରୀ ବିଚାରି
ଅର୍ଜୁନ ଯାଆନ୍ତୁ ସହଦେବ ଦେଲେ ଠାରି ।
ସୈରିନ୍ଧ୍ରୀବୋଇଲେ ଯେବେଲୋଡୁଛ ସାରଥି
ଜଣେ ଅଛି ଦେବା ତୋତେ ପାରୁକି ସାଇତି
ଉତ୍ତର ବୋଇଲେ ଯେହୁ ବାହିବ ମୋ ରଥ
ଏ ରାଜ୍ୟେ ଠାକୁର ସେହୁ ଅଟଇ ଯଥାର୍ଥ ।
ତାହାର ଚରଣେ ମୁହଁ କରିବି ଦୟିନୀ
ଅର୍ଘ୍ୟପୂଜା କରିବି ମୁଁ ଲକ୍ଷେରତ୍ନ ଘେନି ।
ସୈରିନ୍ଧ୍ରୀ ବୋଇଲେ ବୃହନ୍ନାରୀ ଆଣ ରାଇ
ବଡ଼ ସୁସଞ୍ଚ କରିଣ ରଥନେବ ବାହି ।
ଶୁଣି ବିସ୍ମୟ ହୋଇଲା ବିରାଟ ନନ୍ଦନ
ବେନି ହସ୍ତରେ ଛୁଇଁଲା ନିଜ ବେନିକର୍ଣ୍ଣ ।
ଉତ୍ତର ବୋଇଲା କେହ୍ନେ ଖଟ ଭୃତ୍ୟପଣେ
ଆପଣାର ଅନୁରୂପେ କହିଲୁ ବଚନେ ।
ବେଟିବେଟି ନିଲକ୍ଷଣୀଙ୍କର କିସ ବୁଦ୍ଧି
ସର୍ବଦା ମୁକୁଳାକେଶ ଦେଖି ନୁହେଁ ସିଦ୍ଧି ।
ନୀଚସ୍ତିରୀ ଅଟେ ସେହି ପୁଣ ହୀନଜାତି
ତାହା ଛାରକୁ କେମନ୍ତେ କରିବି ସାରଥି ।
ଯାତ୍ରାକାଳରେ ଅଯାତ୍ରା ଯେତେକ ଦେଖିଲେ
ଦିନକର ପୁଣ ଯାଏ ତା ମୁଖ ଚାହିଁଲେ ।
ସ୍ତ୍ରୀହୋଇ କେମନ୍ତେ ସେହୁ ବସିବମୋରଥେ
ଦେଖୁ ଦେଖୁ ନେବିତାକୁ କେମନ୍ତେସଙ୍ଗତେ ।

ସୁଦେଷ୍ଣା ବୋଇଲେ ମୁର୍ଖ ଅଟୁରେ ତନୁଜ
ଗନ୍ଧର୍ବୀଙ୍କର ବଚନ କି କାରଣେ ଭାଙ୍ଗ ।
କୀଚକ ନାଶହୋଇଲା ଯା କିଞ୍ଚିତ କୋପେ
ତ୍ରିଗର୍ତ୍ତ ବନ୍ଧନୁ ମୁକ୍ତକଲେ ତୋର ବାପେ ।
ମହାବ୍ରହ୍ମବାଦିନୀ ତ ଅଟେ ମହାମ୍ନାଣୀ
ତାହାର ଆଜ୍ଞାକୁ ତୁ ଯେ ଶିରେଥାଅ ଘେନି ।
ତୁହି ତନ୍ତ୍ରୀପାଳ ଥିଲୁ ତା ରାଜ୍ୟରେ ରହି
ତୋ ଦେଖନ୍ତେ ବୃହନ୍ନାରୀ ରଥ କି ବାହଇ
ଗୋପାଳ ବୋଇଲା ତାହାଦେଖିଛ ପ୍ରତ୍ୟକ୍ଷେ
ଅର୍ଜ୍ଜୁନର ରଥ ଏହୁ ବାହିଥାଇ ନିତ୍ୟେ ।
ଏହାର ବାହିଲେ ଚଳେ ନନ୍ଦିଘୋଷ ରଥ
ସୁଯଶ ହୁଅଇ ପୁଣି ଚାଲଇ ତୁରିତ ।
ଆହେ ଉଦୟ ବିଧାତା ତୁମ୍ଭଙ୍କୁ ସଦୟ
ଯେହୁ ବୃହନ୍ନାରୀ ସେହୁ ଅଟେ ଧନଞ୍ଜୟ ।
ଏପରି ଭିଆଣ କରିଅଛଇ ବିଧାତା
ଯେହୁ ଅଟେ ବୃହନ୍ନାରୀ ପ୍ରତ୍ୟକ୍ଷେ ପଞ୍ଚଆମ୍ନା ।
ବୃହନ୍ନାରୀଠାରେ ତୁମ୍ଭେ ନିଧର ବିମନ
ସେହୁ ଯେବେ ଯିବ ତୁମ୍ଭ କାର୍ଯ୍ୟ ସୁବିଧାନ ।
ସୈରିନ୍ଧ୍ରୀ ବଚନେ ଉପହାସ କରୁଥିଲା
ତନ୍ତ୍ରୀପାଳ କଥାଶୁଣି ସନ୍ତୋଷ ହୋଇଲା ।
ଯାଅ ତୁହି ଗୋପାଳରେ ନାଟପା ମନ୍ଦିରେ
ବେଗେ ବୃହନ୍ନାରୀ ଘେନିଆସ ମୋ ଛାମୁରେ ।
ଶୁଣି ଧାଏଁ ସହଦେବ ଲଉଡ଼ି ବୁଲାଇ
ସୁଖେ ବିହରନ୍ତି ରାଜ୍ୟେ ଆଉକେହି ନାହିଁ ।
ନାଟପା ମନ୍ଦିରେ ଯାଇଁ ଗୋପାଳ ପ୍ରଣମି
ଉତ୍ତରକୁମର ଆଜ୍ଞା ଆସ ବେଗେ ସ୍ୱାମୀ ।
ଶୁଣିକରି ଫାଲଗୁନି ବିଚାରନ୍ତି ଚିତ୍ତେ
ଉତ୍ତର ଆଜ୍ଞାରେ କିମ୍ପା ଯିବଇଁ ତୁରିତେ ।
ଶୁଣି ଜଣାଏ ଗୋପାଳଙ୍କର ଚୁଡ଼ାମଣି
ଆଜ୍ଞାଦେଇଅଛନ୍ତି ତ ଭାରାନିବାରିଣୀ ।
ଉତ୍ତର ବଚନେ ଉପହାସ କରୁଥିଲେ
ସୈରିନ୍ଧ୍ରୀ ବୋଲେ ଶୁଣିଣବେଗେବାହାରିଲେ ।
ଆଗେ ସହଦେବ ପଛେ ଅଛନ୍ତି ଫାଲଗୁନି
ଚାଲନ୍ତେଣ ସହଦେବ କହେ ତୁନି ତୁନି ।
ଦୁର୍ଯ୍ୟୋଧନ ବେଢ଼ିଅଛି ଗୋରୁପଲ ଆସି
ସମରେ ତାହାର ମୁହିଁ ବହୁ ସୈନ୍ୟ ନାଶି ।
ନ ଭାଙ୍ଗିଲେ ସଂଗ୍ରାମରେ କଲେ ସେହୁ ଯୁଦ୍ଧ
ବାହୁଡ଼ିଲେ ନାହିଁ ଯେବେ ପାଇଲେ ପ୍ରମାଦ ।

ଆମ୍ଭେ ପଞ୍ଚଭ୍ରାତ ଥାଉ ଦୁର୍ଯ୍ୟୋଧନ ଆସି
ଗୋହରଣକରିନେଲେ ଲଜ୍ଜାହେବ ବେଶୀ ।
ଉତ୍ତର କୁମରକୁ ହେ ଆମ୍ଭେ ଘେନିଯିବା
କଉରବ ବଳ ଜିଣି ଗୋଧନ ରଖିବା ।
ସହଦେବଙ୍କ ବଚନେ ଅର୍ଜ୍ଜୁନ ଯେ ପୁଛି
ଅଜ୍ଞାତବାସ ଆମ୍ଭର କେତେଦିନ ଅଛି ।
କରଯୋଡ଼ି ସହଦେବ ବଚନ ବୋଇଲା
ତିନିଶତ ସତାବନ ଦିବସ ପୂରିଲା ।
ଆବର ତିନିଦିବସ ଅଛଇ ଦେଖନ୍ତେ
କିଛି ହିଁ ଦୋଷ ନୋହିବ କୌରବ ଜାଣନ୍ତେ
ପୁଣି ଗୁପ୍ତେ ବୋଲେ ଆହେ ଶୁଣ ଧନଞ୍ଜୟ
ବର୍ଷକେ ପନ୍ଦର ଦିନ ବେଢ଼ା ହୋଇଥାଏ ।
ଏମନ୍ତ କାଳେ ସୁଦେଷ୍ଣା ପାଶେ ଯାଇଭେଟି
ଦେଖି ବିଷାଦିତ ମନ ହୋଇଲା ବିରାଟି ।
ଉତ୍ତର ବିଚାର କଲେ ନାରୀ ନିଶ୍ଚେ ଏହି
ସ୍ତିରୀବେଶେ ଅଳଙ୍କାର ଦିଶେ ଗୁଣଗ୍ରାହୀ ।
ପ୍ରଥମରେ ଉପବାସ ଉପୁଜିବ ମୋତେ
କେମନ୍ତେ କହିବି ଏହୁ ବସିବ ମୋ ରଥେ ।
ପ୍ରଭାତକାଳେ ବଦନ ଚାହିଁଲେ ଏହାର
ଶତେକ ଭୋଜନ ଦେଲେ ଦୋଷଯାଏ ପାର
ପୁଣି ଭାଳଇ ପୁଛିବା ଏହାକୁ ବିଶେଷି
କେମନ୍ତେ ଉତ୍ତର ଦେବ କେମନ୍ତ ସାହସୀ ।
ଭରସା ନଦେଲେ ଯାକୁ ନେବିବା କେମନ୍ତ
ଦେଖି ଉପହାସ ରଣେ କରିବେସେ ମୋତେ
ଉତ୍ତର କୁମର ବୋଲେ ଶୁଣ ବୃହନ୍ନାରୀ
ଦୁର୍ଯ୍ୟୋଧନ ନେଉଅଛିମୋ ଗୋଧନସହରି ।
ଦଣ୍ଡଘେନି କକ୍ଷ ଦେଶେ ଚଳିଲେ ବିରାଟ
ବଲ୍ଲଭ ପଣ୍ଡା ସହିତେ ଗଲେ କୋନ୍ତଭଟ୍ଟ ।
ମଘ ମତ୍ସ୍ୟଦେଶେ ରକ୍ଷାପାଳ ମୁହିଁ ଏକା
ସାହସ ଦେବାକୁ ଜଣେ ମୋର ନାହିଁ ସଖା ।
ତୁହି ମାତ୍ର ସଖା ହୋଇ ବାହାମୋର ରଥ
ମାରି ନାରଖାର କରିଦେବି କୌରବନ୍ତ ।
ଏକା ଜଣକେ କରିବି ମୁହିଁ ମହାଯୁଦ୍ଧ
ସାରଥି ଜଣେ ନ ଥିଲେ ହୁଅଇ ଅସାଧ ।
ବୃହନ୍ନାରୀ ବୋଲେ ମୁହିଁକହେକିନାତୋତେ
ଏଡ଼େଧାର୍ମିକ ବାଳୁତ ହେଲୁ ତୁ କେମନ୍ତେ ।
ଦଧି ଶୁଭ ମଙ୍ଗଳକୁ ସଂଗ୍ରାମରେ ସଞ୍ଚ
ନପୁଂସକଙ୍କୁ ଦେଖିଲେ ଅମଙ୍ଗଳ ବାଞ୍ଛ ।

ଯାତ୍ରାକାଳେ ଦେଖିଗଲେ ଅଶୁଭ ହୁଅଇ
କାର୍ଯ୍ୟକୁହିଁ ଯାଉଥିଲେ ଅକାର୍ଯ୍ୟ ଘଟଇ ।
ଅମଙ୍ଗଳ ବାର୍ତ୍ତା ଯହୁଁ କହିଲା ଫାଲଗୁନି
ବିରାଟ ନନ୍ଦନ ଶୁଣି ହୋଇଗଲା ତୁନି ।
ସୈରିନ୍ଧ୍ରୀ ବୋଇଲେ ରାଜ୍ୟେନାହାନ୍ତି ବିରାଟ
ଏମନ୍ତକାଳେ ପଡ଼ିଲା ତେବେ ପରଥାଟ ।
ବିରାଟ ରାଜା ସଂପଦ ନେଉଅଛି ହରି
ଯାହାଙ୍କର ଅନ୍ନ ଖାଇ ତାର କାର୍ଯ୍ୟକରି ।
ଆପଣାର ବଳ ଥାଉଁ ହେଲେ ହୀନବୀର୍ଯ୍ୟ
ଆରଜନ୍ମେ ଖଟନ୍ତି ସେ ଦେଇ ନିଜତେଜ ।
ଆତଙ୍କକାଳେ ପ୍ରାଣୀକି ଯେହୁ ହୁଏ ସାହା
ମାହେଶ୍ୱରୀଙ୍କ ସମାନେ ଦେଖିବା ନା ତାହା ।
ପ୍ରତ୍ୟକ୍ଷେ ଧାର୍ମିକ ତୁହି ଅଟୁ ମହାବୀର
ଉତ୍ତର କୁମରକୁ ତୁ ବାରେ ଦୟାକର ।
ଉତ୍ତର କହନ୍ତେ ସେହୁ ନାସ୍ତି କରୁଥିଲା
ସୈରିନ୍ଧ୍ରୀ କହନ୍ତେ ବୀର ସନମତ କଲା ।
ସେହିକ୍ଷଣି ଦିବ୍ୟବେଶ ହୋଇଲା କିରୀଟି
ବିଚିତ୍ର ବେଶେ ମଣ୍ଡିଲା ଯାଇ ରଥ ଗୋଟି ।
ସ୍ଫଟିକର ରଥେ କଲା ମାରାଗ ମଣ୍ଡଣି
ଶତ ଶତ ହୀରା କଲି ପାବଚ୍ଛେ ଖଞ୍ଜଣି ।
ମର୍କତ ତୁଲେ ମାଣିକ୍ୟ ପୁଞ୍ଜା ପୁଞ୍ଜା ଛନ୍ଦେ
ଗଜମୁକୁତାର ତୁଲେ ଗଜବନ୍ଧ ରୁନ୍ଧେ ।
ହିରଣ୍ୟେ ନିର୍ମିତ ଅର ଯେଉଁ ଚାରିକାଣ୍ଡ
ହୀରା ରେଖା ମାରଗରେ ଖଞ୍ଜି ଅଛି ଦଣ୍ଡ ।
ରଥର ଉପରେ ପୁଣି କଳଶ ନିର୍ମାଣି
ତହିଁର ଉପରେ ଅଷ୍ଟରତ୍ନର ଖଞ୍ଜଣି ।
ଦଧିବାମନ ଆରମ୍ଭ ଲେଖା ଶ୍ୱେତ କାୟେ
ଶ୍ୱେତ ଚାମରକୁ ଧାଡ଼ି ଧାଡ଼ିରେ ଲମ୍ବାଏ ।
ଦେବାଙ୍ଗ ବସନ ରଙ୍ଗ ପଟନୀର ପାଟ
ଘୋଡ଼ଣୀ କରି ମଣ୍ଡଣୀ ମୁଣ୍ଡେ ଚାରିତଟ ।
ନାନାଦି କୁସୁମ ରଙ୍ଗେ ରଙ୍ଗଣୀର ରେଖ
ପଦ୍ମ କୁସୁମ ସକଳ ଝୁଲେ ଚଉପାଖ ।
ରଙ୍ଗ ସୁପଞ୍ଚ ହୋଇଛି ହୀରା ମଣିମୟ
ସ୍ୱରୂପେ ଦିଶିଲା ଦିନକର ରଥ ପ୍ରାୟ ।
ଅନ୍ଧାର ନିଶିରେ ଯେବେ ଚଳିବ ସେ ଯାନ
ଦିବସର ପ୍ରାୟ ଜ୍ୟୋତି ଦିଶିବ ଗଗନ ।
ରଥର ଚକ ଅଟଇ କଣୟ ପିତୁଳି
ଚଳିବାର ବ୍ୟଗ୍ରତାରେ ପବନହୁଁ ବଳି ।

ମହୀ ଲଙ୍ଘିବେ ଶୋଷକେ କିବା ବାରାନିଧି
ସାତଦ୍ୱୀପ ଲଙ୍ଗିବେ କି ସପତ ପୟୋଧି ।
ଯେ ରୂପେ କଣୟ ଗିରି ଦିଶିବ ସୁନ୍ଦର
ଆପଣେ ରଥ ମଣ୍ଡିଲେ ସୁଭଦ୍ରାଙ୍କ ବର ।
ପ୍ରଣୟର କୁନ୍ଦଝରା କୀଲା ରେଖ ରେଖ
ଅଷ୍ଟରତ୍ନର ଶାଙ୍କୁଳି ଲାଗେ ରଥ ପାଖ ।
ବିଶାଶଏ ପାବଛ୍କ ଯେ ତହିଁ ହୀରାକମ
ମର୍କତର ନୀଳା ଘଣ୍ଟ ଅଟଇ ସୁଷମ ।
ରଥପାଟ ଦଉଡ଼ିରେ ଡାଳିମ୍ବର ଝୁମ୍ପା
ଗୁଛିଲାକ କ୍ଷୁଦ୍ରମତେ ବଳି ସବୁ ରୂପା ।
ଯେବଣ ରଥ ମଣ୍ଡିଲେ ଦ୍ୱିତୀୟ ବାସବ
ତାହା ଆଦ୍ୟ ପ୍ରାନ୍ତକରି କିଏ ବା କହିବ ।
ପଞ୍ଚଷଠି ଭଣ୍ଡାରରେ ଥିଲା ଯେତେ ଧନ
ଏକାରଥକରେ ତାହା ମଣ୍ଡିଲେ ଅର୍ଜ୍ଜୁନ ।
ଚୋଖାର ଚୋଖାର ପୁଣି ଶ୍ୱେତଚାରି ବାଜୀ
ପବନୁ ଚଳନ୍ତି ବେଗେ ରଣେ ମହାତେଜି ।
ହୀରା ନୀଳା ପୋହଳା ଯେ ବୈଦୁର୍ଯ୍ୟ ମର୍କତ
ମାଣିକ୍ୟ ଖଞ୍ଜିଲେ ନେଇ ପଥରେ ବହୁତ ।
ପାଟ ବନ୍ଧନ କରିଣ ଅଷ୍ଟରତ୍ନେ ଖଞ୍ଜି
ଶୋଭିତ ଜଡ଼ିଆଲରେ ରତ୍ନ ପୁଞ୍ଜି ପୁଞ୍ଜି ।
ଅଷ୍ଟରତନେ ମଣ୍ଡିତ ହୋଇ ଚାରି ହୟ
ସୂଚୀମୁନେ ନ ଦିଶଇ ଅଶ୍ୱଙ୍କର କାୟ ।
ମଣ୍ଡଣି କଣୟେ ଖଞ୍ଜି ସେହୁ ତ ବିମାନ
ନାରାଚ ନ ଫୁଟିବାକୁ ହୋଇଛି ଏମାନ ।
ଶଙ୍ଖ ବାଜେ ଉର୍ଦ୍ଧ୍ୱେ ଉଡ଼େ ଶଙ୍ଖଚିଲ ପକ୍ଷୀ
ତୋରଣେ ଥାଇ ନାରାଚ ନେଇ ପଞ୍ଚପକ୍ଷୀ ।
ଗଦାଶକତି ମୁଦ୍ଗର ସହିତେଣ ଯାଠି
କୋନ୍ତ ଅସିପତ୍ର ପୁଣି ଅମୋଘ ଶରଟି ।
ତୀକ୍ଷ୍ଣମୁନା କାତିମୁନା ସଙ୍ଗେ ପାଞ୍ଚମୁନା
ମାଇଲେ ଫୁଟି ବୀରଙ୍କ ହୃଦେ ବଜ୍ରସେନା ।
ପାଶୁପତ ନାରାଚହିଁ ଗଦା ମୁଦୁଗର
ଅନେକ ଅସ୍ତ୍ର ନେଇଣ ଥୋଇଲେ ରଥର ।
ଶଙ୍କୁ ଡ୍ରାସ ସହିତରେ ଗୁଞ୍ଜେ ଅଙ୍କୁଶ
ସବୁ ଶସ୍ତ୍ର ହୋଇଲେ ସେ ମୁଁ କହିବିକିସ ।
ରଥ ଉପରେ ଟିକିଏ ବସି ଫାଲଗୁନି
ଚଳାଇ ଦ୍ୟନ୍ତେ ରଥର ଶୁଭେ ଘୋରଧ୍ୱନି
ଆକାଶମାର୍ଗକୁ କ୍ଷେପିଗଲେ ଚାରିହୟ
ପୁଣି ଭୂମିକି ଖସିଲେ ଶ୍ୟେନପକ୍ଷୀ ପ୍ରାୟ ।
ଆକାଶରୁ ଅଶ୍ୱମାନେ ପଡୁଛନ୍ତି ଖସି
କିବା ଅଙ୍ଗାର ପନ୍ନଗ ବିଜେ କଲା ଆସି ।
ଗଗନରୁ ଖସାଇଣ ଆଣି ବୀର ବେଗେ
ଧାତିକାରେ ଉଭାକରେ କୁମାରର ଆଗେ ।
ଉତ୍ତର ଆଗରେ ଅଶ୍ୱ ନ ରହନ୍ତି ଭୂଇଁ
ନ ବୋଇଲେ ଉଡ଼ନ୍ତି ସେ ଆକାଶକୁ ଚାହିଁ
ଫୁ ଫୁକାର ନାଦ କରି ଅଶ୍ୱ ଅନର୍ଗଳ
ଦେଖି ଆଶ୍ଚର୍ଯ୍ୟ ହୋଇଲେ ସୁଦେଷ୍ଣାର ବଳ ।
ଉତ୍ତର ବୋଇଲା ହାଦେ ଅଇଲୁ ତୁ କାହୁଁ
କେହୁ ମହାତ୍ମା ତୁ ଅଟୁ ନପୁଂସକ ନୋହୁ ।
ମାନବ ମାତ୍ର ଏମନ୍ତ ରଥକୁ କି ସାଜି
ନାହିଁ ନ ଥିବ ଏପରି ତ୍ରିଭୁବନ ମଝି ।
ନପୁଂସକ ବୋଲି ଯାହା ନିନ୍ଦାକଲି ତୋତେ
ତହିଁ ପାଇଁ କ୍ଷମାଦାନ କରିଦେବୁ ମୋତେ ।
ବୀରବେଶ ଅଳଂକୃତ ହୋଇଲା କୁମର
ରତ୍ନମଣି ମୁକୁଟହିଁ ଶୋହେ ଲଲାଟର ।
ମୁକୁତା ମଣି ମାଣିକ୍ୟ ହୀରା ଚଉରେଖା
ରତ୍ନଜାଲି ଖଞ୍ଜଣୀ ହେ ଶୋହେ ସପ୍ତଶାଖା ।
ବେନିକର୍ଣ୍ଣାଞ୍ଚଳରେ ଯେ ମୋହେ ରତ୍ନସରି
କଣ୍ଠେ ଚଉସରିମାଳ ଭୂଷଣେ ଦୋସରୀ ।
ଯାତ୍ରାକାଳେ ଏଳବର କରନ୍ତି ସେ ନାରୀ
ବହୁ ବିପ୍ରେ ମିଳି ବେଦଧ୍ୱନିକି ଉଚ୍ଚାରି ।
ସୁଲକ୍ଷଣୀ ସାଧବୀଏ ଅର୍ଘ୍ୟଥାଳୀ ଘେନି
ପ୍ରଥମରେ ବନ୍ଦାଇଲେ ସାରଥି ଫାଲଗୁନି
ଦ୍ୱିତୀୟରେ ବନ୍ଦାପନା କଲେ କୁମରକୁ
ଧର୍ମରକ୍ଷା କରନ୍ତୁ ହେ ସଂଗ୍ରାମେ ତୁମ୍ଭଙ୍କୁ ।
ସୁଦେଷ୍ଣା ବୋଇଲେ ବୃହନ୍ନାରୀ ମୁଖଚାହିଁ
ମୋହର ପୁତ୍ରର କଥା ତୁମ୍ଭଙ୍କୁ ଲାଗଇ ।
ପୁଣି ପୁତ୍ରମୁଖ ଚାହିଁ ଏମନ୍ତ ବୋଇଲେ
ବାବୁ ହେ ସୈରିନ୍ଧ୍ରୀ ହୁଅ ପ୍ରଣିପାତ ଭଲେ
ତାହାଙ୍କ କଲ୍ୟାଣେ ତୁହି ଶୁଣ ଆରେ ସୁତ
ସୁଯଶ ଆସିଣ ତୋତେ ହୋଇବ ପ୍ରାପତ
ଉତ୍ତର ସୁଦେଷ୍ଣାଙ୍କର ଚରଣରେ ସେବି
ପରମ ଆୟୁଷ ତୋତେ ଦିଅନ୍ତୁ ଗନ୍ଧର୍ବୀ ।
ଶତ୍ରୁକୁ କିଣିଣ ପୁତ୍ର ହୁଅସିରେ ଉଭା
ବୃହନ୍ନାରୀ ଦୟା କରିଥାନ୍ତୁ ଯେ ସର୍ବଦା ।
ଉତ୍ତର ବୋଇଲେ ତୁମ୍ଭେ ଶୁଣ ବୃହନ୍ନାରୀ
ଦିନକରେ ରଥ କେତେ ନେବ ବାହିକରି ।
ବୃହନ୍ନାରୀ ବୋଇଲେ ତୁ ଯାହାକଲୁ ପୁଚ୍ଛା
ରଥ ବାହିବି ଯହିଁକି କରିବୁ ତୁ ଇଚ୍ଛା ।
ସ୍ୱର୍ଗ ମର୍ତ୍ତ୍ୟ ପାତାଳ ଯେ ଅଟଇ ସୁତଳ
ତଳ ମହାତଳ ପୁଣି ଅଟେ ସେ ବିତଳ ।

ନିର୍ଭୟହୋଇଣ ଯେବେ ଦେବୁ ତୁ ଆଜ୍ଞାକୁ
ଘଡ଼ିକେ ବାହିପାରିବି ଚୌଦଭୁବନକୁ ।
ଜମ୍ବୁଦ୍ୱୀପ କ୍ରୌଞ୍ଚଦ୍ୱୀପ ଜିଣି ନବଦ୍ୱୀପ
କ୍ଷୀରନୀର ସହିତରେ ସେ ସମୁଦ୍ରଗୁପ୍ତ ।
ବାକି ଚାରି ସମୁଦ୍ର ଯେ ଅଟେ ମହାଘୋର
ଏ ବିଧିରେ ନବଦ୍ୱୀପ ସପତସାଗର ।
ଯହିଁକି ଇଚ୍ଛା ତୁ ମନେ କରିବୁ ବିରାଟି
କ୍ଷଣକମଧ୍ୟେ ତହିଁକି ମୁହିଁ ପାରେ ଘୋଟି ।
ଅର୍ଜୁନର ପ୍ରତିଜ୍ଞାରେ ବାହେ ମୁହିଁ ରଥ
ଯୁଦ୍ଧେ ନ ଜିଣିଲେ ରଥ ନଫେରେ ମୋରତ
ଉତ୍ତର ବସିଲେ ରଥେ ଦେଇ କରତାଳି
ଏତେକାଳେ ମନେଚ୍ଛାରେ ସାରଥି ପାଇଲି
ତୁହି ଯେପରି ସାରଥି ମୁଁ ସେପରି ରଥି
ଆଉକି ସମରେ ବର୍ତ୍ତିଯିବ କୁରୁପତି ।
ଅର୍ଜୁନ ବୋଇଲେ ବ୍ରହ୍ମା ବିଷ୍ଣୁ ମହେଶ୍ୱର
କୁବେର ଚନ୍ଦ୍ର ସୂର୍ଯ୍ୟ ସେ ବାୟୁ ନିଶାଚରେ
ଯେଉଁସ୍ଥାନକୁ ତୁ ବୀର ଆଜ୍ଞାଦେବୁ ମୋତେ
ଏକ୍ଷଣି ତାର ଛାମୁରେ ଭେଟାଇବି ତୋତେ
ଉତ୍ତର ବୋଇଲା ତାହା ଜାଣିବାନା ପଛେ
ଦୁର୍ଯ୍ୟୋଧନ ଗୋରୁ ହରିନେଉଛି ପ୍ରତ୍ୟକ୍ଷେ
କୌରବଙ୍କୁ ଆଗେ ଜିଣି ନେବା ଗୋରୁପଲ
ଅର୍ଜୁନ ବୋଲେ ଅଟଇ ପାଣ୍ଡବଙ୍କ ସଲ ।
ମକର ଶୁକଳ ତ୍ରୟୋଦଶୀ ସୋମବାର
ପୁଷ୍ୟା ନକ୍ଷତ୍ରର ଭୋଗ ଅଟେ ସେ ଦିନର
ବାଳବ ନାମେ କରଣ ବିଷ୍କୁମ୍ଭ ଯେ ଯୋଗ
ମାଘ ସଂକ୍ରାନ୍ତିକୁ ସପ୍ତବିଂଶ ଦିନ ଭୋଗ ।
ଦ୍ୱାଦଶ ଦଣ୍ଡ ଅଟଇ ଭୋଗ ଚନ୍ଦ୍ରକଳା
ଦେଢ଼ପ୍ରହର ପ୍ରବେଶ ବୃହସ୍ପତି ବେଳା ।
ମଳୟପବନ ବହେ ତହିଁ ଧୀରେ ଧୀରେ
ଚିରାଳ ଯେ ରହୁବର ଐଶାନ୍ୟ କୋଣରେ
ବାୟବ କୋଣରେ ଯୋଗ୍ନି ନାରାୟଣ ମୂର୍ତ୍ତି
ମଙ୍ଗଳ ଯୋଗେ ବସିଲେ ବିରାଟ ସନ୍ତତି ।
ରଥ ଚଳନ୍ତେ ବୋଇଲା ଉତ୍ତରା କୁମାରୀ
କ୍ଷତ୍ରୀ ଶ୍ରୀଭୂଷା ଆଣିବ ଆହେ ବୃହନାରୀ ।
ଦୁର୍ଯ୍ୟୋଧନଙ୍କୁ ଜିଣିଣ ଭାଇ ରକ୍ଷାକରି
ଗୋଧନପଲ ଆଣିବ ତାଙ୍କଠୁ ଉଦ୍ଧାରି ।
ବାହିଲେ ସେ ରହୁବର ପାର୍ଥ କୁତୁହଳେ
ଯେଉଁରୂପେ ହଂସପନ୍ତି ଭାସୁଥାନ୍ତି ଜଳେ ।
ଧବଳ କମଳବର୍ଣ୍ଣ ଦିଶେ ଚାରିହୟ
କ୍ଷେପନ୍ତେ ଦିଶନ୍ତି ସେହୁ ଧର୍ମତେଜ ପ୍ରାୟ ।

କିରାତର ବିବାହରେ ଯେସନେ ହିରଣ୍ୟ
କ୍ଷୁଦ୍ର ଘଣ୍ଟିକା ବାଜଇ ତହିଁ ରୁଣଝୁଣ ।
ତିନିଯୋଜନ ଅନ୍ତରେ ଛନ୍ତି ମହାମଲ୍ଲ
ଲକ୍ଷେପୁର କରି ବେଢ଼ିଛନ୍ତି ଗୋରୁପଲ ।
ରଜନୀ ପାହିଲେ ନେବେ ଗୋଧନ ଅଡ଼ାଇ
ଅଡ଼ାବନ୍ତେ ବିହରନ୍ତେ ସେହୁ ଦୁଷ୍ଟଗାଈ ।
ରଥ ଚଳିଯାନ୍ତେ ମନେ ବିଚାରେ କିରୀଟି
ହୃଦଗତେ ସୁମରଇ କୃଷ୍ଣନାମ ଗୋଟି ।
ଜୟ ଜୟ ତୁ କେଶବ କଂସ ଦର୍ପ ଗଞ୍ଜା
ରାମାବତାରେ ତାଡ଼କାସୁରୀ ଦର୍ପ ଗଞ୍ଜା ।
ଦକ୍ଷିଣ ବାରାନିଧିର ଉତ୍ତରର କୂଳେ
ବିଜୟ ଜଗମୋହନ କଳ୍ପବଟ ତଳେ ।
ଅଢ଼ାଇ ତାଳ ଅଦାହ ଭୂମି ତହିଁ ଅଛି
ତୁମ୍ଭ ନିମନ୍ତେ ହେ ହରି ଆସନକୁ ବଞ୍ଚି ।
ମଳୟ ବସନ୍ତ କୃପା କର ଏକ ବିଧି
ସ୍ୱକୁଟୁମ୍ବେ ଘେନି ନାଥ ଅଛନ୍ତି ଜଳଧି ।
ବାମେଛନ୍ତି ମାରକଣ୍ଡ ଦକ୍ଷେ ଯମେଶ୍ୱର
ପୁରୁଷ ଉତ୍ତମ ପ୍ରଭୁ ଆସନ ଯୋଗର ।
ବଉଦ୍ଧ ରୂପରେ କଳିକାଳ ପାପ ନାଶି
ଗୁଣ ବିକାଶୁଛ ରତ୍ନ ସିଂହାସନେ ବସି ।
ଅନାଗତ ସୋଦର ଯେ ଦକ୍ଷେ ବଳଭଦ୍ର
ଦୋଷ ଉପେକ୍ଷି ସାନନ୍ଦେ ଛନ୍ତି ସଉଭଦ୍ର ।
ହେ ସ୍ୱାମୀ ପ୍ରାପ୍ତ କରାଅ ଭୟଙ୍କର ନିଧି
ଏ ବିଶ୍ୱରୂପ ଭାରତ ଅଭୟ ବାରିଧି ।
ସାକ୍ଷାତେ ମହାଭାରତ ଜଗଜ୍ଜନହିତା
ଜନ୍ମେ ଜନ୍ମେ ଭାବଇ ମୁଁ ଚରଣ ସଂହିତା ।
ଧବଳ କମଳ ନୀଳୋତ୍ପଳ ମୁଖଗୋଟି
ମୋ ହୃଦରେ ବିକାଶୁ ସୁରଭୀ ପଦ୍ମ ଫୁଟି ।
ତୁ ତୁଳସୀ ଦେବୀଙ୍କର ଅଟୁ ପ୍ରାଣନାହା
ଏ ଶୁଦ୍ରମୁନି ଶାରଳା ଭାବେ ନିତ୍ୟେ ଏହା ।
ଅଗସ୍ତି ନାମେ ଅଟନ୍ତି ଯେହୁ ମହାଋଷି
ଅଣାକାରପୁରୁଷ ସେ ବାକ୍ୟେ ନୁହେଁ ଭାଷି ।
ନିରାକାର ମହାମୁନି ବହୁକାଳ ସଞ୍ଚା
ରହିଛନ୍ତି ଯୋଗେଶ୍ୱର ପୃଥ୍ୱୀ ହେଉ ବଞ୍ଚା ।
ପରମ ଯୋଗେଶ୍ୱର ସେ ଅଭିଜ୍ଞ ଅଟନ୍ତି
ସେହୁ ମନକଲେ ମହାପ୍ରଳୟ ନାଶନ୍ତି ।
ଦିବା ରାତ୍ରରେ ଅନିଦ୍ରା ଯେଉଁ ମହାଋଷି
ସେହି ମୁନିଙ୍କର ଲୟ ହୃଦୟଗତେ ଭାଷି ।

ଯେବଣ ମହରଷି ଯେ ମହାକୋପଭରେ
ବାରାନିଧିଙ୍କୁ ଗଣ୍ଡୁଷ କଲେ ଅକାତରେ ।
ଜନ୍ମେ ଜନ୍ମେ ଭାବଇ ମୁଁ ଅଗସ୍ତି ଚରଣ
ଶୁଦ୍ରମୁନି ଶାରଳା ଯେ ପଶଇ ଶରଣ ।

—●—

## କୁରୁସୈନ୍ୟ ଦେଖି ଉତ୍ତରର ପଳାୟନ, ଅର୍ଜ୍ଜୁନଙ୍କର ପଶ୍ଚାଦ୍ଧାବନ ଏବଂ କୁରୁବୀରଙ୍କ ଅପମାନ

ଅଗସ୍ତି ଋଷି ନାମେଣ ଯେଉଁ ବ୍ରହ୍ମବେତ୍ତା
ସେ ମୁନି ବକତା ବୈବସ୍ୱତ ମନୁ ଶ୍ରୋତା ।
ଅଗସ୍ତିଙ୍କୁ ପଚାରିଲେ ମନୁ ନରପତି
ମହାଭାରତ ସନ୍ଦେହ କଥା ଅଟେ ଅତି ।
ଉତ୍ତର କୁମରେ ବୃହନ୍ନାରୀ ଘେନିଗଲା
କହିବା ହୋ ମହାମୁନି କେଉଁ କୃତ୍ୟ କଲା ।
ଅଗସ୍ତି ବୋଇଲେ ଏବେ କହୁଥାଇ ଶୁଣ
ଆଶ୍ଚର୍ଯ୍ୟ ଅଟଇ ମହାଭାରତ ବିଧାନ ।
ଅରୁଣ ଉଦେ ରଜନୀ ଅନ୍ତର୍ହିତ ହେଲା
ଅଳପ କୁହୁଡ଼ି ଧର୍ମ ପ୍ରାୟେକ ଦିଶିଲା ।
ଯାଆରେ ଚଳାଅ ବୋଲି ଶୁଭିଲାକ ଗୋଳ
ଏହିକାଳେ କୁରୁସୈନ୍ୟେ ପଡ଼ିଲା ଚହଳ ।
ଘୋଡ଼ାଙ୍କର ତତବଡ଼ ହସ୍ତୀ ଘଣ୍ଟରବ
ଗାଈଙ୍କର ହମ୍ବାରବ କିଳିକିଳା ରବ ।
ସିନ୍ଧୁ ଘୋଷ ପ୍ରାୟବସେ ଶୁଭେ ଘୋରନାଦ
ବିରାଟ କୁମର ଶୁଣି ହୋଇଲା ସ୍ତବଧ ।
ଉତ୍ତର ବୋଇଲା ରଖ ରଖ ବୃହନ୍ନାରୀ
ବଣା ହୋଇଗଲା ବାଟ ବାରି ତ ନ ପାରି ।
ଚଳି ନ ପାରିଲୁ ତୁହି ରଜନୀର ବେଳେ
କିପାଇଁ ପ୍ରବେଶ ହେଲୁ ଆସି ସିନ୍ଧୁ କୂଳେ ।
ବହନରେ ଆମ୍ଭେ ଯିବା କୌରବ ଥାଟକୁ
ତୁ ରଥ ବାହିଲୁ ସିନ୍ଧୁ ଉତର କୂଳକୁ ।
ପୁଣି ବିଚାରେ ପାଣ୍ଡବବୀର ବୃହନ୍ନାରୀ
ବାହିଲା ଯା ବୋଲେ ରଥ ବିଚାର ନ କରି
ସୈନ୍ୟ ସମୁଦ୍ର ବୋଲିଏ ନ ଚେତଇଭଲେ
କିପରି କରିବି ଯୁଦ୍ଧ ଭୀଷ୍ମ ଦ୍ରୋଣ ତୁଲେ ।
କିପାଇଁ ଏଥି ବାହିଲେ ତହୁଁ ସବ୍ୟସାଚୀ
ଉତ୍ତରେ ବୋଇଲେ ଦୃଢ଼େ ବସ ମନେପାଞ୍ଚି
ଧୀର ଧୀର କରି ପୁଣି ଚଳାଇଲେ ପାର୍ଥ
ଆକାଶୁ ଖସଇ ଯେହ୍ନେ ମାତଳିର ରଥ ।
ଏକଦୃଷ୍ଟିରେ ଚାହିଁଲେ ତାକୁ କଉରବେ
କର୍ଣ୍ଣ ବୋଇଲେ ତାହାର ଏ ରଥଗାଙ୍ଗବେ
ଅମର ବାରସ୍ୱତୀକୁ କରିଣ କି ତେଜ୍ୟା
କୌତୁକେ ବିହରୁଛନ୍ତି ଅବା ଦେବ ରାଜା ।
ମାନଗୋବିନ୍ଦ ବୋଇଲେ ଏ ଦୁହେଁ ମଘବା
ଐରାବତ ପୃଷ୍ଟେ ବିଜେ ହୁନ୍ତି ସୁରଦେବା ।
ଶକୁନି ବୋଇଲେ ଏହୁ ଅଟନ୍ତି କୁବେର
ଶଲ୍ୟ ବୋଲେ ସଙ୍ଗେ ଥାନ୍ତା ବାହନ ତାହାର ।
ଦୁଃଶାସନ ବୋଲଇ ଏ ଦେବ ତ୍ରିଲୋଚନ
ମାହେଶ୍ୱରୀ ସଙ୍ଗେ ଘେନି କରନ୍ତି ଗମନ ।
ଅଶ୍ୱତ୍ଥାମା ବୋଲେ ଏ ଦୁହେଁ ମହାଦେବ
ରୁଦ୍ର ହୋଇଲେ ସଙ୍ଗରେ ଥାଆନ୍ତା ବୃଷଭ ।
ଦୁର୍ଯ୍ୟୋଧନ ବୋଇଲା ଏ ଦେବ ପଦ୍ମଯୋନି
ମରାଳ ବାହନ ନାହିଁ ବୋଇଲା ଶକୁନି ।
ଦ୍ରୋଣ ବୋଇଲେ ମଘବା ଗୋବିନ୍ଦ ଅର୍ଜ୍ଜୁନ
ତିନିଙ୍କ ଛଡ଼ା ଏ ସ୍ଥାନେ ନ ଆସିବେ ଆନ ।
ଦୁର୍ଯ୍ୟୋଧନ ବୋଲେ ଇନ୍ଦ୍ର ନୁହନ୍ତି ବିବାଦି
ମୋ ସମରେ ଆସିବେ ସେ କିମ୍ବା ଜମ୍ବୁଭେଦି ।
ବାସୁଦେବ ବଳରାମ ଯେଉଁ ଦୁଇଭ୍ରାତେ
ସର୍ବଦା ସହାୟ ସେହି ହୋଇଥାନ୍ତି ମୋତେ ।
ପଞ୍ଚପାଣ୍ଡବେ ମଲେଣି ବନସ୍ତରେ ପଡ଼ି
ଆନ କେହୁ ଆସୁଛନ୍ତି ଏକାରଥେ ଚଢ଼ି ।
ଏମନ୍ତ ବିଚାରୁଛନ୍ତି କଉରବ ସୈନ୍ୟ
ରଥ ଘେନିଣ ବିଜୟ କରିଲେ ଅର୍ଜ୍ଜୁନ ।
ଉତ୍ତର ବୋଇଲେ ତୁହି ବାଇ କିରେ ସଖି
ଅଗାଧ ସମୁଦ୍ରେ ଆସି ପଶୁଛୁ କାହିଁକି ।
ବୃହନ୍ନାରୀ ବୋଲେ ଅନ୍ଧକିରେ ତୋରଚକ୍ଷୁ
ସଂଗ୍ରାମସ୍ଥଳେ କାହିଁ ତୁ ସମୁଦ୍ରକୁ ଦେଖୁ
ଉତ୍ତର ବୋଇଲେ ରଥ ରଖ ବୃହନ୍ନାରୀ
କୂଳକୁ ଆସୁଛି ଦେଖ ସମୁଦ୍ର ଲହରୀ ।
ଦେଖ ଦେଖ ଆରେ ସଖି ବୋଇତ ଅପାର
ମତ୍ସ୍ୟ କଚ୍ଛପ ଅନେକ୍ ଦେଖ ଜଳଚର ।
ମଧ୍ୟରେ ପୁଣି ରହିଛି ଦେଖ ସ୍ୱଚ୍ଛପାଣି
ସମୁଦ୍ରଘୋଷ ଶୁଭଇ ପ୍ରଳୟକୁ ଜିଣି ।
ଉତ୍ତର ମୁଖରୁ ଶୁଣି ଏହି ପରକାରେ
ବିଚାରନ୍ତି ଧନଞ୍ଜୟ ଆପଣା ମନରେ ।
ଏହିକ୍ଷଣି ପଳାଇବ କୌରବ ଦେଖନ୍ତେ
ଆବର ସମର ଏହୁ କରିବେ କେମନ୍ତେ ।
ଶୁଣି ଉତ୍ତର ବୋଲିଣ ବୋଲି ବୃହନ୍ନାରୀ
ସାରସ୍ୱତ ବାକ୍ୟ ତାର କେହୁ ନାସ୍ତିକରି ।

ସେମାନଙ୍କୁ ସାଗର ତ ବୋଲୁ ସେ ସଇନି
ସିନ୍ଧୁ ଘୋଷ ପରାୟେ ତୁ ଶୁଭେ ମୁଖଧ୍ୱନି ।
ବୋଇତ ବୋଲିଣ ତୁହି ବୋଲୁଛୁ ଯାହାକୁ
ସେହୁ ରଥମାନ ଚାହିଁ ନିରେଖି ତାହାକୁ ।
ଜଳଚର ବୋଲି ଯାରେ ଭାବୁ ହୃଦଗତେ
ଗଜ ଅଶ୍ୱମାନେ ସେହୁ ଅଟନ୍ତି ଯୁକତେ ।
ତୁହି ଯେ ବୋଇଲୁ ପୁଣି ମଧ୍ୟେ ଛିରଜଳ
ଥାଟ ଘେନିଣ ଅଛନ୍ତି ତୋ ଗୋଧନ ପଲ
ଧବଳ କମଳ ପ୍ରାୟ ଗୋଧନ ଅଟନ୍ତି
ଛିରଜଳ ପରାୟେକ ସେମାନେ ଦିଶନ୍ତି ।
ଲହରୀବୋଲି ତୁ ଯାହା ବୋଲୁମୋରଆଗେ
ପତାକା ଉଡ଼ଇ ସେହୁ ରହୁବର ଭାଗେ ।
ଧୃତରାଷ୍ଟ୍ରଙ୍କ ନନ୍ଦନ ବୀର ଶିରୋମଣି
ରଥ ଗଜ ଅଶ୍ୱ ତାର ଅଷ୍ଟାଦଶ କ୍ଷୌଣି ।
ଭୀଷ୍ମ ଦ୍ରୋଣ କର୍ଣ୍ଣଆଦି ଅଶ୍ୱଥାମା ଶଲ୍ୟେ
ଇନ୍ଦ୍ର ଗୋବିନ୍ଦକୁ ଜିଣିପାରନ୍ତି ଏ ହେଳେ ।
ଉତ୍ତର ବୋଇଲା ରଥରଖ ବୃହନ୍ନାରୀ
ଏହି ଯେବେ ଦୁର୍ଯ୍ୟୋଧନ କୌରବାଧିକାରୀ
ତନ୍ତ୍ରୀପାଳ ଏହା କିମ୍ପା ନବୋଇଲା ମୋତେ
ମୁହିଁ ଜାଣିଥିଲି ଅବା ହେବ ପାଞ୍ଚସାତେ ।
ଗୋଧନ ପଲକୁ ନେଇଅଛନ୍ତି ଅଡ଼ାଇ
ଏମନ୍ତ ବିଚାରି ବେଗେ ଅଇଲଇଁ ମୁହିଁ ।
ଏତେ ସୈନ୍ୟ ଘେନି ଆସିଛନ୍ତି କୁରୁପତି
ଏକା କୈ ବର୍ତ୍ତକେ କି ସମୁଦ୍ର ହୁଏ ମଛି ।
ନବ ଯୋଜନ ମାଡ଼ିଣ ରହିଛନ୍ତି ଥାଟ
କେମନ୍ତେ ସମର୍ଥହେବି ମୁହିଁ ବାଳଚାଟ ।
ଅର୍ଜ୍ଜୁନ ବୋଇଲେ ଶୁଣ ଅଗସ୍ତି ମହିମା
ଗଣ୍ଡୁଷେକ ସମୁଦ୍ରକୁ ପିଇଲେ ମହାତ୍ମା ।
ଏକା ହୋଇଣ ରାବଣ ତୋଳିଲା ମନ୍ଦିର
ଏକାବାଳୀ ମଛିଲା ଯେ ସପତସାଗର ।
ତ୍ରେତୟା ଯୁଗରେ ଏକା ମହାମଲ୍ଲ ହନୁ
ରାକ୍ଷସବଳ ମଛିଲା ଅଞ୍ଜନାର ସୁନୁ ।
ଏକାଜଣକରେ ସର୍ବେ ହୋଇଲେ ବିନାଶି
ଏକା ଧ୍ୱଂସିଲେ ଉରଗବଳ ଦେଶକାଶୀ ।
ବୃହନ୍ନାରୀ ବାକ୍ୟ ଶୁଣି ଉତ୍ତର ବୋଇଲା
ସେମାନଙ୍କ ତୁଲ୍ୟ ବଳନାହିଁ ମୋ ଅଇଲା
ଶୁଣି କୋପକରି ବାକ୍ୟବୋଲେ ବୃହନ୍ନାରୀ
ରାଜାରକୁମର ତୋତେ ବୋଲିତ ନପାରି
ରାଜସୁତ ହୋଇ ଯେବେ ନାହିଁ ପରାକ୍ରମ
କୌରବ ସଙ୍ଗେ କେମନ୍ତ କରିବୁ ସଂଗ୍ରାମ ।
ପର୍ବତ ଚୂର୍ଣ୍ଣହୁଅଇ ଚଳିଯାନ୍ତି ଥାଟ
ନବଶତ ରାଜ୍ୟ ଭାଙ୍ଗି କରେ ସେହୁ ରାଷ୍ଟ୍ର ।
ମାତା ପିତା ଦେଖି ଯାର ନାହିଁ ନମସ୍କାର
ମାନଗୋବିନ୍ଦ ବୀରଧ୍ୱ ବୋଲାଏ ଯେ ବୀର
ଉତ୍ତର ବୋଲେ ନ ଜାଣୁ ତୁହି ତାହା ଜାଣ
କୁରୁସାଗରକୁ ପୁଣି ମୋତେ କିମ୍ପା ଆଣ ।
ରାଜାର କୁମର ମୁହିଁ ବୟସେ ବାଳୁତ
ମୋତେ ପ୍ରବାଦେ ବାଛିଲେ ହୋଇବି ଅର୍ଥ
ମତ୍ସ୍ୟ ମଘଦେଶେ ଅଛି ଯେତେକ ସମ୍ପତ୍ତି
ବିରାଟ ଅନ୍ତେ ହୋଇବି ମୁହିଁ ଅଧିପତି ।
ଏଡ଼େ ସମ୍ପଦ ମୁଁ ନାଶ କରିବି କେମନ୍ତେ
ତୁ ସଖି କଟାଳ ଆଉ ନ କରସି ମୋତେ ।
ନିଅନ୍ତୁ ଗୋରୁଙ୍କୁ ପ୍ରୟୋଜନ ନାହିଁ ତେଣେ
ବାପା ବିରାଟ ଅଛନ୍ତି ଚାହିଁ ମୋତେ ଏଣେ ।
ବୃହନ୍ନାରୀ ବୋଲେ ଯେବେ ପ୍ରାଣେକଲୁ ଆଶା
ସିଂହାସନ ରଖିବୁ ତୁ ଏ କେଉଁ ଭରସା ।
ମୋହର ଆଗେ ପ୍ରତିଜ୍ଞା ତୁହି କଲୁ ଯେବେ
ସାହସିକ ପଣ ତହିଁ ଦେଖିଲଇଁ ତୋତେ ।
କ୍ଷତ୍ରୀୟକୁଳରେ ବାବୁ ହୋଇ ତୁହି ଜାତ
ଅନ୍ତରେ ଦେଖିଲି ତୋତେ ଅଜାଯୁଥ ବତ ।
ମୁହିଁ ଆଗେ ମନାକରି ଅଛଇ ବହୁତ
ବୋଇଲି ଶତ୍ରୁ ନ ଜିଣି ନଫେରେ ମୋରଥ ।
ସିଂହପ୍ରାୟ ମିଳିଲୁ ତୁ ଆସି ଥାଟକତି
ବିନାଯୁଦ୍ଧେ ପଳାଇଲା କିମ୍ପାଇଁ ଝଟତି ।
ସାରଥି ହୁଅ ମୋହର ଉପାୟେକ ଅଛି
ମୋହର ଥିଲେ ପ୍ରମାଦ ତୋତେନାହିଁକିଛି ।
ଶୁଣି ଉତ୍ତର ବୋଲଇ ମୁଁ ତୋର ଶରଣ
ଏ ମହାସଙ୍କଟୁ ମୋତେ କର ପରିତ୍ରାଣ ।
ଅପ୍ରମାଦେ ମୋତେ ଏଥୁ ଘେନିଗଲେ ତୁହି
ଲକ୍ଷେକ ଗୋଧନ ତୋତେ ଦେବଇଁ ବଧାଇ ।
ଲକ୍ଷେ ଗଜଦେବି କିମ୍ପା ମୋ ଭକ୍ତି ନଘେନୁ
ଅନେକ ଦୟିନୀକରେ ବିରାଟର ସୁନୁ ।
ଲକ୍ଷେକ ତୋଖାର ତୋତେ ଦେବଇଁ ତୁରଗ
ଲେଉଟାଇ ମୋର ରଥ ବାହୁକିନା ବେଗ ।
ଅସମୟ କାଳେ ଯେହୁ ତାରଇ ପ୍ରାଣୀଙ୍କି ।
ପରମପୁରୁଷ ସଙ୍ଗେ ଗଣି ସେ ପ୍ରାଣୀଙ୍କି ।
ଦନ୍ତେତିରଣ ତୋତେ ମୁଁ ଘେନେ ବୃହନ୍ନାରୀ
କେବଳ ଦୁସ୍ତରୁ ମୋତେ ଘେନିଯାଅତାରି ।
ବୃହନ୍ନାରୀ ବୋଇଲେ ତୁ ଆସି ଏତେଦୂର
ଥରେ ଭେଟ ହୋଇ ଯାଅ ରାଜାର ସଙ୍ଗର ।

ପନ୍ନଗନାରାୟଣ ସେ ମାନଚକ୍ରବର୍ତ୍ତୀ
ତାହାଙ୍କୁ ଦର୍ଶନ କଲେ ଫିଟିଯିବ ଭ୍ରାନ୍ତି ।
ଉତ୍ତର ବୋଇଲା ମୁହିଁ ମନ୍ଦକୃତ୍ୟ କଲି
ଦେଖୁ ଦେଖୁ ଜଳପ୍ରଭା ପିଠିରେ ବସିଲି ।
ନୀଚଲୋକ ସଙ୍ଗେ ପ୍ରୀତି ବଢ଼ାଇଲି ମୁହିଁ
ଜଳନ୍ତା ଅଗ୍ନି ଭିତରେ ପଶିଲି କିମ୍ପାଇଁ ।
ଜାଣି ଜାଣି ନପୁଂସକ ଆଣିଲି ମୁଁ ତୁଲେ
ଅଜାଡିଙ୍କ ତୁଲେ ପ୍ରୀତି ବଢ଼ାଇଲି ଭଲେ ।
ବୃହନ୍ନାରୀ ବୋଇଲେ ତୁ ଶୁଣ ମହାବୀର
ସଂଗ୍ରାମ ଅଶ୍ୱମେଧଟି ଯୋଗର ବେଭାର ।
ବଳୀ ମାନଧାତା ପୁରୁରବା ଚକ୍ରବର୍ତ୍ତୀ
ଏମାନେ ଗଲେଣି ସର୍ବେ ରହିଅଛି କୀର୍ତ୍ତି ।
ଏତେକ ବୋଲିଣ ରଥ ବାହେ ବେଗହୋଇ
ଯା ଦେଖି ଉତ୍ତର ରଥୁଁ ପଡ଼ିଲାକ ଡ଼େଇଁ ।
ଅତ୍ୟନ୍ତ ଚଞ୍ଚଳେ ଧାଏଁ ରଥକୁ ଉପେକ୍ଷି
ବୃହନ୍ନାରୀ ହସେ ତାର ପଳାୟନ ଦେଖି ।
ନିର୍ଲ୍ଲଜଆତ୍ମା ଯା ପାପପୁଣ୍ୟେ ନାହିଁ ଜ୍ଞାନ
ଯାସଙ୍ଗେ ଆସି ପ୍ରତିଜ୍ଞା ମୋର ହେଲା ହୀନ
ମୋହର ଦେଖନ୍ତେ ଯେବେ ଗୋରୁପଲଯିବ
ଆମ୍ଭର ଆଶେ ବିରାଟ ସମ୍ପଦ ସରିବ ।
ମୁଁ ରାଜଭବନକୁ ଯେବେ ନ ଆସନ୍ତି ଅବା
ଜ୍ଞାନେ ଅଜ୍ଞାନେ ଦୋଷ କି ମୋର ହୁଅନ୍ତାବା
ଏହାର ପ୍ରତିଜ୍ଞା କାହିଁ କିବା ବୀର୍ଯ୍ୟଗୁଣ
କାଳେ ହୀନହୋଇଲା ମୋ ସର୍ବ ବଡ଼ପଣ
ମୁହିଁ ଯେବେ ବାହୁଡ଼ିଣ କରିବି ଗମନ
ଠାକୁରେ କରିବେ କୋପ କୁଳକୁ ଦୂଷଣ ।
ମନ୍ତ୍ରୀ ବୋଇଲା ଅଜ୍ଞାତ ଅଛି ଅଳ୍ପଦିନ
ଆବର ତିନିଦିନରେ ହୋଇବ ସମ୍ପୂର୍ଣ୍ଣ ।
କରିବି ସମର ମୁହିଁ କୌରବଙ୍କ ତୁଲେ
ପ୍ରକାଶ ହୋଇବ ଗୋରୁପଲ ଛଡ଼ାଇଲେ ।
ମୁହିଁ ଅବା ବାହୁଡ଼ିଣ ଯାନ୍ତି ଏଥୁ ଘୁଞ୍ଚି
ଭୀମଠାକୁରଙ୍କ କୋପେ ଭାଜନ କେ ଅଛି ।
ଏତେକ ବିଚାରି ମନେ ପାଣ୍ଡବ ବିବସ୍ତ
ଉତ୍ତରେ ଧରିବା ପାଇଁ ଗୋଡ଼ାଇଲା ପଛ ।
ସ୍ତିରୀବେଶ ଅଳଙ୍କାର କବେରୀରେ ଖୋଷା
ଦିଶୁଅଛି ଦୁଇପାଦେ ନୂପୁରର ଭୂଷା ।
ଦୂରୁଦେଖି କର୍ଣ୍ଣବୀର କରତାଳି ଦେଇ
ହସିଲେ ଉପହାସକୁ କରି କୁରୁସାଇଁ ।
ସ୍ତିରୀବେଶ ହୋଇ ଜଣେ ଗୋଡ଼ାଉଛି ପାଶ
ରଥଡ଼େଇଁ ପଳାଇଛି କେବଣ ପୁରୁଷ ।

ଶୁଣିଣ ପ୍ରତିଉତ୍ତର ଦିଅନ୍ତି ଶକୁନି
ବିରାଟ ଯେ ଆସୁଥିଲା ସୁଦେଷ୍ଣାଙ୍କୁ ଘେନି ।
ଭୟ ଉପୁଜିଲା ତାର ବାହୁବଳ ଦେଖି
ପଳାଏ ବିରାଟରାଜା ରଥକୁ ଉପେକ୍ଷି ।
ସ୍ତିରୀମାନଙ୍କ ନିର୍ଭୟ ପ୍ରକୃତି ଅଟଇ
ତେଣୁ ସେହି ବିରାଟକୁ ରାଣୀ ଲେଉଟାଇ ।
ଭୀଷ୍ମ ପୁଣି ପୁଚ୍ଛାକଲେ ଦ୍ରୋଣ ସନ୍ନିଧିର
ପଳାନ୍ତାକେ ଗୋଡ଼ାନ୍ତାକେ କରହେ ବିଚାର ।
ଶୁଣି ଉତ୍ତର ଦିଅନ୍ତି ଭରଦ୍ୱାଜ ସୁନୁ
ପଳାବନ୍ତି ଲୋକ କିଏ ତାକୁ କି ନ ଚିହ୍ନୁ ।
ଗୋଡ଼ାବନ୍ତା ଲୋକ ସେହୁ ସ୍ୱରୂପ ଯୁବତୀ
ଧାମନ୍ତେ ଦେଖିଲି ମୁହିଁ ଅର୍ଜ୍ଜୁନର ଗତି ।
ଭୀଷ୍ମ ବୋଇଲେ ସ୍ୱରୂପ ଅଟେ ଏହିକଥା
ଗୁରୁବାକ୍ୟ କୁକେ ଆନ କରିବ ସର୍ବଥା ।
ଭୀଷ୍ମ ଦ୍ରୋଣଙ୍କ ବଚନେ କଉରବେ ହସି
ସ୍ତିରୀଗୋଟାକୁ ଅର୍ଜ୍ଜୁନ କେଉଁରୂପେ ଭାଷି ।
ଏଡ଼େବଡ଼ କ୍ଷତ୍ରୀହୋଇ ଜ୍ଞାନକୁ ଉପେକ୍ଷି
ଦିବସେ ପାଣ୍ଡବଗଣ ସ୍ୱପନକୁ ଦେଖି ।
ଅତିପଣ୍ଡିତ ଅଭାଗ୍ୟ ପୁଣି ଧର୍ମଯାତ୍ରା
ଅନୁବ୍ରତେ କର ତୁମ୍ଭେ ପାଣ୍ଡବଙ୍କ ଚିନ୍ତା ।
ଚତୁର୍ଦ୍ଦିଗ ଚାରମାନେ ବାରତା କହିଲେ
ପାଣ୍ଡବଙ୍କ ଚିହ୍ନବର୍ଣ୍ଣ କିଛି ନ ଦେଖିଲେ ।
ବନସ୍ତେ ପାଣ୍ଡବେ ମଲେ ଅନ୍ନକଷ୍ଟ ଘେନି
ଦାନବେ ଅର୍ଜ୍ଜୁନ ମାରି ନେଲେ ଯାଜ୍ଞସେନୀ ।
ନକୁଳ ସହଦେବ ଯେ ମଲେ ବନେପଡ଼ି
ଅର୍ଜ୍ଜୁନ ୨ ତୁମ୍ଭେ ଅହର୍ନିଶି ଲୋଡ଼ି ।
ଅଥବା ପାଣ୍ଡବ ଥିବେ କେଉଁସ୍ଥାନେ ଲୁଚି
ଅଜ୍ଞାତ ବନବାସକୁ ତିନିଦିନ ଅଛି ।
ହିତ କହନ୍ତି ତାହାଙ୍କୁ ନ ଲାଗିଲା ଭଲ
ଗୁଣଗ୍ରାହୀ ହୋଇ କିମ୍ପା ସୋଦର ନାଶିଲ ।
ପାଣ୍ଡବ ୨ ବୋଲି ଛାଡୁଛି ବୋବାଳି
ଆଉ କି ଆସିବେ ସତେ ମନେ ଅଛ ଭାଳି ।
ଦ୍ରୋଣ ବୋଲୁଛନ୍ତି ତେରମାସ ଯେ ଅଜ୍ଞାତ
ଶେଷହୋଇଯାଇ ବାକୀ ଦିବସ ଯେ ସାତ ।
ଗୁପତେ ସପ୍ତଦିବସ ଗଲା ହାଦେ ବହି
ତୁମ୍ଭର ଲେଖାକୁ ତିନିଦିନ ଅଛି କାହିଁ ।
ଭୀଷ୍ମ ବୋଲୁଛନ୍ତି କିଛି ନବୋଲ ହେଦ୍ରୋଣ
ଅଥବା ଅର୍ଜ୍ଜୁନ ଏହି ଜାଣିବା ଏକ୍ଷଣ ।
ବହୁ ଉପହାସେ ଦ୍ରୋଣ ହୋଇଗଲେ ତୁନି
ଉତ୍ତରକୁମାରେ ଯାଇଁ ଧରେ ଫାଲଗୁନି ।

କୋଳକରି ବେନିଭୁଜେ ଅର୍ଜ୍ଜୁନ ଆକର୍ଷି
ଶିରେ କରଦେଇ ଉତ୍ତରକୁ ମାଡ଼ିବସି ।
ଛାଡ଼ ଛାଡ଼ ନପୁଂସକ ମୁଁ ଦଇନୀ ତୋତେ
ମହାଭୟ ଲାଗିଲାଣି ଧରୁଛ କିମର୍ଥେ ।
ମୋରଭକ୍ତି ଘେନି ତୁହି କରଗୋ ଉପେକ୍ଷା
ଭାର୍ଗବଗୋତ୍ର ମୋହର ସଖି କର ରକ୍ଷା ।
ଅନେକ ବିନୟୀ ହୋଇ କହୁଛିରେ ସଖି
ମୋର ପ୍ରାଣଗଲେ ତୁହି ହୋଇବୁ କି ସୁଖୀ
ଅର୍ଜ୍ଜୁନ ବୋଇଲେ ଯେବେ ହୋଇଲୁ ନିସତ
କାର୍ତ୍ତିକ ପରେ ଇଛିଲା ତୋର ଧର୍ମକୃତ୍ୟ ।
ସଂଗ୍ରାମରେ ଯେବେ ଜିଣିପାରିବୁ ତୁ ଥାଟ
ଜୀବନ୍ତେ ସାଧୁ ଅନ୍ତିମେ ପ୍ରାପ୍ତ ବଇକୁଣ୍ଠ ।
ସଂଗ୍ରାମ କରି ପଡ଼ନ୍ତି ଯେହୁ ରଣଯୋଗେ
ବୈକୁଣ୍ଠେ ବିତର୍କେ ଚଳିଯାନ୍ତି ଅନ୍ୟମାର୍ଗେ
କ୍ଷତ୍ରୀୟବୃତ୍ତି ଅଟଇ ବଡ଼ଇ ଦୁର୍ଲ୍ଲଭ
କିମ୍ପାଇଁ ତୁ ତେଜୁ ଅଛୁ ଏଡ଼େକ ସୁଲଭ ।
ହରିବଂଶ ଅଟଇ ଯେ ଶୁକ୍ର ମହାରାଜ
ତା କଥା କହୁଛି ଶୁଣ ବିରାଟ ତନୁଜ ।
ଜନ୍ମିଲେ ମରଣଅଛି ତାକୁ କିମ୍ପା ଭୟ
ସଖୀଦୁଃଖୀ ସବୁଙ୍କରି ଯେ ପର ଆଶ୍ରୟ ।
ଏକା ଜଗନ୍ନାଥ ତୁହି ମନେ କର ଧ୍ୟାନ
ସକଳ ଦୂରିତ ତୋର ହୋଇବ ଦହନ ।
ସଂସାରପାଳକ ଯେହୁ କମଳା ବିଳାସ
ସେ ପାଦପଦ୍ମେ ଶରଣ ଶ୍ରୀ ଶାରଳା ଦାସ ।

—●—

## ଶୁକ୍ର ମହାରାଜାଙ୍କ ଉପାଖ୍ୟାନ

ଅଗିସ୍ତ କହୁଅଛନ୍ତି ହେ ମନୁନାୟକ
ଏଥୁଅନ୍ତେ ଶୁଣ ଯାହା ହେଲା କଉତୁକ ।
ହରିବଂଶ ଅଟଇ ହେ ଶୁକ୍ର ମହାରାଜ
ମନୁ ଗୋରେଖ ଆଦି ଯେ ଏ ଚାରି ତନୁଜ
ବଡ଼ ପ୍ରତାପୀ ସେ ରାଜା ଜଗତେ ବିଖ୍ୟାତି
ବିଦର୍ଭ ଦେଶର ସେହୁ ଅଟେ ଅଧିପତି ।
ଦାନେ ଶୁରବନ୍ତ ସେହୁ ମାନେ ଶରବନ୍ତା
ଅହର୍ନିଶିରାଜ୍ୟକୁ ସେ ଅଟେ ଜଗହିତା ।
ଲକ୍ଷେକ ଦିହୁଡ଼ି ରାଜା ଦିବସେ ଲଗାଇ
ପରରାଜ୍ୟେ ଶ୍ରୀଠାକୁର ବୋଲିଣ ଭଣାଇ ।
ଚାରିକୁମାର ତାହାର ବୋଇଲେ ରାଜାକୁ
ଭୋ ପିତା ନ ଦିଅ ଦଣ୍ଡ ପରର ରାଜାକୁ ।
ଅନେକ ଜୀବରେ ତାତ ହେଲୁ ତୁ ବିବାଦି
ବହୁତ ପାପ ଦୋଷରୁ କିଛି ନୁହେଁ ସାଧି ।
ପୁତ୍ରଙ୍କର ବଚନ ସେ ନଶୁଣିଲା କର୍ଣ୍ଣେ
ଅରବିନ୍ଦ ଦେଶେ ରାଜା ଗଲେ କୋପମନେ
ପୁତ୍ରେ ଅପସରି ଗଲେ ଦେଖି ପିତା ପାପ
କପିଳାସ ତୀର୍ଥେ ଯାଇ କଲେ ଘୋର ତପ ।
ରାଜା ଅରବିନ୍ଦ ଦେଶେଗଲେ ଯେତେବେଳେ
ତାର ଦେଶକୁ ବାହିଲା ମଗଧ ଭୂପାଳେ ।
ମଗଧ ଈଶ୍ୱର ତୁଚ୍ଛା କଟକରେ ପଶି
ଧନଭଣ୍ଡାର ସମସ୍ତ ପକାଇଲା ଧ୍ୱଂସି ।
ନବଯୁବା ସ୍ତିରୀଙ୍କୁ ଯେ ବଳେ ଧରି ହରି
ରୋଷକରି ଘେନିଗଲା ବାଳକଙ୍କୁ ହରି ।
ରାଜାଙ୍କ ଚାରିକୁମର ତପ କରୁଥିଲେ
ରାଜ୍ୟର ଅବସ୍ଥା ଯାଇ ନାରଦ କହିଲେ ।
ନାରଦ ବଚନ ଶୁଣି ଶୁକ୍ରପୁତ୍ର ଚାରି
ବୋଇଲେ ସେ ଶୂନ୍ୟନଗ୍ରେ ପଶେ କେଉଁପରି ।
କୁଟୁମ୍ବଙ୍କ ନାରଖାର ଶୁଣି ଭାଇଚାରି ।
ଧର୍ମକରୁ ତେଜ୍ୟାକରି ଦେଲେ ଅସ୍ତ୍ରଧାରୀ ।
କୋଦଣ୍ଡ ପିନାକ ଅଜଗବ ଆର୍ଦ୍ରାବଳି
ଚାରିଗୋଟି ଧନୁଧରି ରାଜାଙ୍କୁ ଓଗାଳି ।
ଉଭୟକୁଳରେ ତହିଁ ହୋଇଲା ସମର
ବହୁତର ରଥଗଜ ପଡ଼ିଲେ ତାହାର ।
ସୈନ୍ୟ ପତ୍ତୁ ଓଗାଳନ୍ତେ ଶତେପୁରକରି
ବୁଧ ଯେ ଗୋରେଖ ପୁତ୍ରମଲେ ପ୍ରାଣହାରୀ ।
ଆଦିମନ୍ୟୁ ଦୁହେଁ ତହୁଁ ବହୁଯୁଦ୍ଧ କଲେ
ଅନେକ ଉପାୟକରି ତା ସୈନ୍ୟମାଇଲେ ।
ସୈନ୍ୟସହିତ ରାଜାଙ୍କୁ ଆଣି ବନ୍ଦୀକରି
ପୁଣି ଛାଡ଼ିଦେଲେ ତାକୁ ଧର୍ମକୁ ବିଚାରି ।
ଧନଭଣ୍ଡାର ସହିତ ବାଳକ କାମିନୀ
ସକଳ ଉଡ଼ାଇନେଲେ ସେହୁ ପୁତ୍ରବେନି ।
ସେହି ସମରେ ପଡ଼ିଲେ ଯେଉଁ ପୁତ୍ରବେନି ।
ବସାଇଲେ ଦେବସଭା ମଧ୍ୟେ ସସ୍ତ୍ରଯୋନି ।
ପୁଣି କାଳେ ଚଳିଲେ ଯେ ଅନ୍ୟପୁତ୍ର ବେନି
ଚାରିପୁତ୍ରେ ଡାକି ଆଜ୍ଞାଦେଲେ ପଦ୍ମଯୋନି
ରାଜପୁତ୍ର ହୋଇ ତୁମ୍ଭେ ଏଡ଼େ କକ୍ଷାବନ୍ତ
ମହାପଣ୍ଡିତ ରୂପରେ ତୁମ୍ଭେ ହୁଅ ଜାତ ।
ଜଗତପିତାଙ୍କ ଆଜ୍ଞା ସର୍ବେ ଶୁଣିକରି
ମହାପଣ୍ଡିତ ହୋଇଲେ ଶୁକ୍ର ପୁତ୍ର ଚାରି ।
ସେହି ଚାରିଭାଇ ଚାରିଗୋଟି ପକ୍ଷୀହେଲେ
ଧର୍ମ ନିରାକୁଳ ଧର୍ମ-ପକ୍ଷୀ ବୋଲାଇଲେ ।

ଶ୍ରମପାଳକ ବଟ ଯେ ପଶ୍ଚିମ ପାରୁଶେ
ପଞ୍ଚବିଂଶ ଡାଳ ତାର ଲାଗିଛି ଆକାଶେ ।
ଶତ ଶତ ଯୋଜନରେ ଅଛି ଚାରିଡ଼ାଳ
ଶତ ଯୂଣ ଆୟତନ ଅଟେ ତାର ମୂଳ ।
ସେ ଚାରିଡାଳେ ଚାରିହେଁ ଅଛନ୍ତି ଯେ ବସି
ଆକାଶ ଡାଳେ ଭୂଷଣ୍ଡହେଲେ ସ୍ୱର୍ଗବାସୀ ।
ପ୍ରଳୟ ଉଦ୍ଧାରକାରୀ ସେ ପକ୍ଷୀ ଅଟନ୍ତି ।
ଶୁକମୁନିକୁ ମାର୍କଣ୍ଡ ପୁରାଣ ଶୁଣାନ୍ତି ।
ଷାଠିଏ ସହସ୍ର ଚେଲା ବ୍ୟାସଙ୍କ ଅଟଇ
ତାଙ୍କ ମଧ୍ୟେ ଜଇମିନି ଛନ୍ତି ଶ୍ରେଷ୍ଠହୋଇ ।
ଜଇମିନି ଶ୍ରୋତା ଧର୍ମପକ୍ଷୀ ସେ ବକତା
କହିଛନ୍ତି ଚାରିପକ୍ଷୀ ପ୍ରଶ୍ନର ବାରତା ।
ଶୁଣ ଉତ୍ତରକୁମର ବୋଲେ ବୃହନ୍ନାରୀ
ପରମଗତି ଲଭିଲ ଶୁକ୍ରସୁତ ଚାରି ।
ଏମନ୍ତ ସୁଲଭ ଅଟେ ପିତାକାର୍ଯ୍ୟ କଥା
ଇହପରଲୋକ ସୁଖ ଅଛଇ ସର୍ବଥା ।
ବାହୁଡ଼ିଣ ରଥେ ଯାଇ ବସ ତୁ ବିରାଟି
ପରମଗତି ପାଇବୁ ଭୀଷ୍ମ ଦ୍ରୋଣ ଭେଟି ।
ଉତ୍ତର ବୋଲେ କହିଲୁ ପୁରାଣର ବାଗେ
ଜଣାଇଲେ କିସ ହେବ ବଧିରର ଆଗେ ।
ପାର୍ଥ ବୋଲେ ପୂର୍ବେ ଯେଣୁ ଶାସ୍ତ୍ର ନଶୁଣିଲା
ସେହି ଦୋଷ ଘେନି ସେହୁ ବଧିର ହୋଇଲା
ବଧିର ଆଗରେ ଯେହୁ ଶୁଣାଇବ ପୋଥି
ଆରଜନ୍ମେ ସେହୁ ପୁଣି ପାଇବ ସଦ୍‌ଗତି ।
ଉତ୍ତର ବୋଇଲା ମୁହିଁ ନଶୁଣେ ତୋ ବାଣୀ
ପଳାଇବା କଥା ମୋର ଅମୃତରୁ ଜିଣି ।
ଶୁଣି ବୃହନ୍ନାରୀ ତହୁଁ ହେଲେ ସ୍ତମ୍ଭୀଭୂତ
ଜନ୍ମହୋଇଲେ ମରଣ ଜାଣଟି ନିୟତ ।
ବ୍ରାହ୍ମଣ ହୋଇ ଜଳକୁ କରେ ଯେବେ ଭୟ
ସ୍ତିରୀହୋଇ ନ ଦିଅଇ ଅଗ୍ନିକୁ ସେ କାୟ ।
କ୍ଷତ୍ରୀହୋଇ ନଗମଇ ଯେବେ ସଂଗ୍ରାମକୁ
ଅନେକ ଶାସ୍ତି ଦିଅଇ ଜନ୍ତୁପତି ତାକୁ ।
ଉତ୍ତର ବୋଇଲା ତୁ ଯେ ଅଟୁ ନପୁଂସକ
ରଣେମଲେ ଅନ୍ୟଜନ୍ମେ ପାଇବୁ ତୁ ସୁଖ ।
ସେଥିପାଇଁ ମରଣକୁ ଏଡୁଛୁ ତୁ ମାଡ଼ି ।
ତହିଁ କିମ୍ବା ନାଶଯିବି ଏ ସମ୍ପଦ ଛାଡ଼ି ।
ବୃହନ୍ନାରୀ ବୋଲେ ଯେବେହେଲୁତ ନିସତ
ସାରଥି ହୋଇଣ ବାହିପାରିବୁ କି ରଥ ।
ଉତ୍ତର ବୋଇଲେ ସଖୀ ମୁଁ ସାରଥିହେଲେ
ତ୍ରୈଲୋକ୍ୟ ରଥୀକେ ହେବମୁଁ ରଥବାହିଲେ ।
ସାରଥି ପଣକୁ ଅଟେ ମୁଁ ଏଡ଼େ ସାମର୍ଥ
ମନକଲେ ବ୍ରହ୍ମାପାଶେ ବାହିପାରେ ରଥ ।
ମୁହିଁ ଯାହାର ରଥରେ ହୋଇବି ସାରଥି
ଇନ୍ଦ୍ର ଗୋବିନ୍ଦ ସମରେ କିସ ତାର ଭୀତି ।
ବୃହନ୍ନାରୀ ବୋଲେ ବେଗେବାହ ଏବେରଥ
କୌରବ ସମରକ୍ଷେତ୍ରେ ଜିଣିବା ନିୟତ ।
ଉତ୍ତର ବୋଇଲା ଯେବେ ମୁଁ ସାରଥି ହେବି
ରଥୀ କେ ହେବ ତାହାର ମୁଖ ମୁଁ ଚାହିଁବି ।
ବୃହନ୍ନାରୀ ବୋଲେ ତହୁଁ ମୁଁ ହୋଇବି ରଥି
ନାକେ ହସ୍ତଦେଇ ହସେ ସଙ୍କୋଚନ ନାତି ।
ସଖି ଏ ମହୀମଣ୍ଡଳେ ମୁଁ ଅଟଇ ଯୋଧୀ
ମୋରପରା ଲୋକହେଲା ସମରେ ବିରୋଧି ।
ତୁ ସଖି ସ୍ୱଭାବେର ଅଟୁ ନପୁଂସକ କାୟ
କୁରୁସୈନ୍ୟ ସଙ୍ଗେ ଯୁଦ୍ଧକରୁ ଅଭିପ୍ରାୟ ।
ଥାଟଦେଖି ମନେତ୍ରାସ ହୁଅଇ ମୋହରି
ତୁ କିମ୍ବା ଯୁଦ୍ଧେ ବାହାର ହେଉ ବୃହନ୍ନାରୀ ।
ପୁନରପି ବୋଲେ କେଉଁପାପ କଲୁ ପୂର୍ବେ
ସେହିଦୋଷେ ନପୁଂସକ ହୋଇଅଛୁ ଏବେ ।
ସୁବେଳ ପାଇଲୁ କର ରଣଯୋଗ ଇଚ୍ଛା
ସଂଗ୍ରାମରେ ମଲେ ପୂର୍ଣ୍ଣହେବ ମନୋବାଞ୍ଛା ।
ଜାଣିଲି ଜାଣିଲି ଏବେ ତୋର ମନ ଆଶ
ନିଶ୍ଚେ ଏହି ସଂଗ୍ରାମରେ ଦେବୁ ତୁହି ଝାସ ।
ବୃହନ୍ନାରୀ ବୋଲେ ତୁହି ମୋ ପ୍ରତିଜ୍ଞା ଦେଖ
ତୋହର ପରାୟେ ମୋତେ ଜାଣିଲୁ କି ମୁର୍ଖ ।
ରାଗେ ଉତ୍ତର ବଢ଼ାଇଦେଲା ତାର ଧନୁ
ଦେଖିବା ତୋ ପରାକ୍ରମ ଧନୁ ଆମଞ୍ଚନୁ ।
ଧନୁ ଧରି ବୃହନ୍ନାରୀ ଆମଞ୍ଚନ କଲା
କିଞ୍ଚିତରେ ଆକର୍ଷନ୍ତେ ବେନିଖଣ୍ଡ ହେଲା ।
ବୃହନ୍ନାରୀ ବୋଇଲେ ଏ ଧନୁ ତୋର କିସ
ଯାକୁ ଧରି କୁରୁଯୁଦ୍ଧେ ଆସିଛୁ ବାଳୀଶ ।
ଏବେ କୁରୁବଳଙ୍କର ଧନୁବଳ ଶୁଣ
ଏକ ଏକ କହୁଅଛି କରି ପରିମାଣ ।
ପଞ୍ଚାଶୋଇ ସହସ୍ର ହେ ଭୀଷ୍ମ ଧନୁବଳ
ନଅସସ୍ର ଧନୁବଳ ଦ୍ରୋଣଙ୍କ କେବଳ ।
ବୟାଶୋଇ ସସ୍ରବଳ ବହେ ଅଶ୍ୱତ୍ଥାମା
ଅଶୀସସ୍ର ବଳ ଧନୁ ବହେ କୃପବ୍ରହ୍ମା ।
ପଞ୍ଚାଶ ସହସ୍ର ବଳ ଭୁରିଶ୍ରବା ବହି
ଅଠାଶୀସହସ୍ର ବଳ ରାଧେୟ ବହଇ ।

ଅଶୀସସ୍ର ବଳ ଧନୁବହେ ସୋମଦତ୍ତ
ଏମନ୍ତ ପରାକ୍ରମର ଏକଏକ ଖ୍ୟାତ ।
ଦୁର୍ଯ୍ୟୋଧନର ମଇତ୍ର ଅଳମ୍ଭୁଷ ଦୈତ୍ୟ
ସେ ପଞ୍ଚାଶସସ୍ର ବଳ ବହଇ ନିୟତ ।
ଅଳମ୍ଭୁଷର ଯେ ପୁତ୍ର ଅଳାୟୁଧ ବୋଲି
ସ୍ୱତାଶୀସହସ୍ର ବଳ ତାହାର ଦେଖିଲି ।
କର୍ଣ୍ଣର ନନ୍ଦନ ବିଶିକେଶନ ଯେ ବୀର
ସତାଶୀସହସ୍ର ବଳ ଧନୁଭାର ତାର ।
ଗାନ୍ଧାର ଦେଶର ରାଜା ଅଟଇ ଶକୁନି
ଅଣାଅଶୀସସ୍ର ବଳ ଧନୁଥାଏ ଘେନି ।
ସାକଲ୍ୟ ଦେଶର ରାଜା ମହାଗୁରୁ ଶଲ୍ୟ
ପଞ୍ଚାଶୋଇସସ୍ର ବଳ ବହେ ମହାମଲ୍ଲ ।
ହେ ଉତ୍ତର ପଞ୍ଚାଶୋଇସସ୍ର ତୋ ଧନୁଟି
ଏଥେ ବିନ୍ଧିଲେକ ତାଙ୍କ ଚକ୍ଷୁ ଯିବ ଫୁଟି ।
ଯେବଣ ସେନାକୁ ଆଣି ଅଛନ୍ତି କୌରବେ
ପର୍ବତ ହୁଅଇ ଚୂର୍ଣ୍ଣ ପଡ଼ି ତାଙ୍କ ପାଦେ ।
ଅଜ୍ଞାନ ବାଳୁତ ତୁହିଁ କିଛିହିଁ ନ ବୁଝୁ
ଏ ଧନୁ ଧରି କି ଭୀଷ୍ମ ଦ୍ରୋଣ ସଙ୍ଗେ ଯୁଝୁ ।
ଉତ୍ତର ବୋଇଲା ବୃହନ୍ନାରୀ ଏହା ବୋଲୁ
ଅନ୍ତଃପୁରେ ଏହି କଥା କିମ୍ପା ନ କହିଲୁ ।
ଏ ତଦନ୍ତ ସେବେ ଜାଣିଥାଆନ୍ତି ସେଠାରୁ
କିମ୍ପାଇଁ ଆସନ୍ତି ମୁହିଁ ମୋ ଅନ୍ତଃପୁରରୁ ।
ଏମନ୍ତ ବିଚାର କରୁ ସୂର୍ଯ୍ୟ ଅସ୍ତ ଗଲେ
ଆନନ୍ଦେ ଶାରଳାଦାସ ଏ ପଦ ରଚିଲେ ।



## ଅର୍ଜ୍ଜୁନଙ୍କର ଆଦେଶରେ ଉତ୍ତରର ଶମୀବୃକ୍ଷରୁ ଅସ୍ତ୍ର ଆଣିବା ନିମିତ୍ତ ଗମନ ଓ ଶୋଷକ ସର୍ପ ଦଂଶନ

ଆହେ ମନୁଗଣ ଶୁଣ ଅପୂର୍ବ ଭାରତୀ
ରଥେ ବିଜେକଲେ ପାର୍ଥ ହୋଇଣ ଯେରଥି
ଉତ୍ତର ହୋଇଲା ସେହି ରଥର ସାରଥି
ପାର୍ଥ ବୋଲେ ନିଅ ତୁମ୍ଭେ ଶମୀବୃକ୍ଷ କତି ।
ପାଳଇ ମାତଳି ଯେହ୍ନେ ଇନ୍ଦ୍ରର ବଚନ
ବୃହନ୍ନାରୀ ବାକ୍ୟ ପାଳେ ଉତ୍ତର ତେସନ ।
ବାହଇ ତୁରଙ୍ଗମ ଯେ ସୁଦେଷ୍ଣାର ବସ୍ତା
ବନେ ପଶନ୍ତେ ଉତ୍ତର ପାର୍ଥ କଲା ପୁଚ୍ଛା ।
ଭୟ ଜାତ ହୋଇଲାକି ତୋର ହୃଦୟକୁ
କିମ୍ପାଇ ରଥ ବାହୁଛୁ ବନ ଭିତରକୁ ।
ପୁଣି ବୋଲେ ଧନୁ ଏକ ଆମ୍ଭ ହସ୍ତେ ନାହିଁ
ଶମୀବୃକ୍ଷେ ଅଛି ଧନୁ ନିଅ ତହିଁ ବାହି ।
ଚଳନ୍ତି ଯେ ତୁରଙ୍ଗମ ନିଶା ଅନ୍ଧକାରେ
ପ୍ରବେଶ ହୋଇଲେ ଯାଇ ତପୋଭଦ୍ରାତୀରେ
ତହିଁର ଉତ୍ତରଦିଗେ ଶମୀବୃକ୍ଷ ଅଛି
ଅଦଭୁତେ ଶବ ଏକ ତହିଁ ଝୁଲୁ ଅଛି ।
ଉର୍ଦ୍ଧ୍ୱେ ଥାଇ ଅଦଭୁତେ ଦେଲା ଏକ ରଡ଼ି
ଉତ୍ତର କୁମର ରଥୁ ତଳେ ଗଲା ପଡ଼ି ।
ରଥୁଁ ଡେଇଁପଡ଼ିଲେ ସେ ବେଗେ ବୃହନ୍ନାରୀ
ମୁଖରେ ଜଳ ସିଞ୍ଚିଣ ସାଷ୍ଟାମକୁ କରି ।
ସାଷ୍ଟାମ ପାଇଲା ତହିଁ ସେ କୁମରମଣି
ବୋଇଲା ନିର୍ଘାତ ପ୍ରାୟ କି ଶୁଭିଲା ବାଣୀ ।
ବୃହନ୍ନାରୀ ସେ ଶବକୁ ବୋଲଇ ମଧୁରେ
କୁମର କରୁଛି ଭୟ ରୁହ ତୁ ଅନ୍ତରେ ।
ପାର୍ଥର ବଚନେ ପିଣ୍ଡ ଚଳିଗଲା ଯହୁଁ
ଉତ୍ତରକୁ ଚାହିଁ ପାର୍ଥ ପୁଚ୍ଛାକଲେ ତହୁଁ ।
ବୃକ୍ଷ ଉପରକୁ ତୁହି ପାରିବୁକି ଉଠି
ଉତ୍ତର ଦିଗକୁ ଦୃଷ୍ଟି କରିଲା ବିରାଟି ।
ଉତ୍ତର ବୋଲେ ନିକଟେ ନାହିଁ କିଛି ଶାଖା
କେମନ୍ତେ ଉଠିବି କେଉଁକାର୍ଯ୍ୟମୋତେଦେଖା ।
ବୃହନ୍ନାରୀ ବୋଲେ ତହିଁ ଶୁଣ ମୋ ଉତ୍ତର
ଏକଗୋଟି ଧନୁ ଅଛି ଆଣ ଏ କ୍ରୋଟର ।
ପ୍ରଣିପତ୍ୟ ହୋଇ ବେନି ଚକ୍ଷୁ ବୁଜିକରି
ଉତ୍ତରକୁ ଉଠି ତୁହି ବୃକ୍ଷକୁ ଆବୋରି ।
ସର୍ପ ବିଘାତେ ଗାରଡ଼ି ଅଛଇ ଯେସନ
ବୃହନ୍ନାରୀ ବାକ୍ୟ ପାଳେ ଉତ୍ତର ତେସନ ।
ଚକ୍ଷୁ ବୁଜି ବୃକ୍ଷ କୋଳ କରିଣ ଉଠିଲା
ଅକସ୍ମାତେ ଡାଳେ ଯାଇ ପ୍ରବେଶ ହୋଇଲା ।
ଦେଖଇ ଚାରିଦିଗକୁ ଅଛି ଚାରିଡ଼ାଳ
ଦେଖଇ ଚାରିଦିଗକୁ ଅଛି ଚାରିଡ଼ାଳ
ଯୋଜନେ ଯୋଜନେ ସେହୁ ଅଟନ୍ତି ବିଶାଳ
ପଣ୍ଡୁ କୋଇନ୍ତା ଅଟନ୍ତି ସେହୁ ବୃକ୍ଷମୂଳ
ଭୀମ ଆଦି ଚାରିଭାଇ ହୋଇଛନ୍ତି ଡାଳ ।
ଉପର ଶାଖା ଅଟନ୍ତି ଧରମ ଯୁଧିଷ୍ଠି
ପାଞ୍ଚାଳୀଦେବୀ ଅଟନ୍ତି ତହିଁ ପୁଷ୍ପଗୋଟି ।
ବେନି କ୍ରୋଶ ଆୟତନ ମଧ୍ୟେ ଅଛି କ୍ରୋଟ
ଦିନକର ଦେବତା କି କଢ଼ାଉଛି ବାଟ ।
ବିରାଟ ନନ୍ଦନ ତହୁଁ ଚାହିଁ କ୍ରୋଟରକୁ
ବୋଲେ ସଙ୍କଟ ପଡ଼ିଛି ଆଦିତ୍ୟ ଦେବଙ୍କୁ ।
ସିଂହିକା ନନ୍ଦନ ଅବା କରିଲେ କଟାଳ
ଦୂରନ୍ତକେ ଭୟେ ଅବା ଲୁଚିଲେ ଏ ସ୍ଥଳ ।

ଆକାଶ ନିରୋପି ଚାହେଁ ବିରାଟ ତନୟ
କ୍ରୋଟ ଭିତରେ ଦିଶୁଛି ଦିବସ ପରାୟ ।
ବୃହନ୍ନାରୀ ବୋଇଲେ ଯେ ଗର୍ତ୍ତେ ହସ୍ତ ଭର
ଯାହା ଯାହା ଅଛି କାଢ଼ିଦିଅ ମୋର କର ।
ଉତ୍ତରକୁମାର ତହୁଁ କ୍ରୋଟେ ଭରେ କର
ଶୋଷକ ନାମେଣ ସର୍ପ ଦଂଶିଲା ତା ଭାର
ସର୍ପାଘାତ ବିଷ ଦେହେ ଶୀଘ୍ର ଘୋଟିଗଲା
ଡାଳେ ଆସାଷ୍ଟମ ହୋଇ ବିରାଟେ ପଡ଼ିଲା ।
ଉତ୍ତର ଉତ୍ତର ବୋଲି ଡାକେ ଫାଲ୍ଗୁନି
ବହନ ଓହ୍ଲାଇ ଆସ ଧନୁ ଏକ ଘେନି ।
ଡାକ ଦେଇଣ ବିମୁଖ ହୋଇଲେ ଧାନୁଷ୍କ
ଦେହ ଫୁଟିଲା ଉତ୍ତର କୁମରକୁ ଡାକ ।
ବୃକ୍ଷ ଉପରକୁ ତହୁଁ ଉଠି ଧନଞ୍ଜୟ
ଦେଖିଲା ପାର୍ଥ ଉତ୍ତର ଦେହ ବିଷମୟ ।
ମୁଖରୁ ବହଇ କାଳ ଗରଳର ଧାର
ଜୀବନ ବିସର୍ଜିଲାଣି ସୁଦେଷ୍ଣା କୁମର ।
ଉତ୍ତରକୁ ବେଗେ କୋଳକରେ ବୃହନ୍ନାରୀ
ବିଘାତେ ହୋଇଲା କାଳ ଗରଳରେ ଘାରି
ସେ କ୍ରୋଟରେ ପଶିଥିଲା ଯେଉଁ କାଳସର୍ପ
ବିଘାତେ ହରିଲା ସେହି କୁମରର ଦର୍ପ ।
ମହାପଣ୍ଡିତ ଉତ୍ତର ନ ଜାଣଇ ବିଦ୍ୟା
ଗୋରେଖି ବାକ୍ୟରେ ପାର୍ଥବର ଯୋଗସିଦ୍ଧା
ଚନ୍ଦ୍ର ସୂର୍ଯ୍ୟ ଉଇଁକରି ବସିଲେକ ରଥେ
ମୁହିଁ ବିଷକୁ ମାରଇ ନ ଛୁଅଇଁ ହସ୍ତେ ।
ସପତ ଋଷି ଯେ ମୋତେ ଦେଇଥିଲେ ବର
ରେ ରେ ବିଷମ ବିଷ ତୁ ଅନ୍ତରୀକ୍ଷେ ମର ।
ଏହି ପ୍ରକାରେ ଅର୍ଜୁନ ଝାଡ଼ିଲେ ଗରଳ
ସାଷ୍ଟାମ ହୋଇ ବସିଲା ସୁଦେଷ୍ଣାର ବାଳ ।
ପାର୍ଥକୁ ଚାହିଁ ଉତ୍ତର କରିଲା ଯେ ପୁଚ୍ଛା
କାଳ ସର୍ପଘାତରେ ମୁଁ ହୋଇଗଲି ମୁର୍ଚ୍ଛା ।
ମରିଲା ପିଣ୍ଡ ଗୋଟିକ ତାରିଲ କେମନ୍ତେ
କିଅବସ୍ଥା ହେଲା ମୋର କହହି ତାହାମୋତେ
ତହୁଁ ଅର୍ଜୁନ ବୋଇଲେ ଶୁଣରେ ଉତ୍ତର
ବିଷ ଘାରିଲେ ଯେମନ୍ତେ ହୁଅଇ ଶରୀର ।
ନୟନୁନୀର ଗଳଇ ଉଜାଣି ରୁଧିର
ଘୋଟନ୍ତେ ଶ୍ରୀହସ୍ତେ ନାହିଁ କାହାର ନିସ୍ତାର
ତପନ ସଙ୍ଗମେ ଘୋଟେ ଯାଇ ବେଳୁବେଳୁ
ତାହାର ଆଚରଣରୁ ଘୋଟେ ଯାଇ ତାଳୁ
ପଡ଼ଇ ବିଷମ ରନ୍ଧ୍ରେ ଯାଇ ଚନ୍ଦ୍ରକଳା
ଘୋଟିଯାଏ ଜ୍ଞାନ ବିଷ ସପତମ ବେଳା ।
ତିହୁଡ଼ି ଚପାଇ ଚନ୍ଦ୍ର ବନ୍ଧ ହୁଏ ରନ୍ଧ୍ରେ
ଡାକିଲେ ଲେଉଟି ବିଷ ପଡ଼ଇ ଯେ କନ୍ଧେ ।
ଧରଣ ଧାରଣ ପୁଣି କରିଣ ଉଚ୍ଚାଟ
ଚଳଇ ଅପାନ ବାୟୁ ନ ପାଇ ସେ ବାଟ ।
ପୁଣି ପଳାଇଲେ କି ସେ ସୁସୁକାର ଘାତ
ତେସନେକ ଆତ୍ମାକୁ ଯେ ଘୋଟଇ ସଂଯତ
ଆରେ ଓଝାରେ କାୟା ତୁ ଯେଣେଉତପନ୍ନ
ସିନ୍ଧୁ ଲହରୀ ଜାଣିଣ ଘଟନେ ବିଧାନ ।
ଯାହା ଲଘଂଇ ଜଙ୍ଗମ ଯାଏ ତାର ଘାଟ
ଶାର୍ଦ୍ଦୂଳ ଆଖିର ହେଉ ଆନ ଖଣ୍ଡ ବାଟ ।
ନ କରି ତୁ ଏବେ ଆରେ ଔଷଧ ପଖାଳ
ନାଦେ କ୍ଷୀର ଭଣ୍ଡାର ତୁ ପିତା ମହାକାଳ ।
ଭଇଁମୀ ନ ଜାଣି ଠାକେ ଗୋଡ଼ ଚାରିଛନ୍ଦ
ସଦଗୁରୁ ଶବ୍ଦ ଫିଟେ ଗରୁଡ଼ର ଧନ୍ଦ ।
ଜାଣିବା ରୁଦ୍ର ଅଙ୍ଗୁଳି ନ ପଡ଼ଇ ଆନ
ଅଛଅଛ ଆସନ୍ତେ ଯେ ଶବଦ ଚେତନ ।
ଏମନ୍ତ ବୁଝାଇଦେଲେ ଉତ୍ତରକୁ ପାର୍ଥ
ଅଗସ୍ତି ବୋଇଲେ ଶୁଣ ଆହେ ନାରନାଥ ।
ଉତ୍ତରକୁ ଦଂଶି ସର୍ପ ପକାଇଲା ଖରେ
ପ୍ରବେଶ ହୋଇଲା ଯାଇ କର୍ଣ୍ଣ ନିକଟରେ ।
କାଳସର୍ପ ବୋଲେ କର୍ଣ୍ଣେ ମୋତେ ରକ୍ଷା କର
ଭୋ ଭାରୋଇମଲ୍ଲ ରଖ ଶରଣ ତୋହର ।
କର୍ଣ୍ଣ ବୋଲେ ସର୍ପ କିମ୍ପା ହେଉଛି ଆରତ
କହଇ ସେ ସର୍ପ ତହୁଁ ଆପଣା ବୃତ୍ତାନ୍ତ ।
ଖାଣ୍ଡବ ବନରେ ଥିଲେ ମୋର ଯେତେ ବଂଶ
ଦହନ କାଳେ ଅର୍ଜୁନ ସର୍ବ କଲା ଧ୍ୱଂସ ।
ବୈଦ୍ରିକା ବିରାଜି ପୁଣି ଆର୍ଦ୍ରାବଳୀ ରଜ୍ଜୁ
ଜାରବନ୍ଧା ଲୋକଙ୍କର ଅଟେ ସମବନ୍ଧୁ ।
ଅର୍ଜୁନ ଶରଣ ଏହୁ ପଶିଲେ ବିକଳେ
ମାରି ଅର୍ଜୁନେ ସବୁଙ୍କୁ ଅର୍ପିଲେ ଅନଳେ ।
ହେ କର୍ଣ୍ଣ ବାମ୍ପୀ ମଧରେ ପଡ଼ିଲି ମୁଁ ଉଡ଼ି
ନବଦିନ ପରିଯନ୍ତେ ରହିଲି ମୁଁ ବୁଡ଼ି ।
ଖାଣ୍ଡବବନ ଦହନ ହେଲା ସମାପତ
ତହୁଁ ମୁଁ ଆସି ଶୋଷକ ନାମେ ହେଲିଖ୍ୟାତ ।
ଆହେ କର୍ଣ୍ଣ ଅର୍ଜୁନ ଯେ ମୋ ପିତା ବଇରୀ
ତାକୁ ନାଶକଲେ ପିତୃ ଋଣୁ ଯିବି ତରି ।
ପୁତ୍ର ହୋଇଣ ପିତାକୁ ବାରଣ ନ କଲେ
ହେ ପୁତ୍ର ଅବଶ୍ୟ ଯାଇ ପଡ଼ଇ ନର୍କରେ ।
ଶମୀବୃକ୍ଷ କୋଟରରେ ମୁହିଁ ଯାଇଥିଲି
ଅର୍ଜୁନ ଧନୁ କାଢ଼ିଲେ ଦଂଶିବ ମୁଁ ବୋଲି ।

ଏବେ ବିରାଟର ସୁତ ହସ୍ତ ଦେଲା ଭରି
ନ ଜାଣି ଅଇଲି ତାକୁ ଦଂଶନ ମୁଁ କରି ।
ପଳାଇ ଅଇଲି ମୋତେ ରଖ ତୁ ଶରଣ
ଏଡ଼େ ବିଘାତ ମୋହର ହେଲା ଅକାରଣ ।
ସିଂହ ବୋଲିକରି ମୁହିଁ ପାତିଥିଲି ଫାନ୍ଦ
କାଳେ ସେ ଶୃଗାଳ ହେଲା କପାଳମୋମନ୍ଦ ।
ଏହିକ୍ଷଣି ଅର୍ଜ୍ଜୁନ ଯେ ଆସିବ ସମରେ
ମୋତେ ପେଶିବୁଟି ଆଗ ତାହାର ଉପରେ ।
ସେ ଶୋଷକ କାଳସର୍ପ ଏପରି ବୋଇଲା
ଦୁର୍ଯ୍ୟୋଧନ ଆଗେ କର୍ଣ୍ଣ ଯାଇଣ କହିଲା ।
ହେ ମିତ୍ର ବାରତା ମୁହିଁ ପାଇଲି ଏକ୍ଷଣି
ଅର୍ଜ୍ଜୁନ ଆସିବେ ରଣେ ଏହୁ କହେ ପୁଣି ।
ମାନଗୋବିନ୍ଦ ବୋଇଲା ଶୋଷକ ସର୍ପର
ବଚନ କେମନ୍ତେ ସତ କରିବା ଏହାର ।
ଜୟ ଜୟ ଜଗନ୍ନାଥ ଜଗତ ପୂଜିତ
ଫରହର ହୋଇ ଉଡ଼େ ନୀଳଚକ୍ର ନେତ ।
କର୍ଣ୍ଣଡ଼େରି ଶୁଣୁଅଛ ଦରିଦ୍ର ଗୁହାରି
ମୁଖ ଦେଖି ପାପୀଜନେ ଯାଉଛନ୍ତି ତରି ।
ତବ ପାଦପଦ୍ମେ ଚିତ୍ତ ରହୁ ନିରନ୍ତର
ମାଗଇ ଶାରଳା ଦାସ ଯମଭୟୁଁ ତାର ।

—●—

## ବୃହନ୍ନାରୀ କର୍ତ୍ତୃକ ଉତ୍ତର ନିକଟରେ ପଞ୍ଚପାଣ୍ଡବ ପରିଚୟ ଓ ଅର୍ଜ୍ଜୁନର ଦଶନାମ କଥନ

ଅଗସ୍ତି କହନ୍ତି ଶୁଣ ଆହେ ମନୁରାଣ
ବୃହନ୍ନାରୀ ଉତ୍ତରର କଥୋପକଥନ ।
ବିଷଝାଡ଼ି ବୃହନ୍ନାରୀ ଅଇଲେ ଓହ୍ଲାଇ
ଉତ୍ତର ରହିଲା ବୃକ୍ଷଡାଳେ ସୁସ୍ଥ ପାଇ ।
କ୍ରୋଟରେ ହାତ ପୂରାଇ କାଢ଼ିଲା ସେ ଅସ୍ତ୍ର
ଧନୁ ଦେଖି ଉତ୍ତରର କମ୍ପିଗଲା ଗାତ୍ର ।
ପଞ୍ଚଧନୁ ତ୍ରୋଣ ସେହୁ ବଢ଼ାଇଣ ଦେଲା
ଭୀମସେନର ଗଦାକୁ ତୋଳି ନ ପାରିଲା ।
ଉତ୍ତର ତହୁଁ ଓହ୍ଲାଇ ଆସିଲା ତଳକୁ
ଶତସସସ୍ର ପ୍ରଣାମ କରିଲା ଧନୁକୁ ।
ଉତ୍ତର ବୋଲଇ ଶୁଣ ଆଗେ ସଙ୍ଗାତୁଣୀ
ଏ ସର୍ବ ଧନୁ ଥୋଇଲା ଏଥେ କେହୁ ଆଣି

ବୃହନ୍ନାରୀ ବୋଲେ ଶୁଣ ବିରାଟର ସୁନୁ
ପଞ୍ଚପାଣ୍ଡବଙ୍କ ଦଶତ୍ରୋଣ ପାଞ୍ଚ ଧନୁ ।
ଶୁଣି ସାନନ୍ଦ ହୋଇଣ ପଚାରେ ଉତ୍ତର
ଶୁଣିବାକୁ ଇଚ୍ଛା କେଉଁ ଧନୁ ଅଟେକାର ।
ଅର୍ଜ୍ଜୁନ ପ୍ରଥମେ ଏକା ଧନୁ ଧରିକରି
ବୋଇଲେ ହୋଇଛି ଖଞ୍ଜା ହୀରା ସସ୍ର ଭାରି
ଏ ଶୁଦ୍ଧ ସ୍ଫଟିକ ଜ୍ୟୋତି କ୍ରୋଟରେ ପ୍ରକାଶେ
ଏ ଧନୁ ତେଜରେ ପୁଣି ତିମିର ବିନାଶେ ।
ମାରଗର ରେଖା ଦେଖଅଛି ସ୍ଥାନ ସ୍ଥାନ
ଏ ଧନୁ ଗୋଟି ବହନ୍ତି ଧର୍ମଙ୍କ ନନ୍ଦନ ।
ସେ ଧନୁକୁ ଥୋଇ ପୁଣି ଅନ୍ୟ ଧନୁ ଧରି
ବାମେ ଧରି ଡାହାଣରେ ଆମଞ୍ଚନ କରି ।
କଣୟ ଘଟଣ ବେନି ପ୍ରବନ୍ଧର ଚୂଳ
ଧନୁ ଉପରେ ଶାର୍ଦ୍ଦୂଳ ଚର୍ମର ମେଖଳ ।
ଝଟକନ୍ତି କିରଣରେ ଶତଚନ୍ଦ୍ର ପିଠି
ଦୁଇ ତ୍ରୋଣ ଖଞ୍ଜିଅଛି ହୀରା ପାଞ୍ଚଗୋଟି ।
ଏକାଦଶଶତ ପନ୍ତି ପନ୍ତି ଅଟେ ତାରା
ଡିଙ୍ଗରେ ସହନ୍ତି ନାହିଁ କେଉଁ ଧନୁଭାରା ।
ମରଣ ଧାରଣ ଧନୁକାମ ଆର୍ଦ୍ରାବଳୀ
ତିନିପଦ୍ମ ନୀଳଖଞ୍ଜା ଯାହାର ମେଖଳି ।
ଝଲକନ୍ତି ମାଣିକ୍ୟ ଯେ ହୀରା ପାଖେ ପାଖେ
ନିର୍ବନ୍ଧ ମୁକୁର ଖଞ୍ଜା ତହିଁ ଲକ୍ଷେ ଲକ୍ଷେ ।
ରୁଦ୍ର ପାବଚ୍ଛେ ମରମ ପଦକୁ ବିକାଶି
ଏ ଧନୁ ଦର୍ପେ ଅନ୍ଧକ ବିନାଶିଲେ କାଶୀ ।
ଭାଗ୍ୟବର ନାମ ହେଲା ଦ୍ୱିତୀୟକ ଧନୁ
କାଠି ଏକ ସସ୍ର ବଳ ଏଥିର କୃଶାନୁ ।
କାଳପକ୍ଷୀ ନାରୀ ତହିଁ ସବୁ ଚକ୍ର ଶର
ତ୍ରୋଣ ମଧ୍ୟରେ ଅଛିକି ସହସ୍ର ପନ୍ଦର ।
ପାଣ୍ଡବ ସୁନ୍ଦର ଯେହୁ ପବନର ବଳା
ଷୋଡ଼ଶ ସୁନ୍ଦର ଭୀମ କ୍ଷତ୍ରୀ ଅନର୍ଗଳା ।
ଷାଠିଏ ସହସ୍ର ବଳ ଭୀମ ଯେ ବହଇ
ଏ ଧନୁର ଶରଘାତ କ୍ଷତ୍ରୀ ନ ସହଇ ।
ସେ ଧନୁ ଥୋଇ ଧଇଲା ପୁଣି ଆନଗୋଟି
ଏ ଧନୁର କାମ ତୁହି ଶୁଣରେ ବିରାଟି ।
ଧନୁର ପିଠିରେ ଶତ କଣୟ ସୁପାତି
ହୀରା ଯାବତ ଖଞ୍ଜଣି କୋଟିକ୍ଷୁଦ୍ର ମୋତି ।
ରାଜଚାରି ପାଟର କଣୟ ପଦ୍ମ ଗୁଚ୍ଛା
ନିର୍ମଳର ନିର୍ମିତ ମର୍କଟ ଦିବ୍ୟ ଯଥା ।
ସପ୍ତମୀଚନ୍ଦ୍ର ଯେସନେ ଉଦୟ ଆକାଶେ
ଗଜମୁକ୍ତା ପାଞ୍ଚଲକ୍ଷ ଗୁଚ୍ଛା ଚଉପାଶେ ।

ମାଣିକ୍ୟର ଉଲ୍ଲାଖ ଯେ ନୀଳାର ଖଞ୍ଜଣି
ହେତୁରୁ ଝଟକେ ଧନୁ ଅଗ୍ନିଶିଖା ଜିଣି ।
କୃଷ୍ଣାଜିନ ପ୍ରଦହନ କରାଇଲ ଯେଣେ
କାମିନୀ ମନକୁ ବଶ କରେ ମାୟବାଣେ ।
ପଞ୍ଚଚାଳିଶ ସହସ୍ର ଏ ଧନୁର ବଳ
ମାଦ୍ରୀର ନନ୍ଦନ ଏହା ବହଇ ନକୁଳ ।
ସାରଙ୍ଗ ପକ୍ଷୀର ଶର ଅଧାଚକ୍ର ବାଣ
ପଞ୍ଚାଣ ଅୟୂତ ଶର ବହେ ଦୁଇ ତ୍ରୋଣ ।
ଅନୁବ୍ରତେ ଥାଇ ଏହା ନକୁଳର ହସ୍ତେ
ଦକ୍ଷିଣ ରାଜାକୁ ସାଧେ କାର୍ଯ୍ୟର ନିମନ୍ତେ ।
ସେହି ଧନୁକୁ ଥୋଇଣ ଧରି ଆନ ଧନୁ
ବୋଲେ ସାବଧାନେ ଶୁଣ ସୁଦେଷ୍ଣାର ସୁନୁ ।
ମଳୟ ବସନ୍ତ ପରିହନ୍ତା ହେମ ଝଳି
ଅକ୍ଷୟ ତେଜ ଯେସନେ ଅଟେ ଅଂଶୁମାଳି ।
ମତମାତଙ୍ଗ ବିହାର କରେ କୃଷ୍ଣଲୀଳା
ଶୁଦ୍ଧ ସ୍ଫଟିକ ମଧରେ ଖଞ୍ଜା କି ପୋହଳା ।
ହୀରା ମୋତି ମାଣିକ ଯେ ବୈଦୁର୍ଯ୍ୟ ମର୍କତ
ମାରାଗ କଣୟ ଜିଣି ଦିଶେ ଦୀପ୍ତିମନ୍ତ ।
ଶବରୀ ନାରାୟଣ ଯା ବହେ ବେଷ୍ଟାକାଳେ
ଏକା ଶରେ ଖଞ୍ଜିବ ସେ ବହଇ ମଣ୍ଡଳେ ।
ସଙ୍ଗରେ ସଗୁଣା ମୁକ୍ତାପ୍ରାୟେ ତାକୁ ଖଞ୍ଜି
ଧନୁ ପିଠିରେ ଖଞ୍ଜିଛି ମାଣିକ୍ୟର ପୁଞ୍ଜି ।
ମାଣିକ୍ୟ ପୁଞ୍ଜି ପାଖକୁ ଅଛି ପଦଟିଏ
ମାରାଗ ମୁକ୍ତା ପାଖୁଡ଼ା ତହିଁ ଶୋଭାପାଏ ।
ଏ ଧନୁରେ ତାରକାକୁ ନାଶି ଶତଧନୁ
ମହାବଳ କୁମାର ଯେ ପାର୍ବତୀଙ୍କ ମନୁ ।
ଶରତ୍ ଶିଶିର ଗ୍ରୀଷ୍ମ ବର୍ଷା ଚାରି ଋତୁ
ଏ ଧନୁ କାଢ଼ନ୍ତା ନାହିଁ ବିଧାତାର ହସ୍ତୁ ।
ପୂର୍ବଦିଗେ ବିଜେକଲେ କିବା ସୋମବଂଶୀ
ପୂଜାବିଧି କରି ସହଦେବକୁ ସେ ତୋଷି ।
ମଦନାର ନନ୍ଦନ ହେ କକ୍ଷା ଜଗଜ୍ଜେଠି
ନାରାୟଣ ଭାବନ୍ତି ଯାହାର ନାମଗୋଟି ।
ଚାଳିଶ ସହସ୍ର ବଳ ଏ ଧନୁ ବହଇ
ମନ୍ତ୍ରୀ ସହଦେବ ଏହା କରରେ ଧରଇ ।
ମିଥୁନ ମାସରେ ଯେହ୍ନେ ଚମକେ ବିଜୁଳି
ରତ୍ନତେଜେ କିରଣରେ ସେହି ରୂପେ ଝଳି ।
ନାରାଚ ଛାଏଣି ରେଖ ଅନୁକୂଳ ପକ୍ଷୀ
ଏକା ନାରାଚରେ ଶର ପାଞ୍ଚଲକ୍ଷ ଯୋଖି ।
ଅଶୀ ସହସ୍ର ନାରାଚ ପୂର୍ଣ୍ଣବେନି ତ୍ରୋଣେ
ମାତଙ୍ଗ ଅସୁର ନାଶ କରିଲେ ଆପଣେ ।

ମନ୍ତ୍ରୀ ଚୂଡ଼ାମଣି ସହଦେବ ଏହି ଧନୁ
ଚାଳିଶ ସହସ୍ର ବଳ ବହଇ କୃଶାନୁ ।
ଚାରି ଧନୁର ମହିମା କହଇ କୀରୀଟି
ଶୁଣି ପରମ ଆନନ୍ଦ ହୋଇଲା ବିରାଟୀ ।
ଶ୍ରୀଭୁଜେ ଘେନିଲା ପାର୍ଥ ଆପଣାର ଧନୁ
ଆନନ୍ଦରେ ଅଶ୍ରୁଜଳ ବହଇ ନୟନୁ ।
ଶୁଣ ହେ ଉତ୍ତର ଏହି ଧନୁର ମହିମା
ଅଶ୍ୱିନୀ ନାମରେ ସତ୍ୟଯୁଗେ କୁଶବ୍ରହ୍ମା ।
ଶତମନୁ ପରିଯନ୍ତେ ବ୍ରହ୍ମା ଯୋଗଦେଲା
ଯଜ୍ଞକୁଣ୍ଡ ମଧ୍ଯୁ ଏକ ବାଂଶ ଉପୁଜିଲା ।
ନାଭିଖଣ୍ଡ ନାହିଁ ପୁରି କରି ତାର ମୁଷ୍ଟି
ଛତିଶ ବର୍ଣ୍ଣେ ପିଙ୍ଗଳବର୍ଣ୍ଣ ବାଂଶ ଗୋଟି ।
ବିଜେ କର୍ଣ୍ଣ କଟାରୀକି ଘେନି ଚାରିମୁଣ୍ଡ
ସେହି ବାଂଶ ଗୋଟିକୁ ସେ କଲା ପାଞ୍ଚଦଣ୍ଡ ।
ପ୍ରଥମ ଖଣ୍ଡକୁ ଏକାଦଶ ପବ କଲା
ମନୁଏ ବସିଣ ଏକ ଧନୁ ସଜାଡ଼ିଲା ।
ସେହି ଧନୁର ଦଶ ଯେ ହେଲା ତିନିଗୋଟି
ପିନାକ ହୋଇଲା ନାମ ଧଇଲେ ଧୂର୍ଜଟି ।
ଦ୍ୱିତୀୟ ଖଣ୍ଡକୁ ନବଖଣ୍ଡ କରି ଘେନି
ଅଧ ମନୁରେ ନିର୍ବାହ କଲେ ପଦ୍ମଯୋନି ।
ବେନି କୋଟି ସସ୍ରବଳ ସାରଙ୍ଗ ଯେ ଧନୁ
ସତ୍ୟଯୁଗରେ ଧଇଲେ ଯମଦଗ୍ନି ସୁନୁ ।
ଆର ପବ ପଞ୍ଚମୁନ କରିଣ ବଖାଣି
ପଞ୍ଚବିଂଶ ଗଣ୍ଡା ଯୁଗେ ଧନୁହିଁ ନିର୍ମାଣି ।
ନବଲକ୍ଷ ବଳ ହେଲା ସେ ଧନୁର ଗୁଣ
ତ୍ରେତାଯୁଗେ ରାମ କଲେ ଭୂ-ଭାଗ ହରଣ ।
ଆରକ ପବ ପୁଣି ସେ ହେଲା ଖଣ୍ଡ ତିନି
ପଞ୍ଚମୁଖେ ଧନୁ ନିର୍ଭା କଲେ ପଦ୍ମଯୋନି ।
ବାବୁ ଏ ଧନୁର ନାମ ଅଟଇ ଗାଣ୍ଡିବ
ଦ୍ୱାପର ଯୁଗେ ଅର୍ଜ୍ଜୁନେ ଦେଲେ ବାସୁଦେବ ।
ଲକ୍ଷେବଳ ଏ ଧନୁରେ କହେ ଫାଲଗୁନି
ଏ ଧନୁରେ ବିନ୍ଧିବାକୁ କେ ଅଛି ମେଦିନୀ ।
ଅଗ୍ନିଦେବଙ୍କର ହେଲା ଲୁ ଦୁବୁଦୁ ବ୍ୟାଧି ।
ଖାଣ୍ଡବ ପୋଡ଼ିଣ ଦେଲେ ଅମର ଔଷଧି ।
ଆରୋଗ୍ୟ ହୋଇଲେ ତହୁଁ ଲୋହିତ ପିଙ୍ଗଳ
ପ୍ରତିଗ୍ରହ କରି ତହୁଁ ଦେଲେକ ସକଳ ।
ପଞ୍ଚତିରିଶ ପବ ସେ ପଞ୍ଚଧନୁ ହେଲା
କହୁଛି ତା ନାମ ଶୁଣ ସୁଦେଷ୍ଣାର ବଳା ।
ପିନାକ କୋଦଣ୍ଡ ପୁଣି ଅଜଗବ ଜାଣ
ଶାରଙ୍ଗ ଗାଣ୍ଡୀବ ବୋଲି ଏହି ପଞ୍ଚନାମ ।

ପୁଣି ଉପୁଜିଲା ତହୁଁ ଆଉ ଏକ ପବ
ବଂଶୀ ଗୋଟିଏ ତା କଲେ ପିତାମହ ଦେବ ।
ସତ୍ୟ ତ୍ରେତାରେ ଭଣିଲେ ତାକୁ ଯତ୍ନକରି
ଦ୍ୱାପରେ କହ୍ନାବତାର ହେଲେ ନରହରି ।
ରଙ୍ଗଅବତାର ଗୋପେ ସ୍ତିରୀମେଳ ଅର୍ଥେ
ମନ୍ଦର ଧରିଲେ କୃଷ୍ଣ ଗୋପାଳ ନିମନ୍ତେ ।
କାଳୀୟ ଦଳିଲେ କୃଷ୍ଣ କଂସର ବିବାଦେ
ବୃଷଭାନୁ ସୁତା ରାଧା ନ ଚିନ୍ତିଲେ ହୃଦେ ।
ଦୂତିକା ପେଷି ଅନେକ ରତ୍ନ ଦେଲେ ହରି
ପାଦେ ପେଲିଦେଇ ରାଧା ଦେଲେ ଦୂରକରି ।
ରାଧାର ନିମନ୍ତେ ହେଲେ ବିରହ ଅବଶ
ନିରାଶ ହୋଇଲେ ହରି ରଜନୀ ଦିବସ ।
ଛାଡ଼ିବ ସକଳ ଚିନ୍ତା ନ ମାରିବି କଂସ
ମନୁଷ୍ୟ କାୟା ଛାଡ଼ିବି ଯିବ ନିଜ ଦେଶ ।
ନାରାୟଣଙ୍କୁ ପ୍ରସନ୍ନ ହେଲେ ମହାତମା
ମଉନେ ରହିଲେ ହରି ଅଗ୍ରେ ଦେଖି ବ୍ରହ୍ମା ।
ବ୍ରହ୍ମା ବୋଇଲେ ନିରାଶହେଲେ କେଉଁଅର୍ଥେ
ଗୋପାଳୁଣୀ ରାଧିକା କି ନ ଛୁଇଁଲା ତୋତେ
କହନ୍ତି କେଶବ ପିତାମହଙ୍କୁ ବଚନ
ମାରି କେଶୀ କଂସ ରମିବି ମୁଁ ବୃନ୍ଦାବନ ।
ସେ ରାଧା ନିରାଶ ହେବେ କହିଅଛି ମୋତେ
ମହୀ ଭାରା ନିସୁଦନ କରିବି କେମନ୍ତେ ।
ବଦୟନ୍ତି ପିତାମହ ଶୁଣ ଦଇତାରୀ
ଦେବି ମୁଁ ଗୋଟିଏ ଆଣି ବିରହ ବାଂଶରୀ ।
ସ୍ତମ୍ଭନ ମୋହନ ବଶ୍ୟ ଆଦି ପଞ୍ଚଶର
ନାମଧରି ବଜାଇଲେ ମିଳଇ ଛାମୁର ।
ବଂଶୀ ଧରିଣ ବୋଇଲେ ରାଧାନାମ ଧରି
ଦଇନୀ କରିବ ଆସି ବାସ ପରିହରି ।
ସେ ମୋହନବଂଶୀ ଯହୁଁ ଦେଇଗଲେ ପିତା
ତେଣୁ ହରି ରମିଲେ ଯେ ଗୋପର ବନିତା ।
ଉତ୍ତର ବୋଇଲେ ଜୀବ ଅଟେ ତୋର ଧନୀ
ସାଧୁ ତୋ ପିତା ଆବର ସାଧୁ ତୋ ଜନନୀ ।
ଧନ୍ୟ ଧନ୍ୟ ଶୁଭବେଳେ ମୁହିଁ ତୋତେଭେଟି
ତେଣୁ ଧନ୍ୟ ହେଲାମୋର ଏ ଜୀବନ ଗୋଟି ।
ଶୁଣ ଏବେ ଉତ୍ତର ଏ ଗାଣ୍ଡିବର କଥା
ଏଣେ ଭାରା ନିବାରଣ ହୋଇବ ସର୍ବଥା ।
ଉତ୍ତର ବୋଲେ ଆଶ୍ରିତଅଟେ ମୁଁ ତୋହରି
କହ କହ ତୁ ଜାଣିଲୁ ଏହା କେଉଁପରି ।
ବୃହନ୍ନାରୀ ବୋଇଲେ ହୋ ଶୁଣ ତୁ ଉତ୍ତର
ମୁଁ ଅଭେଦ ଆତ୍ମା ଅଟେ ପଞ୍ଚପାଣ୍ଡବର ।
ବହୁତ ଆଦର ମୋତେ କରିଥାନ୍ତି ଜାଣ
ଯେହୁ ବୃହନ୍ନାରୀ ସେହୁ ପ୍ରତ୍ୟକ୍ଷେ ଅର୍ଜୁନ ।
ଉତ୍ତର ବୋଇଲା ତୁହି ସର୍ବ ଜାଣୁ ଯେବେ
ଅସ୍ତ୍ର ଥୋଇ କେଉଁଆଡ଼େଗଲେ ସେପାଣ୍ଡବେ
ବୃହନ୍ନାରୀ ବୋଇଲା ଯେ କଥା କୁତୂହଳେ
ରାଜ୍ୟଭାର ରଜ ଗଜ ଛାଡ଼ି ଏକାବେଳେ ।
ପଶାରେ ହାରି ଦ୍ୱାଦଶବର୍ଷ ବନେ ରହି
ଆବର ଅଜ୍ଞାତ ବର୍ଷ ତେରଦିନ ପାଇଁ ।
ବର୍ଷେ ତେରଦିନ ମଧେ ହୋଇଲେ ଜାଣନ୍ତା
ପୁଣି ବାରବର୍ଷ ଯିବେ ସତ୍ୟ ଏହି କଥା ।
ହେ ଉତ୍ତର ଦଇବ ଯେ ଦେଲା ତା କଷଣ
ଯୁଧିଷ୍ଠିର ଗଲେ ଏହା କରି ନିରୂପଣ ।
ପ୍ରଥମ ବନବାସରେ ବନେ ଥାଇକରି
ପ୍ରଥମେ ମାଇଲେ ଦୈତ୍ୟ କୁମାରୀ କିନ୍ନରୀ
ହିଡ଼ିମ୍ବିକା ବନେ ହିଡ଼ିମ୍ବାର ଅନ୍ତ ଚିରି
ଏକା ଚକ୍ରାନଗ୍ରେ ବକ ରାକ୍ଷସକୁ ମାରି ।
ଦ୍ୱିତୀୟ ବନବାସରେ ନିର୍ବାତ କବଚ
ଗୋସିଂହ ରଣସିଂହ ହେ ତାର କ୍ଷତ୍ରୀବୃନ୍ଦ ।
ମଧୁ ମେରୁଶୂଳ ପୁଣି କାନନ ଅଙ୍ଗିରା
ମାଇଲେ ଅନେକ ଦୈତ୍ୟ ସେହି ପାଞ୍ଚବୀରା ।
ଏମନ୍ତେ ଅନେକ ଦୈତ୍ୟ ମାଇଲେ କାନନେ
ଅଜ୍ଞାତବାସେ ରହିଲେ ଏବେ ଷଡ ଜଣେ ।
ଧର୍ମକୁ ନ ଲଘଂନ୍ତି ସେ ସତ୍ୟ କୁଳଶୀଳ
ଅଜ୍ଞାତବାସରେ ବଞ୍ଚିଛନ୍ତି ଚିରକାଳ ।
ଆବର ତିନି ଦିବସ ଅଛଇ ଲେଖନ୍ତେ
ତୁ ଗୋପ୍ୟ କରିପାରିବୁ ତା କି ହୃଦଗତେ ।
ଉତ୍ତର ବୋଇଲେ ସତ୍ୟ ସତ୍ୟ କଲି ମୁହିଁ
ଧର୍ମ ଲଘିଂଲେ ଜନନୀ ଦ୍ରୋହକୁ କରଇ ।
ନିରଞ୍ଜନ ଥାଳରେ ମୁଁ ଗରଳ ଭକ୍ଷଇ
ତହିଁର ଯେତେକ ପାପ ତାହା ଭୋଗିବଇଁ ।
ଜଳେ ଉଲଗ୍ନେ ପଶନ୍ତେ ଯେତେ ହୁଏ ଦୋଷ
ସେ ଦୋଷ ଲାଗଇ ମୋତେ କରିଲେ ପ୍ରକାଶ
ବୃହନ୍ନାରୀ ବୋଇଲା ତୁ ଶୁଣ ହୋ ବିରାଟୀ
ତୋ ରାଜ୍ୟେ ଛନ୍ତି ପାଣ୍ଡବ ବୀର ପାଞ୍ଚଗୋଟି
ଉତ୍ତର ଆଶ୍ଚର୍ଯ୍ୟ ବୃହନ୍ନାରୀର ବଚନେ ।
ଏ କଥା ପ୍ରତ୍ୟକ୍ଷ ମୁହିଁ କରିବି କେସନେ ।
ରାଜସୂୟ ଯଜ୍ଞ ଯୁଧିଷ୍ଠିର ଦେବ କଲେ
ପାଞ୍ଚଦଶ ରଥ ଘେନି ପିତା ଯାଇଥିଲେ ।
ବହୁସୈନ୍ୟ ଘେନି ଛତ୍ରଶାଳେ ଅନ୍ନଖାଇ
ଷୋଳଦିନ ରହିଲେ ସେ ଦର୍ଶନ ନ ପାଇ ।

ଭୀମସେନ ଯୁଧିଷ୍ଠିରଙ୍କର ସାନଭ୍ରାତ
ଶୂନ୍ୟେନେଲା ମୋ ପିତାକୁ ଗଳେଦେଇହାତ ।
ଯୁଧିଷ୍ଠିର ପାଦତଳେ ପକାଇଲା ନେଇ
ପାଦ ମାତ୍ରକ ଦେଖିଲା ପିତା ମୋର ତହିଁ ।
ଲକ୍ଷେ ନରେନ୍ଦ୍ର ଯାହାର ପାଦତଳେ ଲୋଟି
ପ୍ରତିହାରୀପଣେ ହରି ଯାର ପାଦେ ଲୋଟି ।
ଲକ୍ଷେ ନୃପତିଙ୍କର ସେ ଅଟନ୍ତି ମୁକୁଟ
ସେ ଯୁଧିଷ୍ଠି ମୁନି ବସେ ସର୍ବଙ୍କ ଲଲାଟ ।
ଏତେ ପୁଣ୍ୟ କାହୁଁ ହେବ ବିରାଟର ବଂଶେ
ତାହାଙ୍କର ପଦରଜ ପଡ଼ିବ ମୋ ଦେଶେ ।
ଶୁଣି ପ୍ରତି ଉତ୍ତର ଯେ ଦେଲେ ବୃହନ୍ନାରୀ
ଆଜି ଯୁଧିଷ୍ଠି ତୋ ରାଜ୍ୟେ ଛନ୍ତି ବିଜେକରି
ଯା ସଙ୍ଗେ ପଶା ଖେଳଇ ତୋ ପିତା ବିରାଟ
ସଭାପଣ୍ଡା ହୋଇ ତାଙ୍କ ନାମ କୋନ୍ତଭଟ୍ଟ ।
ଅନୀତି ବଚନ ତୁଣ୍ଡେ ନ ଆଣନ୍ତି କେବେ
ସେ ଅଟନ୍ତି ଯୁଧିଷ୍ଠିର ଜାଣ ତୁହି ଏବେ ।
ଉତ୍ତର ଆଶ୍ଚର୍ଯ୍ୟ ହେଲେ ଏହି କଥା ଶୁଣି
ଦେଖିଲେ ତଦନ୍ତ କରି ବୁଝିବା ପ୍ରମାଣି ।
ଗନ୍ଧମାର୍ଦ୍ଦନ ପର୍ବତ ପ୍ରାୟେ ଭୀମକାୟେ
ଗୋପନ ହୋଇଲା ସେହୁ କେବଣ ଉପାୟେ
ତିନିଷଠି ପଉଟିରେ ଦିନେ ତା ତୃପତି
ଏ ଭୋଜନ କେଉଁ ରୂପେ ଦେଲେ ମତ୍ସ୍ୟପତି
ତୋହର ବଚନ ଯେବେ କରିବି ମୁଁ ସତ
ଏଥିର ବୃତ୍ତାନ୍ତ ମୋତେ କହରେ ସଙ୍ଗାତ ।
ଶୁଣ ବାବୁ ଉତ୍ତର ହୋ ବୋଲେ ଫାଲଗୁନି
ଏହି ବାକ୍ୟ ହୃଦଗତେ ଲୟରେ ତୁ ଘେନି ।
ତ୍ରୈଲୋକ୍ୟ ଭିତରେ ଯାର ମହିମା ଦୁର୍ଲ୍ଲଭ
ଦିବସ ବଞ୍ଚେ ହୋଇ ସେ ସୁଆର ବଲ୍ଲଭ ।
ମହାମତ୍ତ ବ୍ୟାଘ୍ରକୁ ଯେ ବଧକଲେ ଯୁଦ୍ଧେ
ପ୍ରଚଣ୍ଡମଲ୍ଲ ମାଇଲେ କଉତୁକ ଶ୍ରଦ୍ଧେ ।
କୀଚକ ଦ୍ରୌପଦୀଠାରେ ବଳାଇଲା ମତି
ଗୁପ୍ତେ ଭୀମ ପଠାଇଲେ ତାକୁ ଯମକତି ।
ତୋର ପିତାକୁ ତ୍ରିଗର୍ତ୍ତ ଯେବେ ବାନ୍ଧିନେଲା
ସୈନ୍ୟମାରି ବିରାଟକୁ ଉଦ୍ଧରି ଆଣିଲା ।
ପାଣ୍ଡବ ସୁନ୍ଦର ସେହି ଅଟେ ବଳବନ୍ତା
ସେ ବୃକୋଦର ଅଟନ୍ତି ବଳେ ଜଗଜ୍ଜିତା ।
ଉତ୍ତର କୁମର ବୋଲେ ଶୁଣ ବୃହନ୍ନାରୀ
ଭ୍ରାନ୍ତି ନ ଫିଟିଲା ଜାଣ ତଥାପି ମୋହରି ।
ବୃହନ୍ନାରୀ ବୋଇଲା ତୁ ଶୁଣ ହେ ଉତ୍ତର
ଅଗ୍ନି ବିଦାରି ବାହାର ଯାହାର ଶରୀର ।

ସୈରିନ୍ଧ୍ରୀ ନାମରେ ସେହୁ ମୁକୁଳିତ କେଶା
ଯାହାର ଲୁବ୍‌ଧେ କୀଚକ ପ୍ରାଣେ ହେଲାନାଶ
ପାଞ୍ଚାଳି ଦେଶରେ ରାଜନନ୍ଦିନୀ ପାଞ୍ଚାଳୀ
ପ୍ରତିଜ୍ଞା ସାଧବୀ କେଶ ଯାହାର ମୁକୁଳି ।
ଗୁପତ ନିମନ୍ତେ ନାମ ସୈରିନ୍ଧ୍ରୀକୁ ବହି
ଦିନ ହରଣ ନିମନ୍ତେ ଛନ୍ତି ଗୋପ୍ୟେ ରହି ।
ସୁନ୍ଦର ସୁକୁମାର ସେ ପୁରୁଷ ଅଟଇ
ଆକାଶ ମଣ୍ଡଳେ ଯାକୁ ପାଟେକ ଅଛଇ ।
ହେମବନ୍ତ ବାଦେ ପୃଥ୍ୱୀ ଧରେ କୁନ୍ତମୁନେ
ଛତ୍ର ପ୍ରାୟ ବୁଲାଇଲା ଧରି ଅଭିମାନେ ।
ସୁନ୍ଦର ସୁକୁମାର ସେ ପଣ୍ଡିତ ସୁବୁଦ୍ଧି
କିଞ୍ଚିତ ଦର୍ଶନ ଜାଣେ ଲକ୍ଷେ ବିଦ୍ୟାସାଧି ।
ଗୋପ୍ୟ ନିମନ୍ତେ ଗ୍ରନ୍ଥିକା ନାମେ ବାଜିପାଳ
ସର୍ବଗୁଣେ କୁଶଳ ସେ କୁମାର ନକୁଳ ।
ଯା ଅଶ୍ୱସାଜନ୍ତେ ଭୟ ପାଏ ପରଥାଟ
ନ ଜିଣିଲେ ନ ବାହୁଡ଼େ ସେହୁ ପରରାଷ୍ଟ୍ର ।
କହିଲେ ନ ସରିବ ଯେ ଏହାଙ୍କ ମହିମା
ସ୍ୱର୍ଗେ ବିକାଶ ହୋଇଛି ଯାହାଙ୍କ ବଡ଼ିମା ।
ନାମ ସଙ୍କେତ ନାଶକୁ ଶତ୍ରୁ ଦର୍ପ ଭଞ୍ଜା
କାଳଦଣ୍ଡ ତେଜଇ ଯା ନାମେ ଧର୍ମରାଜା ।
ବୃହନ୍ନାରୀ ବୋଲେ ଶୁଣ ତୁ ବିରାଟ ବତ୍ସ
ମନ୍ତ୍ରୀ ଚୂଡ଼ାମଣି ସହଦେବ ଗୋରୁ ରକ୍ଷ ।
ତୋର ପିତାକୁ ଅସାଧ ହୋଇଲା ପୃଥୁନା
ଲକ୍ଷେକ ରାଜାକୁ ସେହୁ ନ କଲା ଗଣନା ।
ସାତକ୍ଷୌଣୀ ବଳ ଘେନି ସାଜିଲା ବିରାଟ
ପୃଥୁନାର ଶୃଙ୍ଗଘାତେ ନ ବଞ୍ଚିଲା ଥାଟ ।
ଦୁଇକ୍ଷୌଣୀ ବଳଘେନି ଫେରିଲା ସେଦେଶେ
ପୃଥୁନା ବଶ ହୋଇଲା ଯାରଦେଶ ଘୋଷେ ।
ତାହାର ନାମ ଧରନ୍ତେ ସର୍ବ ରୋଗ ଛୁଟି
ଭୂତ ଭବିଷ୍ୟତ ଜ୍ଞାତା ଯାର ନାମଗୋଟି ।
ଗୋରୁଙ୍କୁ ତାରିବାପାଇଁ ଯାର ମନ୍ତ୍ରବୁଦ୍ଧି
ତହୁଁ ସେହୁ ତନ୍ତ୍ରୀପାଳ ଗୋପାଳ ପ୍ରସିଦ୍ଧି ।
ଉତ୍ତର ବୋଇଲେ ବୃହନ୍ନାରୀ ମୁଖ ଚାହିଁ
ଏ ବାରତା ପାଇଲି ମୁଁ ପାର୍ଥଛନ୍ତି କାହିଁ ।
ବୃହନ୍ନାରୀ ବୋଲେ ଶୁଣ ଉତ୍ତର ବଚନ
ମୁହିଁ ସେ ପାର୍ଥ ଅଟଇ ଇନ୍ଦ୍ରଙ୍କ ନନ୍ଦନ ।
ଉପହାସ କଲା ସେହି ନାକେ ଦେଇ ହସ୍ତ
ବାବୁ ଯେଉଁ ରୂପେ ତୁହି ବାସବର ସୁତ ।
ଶ୍ରୀହରି ଅଭେଦ ଆତ୍ମା ଯେବଣ ପୁରୁଷ
ନପୁଂସକ ଲକ୍ଷଣ କି ତାହାର ଭବିଷ୍ୟ ।

ବୃହନ୍ନାରୀବୋଇଲେ ହୋ ସତ୍ୟମୋରବାଣୀ
ପୁରୁଷ ଲକ୍ଷଣ ମୋର ଦେଖିବୁ ଏକ୍ଷଣି ।
ଉତ୍ତରକୁମର ବୋଲେ ତୋର କେଉଁଶାପେ
ହୀନ ଲକ୍ଷଣ ହୋଇଲା କିମ୍ପା ଏହି ରୂପେ ।
ବୃହନ୍ନାରୀ ବୋଲି ମୁହିଁ ସ୍ୱର୍ଗେ ଗଲି ବାରେ
ଅନେକ ଉତ୍ସବ ଇନ୍ଦ୍ର କଲେ ମୋ ଆଗରେ ।
ଆସ୍ଥାନେବାସବମୋତେବସାଇଲେ କୋଳେ
ଅପସରୀଏ ବେଢ଼ିଲେ ଆସି ସେହିକାଳେ ।
ଆଶା ଜାଣିବା ମାତ୍ରକେ ଇନ୍ଦ୍ର ଦେଲା ପେଶି
ଅନେକ ବିନୟୀ ମୋତେ ହୋଇଲେଉର୍ବଶୀ ।
ସତ୍ୟଯୁଗେ ଇନ୍ଦ୍ରହେଲେ ପୁରୁରବା ରାଜା
ସେ ଯୁଗେ ଉର୍ବଶୀ ହୋଇଥିଲା ତାଙ୍କ ଭାର୍ଯ୍ୟା ।
ପୁରୁରବା ଅନ୍ତେ ଇନ୍ଦ୍ର ହୋଇଲେ ନହୁଷ
ତାହାଙ୍କ ସଙ୍ଗେ ଉର୍ବଶୀ କରିଲା ବିଳାସ ।
ପୁଣିହିଁ ଇନ୍ଦ୍ର ପଦକୁ ପାଇଲେ ଯଯାତି
ଉର୍ବଶୀ ତାଙ୍କର ହେଲା ପୁଣି ପ୍ରିୟାଅତି ।
ପୁଣି ଇନ୍ଦ୍ର ପଦେ ତହିଁ ବସିଲେ ଦୁଷ୍ମନ୍ତ
ଉର୍ବଶୀ ଯାଇଣ ତାଙ୍କଠାରେ ହେଲା ରତ ।
ଏବେ ଯେ ଇନ୍ଦ୍ର ଅଟନ୍ତି ଅମର ମଣ୍ଡଳେ
ମୋହର ପିତା ଅଟନ୍ତି ସେହି ଆଖଣ୍ଡଳେ ।
ସେହି ଉର୍ବଶୀ ପିତାର ହୋଇ ପ୍ରିୟବତୀ
ମୁହିଁ ଜାଣୁ ଜାଣୁ କେହ୍ନେ କରନ୍ତି ଅନୀତି ।
ବଂଶର ଗୁରୁ ବୋଲିଣ ତାକୁ ନାସ୍ତିକଲି
ରାଗେ ଶାପଦେଲା ନପୁଂସକ ହୁଅ ବୋଲି ।
ମୁଁ ବିରହୀ ବାମା ମୋତେ କଲୁ ତୁ ନିରାଶ
ଅନ୍ୟସ୍ତିରୀସଙ୍ଗେ ତୋର ନହେଉ ବିଳାସ ।
ଉର୍ବଶୀ ଶାପ ଜାଣିଲେ ଯହୁଁ ସସ୍ରଯୋନି
ସାଧୁ ସାଧୁ ବୋଲି ମୋତେ କଲେ ବହୁଧ୍ୱନି
ଉର୍ବଶୀକି ମଘବାନ କଲେ ବହୁ କୋପ
ନିଷ୍କଳଙ୍କ ପୁତ୍ରକୁ ତୁ ଦେଲୁ ଏଡ଼େ ଶାପ ।
ଉର୍ବଶୀକି କୋପ ମୋତେ ହୋଇଲେ ସଦୟ
ଏ ଶାପେ ମଙ୍ଗଳ ହେଉ ତୋର ଧନଞ୍ଜୟ ।
ଗୁପ୍ତ ବନବାସ ଯେବେ ହୋଇବ ଅଜ୍ଞାତ
ଅନ୍ୟୋ ଅନ୍ୟେ ଗୁପତରେ ଥିବ ଚାରିଭ୍ରାତ ।
ବେନିଭୂଜେ ତୋହର ଯେ ଗୁଣଚିହ୍ନ ଫୁଟେ
କାହିଁ ତାକୁ ଲୁଚାଇବୁ ଏହାଙ୍କ ସଙ୍କଟେ ।
ପରମସାଧବୀ ଏହା କୋପରେ କହିଲା
ମହତଙ୍କ ଭାଷା ଏବେ ମୋତେ ହିତହେଲା ।
ମୋହର ବଚନ ଘେନି ଉର୍ବଶୀ ଆକାଶେ
ଅମରପୁରେ ଅଛଇ ସେ ପୁରୁଷ ବେଶେ ।
ତୁ ଯେ ପୁଚ୍ଛାକଲୁ ମୋତେ ମୋହର ଚରିତ
ନପୁଂସକର ଚରିତ ହୋଇଲା ଏମନ୍ତ ।
ଉତ୍ତର ବୋଲେ ଅର୍ଜ୍ଜୁନ ବହେ ଦଶ ନାମ
ତାହା କହିଲେ ତୋତେ ମୁଁ କରିବି ପ୍ରଣାମ
ଅର୍ଜ୍ଜୁନ ବୋଲେ ଉତ୍ତର ଏ ଗହନ କଥା
ତୁ ଯେବେ ପୁଚ୍ଛିଲୁ ତାର କହିବି ବାରତା ।
ଧୃତରାଷ୍ଟ୍ର ହେଲେ ଅନ୍ଧ ରାଜ୍ୟକୁ ଅଯୋଗ୍ୟ
ସେଥିର ନିମନ୍ତେ ପଣ୍ଡୁକରେ ରାଜ୍ୟଭୋଗ
ସେ ଧୃତରାଷ୍ଟ୍ରଙ୍କୁ ପଣ୍ଡୁ ପୁଣି ରାଜ୍ୟ ଦେଇ
ଦୁଷ୍ଟ ନିବାରିଲେ ବୀର ବନଗାମୀ ହୋଇ ।
ପଣ୍ଡୁଙ୍କ ସଙ୍ଗେ କୋଇନ୍ତା ମାଦ୍ର ଦୁଇରାଣୀ
ଶତଶୃଙ୍ଗ ପର୍ବତରେ ରଖାଇଲେ ଆଣି ।
ଯେ ସୁରନଦୀରତୀରେ ଅର୍ଜ୍ଜୁନର ବନ
ତହିଁ ଜନ୍ମିଲା ମିଥୁନ ଦ୍ୱିତୀୟାର ଦିନ ।
ବୃହସ୍ପତିବାର ପୁଣି ଉତ୍ତରାଫାଲଗୁନୀ
ଚାନ୍ଦ୍ରେକୁନ୍ତୀଦେବୀମୋତେଛନ୍ତିକୋଳେଘେନି ।
ଶ୍ରୀକରରେ ଅର୍ଘ୍ୟଘେନି ପଣ୍ଡୁ ଯେ ରାଜନ
ପ୍ରଥମେ ମୋ ନାମଗୋଟି ଦେଲେ ଅରଜୁନ ।
ଜଣାଇଲେ ବୃହସ୍ପତି ରାଇ ସସ୍ର ଯୋନି
ବୃହସ୍ପତି ମୋର ନାମ ଦେଲେ ଫାଲଗୁନି ।
ରଇବତ ପରବତେ କୃଷ୍ଣ ଫଗୁ ଖେଳି
ଏମନ୍ତ କାଳେ ଶବଦ ଶୁଭେ ହୁଳହୁଳି ।
ଅଦଭୂତେ ଶବ୍ଦ ଶୁଣି ପ୍ରଭୁ ଦେବରାଜେ
ବୈନତେୟ ପିଠିରେ ସେ କରିଲେ ଯେବିଜେ ।
ଆସିଣ ଦେଖିଲେ ସେହୁ ମୋର ବର୍ଣ୍ଣ ଚିହ୍ନ
କୋଳରେ ଧଇଲେ ତହୁଁ ଦେବ ଜନାର୍ଦ୍ଦନ
ବହୁ ରତ୍ନ ଆଭରଣ ଦେବବନମାଳୀ
ନାମ ଦେଇଛନ୍ତି ମୋତ ଦ୍ୱିତୀୟ କୃଷ୍ଣବୋଲି ।
ଅନ୍ୟାୟ କରିଲା ବଜ୍ର କବଚର ସୂତ
ବାସବଙ୍କ ବଚନେ ମୁଁ ବଧିଲି ନିର୍ବାତ ।
ସ୍ୱର୍ଗରେ ଅନେକ ପୂଜା କଲେ ଦେହରାଜା
କିରୀଟି ମୁକୁଟ ଶିରେ ବାନ୍ଧିଲେ ବିଜୋଡ଼ା ।
ଅନେକ ରତ୍ନ ଭୂଷଣ ଇନ୍ଦ୍ର ମୋତେକଲେ
ମୁକୁଟ ବାନ୍ଧି କିରୀଟି ନାମ ମୋର ଦେଲେ ।
ବିଶ୍ୱାବସୁ ଗନ୍ଧର୍ବର ଭାର୍ଯ୍ୟା ରତ୍ନମତୀ
ତାକୁ ନେଉଥିଲା ବଜ୍ର କବଚର ନାତି ।
ହରିଣ୍ୟକବଚମାରି ରଖିଲି ତା ପ୍ରିୟା
ଗନ୍ଧର୍ବ କଲା ଯେ ମୋତେ ଅନେକସୁଦୟା ।
ହରିଣ୍ୟ ଦୈତ୍ୟ ପୁରରେ ଥିଲା ରତ୍ନରାଜ
ଶୁଦ୍ଧ ସ୍ଫଟିକକୁ ଜିଣି ଦିଶେ ତାର ତେଜ ।

ତାହା ଘେନି ବିଶ୍ୱାବସୁ ପୂଜାକଲା ମୋତେ
ଶ୍ୱେତବାହନ ମୋ ନାମ ଦେଲା ହୃଷ୍ଟଚିତ୍ତେ
ଶୁଣ ବାବୁ ଉତର ହେ ସୁଦେଷ୍ଣା ନନ୍ଦନ
ଯେତେବେଳେ ଖାଣ୍ଡବକୁ କଲି ମୁଁ ଦହନ ।
ଅଗ୍ନିଦେବତା ଅନେକ ତୃପତ ହୋଇଲେ
ଶିବ ତହୁଁ ଆସି ମୋତେ ଗାଣ୍ଡୀବକୁ ଦେଲେ ।
ଏ ଧନୁ ହସ୍ତରେ ଥିଲେ ସର୍ବ ଦେବ ଜୟ
ତେଣୁକରି ନାମ ମୋର ଦେଲେ ଧନଞ୍ଜୟ ।
ସୁଗନ୍ଧ ହରଣେ ହନୁ ହୋଇଲେ ବିବାଦୀ
ଶରଜାଳେ ସାଗରକୁ ଦେଲି ମୁହିଁ ବାନ୍ଧି ।
ଶତେ ଚଉବିଂଶ ଯୁଣ ତାର ଦୀର୍ଘ ପ୍ରତି
ଏଡ଼େ ବନ୍ଧନେ ବାନ୍ଧିଲି ଦକ୍ଷିଣ ମୂରତି ।
ଅନେକ ପ୍ରଶଂସା ମୋତେ କଲେ ହନୁମନ୍ତ
ତେଣୁ ସେହୁ ନାମ ମୋର ଦେଇଛନ୍ତି ପାର୍ଥ ।
ଯୁଗାଦୀ ତୀର୍ଥରେ ଗଙ୍ଗା ଜଳେ ସ୍ନାନକାଳେ
ଆବେଦ ପୁରୁଷ ବୋଲି ଏକଇ ଚଣ୍ଡାଳେ ।
ନିଶାକାର ଦୂରାଚାର ରୂପବତୀ ଦେଖି
ବଳାତ୍କାରେ ଘେନିଗଲା ସେ ଶଚୀ ଦେବୀଙ୍କି ।
ଅନେକ ସମର ତହୁଁ ହେଲା ମେରୁ ପୃଷ୍ଠେ
ବୃନ୍ଦାରକଗଣ ବଳେ ଜିଣିଲେ ପାପିଷ୍ଠେ ।
ମୁହିଁ ସେ କାଳେ ଥିଲି ଯେ ଅସକନ୍ଦବନେ
ଶଚୀଙ୍କୁ ଘେନିଣ ଚଳିଯାନ୍ତେ ଯାତୁଧାନେ ।
ଶଚୀଦେବୀ ଡାକଦେଲେ ଅର୍ଜୁନ ତୁ ରଖ
ତୋହପରି ପୁତ୍ର ଥାଉ ହେଲିଁ ମୁଁ ନିରେଖ ।
ଏହି ବାକ୍ୟ ଶଚୀଦେବୀ ବୋଲନ୍ତି ବିକଳେ
ଦୂରନ୍ତକ ବଳ ମୁହିଁ ଧ୍ୱଂସିଲଇଁ ରୋଳେ ।
ସର୍ବ ଶୁଭେ ସେ ଚଣ୍ଡାଳ ବଳୁବଳ ଧ୍ୱଂସି
ଦିବ୍ୟଭୁବନରେ ଦିବ୍ୟ ସ୍ଥାନେ ଦେଲି ପେଷି
ତହୁଁ ସେହି ପୂଜ୍ୟଲୋକସନ୍ତୋଷହୋଇଲେ
ସବ୍ୟସାଚୀ ବୋଲିକରି ନାମମୋର ଦେଲେ
ବାବୁ ସଂଗ୍ରାମେ ନିସତ ହୁଏ ଯେଉଁ କ୍ଷତ୍ରୀ
କେଶ ମୁକୁଳା ଉଲଗ୍ନ ବିବସ୍ତ୍ର ବିରଥି ।
ମୁଖେ ଅଙ୍ଗୁଳି ଭରିଣ କରନ୍ତି ଯେ ସ୍ତୁତି
ଶର ନ ପେଶଇ କେଭେ ମୁହିଁ ତାଙ୍କ ପ୍ରତି ।
ସର୍ବ ଯୋଦ୍ଧାଏ ବୋଲନ୍ତି ତୋ ଜୀବନଧନ୍ୟ
ବିବସ୍ତେ ବୋଲନ୍ତି ନାମ କରିଲେ ପ୍ରଦାନ ।
ବାବୁ ରାଜସୂୟଯାଗେ ଦିଗବିଜେ କାଳେ
ଅନେକ ବୀରଙ୍କୁ ତହୁଁ ଜିଣିଲି ମୁଁ ବଳେ ।
ବହୁ ପ୍ରଶଂସା ପାଇଲି ଏ ମହୀମଣ୍ଡଳେ
ତେଣୁ ମୋ ନାମ ବିଜୟ ଦେଲେମହୀପାଳେ ।
ଏ ମୋହର ଦଶନାମ ଶୁଣିଲୁ ବିରାଟୀ
ଆଜହୁଁ ଦୁଷ୍କୃତମାନ ତୋର ଗଲା ତୁଟି ।
ପ୍ରତ୍ୟକ୍ଷରେ ଦେଖ ଏବେ କୁମାର ଉତ୍ତର
ନପୁସଂକ ଲକ୍ଷଣ ଯେ ଫିଟିଗଲା ମୋର ।
ଉତ୍ତର ଯେ ଶତବାର କରିଣ ପ୍ରଣାମ
ବୋଲେ ତୁମ୍ଭେ ବୀରବର ପୁରୁଷ ଉତ୍ତମ ।
ଜୟ ଜୟ ତୁ ପାଣ୍ଡବ ଶୁଦ୍ଧ ଗୁଣରାଶି
ଭାରୋଇମଲ୍ଲ ପ୍ରତ୍ୟକ୍ଷେ ଅଟ ସୋମବଂଶୀ ।
ଅନେକ ପୁଣ୍ୟ ସ୍ୱାମୀ ମୁଁ କରିଥିଲି ପୂର୍ବେ
ନେତ୍ରେ ନାରାୟଣ ରୂପ ଦେଖିଲି ମୁଁ ଏବେ ।
ଜଗତସୋଦର ନାଥ ରକ୍ଷାକର ପାର୍ଥ
ଶ୍ରୀକୃଷ୍ଣ ସାରଥି ହୋଇ ବାହାନ୍ତି ଯା ରଥ ।
ସାଧୁ ସାଧୁ ହୋଇଣ ମତ୍ସ୍ୟଦେଶ ପୁରୀ
ସାଧୁ ସୁଲଭ ହୋଇଲେ ନରନାରୀ ।
ସାଧୁ ସାଧୁ ସୁଲଭ ଏ ବିରାଟ ବଂଶ
ସମ ହୃଦେ ପ୍ରାପ୍ତ ସ୍ୱାମୀ ପରମ ପୁରୁଷ ।
ସୁଭଦ୍ରାଙ୍କ ବଲ୍ଲଭ ହେ ଦ୍ୱିତୀକୃଷ୍ଣ ତୟେ
ଶୂଦ୍ରମୁନି ଶାରଳା ସେ ହୃଦଗତେ ଧାୟେ ।

—●—

## ଶିବପିଣ୍ଡ ଓ ଦେବଦତ୍ତ ଶଙ୍ଖବିବରଣ ଏବଂ ଅମ୍ବାସୁର ବଧ

ଅଗସ୍ତି କହନ୍ତି ଶୁଣ ଆହେ ମୁନରାଣ
ଏଥୁଅନନ୍ତରେ ଯାହା ହୋଇଲା ଘଟନ ।
ଅର୍ଜୁନଙ୍କଠାରୁ ଶୁଣି ସୁଦେଷ୍ଣା କୁମର
ବୋଇଲେ ପୂଜ୍ୟପାଦ ମୁଁ ଶରଣ ତୁମ୍ଭର ।
ତେଣୁକରି ଅଟ ତୁମ୍ଭେ ଦ୍ୱିତୀ ନାରାୟଣ
ପରମାନନ୍ଦ ପୁରୁଷ ତୁମ୍ଭେ ମୋ କାରଣ ।
ଅର୍ଜୁନ ବୋଲେ ଉତ୍ତମ ବେଗେ ବୃକ୍ଷେଉଠ
ଚାରି ଧନୁ ଆଠ ତ୍ରୋଣ ଥୁଅ ନେଇ କ୍ରୋଟ ।
ନୟନ ବୁଜି ଉତ୍ତର ବୃକ୍ଷ କଲା କୋଳ
ଧାଡିକାରେ ଯାଇ ସେହୁ ଧଇଲାକ ଡାଳ ।
ଧନୁ ତ୍ରୋଣକୁ ଅର୍ଜୁନ ଦେଲେକ ବଢ଼ାଇ
ଧରମ କୁମର ତାହା ଡାଳ ଶିଖେ ଥାଇ ।
ଧନୁ ତ୍ରୋଣମାନ ନେଇ ଥୋଇଲା କ୍ରୋଟରେ
ବିରାଟ କୁମର ବୃକ୍ଷୁଁ ଓହ୍ଲାଇଲା ଖରେ ।

ମୃତପିଣ୍ଡକୁ ବୋଇଲେ ଲାଗ ଯାଇ ବୃକ୍ଷେ
ଛାଇର ସଦୃଶ ଯାଇ ଲାଗିଲା ପ୍ରତ୍ୟକ୍ଷେ ।
ଉତ୍ତର ପଚାରେ ଶୁଣ ଆହେ ଅରଜୁନ
ଏ ମୃତପିଣ୍ଡର କଥା ଅଟଇ କେସନ ।
କର ଚରଣ ଶରୀର ତାର କିଛି ନାହିଁ
ମୁଖ ବିହୁନ କିରୂପେ ରାବ ସେ ଦିଅଇ ।
ଘୋରରଡ଼ି ଘାତରେ ସେ କମ୍ପାଏ ବ୍ରହ୍ମାଣ୍ଡ
ଅଦଉଡ଼ି ବନ୍ଧନରେ କମ୍ପାଏ ପ୍ରଚଣ୍ଡ ।
ଅର୍ଜୁନ ବୋଇଲେ ଶୁଣ ଉତ୍ତର କୁମାର
ନିର୍ବାତ ଯୁଦ୍ଧେ ଏହାର କଲି ଉପକାର ।
ଗହଧ୍ୱଜ ପୁତ୍ର ନାମ ମହାବୃକ୍ଷ ବୋଲି
ଚଣ୍ଡ ଗନ୍ଧର୍ବ ପୁତ୍ର ନାଁ ପରଚଣ୍ଡ ବଳି ।
ଏହାର ମାତାର ନାମ ଅଟଇ ଧାମତୀ
ବାସବଙ୍କର ଅଟଇ ସେହୁ ପଣନାତି ।
ଏହାର ଭାରିଯା ନାମ ଅଟେ ସୁରମୋହି
ବଳେ ନିର୍ବାତକବଚ ଗଲା ତାକୁ ନେଇ ।
ନିର୍ବାତକୁ ବଧକରି ଆଣିଲା ସେ ବାଳୀ
ଭାର୍ଯ୍ୟା ପାଇ ପ୍ରୀତ ହେଲା ସେ ପ୍ରଚଣ୍ଡ ବଳୀ ।
ମୋତେ ବୋଇଲା ମାଇଲ ମୋଜାୟାବଇରୀ
କହ କେଉଁ ଉପକାର କରିବି ତୁମ୍ଭରି ।
ଯେଉଁପରି ମନୋବାଞ୍ଛା କହ ସେହିପରି
ଅବଶ୍ୟ ପୂର୍ଣ୍ଣକରିବି ବୋଲି ସତ୍ୟକରି ।
ମୁଁ ବୋଇଲି ତୁ ପ୍ରସନ୍ନ ହେଲୁ ଯେବେମୋତେ
ଶମୀ ବୃକ୍ଷେ ଅସ୍ତ୍ର ମୋର ଜଗିବୁ ଅଜ୍ଞାତେ ।
ବାବୁ ମହତଙ୍କ ବାକ୍ୟ ନ ହୁଅଇ ଆନ
ସତ୍ୟ ଦଉଡ଼ିରେ ସେହି ହୋଇଛି ବନ୍ଧନ ।
ଅନ୍ୟ ଗନ୍ଧର୍ବେ ଏ ସ୍ଥାନେ ଆସୁଛନ୍ତି ବୋଲି
ତେଣୁକରି ବିକଟାଳେ ଦିଅଇ ବୋବାଳି ।
ଘାଆ ବିହୀନରେ ଗନ୍ଧ ତା ମୁତ୍ର ହୁଅଇ
ଆଡ଼ ଦୀର୍ଘ କୋଶଯାଏ ନ ଆସନ୍ତି କେହି ।
ସେହି ବିଦ୍ୟାଧର ରହିଅଛି ଏହି ଭାବେ
ତାହା ଭିନ୍ନକେ ରଖିବ ଏ ଅସ୍ତ୍ରକୁ ଲବେ ।
ଉତ୍ତର ବୋଇଲା ସ୍ୱାମୀ ଏ ବୃକ୍ଷ ମହିମା
ଏହି ଅସ୍ତ୍ର ବହିଛନ୍ତି କେଉଁ ମହାତମା ।
ସୁନ୍ଦର କରିଛି ଏହା ତ୍ରୋଟ ମଧ୍ୟସ୍ଥାନ
ମହୀ ଭରା ନ ସହନ୍ତି ସହିଲା କେସନ ।
ଶୁଣ ହୋ ଉତ୍ତର ବୋଲି ବୋଲେଫାଲଗୁନି
ଏ ବୃକ୍ଷ ହରିହରଙ୍କ ଜାଣ ଭୃତ୍ୟ ବେନି ।
ଏକଅଙ୍ଗ ଅଟେ କଳା ଏକଅଙ୍ଗ ଧଳା
ପ୍ରତ୍ୟକ୍ଷେ ଦେଖୁଛ ଏହା ବିରାଟର ବଳା ।

ଯେବଣ ଅସ୍ତ୍ରରେ ଭାର ନ ସହଇ ମେରୁ
ହରିହର ଦେବତାଟି ବହିଲେ ଅଙ୍ଗରୁ ।
ଅର୍ଜୁନ ନପୁଂସକତ୍ୱ ଯେବେ ପାରଗଲା
ଦେବଦତ୍ତ ଶଙ୍ଖ ଆଣି ମାତଳି ଯେ ଦେଲା ।
କିରୀଟ ମୁକୁଟ ବୀରବେଶ ଅଳଙ୍କାର
ମାତଳି ଆଣି ଭୂଷଣ କରିଲା ଶରୀର ।
ଉତ୍ତର ପଚାରେ ଦେବଦତ୍ତ ଶଙ୍ଖ ଚାହିଁ
ଏ ଶଙ୍ଖ ଗୋଟିକୁ ସ୍ୱାମୀ ପାଇଲୁ ତୁ କାହିଁ ।
ଅର୍ଜୁନ ବୋଇଲେ ବାବୁ ଶୁଣ ତୁ ଉତ୍ତର
ଅଳକାପୁରେ ଠାକୁର ଅଟନ୍ତି କୁବେର ।
ଚନ୍ଦ୍ରଭାଗା ତୀର୍ଥରେ ଯେ ସେହୁ ସ୍ନାନକରି
ନିତ୍ୟପ୍ରତି ତହିଁରେ ଯେ ନିତ୍ୟକର୍ମ ସାରି ।
ଅମ୍ବାସୁର ବୋଲି ବାସବର ପଣନାତି
କଦମ୍ବାସୁର ବୋଲିଣ ତାହାର ସନ୍ତତି ।
ପୂର୍ବଦିଗ ଅମ୍ବୁବନେ ତାହାର ଯେ ବାସ
ଅର୍କତୀର୍ଥକୁ ସେହୁ ଯେ ବଳାଏ ମାନସ ।
ତାହାର ଭାରିଯା ଅଟେ ସରହୀ ସୁନ୍ଦରୀ
ସେ ନିତ୍ୟ ଚନ୍ଦ୍ରଭାଗାରେ ସ୍ନାନ ଯାଇକରି ।
କୁବେର ଭାରିଯା ନାମ ଅଟେ ହାରାବତୀ
ଅମୂଲ୍ୟ ରତ୍ନ ଭୂଷଣ ସେହୁ ହୋଇଛନ୍ତି ।
ଅମ୍ବାସୁର ଭାରିଯା ଯେ ସୁରହା ସୁନ୍ଦରୀ
କୁବେର ଭାର୍ଯ୍ୟାକୁ ପୁଛେ କରଯୋଡ଼ି କରି
ଏ ଅପୂର୍ବ ଅଳଙ୍କାର ତୁମ୍ଭ ସଙ୍ଗେ ଅଛି
ତହୁଁ ଏକମାଳ ମୁହିଁ ତୁମ୍ଭଙ୍କୁ ମାଗୁଛି ।
ଶୁଣି ହାରାବତୀ ଉପହାସ କରି ତାକୁ
ବୋଲେ ଦେବ ଅଳଙ୍କାର ମାଗୁଛୁ ଆମ୍ଭଙ୍କୁ ।
ଅସୁରୀ ପାମରୀ ଆଲୋ ହୀନ ନୀଚଜାତି
ଅଳଙ୍କାର ମାଗୁ ଲୋ ତୁ ଚାଣ୍ଡାଳ ମୋ କତି ।
ବହୁ ଝିଙ୍ଗାସି କହିଲେ ତାକୁ ନାନାବାଗେ
କାନ୍ଦି ଯାଇ କହିଲା ସେ ଅମ୍ବାସୁର ଆଗେ ।
କୁବେର ଜାୟାକୁ ମୁହିଁ ମାଗୁଁ ଅଳଙ୍କାର
ସେ ବୋଇଲା ଅଳଙ୍କାର ମାଗୁଛୁ ତୁ ଛାର ।
ଅମ୍ବାସୁର ଚଳିଗଲା ଭାର୍ଯ୍ୟା କ୍ରୋଧକରି
ବେନି ହାତେ ବେନି ଲୁହାବାଡ଼ି ଧରିକରି ।
ଅଧର କାମୁଡ଼ିଗଲା କୁବେରଙ୍କ ଆଗେ
କୋମଳ କରି କହିଲା କଥା ଅନୁରାଗେ ।
ହେ କୁବେର ଶୁଣ ମୋର କହିବାର ଗୀର
ବହୁ ଅଂଶେ ଜାତ ହେଲା ଅମ୍ବୁଦୈତ୍ୟବୀର ।
ଅର୍କ ଦୈତ୍ୟ ଅଟଇ ଯେ ତାହାର ସନ୍ତାନ
ତୁମ୍ଭଙ୍କୁ କି ଅବିଦିତ ଅଛଇ ଏମାନ ।

ଅର୍କଦୈତ୍ୟକୁ ଯେ ମାଡ଼ି ବସିଲେ ବିରଞ୍ଚି
ଏ ଘେନି କୋଣାର୍କ ନାମ ଜାଣ ହୋଇଅଛି ।
ସେ ଅର୍କଦୈତ୍ୟନନ୍ଦନ ମୟ ଯେ ଦାନବ
ହନୁ ମାଡ଼ି ବସିଲେ ସେ ସେବିଣ ରାଘବ ।
ତାହାର ନନ୍ଦନ ପୁଣ କଦମ୍ବା ଅସୁର
କଦମ୍ବାସୁର ନନ୍ଦନ ମୁହିଁ ଅମ୍ବାସୁର ।
ଭାସ୍କର ତୀର୍ଥରେ ଅଟେ ମୁହିଁ ରକ୍ଷାକାରୀ
ଶାସକ ନାମରେ ମୁହିଁ ତହିଁ ଦଣ୍ଡଧାରୀ ।
ମୋହର ଭାର୍ଯ୍ୟା ମାଗିଲା ଏକ ରତ୍ନମାଳି
ତୁମ୍ଭର ଭାରିଯା ପୁଣି ତାକୁ ଦେଲା ଗାଳି ।
ଦୟା ନ କରିଲେ ତାଙ୍କୁ କିମ୍ପାଇଁ ଯୁକତେ
ଭାରିଯାର ଝିଙ୍ଗାସ ମୁଁ ସହିବି କେମନ୍ତେ ।
କୁବେରବୋଲେ ମୁଁ ଯେବେ ଭଣ୍ଡାରାଧିକାରୀ
ନୁହଇ ମୋହର ତାହା ମୁହିଁ ରକ୍ଷାକାରୀ ।
କୁବେର ବାକ୍ୟେ କୋପିଲା ଦୈତ୍ୟମହାବୀର
ଦେଖି ଆଗଭର ହେଲେ ସେ ନଳ କୁବେର ।
ତାହା ଦେଖି କୋପକରି ଅସୁର ପ୍ରବଳ
ଯାଇ ନଳ କୁବେରଙ୍କ ଧଇଁଲା ଯେ ବାଳ ।
କୁବେରକୁ ବାନ୍ଧିଲା ସେ କାଳପାଶ ଘେନି
ଦେଖି ତରସ୍ତ ହୁଅନ୍ତି ସକଳ କାମିନୀ ।
ସହସ୍ରେ କନ୍ୟାଙ୍କ ସଙ୍ଗେ ଥିଲା ଅଳଙ୍କାର
ସବୁ ତାହା ଛଡ଼ାଇଣ ନେଲା ଅମ୍ବାସୁର ।
ଆପଣା ଭାରିଯା ଅଙ୍ଗେ ଭୂଷଣ ଯେ କଲା
ଯେବଣ ଭାର୍ଯ୍ୟାକୁ ସେହୁ ସଙ୍ଗେ ଆଣିଥିଲା ।
ନଳକୁବେରକୁ ବେଗେ ବାନ୍ଧିଲା ଅସୁର
ଧାତିକାରେ ପଶିଲା ସେ ଜଳନ୍ଧରପୁର ।
କନ୍ୟା କାନ୍ଦି ପଳାଇଲେ ଜୀବନ ବିକଳେ
କୁବେର ହିଁ ବେଗେଗଲେ ଦେବତାଙ୍କ ଆଳେ ।
ବ୍ରହ୍ମାରୁଦ୍ର ଇନ୍ଦ୍ର ସର୍ବସୁର ଆଦିକରି
ମେରୁ ପୃଷ୍ଠେ ବସିଛନ୍ତି ଯାଇ ସଭାକରି ।
ସେହି ସ୍ଥାନରେ କୁବେର ପ୍ରବେଶ ହୋଇଲେ
ସକଳ ବିଷୟ ତାଙ୍କୁ ଗୁହାରି କରିଲେ ।
ପୁତ୍ର ମୋର ଯାଇଥିଲା ସ୍ନାହାନ ନିମନ୍ତେ
ଅମ୍ବାସୁର ଧରି ନେଲା ଚନ୍ଦ୍ରଭାଗା ତୀର୍ଥେ ।
କ୍ରୋଧରେ କୁବେର ଯହୁଁ କହିଲେ ଏବାଣୀ
ଶୁଣିଣ ପ୍ରତିଉତ୍ତର ଦେଲେ କୁଶପାଣି ।
ଅନ୍ୟବଳେ ବଧ ସେହୁ ନୁହେଁ ଯାତୁଧାନ
ପାଣ୍ଡବ କୁଳରେ ଜାତ ମାରିବେ ଅର୍ଜୁନ ।
ମାତଳିକି ହକାରିଣ ଦେବ ମଘବାନ
ବ୍ୟାଧ ପର୍ବତରୁ ମୋତେ ନେଲେକ ବହନ ।
ଦେବସଭାତଳେ ମୁଁ ଯେ ହୋଇଲି ପ୍ରଣମି
କେଉଁ ଆଜ୍ଞା ଦେବ ମୋତେ ପିତାମହ ସ୍ୱାମୀ ।
ବୋଇଲେ ତୁ ଧନଞ୍ଜୟ ଯାଅ ଅର୍କତୀର୍ଥେ
ନଳ କୁବେରଙ୍କୁ ଧରି ନେଲା ଅମ୍ବାଦୈତ୍ୟେ ।
ତାହାକୁ ବେଗରେ ବଧକର ଫାଲଗୁନି
କୁବେର ସୁତଙ୍କୁ ପୁଣ ସଙ୍ଗେ ଆସ ଘେନି ।
ନାରଦ ବୋଇଲେ ଆଜି ଜଳନ୍ଧର ପୁର
କେବଣ ବାଗେ ଜଳରୁ ହୋଇବ ବାହାର ।
ପରମ ସାନନ୍ଦେ ତହୁଁ ଦେବତା ବିଧାତ
ଦେବଦତ୍ତ ଶଙ୍ଖ ଆଣି ଦେଲେ ମୋର ହସ୍ତ ।
ତୈଲୋକ୍ୟ କମ୍ପିବ ଏହି କମ୍ପସ୍ୱନ ପୁଣି
ଅମ୍ବାସୁର ବାହାର ଯେ ହେବ ଶିରଝୁଣି ।
ବ୍ରହ୍ମା ପୁଣି ଆଣିଦେଲେ ମୋତେ ଅସ୍ତ୍ରଟିଏ
ଏହା ଘେନି ଅମ୍ବାସୁର ମାର ଧନଞ୍ଜୟେ ।
ଏ ଶଙ୍ଖ ଦେଖି ଉତ୍ତର ତୁ ଯେ ପୁଚ୍ଛାକଲୁ
ପଚାରିଲୁ ଏହି ଶଙ୍ଖ କାହୁଁ ତୁ ପାଇଲୁ ।
ଦେବତାଏ ଦେଲେ ଦୈତ୍ୟବଧର ନିମନ୍ତେ
ତେଣୁ ଦେବଦତ୍ତ ଶଙ୍ଖ ବହେ ମୁହିଁ ହସ୍ତେ ।
ଶୁଣି ଉତ୍ତର ପାର୍ଥଙ୍କୁ ବୋଇଲା ପ୍ରଣମି
ଅମ୍ବାସୁର ବଧ କଥା କହ ମୋତେ ସ୍ୱାମୀ ।
କେଉଁରୂପେ ଅମ୍ବାସୁର ପ୍ରାଣ କଲା ହତ
କିପରି ନଳ କୁବେର କରିଲ ମୁକତ ।
ପାର୍ଥ ବୋଲେ ଶୁଣ ଦେବଦତ୍ତର ମହିମା
ଏରୂପେ ପ୍ରସନ୍ନ ହେଲେ ପିତାମହ ବ୍ରହ୍ମା ।
ଏ ଶଙ୍ଖ ଲଳିତ କରି ଯେବେ କରେ ଧ୍ୱନି
ଶୁଣିଣ ବଶ ହୁଅନ୍ତି ଅପ୍ରୋଧ କାମିନୀ ।
ଏ ଶଙ୍ଖର ମଧଭାଗେ କରେ ଯେବେ ଧ୍ୱନି
ସପ୍ତ ବ୍ରହ୍ମାଣ୍ଡର କଥା ଜାଣେ ପଦ୍ମଯୋନି ।
ହୃଦଗତେ ବାଦ୍ୟ ଯେବେ କରିବାକ ବାଣୀ
ଅସାଧ ସାଧ ହୋଇବ ସେ ଶବଦ ଶୁଣି ।
ଆକର୍ଷିଣ ବାଦ୍ୟ ଯେବେ କରିବାକ ସ୍ୱରେ
କ୍ଷତ୍ରିୟମାନେ ଶସ୍ତ୍ର ଧରି ନ ପାରନ୍ତି କରେ ।
ଅସାଧ ସାଧ ହୋଇବ ସେ ଶବଦ ଶୁଣି ।
ଏ ଶଙ୍ଖ ମୁଁ ଘେନିଗଲେ ସେ ଭାସ୍କର ତୀର୍ଥେ
ଦୈତ୍ୟ ନ ଦେଖିଲି ଜଳେ ପଶିଛି ଗୁପତେ ।
ହେ ଉତ୍ତର ଶଙ୍ଖଧ୍ୱନି କଲି ମୁହିଁ ଟାଣି
ଜଳ ଭୁବନ କମ୍ପିଲା ଏହି ଶବ୍ଦ ଶୁଣି ।

ଅସୁର ବାହାରେ କରେ ଘେନି ଜଳରାଶି
ଡାହାଣ କରେ ଲଉଡ଼ି ଧରିଛି ଆକର୍ଷି ।
ବାବୁ ବହୁତ ପ୍ରତିଜ୍ଞା କଲା ଅମ୍ବାସୁର
ଲାଗିଲାକ ରଣଗୋଳ ତାହାର ମୋହର ।
ଅଶ୍ୱଗଜ ଆଦିକରି ନାହିଁ ତାର ଥାଟ
ଲୁହାର ଦଉଡ଼ି ଧରି ବାହାରେ ଦର୍ପିଷ୍ଟ ।
ପିଟିବା ଫଳା ଆଣିଲା ସଙ୍ଗେ ନାହିଁ ସେନା
ଅସ୍ତ୍ର ବିନ୍ଧନ୍ତେ ଅଙ୍ଗରେ ପଡ଼ି ହେଲା ଚୂନା ।
ଲକ୍ଷେ କୋଟିଏ ଶର ମୁଁ ତାହାକୁ ଯେ ବିନ୍ଧି
ଏକ ଏକ ନାରାଚରେ ଗିରି ଯିବ ଭେଦି ।
ହେ ଉତ୍ତର ଅବ୍ୟର୍ଥ ଯେ ଥାଟେ ମୋର ଶସ୍ତ୍ର
ସେହି ଅସ୍ତ୍ର ଚୂରହେଲା ପଡ଼ି ତାର ଗାତ୍ର ।
ସେହି ଶସ୍ତ୍ରେ ତାହାକୁ ତ ନ ପାରିଲି ଜିଣି
ସର୍ବ ଅସ୍ତ୍ର ଚୂର୍ଣ୍ଣ ହେଲା ଟେକା ପ୍ରାୟ ଜିଣି ।
ସର୍ବ ଅସ୍ତ୍ର ଯହୁଁ ମୋର ହୋଇଲା ବିଘାତ
କାଳଚକ୍ର ପ୍ରହାରିଲି କୋପେ ତାର ଗାତ୍ର ।
ସେ ନାରାଚ ଦୂରାଚାର ଶରୀରରେ ପଡ଼ି
ଚକ୍ରଦାଢ଼ ବକ୍ର ହୋଇ ଗଲାକ ଉପୁଡ଼ି ।
ପର୍ବତ ଅସ୍ତ୍ର ମାରିଲେ ତାହାର ସାଷ୍ଟାଙ୍ଗେ
ଅନିବାର୍ଯ୍ୟ ଅସୀପତ୍ର ପଡ଼ିଲା ତା ଅଙ୍ଗେ ।
କକଡ଼ାମାସରେ ଯେହ୍ନେ ଦ୍ରୋଣମେଘ ବୃଷ୍ଟି
ସେହିପରି ଦୈତ୍ୟ ଅଙ୍ଗେ ହୁଏ ଶରବୃଷ୍ଟି ।
ଅନ୍ତରୀକ୍ଷେ ବୁଲାଇଲା ଧରି ଲୁହାଡାଙ୍ଗେ
ପର୍ବତ ଚୂର୍ଣ୍ଣ ହୋଇଲ ପଡ଼ି ତାର ଅଙ୍ଗେ ।
ରାଗଭର ହୋଇଣ ମୁଁ ନ ପାରିଲି ସହି
ଆଗ୍ନେୟାସ୍ତ୍ର ପେଷିଲେ ଯେପୃଥ୍ୱୀ ପାରେଦହି ।
ଶୁଣ ହେ ଉତ୍ତର ତାର ମହିମା ଦୁର୍ଲ୍ଲଭ
ସେ ଅନଳବାଣ ଯାଇଁ ପଡ଼ିଲେ ତାର ଗର୍ଭ ।
ନୀଳଚକ୍ର ବାଣ ନୀଳାମ୍ବର ବିଷ୍ଣୁ ଦେଲା
ଯେବଣ ଶରେ କାମ୍ୟକ ଦହନ ହୋଇଲା ।
ତ୍ରୈଲୋକ୍ୟ କମ୍ପିତହେବ ସେଚକ୍ରପେଷନ୍ତେ
ବଳରାମ ଜାଣିଲେ ତା ବାୟବ ପର୍ବତେ ।
ଅମ୍ବା ଅସୁର ବଇରି କାମପାଳଙ୍କର
ଅର୍କତୀର୍ଥେ ଯୁଦ୍ଧ ଦେଖି କମ୍ପିଲା ଶରୀର ।
ବାୟବ ପର୍ବତେ ରାମ ହେଲେ କୋପମୂର୍ତ୍ତି
ଏଗାର ସହସ୍ର ଯୁଣ ତାଙ୍କ ପାଦଗତି ।
ଶ୍ରୀବଳରାମ ଯେ ମୋତେ ବୋଇଲେ ବଚନ
ଏହାକୁ ମାରିବି ମୁହିଁ ରହ ହେ ଅର୍ଜ୍ଜୁନ ।
ରାମଙ୍କ ବଚନେ ମୁହିଁ ଛାଡ଼ିଲି ସଂଗ୍ରାମ
ଅମ୍ବାସୁର ସଙ୍ଗେ ଯୁଦ୍ଧ କଲେ ବଳରାମ ।
କୁବେରଙ୍କ ସୁତ ପତ୍ନୀ ବନ୍ଧନୁ ଫିଟାଇ
ଅଳକାପୁରେ ତାହାଙ୍କୁ ଦେଲେ ପୁଣ ନେଇ
ବଳରାମ ପ୍ରହାରିଲେ କୋପରେ ମୁଷଳ
ସହସ୍ରେ ବାର ପ୍ରହାର କଲେ ବକ୍ଷସ୍ଥଳ ।
ତଥାପି ନାଶ ନୋହିଲା ସେହି ଅମ୍ବାସୁର
ସମରେ ବିମନା ତହୁଁ ହେଲେ ନୀଳାମ୍ବର ।
ପାଦଧରି ବଳରାମ କୋପେ ଦେଲେ ଫିଙ୍ଗି
ଅମ୍ବୁବନେ ପଡ଼ିଲା ସେ ସ୍ଥାନେ ପରିତ୍ୟାଗୀ
ଜମ୍ବୁଦ୍ୱୀପ ଭ୍ରତଖଣ୍ଡ ଈଶାନାଗ୍ନି କୋଣେ
ପୂର୍ବେ ସିନ୍ଧୁତଟେ ଅମ୍ବୁବନ ଥିଲା ଯେଣେ
ଉନ୍ମଦଗିରିକି ନେଇ ପିଟିଲେ ଅସ୍କନ୍ଧେ
ପର୍ବତ ଚୂର ହୋଇଲା ଅମ୍ବାସୁର ହୃଦେ ।
ଅସୁର ବଧ ନୋହିଲା ଯହୁଁ କେଉଁବାଗେ
ମାଡ଼ି ବସିଲେ ଶ୍ରୀରାମ ତାର ହୃଦେ ରାଗେ ।
କଟୀମେଖଳିରେ ରୁଦ୍ର ନାରାୟଣ ପ୍ରାୟେ
ତିନିଦେବତା ଯେ ମାଡ଼ିମାଡ଼ିବସିଲେତା କାୟେ ।
ଓଲଟାଇ ଅମ୍ବାସୁର ବସିଲା ଯେ ମାଡ଼ି
ତିନି ଦେବତାଙ୍କୁ ସେହୁଦେଲା କୋଡ଼ିକାଡ଼ି
ବହୁତ ଦଣ୍ଡ ବିହିଲା ସେ ଦୁଷ୍ଟ ଅସୁର
ତାହା ଦେଖି ଦେବତାଏ କହେଲେ ଥରହର
ଏ ଶଙ୍ଖ ଗଭୀରେ ମୁହିଁ କରନ୍ତେ ବାଦନ
ତିନିପୁର କମ୍ପମାନ ହେଲା ଘନ ଘନ ।
ଏ ଶଙ୍ଖ ଶବଦ ଶୁଣି ସେ ତିନି ଠାକୁର
ଶରୀରେ ବଳ ତାଙ୍କର ହୋଇଲା ସଞ୍ଚାର ।
ପୁଣି ଅସୁରକୁ ବଳେ ଓଲଟାଇ ଦେଇ
ମାଡ଼ିବସିଲେ ବେଗରେ ବକ୍ଷସ୍ଥଳେ ଯାଇ ।
ଉଦର ଚିରିଣ ଅଣ୍ଡ କରିଲେ ବାହାର
ପରାଣ ହୁଡ଼ିଣ ତହୁଁ ସେ ଦୁଷ୍ଟ ଅସୁର ।
ହେ ଉତ୍ତର ଯାହା ସବୁ ଥିଲି ତୁ ପଚାରି
ତାହା ସବୁ କହିଲି ମୁଁ ଏକ ଏକ କରି ।
ସେହିକାଳୁ ଏହି ଶଙ୍ଖ ହସ୍ତେ ଅଛି ମୋର
ମନରୁ ସଂଶୟ ଏବେ ହୁଡ଼ ହେ ଉତ୍ତର ।
ଅର୍ଜ୍ଜୁନଙ୍କ ମୁଖୁ ଏହା ଶୁଣିଣ ଉତ୍ତର
ବୋଇଲା ହେ ଦେବ ମୁହିଁ ଶରଣ ତୁମ୍ଭର ।
ତେଣୁକରି ତୁମ୍ଭେ ଅଟ ଦ୍ୱିତୀ ନାରାୟଣ
ତେଣୁ ମୋତେ କର ତୁମ୍ଭେ ଆଶିଷ ପ୍ରଦାନ ।

ନମସ୍ତେ ନମସ୍ତେ ମାଗୋ ଝଙ୍କଡ଼ବାସିନୀ
ନମସ୍ତେ ନମସ୍ତେ ମାଗୋ ।ନମୋକାତ୍ୟାୟିନୀ ।
ଯେଉଁକାଳେ ଆସିଥିଲା ସେ କଳାପାହାଡ଼
ସାତଦିନ ରହିଲା ଗୋ ଜଳେ ଦେଇ ବୁଡ଼
ବହୁତ ଦେବ ଦେବୀଙ୍କୁ କଷ୍ଟକଲା ସେହୁ
ବାହୁଡ଼ିଗଲା ତୁମ୍ଭଙ୍କୁ ନ ପାଇଲା ଯହୁଁ ।
ତୁ ଯାରେ ପ୍ରସନ୍ନହେଉ ସେମାନବେଲେଖା
ଶାରଳାଦାସକୁ ମାଗୋ ଥରେ ଦିଅ ଦେଖା ।

—●—

## ଅର୍ଜ୍ଜୁନର ନନ୍ଦିଘୋଷ ରଥ ପ୍ରାପ୍ତ ଏବଂ ମହିଷାସୁର ବଧ ଓ ଅକ୍ଷୟ ତୃଣ ଉତ୍ପତ୍ତି ବିବରଣ

ଏଥୁଅନନ୍ତରେ ଆହେ ମନୁ ନୃପରାଣ
ଯାହା ହେଲା ସେହି କଥା କହୁଅଛି ଶୁଣ
ଦେବଦତ୍ତ ଶଙ୍ଖ ଯହୁଁ ପାର୍ଥ ବଜାଇଲେ
ଶୁଭିଲା ଆକାଶୁ ଯେହ୍ନେ ନିର୍ଘାତ ପଡ଼ିଲେ ।
ପ୍ରଳୟକାଳେ ଗର୍ଜ୍ଜନ୍ତି ଯେହ୍ନେ ମେଘ ସର୍ବେ
ସେହି ପ୍ରକାରେ ଶବଦ ଶୁଭେ ଘୋରରବେ
କଉରବେ ତ୍ରାସ କଲେ ସେ ଶବଦ ଶୁଣି
ଅଦଭୁତ ଶବ୍ଦ ଯହୁଁ ଆକସ୍ମିକ ବାଣୀ ।
କି ଅବା ମନ୍ଦର ଗିରି ତଳେ ଗଲା ଖସି
ଯୁଗ ଅନ୍ତକାଳ କିବା ହୋଇଲାକ ଆସି ।
ଶମୀବୃକ୍ଷକୁ ଦ୍ୱାରକା ଅଶୀସସ୍ତୟୂଣ
ସେ ସ୍ଥାନେ ଥାଇ ଶୁଣିଲେ ପ୍ରଭୁ ନାରାୟଣ ।
ତହିଁକି ଶୁଭଇ କମ୍ବୁ ଶବଦ ଗହନ
ପ୍ରଭୁ ଜାଣିଲେ ବିରାଟେ ଉଦିତ ଅର୍ଜ୍ଜୁନ ।
ଗୋବିନ୍ଦ ବହୁ ଆନନ୍ଦ ହେଲେ ହୃଦଗତ
ଦାରୁକେ ବୋଇଲେ ସାଜ ନନ୍ଦିଘୋଷ ରଥ ।
ମଣ୍ଡଣି କରେ ଦାରୁକ ବହୁରତ୍ନ ଖଞ୍ଜି
ନାନାରତ୍ନ ଝଟକନ୍ତି ତହିଁ ପୁଞ୍ଜି ପୁଞ୍ଜି ।
ଉଡ଼ନ୍ତି ପତାକାମାନ ମୁକ୍ତା ଖଞ୍ଜା ମଧ
ଝଟକନ୍ତି ହୀରା ନୀଳା ତାହାର ସନ୍ନିଧ ।
ଫରହର ଆଲମ୍ବ ଯେ ଲମ୍ବେ ଚଉକତି
ମାଣିକ୍ୟ ଝରାର ତୁଳେ ଅଛି କ୍ଷୁଦ୍ର ମୋତି ।
ରଥ ସୁରଞ୍ଜିତ ଚାରି ଚାରି ଯେ ପାବଚ୍ଛେ
ଶତ ଶତ ମାଣିକ୍ୟ ଯେ ଅଛି ସମକଚ୍ଛେ ।

ଦେବତାଏ ପ୍ରଶଂସନ୍ତି ଯେଉଁ ରଥ ଦେଖି
ନିରାକାର ଆସନ୍ତି କି ଗଗନ ଉପେକ୍ଷି ।
ନାରାୟଣ ଚକ୍ର କୁନ୍ତ. ମୁଷଳ ଭୂଷଣ୍ଡି ।
ଗଦା ମୁଦ୍‌ଗର ଛେଲ ଆବର ତ୍ରିଦଣ୍ଡି ।
ବ୍ରହ୍ମଶକ୍ତି ବଜ୍ରଶକ୍ତି ତ୍ରିଶୂଳ ଶକତି
ଅମୋଘ ଶକତି ଅସିପତ୍ର ଚକ୍ର କାତି ।
ପର୍ବତ ବରୁଣ ଅସ୍ତ୍ର କୁଠାର କୋଦାଳ
ମେଘାଶର ଆବର ହିଁ ଅନିଳ ଅନଳ ।
ଜଳ ନାଗ କାଳପାଶି ପୁଣି ଯମପାଶୀ
ନୀଳ ହେମ କାମଚକ୍ର ପୁଣି ସ୍ୱାଧାରାଶି ।
କେ ମୋଦକୀ ରତ୍ନଗଦା ପୁଣି ଲୋହଗଦା
ଚକ୍ର ଆବର୍ତ୍ତକ ବାମ କେତେନାଦି ଗଦା ।
ଏହିପରି ବହୁଅସ୍ତ୍ର ଆଣି ଦେବ ହରି
ରଥରେ ଥୋଇଲେ ଆପେ ବାଛି ବାଛିକରି
ଆପଣେ ଶ୍ରୀଜଗନ୍ନାଥ ସେ ରଥକୁ ସାଜି
ବାଛିଣ ରଥେ ଯୋଚିଲେ ଚାରିଗୋଟି ବାଜୀ
ଶଙ୍ଖ ଗୋକ୍ଷୀର ପୁଣିହିଁ ଶ୍ୱେତ କାମପାଳ
ରଥରେ ଯୋଚିଲେ ନେଇ ଦେବକୀର ବାଳ
ଅସ୍ତ୍ର ଶସ୍ତ୍ର ନ ଭେଦଇ ତାହାଙ୍କର କାୟ
କାମରୂପୀ ଅଟନ୍ତି ସେ ଚାରିଗୋଟି ହୟ ।
ପୃଥ୍ୱୀର ଭାରା ଉଶ୍ୱାସ କରନ୍ତି ସେ ବଳେ
ରକ୍ଷା କରନ୍ତି ସେମାନେ ପ୍ରଳୟର କାଳେ ।
ରଜନୀ ଦିବସ ବୋଲି ନ ଜାଣନ୍ତି ହୟେ
ଆକଶମାର୍ଗେ କ୍ଷେପନ୍ତି ଶ୍ୟେନପକ୍ଷୀ ପ୍ରାୟେ
ଏକ ଦିବସରେ ଭ୍ରମି ଆସନ୍ତି ସେ ମହୀ
ଦିନଅର୍ଦ୍ଧ ହୁଏ ସପ୍ତ ବ୍ରହ୍ମାଣ୍ଡର ସାଇଁ ।
ସେ ଚାରିଅଶ୍ୱଙ୍କୁ ହରି ସେ ରଥରେ ଯୋଚି
ବୋଇଲେ ରଥକୁ ନିଅ ଯହିଁ ସବ୍ୟସାଚି ।
ନାରାୟଣଙ୍କ ବଚନେ ଚଳଇ ସାରଥି
ଅର୍ଜ୍ଜୁନଙ୍କୁ ଭେଟିଲେ ସେ ରଜନୀ ପାହାନ୍ତି ।
ରଥ ଦେଖିଣ ଅର୍ଜ୍ଜୁନ କଲେ ନମସ୍କାର
ଦେଖିଣ ଆଶ୍ଚର୍ଯ୍ୟ ହେଲେ ଉତ୍ତମ କୁମର ।
ଦେଖଦେଖ ଆରେ ବାବୁ ବିରାଟର ଶିଷ୍ୟ
ଏହି ରଥବର ନାମ ଅଟେ ନନ୍ଦିଘୋଷ ।
ରଥର ମହିମା ପୁଣି ଅଶ୍ୱଙ୍କ ମହିମା
ସଂକ୍ଷେପିତ ଉତ୍ତରକୁ କହିଲେ ମହାତ୍ମା ।
ସମସ୍ତ କଥା କହଇ ଉତ୍ତର ଆନନ୍ଦେ
ଦ୍ୱାରକା ଉତ୍ସବ ବାବୁ ତୋହର ପ୍ରସାଦେ ।

ଶ୍ରୀକୃଷ୍ଣ ଅର୍ଜ୍ଜୁନ ତୁମ୍ଭେ ଦୁହେଁ ନୁହ ଭିନ୍ନ
ଭାରା ନିବାରଣ କର ହୋଇ ନରଜନ୍ମ ।
ସତ୍ୟଯୁଗେ ଅବତାର କୃଷ୍ଣ ବାସୁଦେବ
ଅର୍ଜ୍ଜୁନ ଅଟୁ ଅଦନ୍ତ ନାମେ ସଦାଶିବ ।
ତ୍ରେତାଯୁଗେ ଜନ୍ମହେଲେ ରାମଚନ୍ଦ୍ର ରାୟ
ତୁହି ହୋଇ ଲକ୍ଷ୍ମଣ ସୁମିତ୍ରା ତନୟ ।
ଏବେ ନରନାରାୟଣ ଅଟ ତୁମ୍ଭେ ବେନି
ଜନ୍ମେ ଜନ୍ମେ ଭାରା ନାଶ ତୁମ୍ଭେ ଏ ମେଦିନୀ ।
ଦାରୁକ ରଥୁ ଓହ୍ଲାଇ ବୋଲନ୍ତି ବଚନ
ପ୍ରଭୁଙ୍କ ଆଜ୍ଞାରୁ ରଥ ଆଣିଲେ ଅର୍ଜ୍ଜୁନ ।
କୃଷ୍ଣଙ୍କୁ ସୁମରି ରଥ ଆରୋହଣ କର
କର ଯାଇଁ କୁରୁବୀର ସହିତ ସମର ।
ବିନୟ ମଣି ମୁକୁଟ ଦାରୁକ ମେଖଳା
ଅର୍ଜ୍ଜୁନଙ୍କ ହୃଦେ ଦେଇ ଦେଲେ ରତ୍ନମାଳୀ ।
ନାରାୟଣଙ୍କ ହୃଦର ସର୍ବ ଅଳଙ୍କାର
ଦାରୁକ ଭୂଷଣ କଲେ ପାର୍ଥ ହୃଦୟର ।
ଯେଉଁ ପ୍ରକାରେ ବାସବ ଅଭିଷେକ କାଳେ
ଦିଶନ୍ତି ସେ ଶୋଭାମାନ ସ୍ୱର୍ଗ ପୁର ଆଳେ ।
ଦାରୁକକୁ ଅର୍ଜ୍ଜୁନ ଏ ବଚନ ଭାଷି
ବୋଇଲେ ଉତ୍ତର ରଥ ଘେନିଥାଅ ବସି ।
ଶମୀବୃକ୍ଷର ମୂଳରେ ଦାରୁକ ସାରଥି ।
ରଥ ଘେନିଣ ରହିଲେ ହୋଇ ଶାନ୍ତମୂର୍ତ୍ତି ।
ନାନାଦି ଚିତ୍ର ବିଚିତ୍ର ଦେଖି ନନ୍ଦିଘୋଷ
ପରମ ସାନନ୍ଦ ହେଲେ ବିରାଟର ଶିଷ୍ୟ ।
ଉତ୍ତର ପାର୍ଥକୁ ପାଦେ କରିଲା ପ୍ରଣତି
ବୋଇଲା ତୋର ପ୍ରସାଦେ ପାଇଲି ସୁଗତି ।
ଶ୍ରୀଭୁଜରେ ଧନୁଶର ଧଇଲେ କିରୀଟି
ନନ୍ଦିଘୋଷ ରଥେ ଯାଇଁ ତୁରିତରେ ଉଠି ।
ବାମ ଦକ୍ଷିଣେ ଭିଡ଼ଣିଛନ୍ତି ତୂଣ ବେନି
ଆଲୋକ ରତ୍ନ ମଣ୍ଡିତ ବଣ ଚାରିଖାନି ।
ଦେଖି ଆଶ୍ଚର୍ଯ୍ୟ ହୋଇଣ ବିରାଟ କୁମର
ପଚାରଇ ହେ ଅର୍ଜ୍ଜୁନ ଶୁଣ ମୋର ଗୀର ।
ଆପଣେ କହିଲୁ କଉରବ ଅସଂକ୍ଷେପ
ବେନି ତୂଣ ଅଛି ତୋର ନାରାଚ ଅଳପ ।
ଅର୍ଜ୍ଜୁନ ବୋଇଲା ତୁହୋ ନ ଜାଣୁ ବିରାଟୀ
ଅକ୍ଷୟ ନାମ ବହଇ ଏ ତୂଣ ଦୁଇଟି ।
ଶୁଣରେ ଉତ୍ତର ଏବେ ମହିଷ ଦୁଇତ
ବିଷ୍ଣୁଗର୍ଭୁ ଜାତ ପୂର୍ବେ ଏଥିର ଚରିତ ।
ବ୍ରହ୍ମା ବରେ ସେ ମହିଷା ହେଲା ମହାବଳୀ
ଅନନ୍ତ କୋଟି ବ୍ରହ୍ମାଣ୍ଡ ମାଥେ ମହୀସ୍ଥଳୀ ।

ଚଣ୍ଡ ମୁଣ୍ଡ ଶୁମ୍ଭ ନିଶୁମ୍ଭ ଯେ ରକ୍ତ ବୀର୍ଯ୍ୟ
ବୀରଘଣ୍ଟ କାନ୍ତିମାଳା ଚାମଣ୍ଡା ଦନୁଜ ।
ଅନ୍ଧକ ବିରୂପାକ୍ଷ ଯେ ବାତୁଳ ଅସୁର
ମେଦିନୀ ନ ସହଇ ସେ ଦାନବଙ୍କ ଭାର ।
ସମସ୍ତ ଦେବତାମାନେ ହୋଇଲେ ବିକଳ
ମହାପ୍ରଭୁ କୋପେ ଜାତହେଲା କାଳାନଳ ।
ସେ ଅନଳକୁ ଚାହିଁଣ ଦେବ କଲେ ସ୍ତୁତି
ଅଗ୍ନିରୁ ଗୋଟିଏ ଦେବୀ ହେଲେକ ଉତ୍ପତ୍ତି ।
ମହାବଇଷ୍ଣବୀ ସେହି କୋଟି ସୂର୍ଯ୍ୟତେଜ
ଏକ ଶରୀରୁ ବାହାର ସହସ୍ରେକ ଭୁଜ ।
କେଶରୀବାହନ ଏକ ହେଲା ହେମବନ୍ତ
ତହିଁରେ ବିଜୟ କଲେ ଦେବୀ ଜଗନ୍ମାତ ।
ଦେବ ବୋଇଲେ ପୁରାଅ ଆମ୍ଭର ମନୀଷା ।
ତ୍ରୈଲୋକ୍ୟ ଉଦ୍ଧାର କର ମାରିଣ ମହିଷା ।
ବିଜୟ କରିଲେ ଦୁର୍ଗା ଅନ୍ତରୀକ୍ଷ ମାର୍ଗେ ।
ହିରଣ୍ୟଗିରି ପର୍ବତ ବିନ୍ଧ୍ୟଗିରି ଲାଗେ ।
ତହିଁ ଯାଇଁ ବିଜେକରି ଅନାଦି ଶକତି
ସହସ୍ର ଭୁଜକୁ ଅଙ୍ଗେ ଗୋପନ ରଖନ୍ତି ।
ମହିଷାସୁର ଅଛଇ ଯେବଣ ନଗରେ
ସିନ୍ଧୁ ପଶ୍ଚିମର ଜେନାବଳୀ ପାଟଣାରେ ।
ଅସୁର ଭୁବନେ ଦେବୀ ବୃଷ୍ଟିପାତ କଲେ
ପ୍ରଥମେ ଦେଖିଲେ ଚଣ୍ଡମୁଣ୍ଡ ନାଶଗଲେ ।
ଦ୍ୱିତୀୟରେ ନାଶଗକଲ ଶୁମ୍ଭ ସେ ନିଶୁମ୍ଭ
ଅସୁରକୁ ନିସୁଦନ ଦେବୀ କଲେ ସର୍ବ ।
ତାପରେ ବିଜୟ କଲା ଯାଇ ରକ୍ତବୀର୍ଯ୍ୟ
ବଡ଼ାଇ ଦୁରାପଦ ସେ ଅଟଇ ଦନୁଜ ।
ଅସୁରଙ୍କ ବଳେ ଯହୁଁ ହୋଇଲେ ଉତ୍ପତ୍ତି
ଶରୀରରୁ ଜାତ କଲେ ଅନେକ ମୂରତି ।
ରକ୍ତବୀର୍ଯ୍ୟ ବୋଲିକରି ଯେଉଁ ସେନାପତି
ଏକରୁ ଅନେକ ଦେହ କରିଲା ଉତ୍ପତ୍ତି ।
ପୃଥିବୀରେ ପଡ଼ିଲେ ସେ ରକତ ବୁନ୍ଦାଏ
ଶତେଜଣ ତା ସମାନ ହୋଇଜାତ ହୁଏ ।
ଯେକାଳେ ଶର ନିଅଣ୍ଟ ହୋଇଲା ବିନ୍ଧନ୍ତେ
ଦେହ ଲୋମ ଉପାଡ଼ି ବିନ୍ଧିଲେ ହୃଦଗତେ ।
ଶରୀରରୁ ଜାତ କଲେ ଦେବୀ ମହାମାୟେ
ବିନ୍ଧନ୍ତେ ନାରାଚ ଯହୁଁ ହୋଇଲା ଅକ୍ଷୟେ
ଦେଖିକରି ମହାଦେବୀ ଆନନ୍ଦିତ ହେଲେ
ଦିନରାତି ନାରାଚ ବିନ୍ଧନ୍ତେ ନ ସରିଲେ ।
ଦେଖିକରି ମହାଦେବୀ ନାରାୟଣ ମୂର୍ତ୍ତି
ଏକ ତୂଣୀରୁ ସମସ୍ତ ନାରାଚ ବିନ୍ଧନ୍ତି ।

ସପ୍ତରାତ୍ରି ସପ୍ତଦିନ ଦଇତ ନାଶିଲେ
ଏକତୂଣୀରୁ ନାରାଚ ବିନ୍ଧି ନ ପାରିଲେ ।
ଶୁଣିଲଟିକି ଉତ୍ତରେ ଏହି ବିବରଣ
ଯେଉଁପରି ଜାତହେଲା ଏ ଅକ୍ଷୟ ତୂଣ ।
ଜୟ ଜୟ ପାର୍ବତୀ ଗୋ ବିପଦ ନାଶିନୀ
ବାରେକ ଶ୍ରବଣ କର ମୋହର ଦୟିନୀ ।
ସଂସାର କଙ୍ଗାଳ ମୋତେ ହେଉଅଛି କଷ୍ଟ
ଶାରଳା ଦାସ ମାଗଇ ଘୁଞ୍ଚା ସେ ଅରିଷ୍ଟ ।

—●—

# ଅର୍ଜ୍ଜୁନର ପାଶୁପତ ଓ ଅକ୍ଷୟତୂଣ ପ୍ରାପ୍ତ ବିବରଣ

ଆବର ଉତ୍ତର ଶୁଣ ମୋର ଏକ କଥା
ମୁହିଁ ବନଗାମୀ ହେଲି ସତ୍ୟରେ ନିୟନ୍ତା ।
ଉମା ସହିତେ ବୁଲନ୍ତି ବନେ ତ୍ରିଲୋଚନ
କାଳିନ୍ଦୀ ନଦୀ ତୀରରେ କାଳେବର ବନ ।
ପାର୍ବତୀଙ୍କ ଜାନୁରେ ସେ ସୀମସ୍ଥାନ ଦେଇ
ଦିବସେ ନିଦ୍ରିତଛନ୍ତି ସେ ଭୋଳା ଗୋସାଇଁ ।
ଗଣ୍ଡାଟିଏ ପୋଷିଥିଲେ ନରେନ୍ଦ୍ର କୁମାରୀ
କାଳିନ୍ଦୀକୁ ଆସେ ସେହୁ ପିଇବାକୁ ବାରି ।
ସୁସଞ୍ଚ ଜୀବନ ଦେଖି ପେଷିଲି ମାର୍ଗଣ
ହର ପାର୍ବତୀଙ୍କ ଆଗେ ତେଜିଲା ସେ ପ୍ରାଣ ।
ଗଣ୍ଡାର ନିଧନ ଦେଖି ବର ମହାରାଗେ
ଦଉଡ଼ିଯାଇ ଦେଖିଲେ ମୋତେ ବନମାର୍ଗେ ।
କିଏରେ ମୋ ଗଣ୍ଡାକୁ ତୁ ବଧିଲୁ କିଅର୍ଥେ
ତିରଣ ପ୍ରାୟେ ତୋ ମାଂସ କାଟିବି ଦେଖନ୍ତେ ।
ରେରେକାର ଡାକେହର ପ୍ରତିଜ୍ଞାକୁ ବୋଲି
ତାଙ୍କ କର୍କଶ ବଚନ ସହି ନ ପାରିଲି ।
ହେ ଉତ୍ତର ମୁଁ ଧରିଛି ବନଚର ରୂପ
ରୁଦ୍ର ବାରି ନ ପାରିଲେ ମୋହର ସ୍ୱରୂପ ।
ଧମାଣା କାଠର ଧନୁ କଣ୍ଟାବାଂଶ ଗୁଣ
ଫିରକି ନାରାଚ କଣ୍ଢେ ଗୁଞ୍ଜ ଆଭରଣ ।
ଶିରରେ ଶୋହେ ମୟୁରକଣ୍ଠର ଯେ ଝାଲି
ଶବର ସ୍ୱରୂପେ ମୁହିଁ ବେଶ ଧରିଥିଲି ।
ଏହିପରି ଦେଖି ମୋର କିରାତ ରୂପଟି
ତେଣୁ ଚିହ୍ନି ନ ପାରିଲେମୋତେ ସେଧୂର୍ଜ୍ଜଟି
ଈଶ୍ୱର ହୋଇଅଛନ୍ତି ଅନ୍ୟ ଯୋଗୀରୂପ
ମୁହିଁ ବାରି ନ ପାରିଲି ତାହାଙ୍କ ସ୍ୱରୂପ ।
ଦୁହେଁ ଯାଇ ଏକତ୍ରରେ ଯହୁଁ ହେଲୁ ମେଳି
ଦୁହିଁଙ୍କର ହେଲା ତହୁଁ ଉଚ୍ଚବାଚେ କଳି ।
କୋପେ ଈଶ୍ୱର ପ୍ରହାର କଲେ ଏକମୁଥେ
ମୁଁ ତୁନି ହୋଇଲି ସତ ନ ବଳିଲା ମୋତେ
ମୁହିଁ ବୋଇଲି ତପସ୍ୱୀ ଛେଦନ୍ତି ତୋ ମୁଣ୍ଡ
ପାର୍ବତୀ ପ୍ରାୟ ଭାରିଯା ହୋଇଯିବ ରାଣ୍ଡ ।
ତାହାଙ୍କ କଷ୍ଟକୁ ମୁଁ ଯେ ନ ପାରିଲି ଦେଖି
ତେଣୁ ଉପରୋଧ କଲି କ୍ରୋଧକୁ ଉପେକ୍ଷି ।
ଶୁଣି ଈଶ୍ୱର ପ୍ରହାର କଲେ ପୁଣି ମୁଥେ
ମୁଁ ଧନୁହୁଳ ଭରିଲି ରୁଦ୍ର କଣ୍ଠାଗ୍ରତେ ।
ତହୁଁ ବୁଲାଇଲି ନେଇ ତାଙ୍କୁ ଅନ୍ତରୀକ୍ଷେ
ଶୋଣିତ ବମନ କଲେ ଦେବ ପଞ୍ଚମୁଖେ ।
କୌତୁହଳୀ ପୁରୁଷ ଯେ ସଦା ରସେଭୋଳ
ବର ମାଗ କିରାତରେ ବୋଲନ୍ତି ଚଞ୍ଚଳ ।
ଈଶ୍ୱରଙ୍କ ବଦନରୁ ଏସନକ ଶୁଣି
ଭୂମିରେ ଧୀରେ ଥୋଇଲି ଈଶ୍ୱରଙ୍କୁ ଆଣି
ଦେଖିଲି ପଞ୍ଚବଦନ ପନ୍ଦର ଲୋଚନ
ବର ମାଗ ବର ମାଗ ବୋଲନ୍ତି ଈଶାନ ।
ମହାଭୟ କରିଣ ମୁଁ ଧନୁ ପକାଇଣ
ପ୍ରଣିପାତ କରି ସ୍ତୁତିକରି ପଞ୍ଚାନନ ।
ପୁଣ ପୁଣ ରୁଦ୍ର ମୋତେ ପୁଚ୍ଛନ୍ତି ବଚନ
କିମ୍ପାଇଁ ବର ନ ମାଗି ହୋଇଛୁ ମଉନ ।
ପାର୍ବତୀ ବୋଇଲେ ତହୁଁ ଶୁଣ ବ୍ୟୋମକେଶ
ନଦୀଜଳେ ସ୍ନାନକରି ଶୁଚି ହୋଇ ଆସ ।
ଈଶ୍ୱର ଗଲେ ନଦୀକି ସ୍ନାହାନ ନିମନ୍ତେ
ପାର୍ବତୀଦେବୀ ସନ୍ଦେଶ କରିଦେଲେ ମୋତେ ।
ଗଉରୀ ବୋଇଲେ ତୁହି ଶୁଣରେ ଅର୍ଜ୍ଜୁନ
ସତ୍ୟଯୁଗେ ତ୍ରିପୁରାକୁ ବଧିଲେ ଈଶାନ ।
ଅନେକ ଅସ୍ତ୍ରରେ ବଧ ନୋହିଲେ ତ୍ରିପୁର
ଶ୍ରୀନାରାୟଣ ଦେବତା ନିଜେ ହେଲେଶର ।
ଯବନ ଦେବତା ପକ୍ଷମୂଳ ଅଗ୍ନି ହେଲେ
ସେ ଶର ତ୍ରିପୁର ବଧ ଈଶ୍ୱର କରିଲେ ।
ବଦୟନ୍ତୀ ପାର୍ବତୀ ସେ ଅସ୍ତ୍ର ମାଗ ବାବୁ
ତେବେ ତ୍ରୈଲୋକ୍ୟରେ ତୁହିଜିଣନ୍ତା ହୋଇବୁ ।
ହେ ଉତ୍ତର ସ୍ନାନକରି ବିଜେ ସଦାନନ୍ଦ
ମୋ ପାଶେ ପ୍ରବେଶହେଲେ ହୋଇଣଆନନ୍ଦ ।
ବୋଇଲେ ତୁ ଅରଜୁନ୍ ଏବେ ମାଗ ବର
ତହୁଁ ମୁଁ ମାଗିଲି ତାଙ୍କୁ ପାଶୁପତ ଶର ।
ଈଶ୍ୱର ବୋଇଲେ ଅଗ୍ନ ପବନ ଯେ ଶର
ମୁଁ ଜାଣେ ଆନକୁ ସେହୁ ଅଟେ ଅଗୋଚର ।

ପାର୍ବତୀ କହିବାରୁ ତା ଜାଣିଲେକ ପାର୍ଥ
ଏହା ଅସ୍ତ୍ରମାନ ମୁହିଁ ଧ୍ୟାଇବି ନିତାନ୍ତ ।
ଈଶ୍ୱର ବୋଇଲେ ଉମା ବାକ୍ୟ ନୁହେଁ ଆନ
ସ୍ୱରୂପ କରି ଜାଣିଲି ଏବେ ତୁମ୍ଭ ମନ ।
ଏହୁ ଯେବେ ପୁତ୍ରଟିଏ ହୋଇଲା ଆମ୍ଭର
ପ୍ରସନ୍ନେ କିମ୍ପାଇଁ ତୁମ୍ଭେ ଦେଉନାହଁ ବର ।
ସ୍ୱାମୀଙ୍କର ବଚନକୁ ନ ଲଘିଂଲେ ଶ୍ୟାମା
ସତ୍ୟମନେ ବର ମାଗ ବୋଇଲେ ଯେଉମା ।
ଈଶ୍ୱର ବୋଇଲେଶୌଚବନ୍ତ ନହୋଇଲେ
ବରେ ଧର୍ମ ହୋଇବ କି ଅଶଉଚ ଥିଲେ ।
ଉମା ଯହୁଁ ବିଜେକଲେ ନଦୀସ୍ନାନ କରି
ମୋର ଅଗ୍ରତେ କହିଲେ ଦେବ ତ୍ରିପୁରାରୀ ।
ଶୁଣରେ ଅର୍ଜ୍ଜୁନ ତୋତେ କହୁଅଛି ଏବେ
ମହିଷାସୁରକୁ ଦେବୀ ବଧ କଲେ ଯେବେ ।
ସେହି କାଳରେ ଅକ୍ଷର୍ୟ ତୂଣ ଉମା ପାଏ
ତାହାମାଗିଲେ ତ୍ରୈଲୋକ୍ୟ ହେତୁ ତୁଅଜୟେ
ଶୁଚିମନ୍ତ ହୋଇ ଆସି ବୋଇଲେ ପାର୍ବତୀ
ବରମାଗ ଆରେ ପାର୍ଥ ମୋହର ସମ୍ମତି ।
ଯହୁଁ ପ୍ରଣିପାତ ହୋଇ ଚରଣେ ଲୁଟିଲି
ଅକ୍ଷୟତୂଣକୁ ମୋତେ ଦିଅ ମା ବୋଇଲି ।
ପାର୍ବତୀ ବୋଇଲେ ନାଥ ମନ୍ଦକୃତ୍ୟ କଲ
ଆପଣାର ଅସ୍ତ୍ରଶସ୍ତ୍ର ଆନେ ଦିଆଇଲ ।
ଏସନକ ବଚନକୁ ପ୍ରକାଶିଣ ଉମା
ଅକ୍ଷୟତୂଣକୁ ଦେଲେ ବାମଦେବ ବାମା ।
ଦେଇ ମାହେଶ୍ୱରୀ ସ୍ୱାମୀଠାରେ କୋପକଲେ
ତୈଲୋକ୍ୟ ଜିଣନ୍ତା ପାର୍ଥହେଲାତୁମ୍ଭବୋଲେ ।
ଈଶ୍ୱର ବୋଇଲେ ମୁଁ ଗୋ ନବୋଇଲି ସତୀ
ଭୂତ ଭବିଷତ୍ୟ ଜ୍ଞାତା ଅଟେ ବ୍ୟାସନାତି ।
ପାର୍ବତୀ ବୋଇଲେ ଯାହା କୁହ ତ୍ରିପୁରାରି
ଶତେ ହରି ହୋଇଲେକି ଅର୍ଜ୍ଜୁନକୁ ସରି ।
ଶୁଣ ଉତ୍ତର କୁମର ବୋଲେ ଧନଞ୍ଜୟ
ସେହି ତପେ ପାଇଲି ମୁଁ ଏ ତୂଣୀ ଅକ୍ଷୟ ।
ଉତ୍ତର ବୋଇଲା ଦେବ ଜୀବ ତୋର ସାଧୁ
ମୋର ଜୀବନ ସାଧୁ ମୁଁ ଆଶ୍ରାକଲି ସିନ୍ଧୁ ।
ଉତ୍ତର ବୋଇଲେ ସ୍ୱାମୀ କହେ ମୁଁ ତୁମ୍ଭଙ୍କୁ
ମୁହିଁ କି କ୍ଷମ ହୋଇବି ତୁମ୍ଭ ଚରଣକୁ ।
ପାର୍ଥ ବୋଇଲେ ଆମ୍ଭର ଅଟୁ ଅନ୍ନଗୁରୁ
ପ୍ରାଣର ସଙ୍ଗାତ ତୁହି କିମ୍ପା ଭୟ କରୁ ।
ଆଜ୍ଞା ପ୍ରମାଣେ ଆନନ୍ଦ ହୋଇଲା ବିରାଟୀ
ସାରଥି ପଣରେ ଯାଇ ନନ୍ଦିଘୋଷେ ଉଠି ।
କର ଯୋଡ଼ିଣ ବୋଇଲେ ଶୁଣ ଦୟାନିଧି
ଯେହୁ କୃଷ୍ଣ ସେ ଅର୍ଜ୍ଜୁନ ସଂସାରେ ପ୍ରସିଦ୍ଧି ।
ଶରଣ ପଞ୍ଜର ତୁହି ରକ୍ଷାକର ବାରେ ।
ଶାରଳା ଦାସ କହଇ ବିରାଟ ସଭାରେ ।

—●—

## କୁରୁସେନାପତିଙ୍କ ପରିଚୟ, ଝିମିଟି ଖେଳ ଓ ଦୁର୍ବାସାଙ୍କଠାରୁ କୁନ୍ତୀଙ୍କ ବରପ୍ରାପ୍ତ ଏବଂ କର୍ଣ୍ଣଜନ୍ମ ବିବରଣ

କହୁଛନ୍ତି ମହାମୁନି ଶୁଣ ଚଇତନ ।
ମହତେ ପ୍ରସନ୍ନ କରି ମୁକ୍ତି ହୋନ୍ତି ଜନ ।
ଯେଉଁ ନନ୍ଦିଘୋଷରଥେ ଶ୍ରୀକୃଷ୍ଣ ସାରଥି
ସେ ସ୍ଥାନେ ମାଡ଼ି ବସିଲା ବିରାଟ ସନ୍ତତି ।
ଅର୍ଜ୍ଜୁନ ରଥି ରଥରେ ଉତ୍ତର ସାରଥି
ଯେସନେ ଆକାଶୁ ଇନ୍ଦ୍ର ଗୋବିନ୍ଦ ଆସନ୍ତି ।
ରଥିପଣେ ଅରଜୁନ ସ୍ମରୁ ହନୁମନ୍ତ
କପିକେତନ ଲାଗିଲେ ଆସିଣ ତୁରିତ ।
ପାର୍ଥ ଦେବଦତ୍ତ ଶଙ୍ଖ କରିଲେ ବାଦନ
ଶୁଣିଣ ତ୍ରାସ ଲଭିଲେ କଉରବ ସୈନ୍ୟ ।
ସର୍ବେ ଚାହିଁଲେ ଉତ୍ତର ଦିଗେ କରି ଦୃଷ୍ଟି
ନନ୍ଦିଘୋଷ ସନ୍ନିଧିରେ ବେଗେ ଆସି ଭେଟି
ଦୂରହୁଁ ଦେଖିଲେ ଭରଦ୍ୱାଜରଙ୍କର ବାଳ ।
ଦ୍ରୋଣ ବୋଇଲେ ଅଇଲା ଇନ୍ଦ୍ରଙ୍କ ଦୁଲାଳ
କର୍ଣ୍ଣ ବୋଇଲେ ଗୁରୁ ହେ ଶୁଭେଦେବଦତ୍ତ
ଶକୁନି ବୋଲେ ତାହାର କପିଧ୍ୱଜ ରଥ ।
ଶଲ୍ୟ ବୋଲେ ନନ୍ଦିଘୋଷ ରଥ ଯେଘୋଷଇ
କୃପ ବୋଇଲେ ଅର୍ଜ୍ଜୁନ ପରାୟେ ଦିଶଇ ।
ଦ୍ରୋଣ ବୋଇଲେ କେମନ୍ତେ କରିବା ତା ସତ
ବନେ ପଡ଼ିଣ ପାଣ୍ଡବେ ମଲେ ପାଞ୍ଚଭ୍ରାତ ।
ଭୀଷ୍ମ ବୋଇଲେ ଯେ ପଣ୍ଡୁ ପୁତ୍ରଙ୍କ ଅନ୍ତରେ
ଆନ କେହି ନନ୍ଦିଘୋଷେ ଆସୁଛି ନିକରେ ।
ଅଥବା ଏହି ଅର୍ଜ୍ଜୁନ ସ୍ଥିର ହୁଅ କିନା
କିମ୍ପା ଗୋଳକର ଏହିକ୍ଷଣି ଯିବ ଜଣା ।
ଏହିମତେ ବିଚାରିଣ କୁରୁ ମହାବଳ
ଏକ ଦୃଷ୍ଟିପାତ କରି ଚାହିଁଲେ ସକଳ ।
ଉତ୍ତର ପାର୍ଥ ଛାମୁରେ ହୋଇଣ ପ୍ରଣାମି
ବୋଇଲା ଏ ରଥି ସର୍ବ କେ ଅଟନ୍ତି ସ୍ୱାମୀ ।

ଅର୍ଜ୍ଜୁନ ବୋଇଲେ ତୁହି ଶୁଣ ମୋ ଉତ୍ତର
ଏଣେ ଭୀଷ୍ମ ଦ୍ରୋଣ କର୍ଣ୍ଣ ଶଲ୍ୟ ମହାବୀର ।
ଭୂରିଶ୍ରବା ସୋମଦତ୍ତ ପୁଣି କୃପବ୍ରହ୍ମା
ବାହ୍ଲିକ ଶକୁନି ଦ୍ରୋଣସୁତ ଅଶ୍ୱଥାମା ।
କୃପାଚାର୍ଯ୍ୟ ଆବର ଯେ ଅଟେ ଜୟଦ୍ରଥ
କ୍ଷତ୍ରିୟ ସୁନ୍ଦର ମହାମଲ୍ଲ ଯେ ସମସ୍ତ ।
ଶୁଦ୍ଧସ୍ଫଟିକ ପରାୟେ ଯାର ରଥ ଗୋଟି
ଶାନ୍ତନୁଙ୍କର ସୋଦର ଭୁରିଶ୍ରବା ସେଟି ।
ତାହାଙ୍କର ବାମପାଶେ କଣୟର ରଥ
ହୀରା ପନ୍ତି ପନ୍ତି ହୋଇ ଜଡ଼େ ଅପ୍ରମିତ ।
କୃଷ୍ଣାଜିତ ଛାଲ ଅଛି ରଥର ଉପରେ
ଫରଫରେ ପତାକା ଯେ ଉଡ଼େ ନିରନ୍ତରେ
କଣୟ ତେଜ ଆବର ଅର୍କ ତେଜି ଝଳି
ଗଜର ମୁକ୍ତା ମାଣିକ ପୁଣି ମାଳି ମାଳି ।
ଦ୍ୱାଦଶ ଗୋଟି ଶାର୍ଦ୍ଦୁଳ ଯୋଚିଛନ୍ତି ରଥେ
ବାବୁ ଆକାଶେ ବୁଲନ୍ତି ସେହୁ ଦିବାରାତ୍ରେ ।
ଶାନ୍ତନୁଙ୍କର ନନ୍ଦନ ଗଙ୍ଗା ଯେ ପ୍ରସତି
ଶର ପ୍ରାୟୋଗ କରନ୍ତେ ତିନିଲୋକେ ଭୀତି ।
ଶରଣ ବତ୍ସଳ ସେହୁ କକ୍ଷା ଜଗଜ୍ଜେଠି
ନାରାଚ ବିନ୍ଧିଲେ ଯାଇ ଅସ୍ତିଗିରି ଫୁଟି ।
ଆହେ ସୂଦେଷ୍ଣା ନନ୍ଦନ ଯେଉଁ ପର୍ଶୁରାମ
ଏକୋଇଶ ବାରେ ପୃଥ୍ୱୀ କଲେ କ୍ଷତ୍ରିଶୂନ୍ୟ ।
ସେହି ରାମ ଯାଙ୍କ ସଙ୍ଗେ କରିବି ସମର
ହାରି ଯାଇଛନ୍ତି ଜାଣ ବିରାଟ କୁମର ।
ଏ ପୃଥ୍ୱୀରେ ଅଟେ ଯାର ଅସଂଖ୍ୟକ କଥା
ଅଟନ୍ତି ଏ ସେହି ଭୀଷ୍ମ କ୍ଷତ୍ରୀ ମହାରଥା ।
ସମୁଦ୍ର ଶୋଷଣ ହେଲା ଯାର ଶରାଘାତେ
ଦାରା ଗ୍ରହଣ ନ କଲେ ପିତାର ନିମନ୍ତେ ।
ଯାହାର ନାରାଚ ତେଜ ଲାଗେ ଆକାଶରେ
ଦିଗପାଳ ନ ସହନ୍ତି ଏହାଙ୍କର ଶରେ ।
ନାରାଚ ପେଶିଲେ ନିଶ୍ଚେ ଆସି ଛେଦ ଶିର
ଅଜାଣନ୍ତା ନାହିଁ କେହି ଯାଙ୍କ ମଧ୍ୟପୁର ।
ଭୀଷ୍ମଙ୍କ ସନ୍ନିଧେ ଦେଖେ ଯେଉଁ ରଥ ଅଛି
ଶୁଦ୍ଧମଚ୍ଛା ଚାରି ହୟ ତହିଁ ଅଛି ଯୋଚି ।
ତାହାର ଚାରିଆଡ଼ରେ କଣୟ ଛାଉଣି
ପଞ୍ଚଷଠି କୋଟି ପାଟ ଉପରେ ବିଛଣି ।
ସେ ବିମାନ ନାମ ଅଟେ ଖେଚରୀ ବିମାନ
ମତ୍ସ୍ୟନୟନ ବିନ୍ଧନ୍ତେ ବିଭିନ୍ନେ ସମାନ ।
ଶାକଲ୍ୟ ଦେଶର ସେହୁ ଅଟେ ଦଣ୍ଡଧର
ମାଦ୍ରିଦେବୀଙ୍କ ସୋଦର ଅଟେ ନିରାଧାର ।

ଅଶ୍ୱିନୀ କୁମାରଙ୍କର ଅଟଇ ଏ ଶଳା
ନକୁଳ ସହଦେବଙ୍କ ସୋଦର ମଉଳା ।
ଉତ୍ତର କୁମର ବୋଲେ ଭଲ ଶୁଭ କଥା
ମାତା ସୋଦର ହୋଇଣ କିମ୍ପା ନିର୍ଦ୍ଦୟତା
ଅର୍ଜ୍ଜୁନ ବୋଇଲେ ବାବୁ ଖେଳ କୁତୁହଳେ
ଗୁଣ୍ଡିମବାନ୍ଧି ହୋଇଲୁ ଝିମଣିର ଖେଳେ ।
ଯୁଧିଷ୍ଠିର ଦୁର୍ଯ୍ୟୋଧନ ହେଲେ ମୂଳଖଣ୍ଡି
ଭୀମ ଦୁଃଶାସନ ଦୁହେଁ ହେଲେ ଲାଖଖଣ୍ଡି
ଯୁଧିଷ୍ଠିରଙ୍କ ଆଡ଼ରେ ପଡ଼େ ଭୀମସେନ
ଦୁର୍ଯ୍ୟୋଧନ ଆଡ଼କୁ ଯେ ଗଲା ଦୁଃଶାସନ ।
କର୍ଣ୍ଣବୀର ଆଉ ମୁହିଁ ଗଣ୍ଡି ହେଲୁ ବେନି
ଦୁର୍ଯ୍ୟୋଧନ ଆଡ଼େ କର୍ଣ୍ଣ ମୁଁ ଯୁଧିଷ୍ଠିଘେନି
ନକୁଳ ସୋମଦତ୍ତ ଯେ ବେନିଖଣ୍ଡ ହେଲେ
ସୋମଦତ୍ତ ଦୁର୍ଯ୍ୟୋଧନ ଭାଗରେ ପଡ଼ିଲେ ।
ସହଦେବ ଶକୁନି ଯେ ହେଲେ ଏକଯୋଗ
ଦୁର୍ଯ୍ୟୋଧନର ଶକୁନି ପଡ଼ିଗଲା ଭାଗ ।
ଏହିପରି ବେନିଭାଗ ହେଲେ ଖେଳରସେ
ପ୍ରଥମରେ ଦୁଃଶାସନ ଗୋଡ଼ାଏ ହରଷେ ।
ଦ୍ୱିତୀୟରେ ଗୋଡ଼ାଇଲେ ଭୀମ ମହାବଳୀ
ବ୍ୟାଘ୍ରକୁ ଦେଖି ପଳାଏ ଯେସନେକ ଘେନି
କଉରବଙ୍କୁ ମାରିଣ କରଇ ସେ ବ୍ୟସ୍ତ
ଯାହାକୁ ଚାପୋଡ଼େ ମାରେ ସେହୁ ଭୂମିଗତ
ଏକା ନିଃଶ୍ୱାସକେ ଶତ ଭାଇଙ୍କୁ ସେ ମାରି
ସୋମଦତ୍ତ ଶକୁନି ଯେ ରହିଲେ ଉବୁରି ।
ଦେଖିଲେ ଶଲ୍ୟ ପଳାଇଯାନ୍ତି ଅପସରି
ନିଃଶ୍ୱାସକେ ଭୀମ ଡେଇଁ ପାଦଗତି କରି ।
ଭୀମ ପାଦ ପଡ଼ିଲାକ ଶଲ୍ୟଙ୍କର ପିଠି
ଅସାଷ୍ଟମେ ପଡ଼ିଲେ ସେ ମହୀତଳେ ଲୋଟି ।
ଉଠି ନ ପାରି ବହୁତ ଲଜ୍ଜା ସେ ପାଇଲେ
ଭୀମକୁ ମାରିବ ବୋଲି ସତ୍ୟବ୍ରତ କଲେ ।
କକ୍ଷାବନ୍ତ କ୍ଷତ୍ରି ବଳ ପୁଅଙ୍କର ରାଗେ
ଦଇନୀ କରିଲେ ମାତା ତାଙ୍କୁ ବହୁଭାଗେ ।
କାର ବୋଲ ନ ଶୁଣିଣ ରହେ କୁରୁଥାଟେ
ଭୀମକୁ ମାରିବେ ବୋଲି ରହିଲେ ସେ ଆଣ୍ଟେ ।
ଶୁଣ ହୋ ଉତ୍ତର ସେହି କ୍ଷତ୍ରିଙ୍କର କଥା
ଭୀମଠାରେ ତାଙ୍କ କକ୍ଷା ରହିଲା ସର୍ବଥା ।
ଏହି ସେହି ମହାରଥି ରାୟଗୁରୁ ଶଲ୍ୟ
ଯୁଗାଦିକାଳରେ ଏହି ଅଟେ ମହାମଲ୍ଲ ।
ଧନୁରେ ସନ୍ଧାନ କଲେ ଗୋଟିଏ ନାରାଜ
ଗରୁଡ଼ ପୃଷ୍ଠେ କମ୍ପିଲେ ଥାଇ ଦେବରାଜ ।

ମହବଳବନ୍ତ ସେହି କ୍ଷତ୍ରୀକୁଳ ଆଦି
ଶର ବିନ୍ଧିଲେ ପାତାଳ ସ୍ୱର୍ଗ ପାରେ ରୁନ୍ଧି ।
ଏହାଙ୍କ ନିକଟେ ଅଛି ଦେଖ ଏକ ରଥ
ଉଦୟକାଳେ ଦିଶନ୍ତି ଯେହ୍ନେ ଦୀନନାଥ ।
ଅର୍ବୁଦେ ପତାକା ଉଡ଼େ ରଥର ଉପରେ
ଫରହର ନେତ ଦେଖ ଗଗନର ଶିରେ ।
ବାରଣ ଦନ୍ତର ରଥ କଣୟ ଛାଉଣି
ତହିଁ ଉପରେ ଝଟକେ ରତ୍ନମୟ ମଣି ।
ମାଣିକ୍ୟ ଗଜମୁକୁତା ତହିଁ ପନ୍ତି ପନ୍ତି
ତହିଁପରେ ପାଞ୍ଚଲକ୍ଷ ହୀରା ଝଟକନ୍ତି ।
ହୀରା ପାଖରେ ମର୍କତ ଅଛି ଧାଡ଼ି ଧାଡ଼ି
ଚାରି ଭଣ୍ଡାର ସମ୍ପଦେ ଏ ରଥ ସଜାଡ଼ି ।
ନୀଳରେ ନିର୍ମିତ ପଦ୍ମ ପାଖୁଡ଼ା ମୁକୁତା ।
ଲମ୍ବିତ ଝାଲର ସବୁ ଗୁଛା ପାଟସୂତା ।
ଚଉଷଠି ପନ୍ତି ହୀରା ପୀଢ଼ ଉପରେଖ
ସୁଗନ୍ଧ ମାଣିକ୍ୟ ଖଞ୍ଜାଅଛି ତାର ପାଖ ।
ଆବର ଲମ୍ବଇ ଲକ୍ଷେ ମୁକ୍ତା ଚଉସରା
ତହିଁ ତଳେ ପୁଞ୍ଜି ପୁଞ୍ଜି ମୁକୁତାର ଝରା ।
କେଶରୀ ଲାଙ୍ଗୁଳ ଚିହ୍ନ ଦେଖ ରଥ ଧ୍ୱଜେ
ଅମରାଧିନାଥ ପରି ପଥେ ଛନ୍ତି ବିଜେ ।
ସହସ୍ରେ ଆଲମ୍ବ ଉଡ଼େ ଦେଖ ବେନିପାଖେ
ଶୁଦ୍ଧ ସୁବର୍ଣ୍ଣ ଡାଳିମ୍ବା ଚାମରହିଁ ଲକ୍ଷେ ।
ଲକ୍ଷେକ ଉଦଣ୍ଡ ପୁଣି ଲକ୍ଷେ ପାଟଛତ୍ର
ଲକ୍ଷେକ ଚିରାଳ ପାଞ୍ଚଲକ୍ଷ ଅଇବ୍ରତ ।
ସୁବର୍ଣ୍ଣର ରଥ ଯହିଁ ଚାଳଇ ସଜାଡ଼ି
ବେନିଲକ୍ଷ ଶଙ୍ଖ ସଙ୍ଗେ ଦେଉଥାଏ ରଡ଼ି ।
ସର୍ବଦା ମଣି ମୁକୁତା ଶୋଭଇ ଲଲାଟେ
ଅଷ୍ଟରତ୍ନର ମୁକୁଟ ଶୋଭେ ସପ୍ତଘଟେ ।
ବୈଜୟନ୍ତୀମାଳା ଶୋଭେ ଯାହାଙ୍କର ହୃଦ
ଅତିଅନ୍ତ ଅଭିମାନୀ ସେ ମାନଗୋବିନ୍ଦ ।
ସମ୍ପୂର୍ଣ୍ଣ ଚନ୍ଦ୍ରର ରେଖା ଶୋଭିତ ଲଲାଟେ
ଜଗତବନ୍ଦନାନାଥ ଶୋଭେ ମଧ୍ୟଥାଟେ ।
ବେନିକର ଶୋଭାବନ୍ତ ଶଙ୍ଖ ପଦ୍ମନିଧି
ପନ୍ନଗନାରୟଣ ସେ ବଚନରେ ସିଦ୍ଧି ।
ଏହାଙ୍କର କରତଳେ ଲାଗନ୍ତେ ପାଷାଣ
ଅବଶ୍ୟ ତରଳି ପାଣି ହୁଏ ସେହିକ୍ଷଣ ।
ଲକ୍ଷେ ରାଜାଙ୍କ ଉପରେ ସେ ମଉଡ଼ମଣି
କୋଟିପାଦେ ଯାର କନ୍ଧେ ବିଜେ କମଳିନୀ
ପନ୍ନଗନାରାୟଣ ଏ ସ୍ୱୟଂ ଅବତାର
ମାତା ପିତା କାହାକୁ ନକରେ ନମସ୍କାର ।

ଭୋଜ ରାଜାଙ୍କ କୁମାରୀ ନାମ ଭାନୁମତୀ ।
ଅଷ୍ଟପ୍ରହରେ ତାହାଙ୍କୁ ବିବାହ ହୁଅନ୍ତି ।
ଇନ୍ଦ୍ରପ୍ରସ୍ଥ ଯମପ୍ରସ୍ଥ ହସ୍ତିନା ବାରୁଣା
ଜୟନ୍ତା ଆଦି ତା ରାଜ୍ୟ ନୁହଇ କଳନା ।
କୁଞ୍ଜଗଳ ଦେଶର ଏ ଅଟେ ଅଧିପତି
ବଡ଼ ପ୍ରତାପୀ ରାଜା ଏ ମାନଚକ୍ରବର୍ତ୍ତୀ
ଶତେଭ୍ରାତା ଏହାଙ୍କର ଏକେ ଏକେ ଦକ୍ଷ
ଧାର୍ମିକ ବିବେକପଣେ ଅଟନ୍ତି ସୁଦକ୍ଷ ।
ଗାନ୍ଧାର ଦେଶର ରାଜା ମନ୍ତ୍ରୀ ଯେ ଶକୁନି
ଭୂତ ଭବିଷ୍ୟତ ଜ୍ଞାତା ସେହୁ ମହାଜ୍ଞାନୀ ।
ଏ ରଥ ଶୁଦ୍ଧ ସ୍ଫଟିକ ଛାଏଣି ବିରାଜ
ଆଦିତ୍ୟ କିରଣ ଜିଣି ଅଟେ ଏହା ତେଜ ।
ଯେହ୍ନେ ରତ୍ନ ଲାଗିଅଛି ରଥ ମଣ୍ଡଣିରେ
ନ ଥିବ ରତ୍ନ ଶତେକ ରାଜାଙ୍କ ଭଣ୍ଡାରେ ।
ଏହି ଯେ ସକଳ ରତ୍ନ ଅଟଇ ଅମୂଲ୍ୟ
କୁବେର ଭଣ୍ଡାର ସଙ୍ଗେ ହେବ ସମତୁଲ ।
ଏହୁ ରାଧାର କୁମର ଅଟେ ବୀର କର୍ଣ୍ଣ
ମହୀ ଲାଞ୍ଛ ଦିଏ ଯାକୁ ଲକ୍ଷେଭାର ସ୍ୱର୍ଣ୍ଣ ।
ଏହାର ବେନି ଚରଣ ପଡନ୍ତେଶ ପୃଥ୍ୱୀ
ମୁଖବାଟରୁ ରୁଧିର ବହେ ବସୁମତୀ ।
ସ୍ଥିର ହୋଇଣ ଏହାର ଚାଲିବା ନିମନ୍ତେ
ତେଣୁ ଶତଭାର ସ୍ୱର୍ଣ୍ଣ ଦିଅଇ ସେ ନିତ୍ୟେ ।
ଆମ୍ଭର ସୋଦର ଏହୁ ଅଟେ ଜ୍ୟେଷ୍ଠଭ୍ରାତ
ଯୁଧିଷ୍ଠିର ଠାରୁ ବଡ଼ କୁନ୍ତୀ ଗର୍ଭୁ ଜାତ ।
ଉତ୍ତର ବୋଲେ ଦୁର୍ଲ୍ଲଭ ଅଟେ ତୁମ୍ଭ ବାଣୀ
ଆଶ୍ଚର୍ଯ୍ୟ ହୋଇଲି ଦେବତୁମ୍ଭ କଥା ଶୁଣି ।
ଯେବେ ଏ ସୋଦର ଏକା ମାତାଗର୍ଭୁଜାତ
ଜ୍ୟେଷ୍ଠଭ୍ରାତା ହୋଇ କିମ୍ପା ଏଡ଼େ କଷ୍ଟାବନ୍ତ
ନିଜ ଭ୍ରାତାଙ୍କୁ ଛାଡ଼ିଣ ଶତ୍ରୁ ସଙ୍ଗେ ଭାବ
ଏ କଥା କହି ସନ୍ଦେହ ଛଡ଼ାଅ ହେ ଦେବ ।
ଅର୍ଜ୍ଜୁନ ବୋଇଲେ କୁନ୍ତଭୋଜ ବୋଲି ରାଜା
କୋଇନ୍ତା ଦେବୀ ଅଟନ୍ତି ତାହାଙ୍କ ତନୁଜା ।
କୁନ୍ତୀ ଦୁର୍ବାସା ଋଷିଙ୍କି ବାଳିକା କାଳରେ
ଦ୍ୱାଦଶ ବରଷ ସେବା ପିତାଙ୍କ ଗୃହରେ ।
ରାଜ୍ୟ ଛାଡ଼ିଣ ଯାଆନ୍ତେ ସେ ଦୁର୍ବାସା ଯତି
କୁନ୍ତୀ ଗୋଡ଼ାଇଲେ ଯାଇ ତାଙ୍କ ପଛକତି ।
ଦୁର୍ବାସା ବୋଇଲେ କୁନ୍ତୀ ଫେରିଯାଅ ତୁହି
ପ୍ରଣାମ କରି ବୋଲନ୍ତି ତହୁଁ ମହାମାଈ ।
ଈଶ୍ୱର ସମାନେ ମୁହିଁ ତୁମ୍ଭଙ୍କୁ ସେବିଲି
କିଛିହିଁ ନ ପାଇ ଏବେ ନିରାଶ ହୋଇଲି ।

ଦୁର୍ବାସା ବୋଇଲେ ଏହି ମନ୍ତ୍ରଟି ଆମ୍ଭର
ଯାଚି ନ ଦେଉ ନ ମାଗେ ଯେହୁ ମୋଛାମୁର
ଯେବେ ଏ ଅଇଲୁ ତୁହି ମନେ କରି ଇଛା
ମାଗ ମାଗ ତୋର ମନେ ଅଛି ଯେଉଁ ବାଞ୍ଛା
କୁନ୍ତୀ ବୋଇଲେ ମାଗି ବିଁ କିସ ମୁନିବର
ସ୍ତିରୀଙ୍କ ବେଦନା ଜାଣି ତୁମ୍ଭେ ଦୟାକର ।
ଦୁର୍ବାସା ବୋଇଲେ ସ୍ତିରୀମାନଙ୍କର ବାଞ୍ଛା
ସୁନ୍ଦର ପୁରୁଷ ଦେଖି ତନୟରେ ଇଚ୍ଛା ।
ଏ ଜପାମାଳିଟି ମୁହିଁ ଦେଉଅଛି ତୋତେ
ଯାହାକୁ ସ୍ମରିବୁ ତୁହି ଥାଇ ଶଯ୍ୟାଗତେ ।
ଇନ୍ଦ୍ର ଚନ୍ଦ୍ର ସୂର୍ଯ୍ୟ ବାୟୁ ଆଉ ଯେଉଁ ବିଷ୍ଣୁଙ୍କୁ
ସୁମରିଲେ ନିଶ୍ଚୟ ସେ ଆସିବେ ପାଶକୁ ।
ଏସନକ ଜପମାଳି ଦେଲେ ଭଗବନ୍ତେ
ବସନ୍ତେ କୋଇନ୍ତା ସ୍ନାନ ସାରିଲେ ତୁରିତେ ।
ସ୍ନାହାନକୁ ସାରି ଦେବୀ ହୋଇଛନ୍ତି ଉଭା
ଐଶାନ୍ୟ ଦିଗେ ଦିଶିଲା ଆଦିତ୍ୟର ପ୍ରଭା ।
ମହାମନ୍ତ୍ର ପରୀକ୍ଷା ସେ କରିବା ନିମେନ୍ତ
ବିରଞ୍ଚିକି ସୁମରଣା କଲେ ଶଯ୍ୟାଗତେ ।
କୁନ୍ତୀ ଅବିବାହୀ ପୁଣି ନୁହେଁ ରଜୋବତୀ
ଭାସ୍କର ଦେବତା ଆସି ବଢ଼ାଇଲେ ପ୍ରୀତି ।
ଭାବ ଆଲିଙ୍ଗନେ କନ୍ୟା କରିଲେ ସମ୍ଭବ
କର୍ଣ୍ଣବିଳରେ ପୁତ୍ରେକ ହୋଇଲା ପ୍ରସବ ।
ଦିନକର ନାଥ ଯାଇ ଧଇଲେକ କୋଳେ
ଅସ୍ତ ସୂର୍ଯ୍ୟମଣି ଚାପି ଦେଲେ ବକ୍ଷସ୍ଥଳେ ।
ଅଭେଦ କବଚମଣି ଚାପି ତା ତାଳୁରେ
ପୁଣିହିଁ ବଜ୍ର ଛଉରୀ ଖଞ୍ଜିଲେ ତହିଁରେ ।
କର୍ଣ୍ଣେ ଖଞ୍ଜିଲେ ଅମୃତ କୁଣ୍ଡଳକୁ ନେଇ
କର୍ଣ୍ଣନାମ ଦେଲେ ନିଜ କୋଳରେ ବସାଇ
ସପତ ସୂର୍ଯ୍ୟର ତେଜ ଲୋହିତ ତା କାୟେ
ଲାଜରେ ପିତା ଗୃହକୁ ନନେଲେ ଯେ ମାଏ ।
ମୃତ୍ତିକାର ମଞ୍ଜୁଷ ଯେ ଗୋଟିଏକ କରି
ବାଳୁତ କୁମର ନେଇ ତହିଁ ମଧ୍ୟେ ଭରି ।
ଯମୁନା ନଦୀ ବହଇ ଅଇଶାନ୍ୟ ଦିଗେ
ସେ ନଦୀ ଭିତରେ ନେଇ ପକାଇଲେ ବେଗେ
କୁମର ତେଜେ ସିଝିଲେ ସେହି କଞ୍ଚାମାଟି
ତହିଁ ଭିତରେ ବଢଇ ସୂର୍ଯ୍ୟ ବସ୍ତାଗୋଟି
ସେ ମଞ୍ଜୁଷା ଉଛୁଡ଼ିଣ ଭାସିଲା ଜଳରେ
ଲାଗିଲା ଯାଇଣ ଇନ୍ଦ୍ରପ୍ରସ୍ଥ ନଗରରେ ।

ଗାଲବସୁତ ସଞ୍ଜୟ ଧୃତରାଷ୍ଟ୍ର ମନ୍ତ୍ରୀ
ରାଧାନାମରେ ଥିଲା ଯେ ତାହାର ଦୁହିତି ।
ସଞ୍ଜୟକୁ ପ୍ରପାତ ଯେ ହେଲା ଦିବ୍ୟଚକ୍ଷୁ
ସେ ବୋଇଲା ମାଗୋ ରାଧା ତୁହି କାହିଁଅଛୁ
ଏହିକ୍ଷଣି ଚଳ ତୁ ଗୋ ଯମୁନାର କୂଳେ
ମଞ୍ଜୁଷା ଗୋଟିଏ ତହୁଁ ଭାସୁଅଛି ଜଳେ ।
ତାହାକୁ ଘେନିଣ ତୁହି ଆସ ଗୋ ଯତନେ
ବଡ଼ ବଳବନ୍ତ ଏକ ଅଛଇ ନନ୍ଦନେ !
ପିତାର ବଚନେ ରାଧା ତହିଁ ବେଗେ ଚଳେ
ମଞ୍ଜୁଷା ପାଇଲା ଯାଇ ଯମୁନାର ଜଳେ ।
ଅନେକ ଯତନେ ତାକୁ ସେ ରାଧା ପାଳିଲେ
ବାଲ୍ୟକାଳ ପ୍ରୀତି ତାର କୁରୁପତି ତୁଲେ ।
ତ୍ରିବେଣୀ ପ୍ରୟାଗତୀର୍ଥେ ଦୁହେଁ ହେଲେମିତ
ଜାଣୁ ତୁ କର୍ଣ୍ଣ ଏମନ୍ତ ଅଟେ ଆମ୍ଭ ଭ୍ରାତ ।
ଯେଉଁ ବାକ୍ୟ ଉତ୍ତରଙ୍କୁ କହିଲେ ଫାଲଗୁନି
ଏହି ସକାଶରୁ କର୍ଣ୍ଣ ଅସ୍ତ୍ର ଅଛି ଘେନି ।
ପରମ ସାନନ୍ଦେ ଏହା କହିଲେ କିରୀଟି
ଶୁଣି ଅନେକ ସାନନ୍ଦ ହୋଇଲେ ବିରାଟୀ ।
ବାବୁ କର୍ଣ୍ଣର ନିକଟେ ଅଛି ଯେଉଁ ରଥ
ପୂର୍ଣ୍ଣିମା ଚନ୍ଦ୍ରକୁ ଜିଣି ଦିଶେ ତେଜୋବନ୍ତ ।
ରଥପରେ ବିରାଜଇ ଚନ୍ଦ୍ରକାନ୍ତ ମଣି
ତହିଁ ଉପରେ କନକ ମୃଗର ଛାଉଣି ।
ରଥରେ ମଲ୍ଲୀ ମାଳତୀ ଗଜର ମୁକୁତା
ମାଣିକ୍ୟର ଜରି ଗୁନ୍ଥା ସଙ୍ଗେ ପାଟସୂତା ।
ଚନ୍ଦ୍ରମଣ୍ଡଳ ରଥର ଚନ୍ଦ୍ରକାନ୍ତ ମଣି
ଚନ୍ଦ୍ରକିରଣକୁ ଜିଣି ବିରାଜନ୍ତି ପୁଣି
ବାବୁ ଉତ୍କଳ ଦେଶର ଭରଦ୍ୱାଜ ଋଷି
ଦ୍ରୋଣ ମହାରଥି ଏହି ତାହାଙ୍କର ଶିଷି ।
ପର୍ଶୁରାମଙ୍କ କୃପାରୁ ପାଇ ଚାରିବିଦ୍ୟା
କୁରୁ ପାଣ୍ଡବଙ୍କ ଗୁରୁ ଦ୍ରୋଣ ମହାଯୋଦ୍ଧା
ନବସସ୍ର ବଳ ଅଛି ଏହାଙ୍କ ଧନୁରେ
ବିଶାଶତ ଶାର୍ଦ୍ଦୂଳ ଯେ ଯୋଚିଲା ରଥରେ
ଶାର୍ଦ୍ଦୂଳର ଲାଞ୍ଛ ଚିହ୍ନ ଉଡ଼େ ରଥଧ୍ୱଜେ
କଣୟ ସ୍ୱରୂପ ଏହି ରଥଟି ବିରାଜେ ।
ବାବୁ ଏ ଦ୍ରୋଣ ଅଟନ୍ତି ଯେଉଁରୂପେ ରଥି
ତାହାଙ୍କ ସନ୍ନିଧେ ଦେଖ ବିରାଟ ସନ୍ତତି
ଏକଖଣ୍ଡ ରଥ ଦିଶେ ମର୍କତ ଆକୃତି ।
ବିରାଜେ ମୁକ୍ତା ମର୍କତ ପନ୍ତି ପନ୍ତି ଜାଣି
ଅଟଇ ସେ ଅଶ୍ୱଥାମା ମହା ବୀରମଣି ।

ପଞ୍ଚାଉଣା ଲକ୍ଷେ ବଳ ବହଇ ସେ ଧନୁ
ବାଣ ପ୍ରହାର କରିଲେ କମ୍ପେ ଯମ ତନୁ ।
କ୍ଷତ୍ରିୟମାନଙ୍କ ମଧ୍ୟେ ଏ ବଡ଼ ପ୍ରତାପୀ
ଦ୍ରୋଣ ଏହାଙ୍କର ପିତା ମାତା ଅଟେ କୃପୀ ।
ଏହି ଧନୁକୁ ଧଇଲେ କମ୍ପେ ଆଖଣ୍ଡଳ
ଯମଦେବତା ନ ରସେ ସଂଯମନୀ ଆଳ ।
କ୍ଷତ୍ରିୟ ମର୍ଦ୍ଦନ ଏହୁ ଅଟେ ଦଣ୍ଡକାରୁ
ଦ୍ରୋଣଠାରୁ ପାଞ୍ଚଲକ୍ଷ ବଳି ବହେ ଗରୁ ।
ଯୁଦ୍ଧେ ଅବାରଣ ଏହୁ ଅଟଇ ମହାତ୍ମା
ଏହାଙ୍କ ମାତୁଳ ଦେଖ କ୍ଷତ୍ରି କୃପବ୍ରହ୍ମା ।
ମଳୟ ବସନ୍ତ ଦେଖ ମଳୟ ସାରଥି
ମଳୟ ନୀଳ ବିକାଶେ ରଥ ଚଉକତି ।
କେତେ ରତନ ଲାଗିଛି ତହିଁ କେତେ ଶାଖା
ଗଣନା କରିବାର ସେ ଅଟଇ ଅଲେଖା ।
ଯାକୁ ଶର ସନ୍ଧେ ତାକୁ ଅବଶ୍ୟ ମାରଇ
ଚନ୍ଦ୍ର ସୂର୍ଯ୍ୟ ହେଲେ ମଧ୍ୟ ଆଉ ନ ବର୍ତ୍ତଇ ।
ନିର୍ଦ୍ଦୟ ଏହୁ ମହାତ୍ମା ସମରର କାଳେ
ସ୍ୱର୍ଗ ଭୁବନକୁ ମଞ୍ଚେ ଆଣିପାରେ ବଳେ ।
ବ୍ରାହ୍ମଣ ପଣରେ ଅଟେ ଅପ୍ରମିତ ତେଜ
ସେ ମହାରଥି ଅଟନ୍ତି କୃପ ଯେ ଆଶ୍ଚର୍ଯ୍ୟ ।
ମାରାଗ ଖଞ୍ଜିଣ ଏହି ରତ୍ନମୟ ରଥ
ଲୋହିତ ପିଙ୍ଗଳ ବର୍ଣ୍ଣ ଅଟଇ ଗରିଷ୍ଠ ।
ଉଲ୍ଲୁକର ଚର୍ମେ ଛାଇଅଛି ରଥଗୋଟି
ସୋମଦତ୍ତ ଅଟଇ ଯେ ଏ ମହାରଥିଟି ।
ତାହାଙ୍କ ଭିଣୋଇ ଏ ବାହ୍ଲିକ ମହାଯୋଧି
କ୍ଷତ୍ରିୟ ସୁନ୍ଦର ବାୟୁ ପାରନ୍ତି ଏ ବାନ୍ଧି ।
ରଥରେ ଡାଳିମ୍ବ ଚର୍ମ ହୋଇଛି ଛାଉଣୀ
ଯେସନେକ ବିରାଜଇ ସୀମନ୍ତକ ମଣି ।
ବାହ୍ଲିକ ଦେଶର ଏହୁ ଅଟେ ନାରନାହା
ରଥରେ ଯୋଚି ଅଛଇ ସସ୍ରେ ବାହୁଟିଆ ।
ହରିଣ୍ୟଗିରି ମଣ୍ଡଳ ବୋଲି ଏକ ଦେଶ
ତହିଁର ରାଜା ଅଟଇ ଏହି ଅଳମ୍ବୁଷ ।
ଅନେକ ଲକ୍ଷ ଏହାର ବ୍ୟାଘ୍ର ଯେ ବାହନ
ଅତି ବିଶ୍ୱାସେ ଥାଆନ୍ତି ରାଜ ସନ୍ନିଧାନ ।
ଆଗୁଆଣି ଅଟେ ଏହୁ ଚଳେ ସର୍ବକାଳେ
ଲକ୍ଷେକ ନୃପତି ଜିଣି ପାରେ ଅବହେଳେ ।
ରାଜାର ନନ୍ଦନ ଏହୁ ସଖା ଅବିରୋଧ
ତାହାର ନନ୍ଦନ ଏହୁ ସଖା ଅଳାୟୁଧ ।
ଶାରଙ୍ଗ ସମାନ ତାର କରେ ଲୋହଧନୁ
ତପେ ପ୍ରସନ୍ନ ହୋଇଣ ଦେଲେ ପଞ୍ଚମନୁ ।
ଯୁଗାନ୍ତକ ଯୋଦ୍ଧା ଏହୁ ଦାନବାଧିପତି
ଚତୁର୍ଦ୍ଦିଗରେ ଏହାର ବିଖ୍ୟାତ କୀରତି ।
ରଥ ବିରାଜଇ ଦେଖ ଯୁଦ୍ଧ ହୀରାମୟ
ଦ୍ୱାଦଶ ଆଦିତ୍ୟ ରଥେ ଘଟନ କଣୟ ।
ସିନ୍ଧୁ ଦେଶର ରାଜା ଏ ଦୁଃଶୀଳାର ନାଥ
ଦୁର୍ଯ୍ୟୋଧନର ଭିଣୋଇ ନାମ ଜୟଦ୍ରଥ ।
ଦଶଅୟୁତ ରଥ ଏ ସାଜେ ଅନୁବ୍ରତେ
ପଛୁଆଣି ଥାଟେ ଚଳେ ପିତାର ନିମନ୍ତେ ।
ଉଡ୍ଡଙ୍ଗ ଦେଶର ରାଜା ଅଟେ ବୀରମାଳୀ
ଅର୍ବୁଦେ ଯୋଦ୍ଧା ଘେନି ସେ ସମର ସମ୍ଭାଳି ।
ଅସଂଖ୍ୟ ଅଟଇ କୁରୁ ସଇନ୍ୟ କହନ୍ତେ
ଏକାଦଶ ଅକ୍ଷୌହିଣୀ ବଳ ଯେ ଲେଖନ୍ତେ ।
ତୁ ଯେ ପୁଚ୍ଛାକଲୁ ସେନାପତିଙ୍କର କଥା
ଠିକ୍ ଠିକ୍ କରି ତୋତେ କହିଲି ମୁଁ କଥା ।
ଜୟ ଜୟ ଜଗନ୍ନାଥ ଶରଣ ପଞ୍ଜର
ପତିତ ଉଦ୍ଧାର ବାନା ଉଡ଼େ ଫରଫର ।
ମହୋଦଧି ତୀରେ ବଡ଼ ଦେଉଳରେ ବସି
ଦରିଦ୍ରମାନଙ୍କ ଦୁଃଖ ଦେଉଅଛି ଧ୍ୱଂସି ।
ବଉଦ୍ଧ ରୂପରେ କଳିଯୁଗେ ଅବତାର
ହୋଇଣ ପାପୀଜନଙ୍କୁ କରୁଛ ଉଦ୍ଧାର ।
ଗର୍ଗବଟୁ ଉପାଧିକ ରତ୍ନାକାର ଦ୍ୱିଜ
କହେ ତ୍ରିଭୁବନେଶ୍ୱର ନିରତରେ ଭଜ ।
ଜୟ ହରଚଣ୍ଡୀ ମାଗୋ ଦେବୀ କାତ୍ୟାୟିନୀ
ପର୍ବତ ତନୟା ତୁ ଯେ ଶିବଙ୍କ ଘରଣୀ ।
ଦୁରିତନାଶିନୀ ମାଗୋ ମହିଷାମର୍ଦ୍ଦିନୀ
ବାରେ ଦୟାକର ମାଗୋ ଶ୍ମଶାନବାସିନୀ ।
ମୋହର ପ୍ରସାଦେ ମୁଁ ଯେ ପଣ୍ଡିତ ଅଟଇ
ତେଣୁକରି ତୋ ପାଦରେ ଶରଣ ମାଗଇ ।
ଅଟୁ ତୁହି ଚତୁର୍ବର୍ଗ ଫଳ ପ୍ରଦାୟିନୀ
ଶାରଳା ଦାସ କରଇ ତୋ ପାଦେ ଦଇନୀ ।

—●—

## ଅର୍ଜ୍ଜୁନ ଦୁର୍ଯ୍ୟୋଧନଙ୍କ କଳି ଓ ଶତଭ୍ରାତାଙ୍କ ସହିତ ଯୁଦ୍ଧ

ଅଗସ୍ତି କହୁଅଛନ୍ତି ଆହେ ନୃପବର
ଏଥୁଅନ୍ତେ ଯାହା ହେଲା ଶୁଣ ସମାଚାର ।
ଉତ୍ତର ବୋଇଲା ଦେବ ପାଇଲି ତଦନ୍ତ
କାହାର ଛାମୁରେ ଏବେ ବାହିବି ମୁଁ ରଥ ।
ଅର୍ଜ୍ଜୁନ ବୋଇଲେ ଆହେ ଶୁଣ ତୁ ଉତ୍ତର
ଦମ୍ଭ ହୋଇଣ ଥିବୁଟି ରଥର ଉପର ।

ମହାଘୋର ସଂଗ୍ରାମରେ ହେବ ଗୋଳଯୁଦ୍ଧ
ବହୁତ ମରିବେ ସେନା ସୈନ୍ୟ ରଣମଧ ।
ଦେଖିଣ କାତର ତୁହି ନ ହେବୁ ବିରାଟି ।
ରଥୁ ତ୍ୟାଗକଲେ ଧୂଳିହେବ ତୋ ଦେହଟି
ଯଦି ଅବା ହର ବ୍ରହ୍ମା ଆସିବେ ଏଠାଇଁ
ଏ ରଥ ଥିଲେ ପ୍ରମାଦ ତୋର କିଛି ନାହିଁ ।
ଅଶ୍ୱଙ୍କୁ ଚାଳିଣ ତୁହି ରଥେ ବସିଥିଲେ
ଜିଣନ୍ତାନୋହିବେତୋତେଭୀଷ୍ମଦ୍ରୋଣହେଲେ ।
ଉତ୍ତର ବୋଇଲା ସ୍ୱାମୀ ଆଶ୍ରାକଲି ମେରୁ
ତୁ ସିନା କହିବୁ ରକ୍ଷା ମୋତେ କି ପଚାରୁ ।
ଭୀଷ୍ମ ଦ୍ରୋଣ ଅଟନ୍ତି ଯେ ବଡ଼ ମହାଯୋଧୀ
ସମସ୍ତେ ଭୋଗ କରନ୍ତି ରାଜାଙ୍କର ସିଦ୍ଧି ।
ରାଜା ବଚନେ ଚାଲନ୍ତି ସିନା ସର୍ବଲୋକେ
ଆଉମାନେ ଯେ ନଉକା ରାଜାହିଁ ବାହୁଳେ ।
ଆଉମାନଙ୍କୁ ଛାମୁକୁ ନ ବାହା ମୋ ରଥ
ରାଜାଙ୍କୁ ଜିଣିଲେ ସାଧ ହୋଇବ ସମସ୍ତ ।
ଅର୍ଜ୍ଜୁନଙ୍କ ବଚନରେ ସେ କୁମରମଣି
ଦୁର୍ଯ୍ୟୋଧନଆଗେ ରଥ ବେଗେ କଲାଆଣି ।
ନିର୍ଘାତ ଶବଦ ଯେହ୍ନେ ଖସଇ ଆକାଶୁ
କୌରବ ବଳ ତ୍ରାସିଲେ ନନ୍ଦୀଘୋଷ ଆସୁ ।
ସମସ୍ତେ ଦେଖିଲେ ରଥଧ୍ୱଜେ କପିଚିହ୍ନ
ଦୁର୍ଯ୍ୟୋଧନ ବୋଲେକିରେ ଅଟୁ ତୁ ଅର୍ଜ୍ଜୁନ ।
ପଶାରେ ହାରିଲୁ ଆରେ ରାଜ୍ୟାଦି ସମସ୍ତ
ବରଷେ ତେରଦିନ ଯେ ଅଟଇ ଅଜ୍ଞାତ ।
ଆବର ଦଶଦିବସ ଅଛଇ ଦେଖନ୍ତେ
ପୁଣି ଦ୍ୱାଦଶ ବରଷ ଯିବରେ ବନସ୍ତେ ।
ଅର୍ଜ୍ଜୁନ ପ୍ରମାଣ କଲେ ନନ୍ଦିଘୋଷେ ଥାଇ
ଅନେକ ଝିଙ୍ଗାସି ତାକୁ ବୋଲେ କୁରୁସାଇଁ
ସମ୍ପଦ ସବୁ ହରିଲେ ପଶିଲ କାନନ
କନ୍ଦମୂଳ ଅଖାଦ୍ୟକୁ କରିଣ ଭୋଜନ ।
ନଗେ ନଗ୍ରେ ପଶିଣରେ ହୋଇଲ ଭିକ୍ଷାକ୍ଷୀ
କ୍ଷତ୍ରି ବୃତ୍ତିକି ଛାଡ଼ିରେ ହୋଇଲ ତପସ୍ୱୀ ।
ଯୋଗୀ ତତସ୍ୱୀ ପୁଣିରେ ଆବର ଭିକ୍ଷାକ୍ଷୀ
ଏହାଙ୍କୁ ମାଇଲେ ବହୁ ପାପ ହୁଏ ଆସି ।
ନିଜ ଜାତି ବୁଡ଼ାଇଲ ହେଲ ମହାହୀନ
କୁଳବୁଡ଼ାଇ ଆକୁଳେ ପଶି ନେଲ ଦିନ ।
ବହୁତ ପାପୀ ଅଟଇ ପରଅନ୍ନ ଭୋଗୀ
ପ୍ରତିଜ୍ଞା ବୁଡ଼ାଇଲରେ କୁଟୁମ୍ବଙ୍କୁ ତ୍ୟାଗୀ ।
ଏଡ଼େ ପ୍ରତିଜ୍ଞା ଯଦ୍ୟପି ଅଛିରେ ତୁମ୍ଭର
ପଶାଖେଳରେ ହାରିଲ କିମ୍ବା ରାଜ୍ୟଭାର ।

ଅର୍ଜ୍ଜୁନ ପ୍ରତିଉତ୍ତର ଦିଏ ଏହା ଶୁଣି
ତୋହର ଦର୍ପ ସବୁ ତ ମୁହିଁ ଅଛି ଜାଣି ।
ପାଣ୍ଡବ ଅସୁର ଗିଳୁଥିଲା ଯେତେବେଳେ
ତୋତେ ଉଦ୍ଧାର କରିଲିମାରି ତାକୁ ହେଳେ
ହରିଣାକ୍ଷଦୈତ୍ୟ ତୋତେ ନେଲାବଳେ ହରି
ଜୀର୍ଣ୍ଣକୂପ ମଧ୍ୟେ ନେଇ ଦେଲା ଠାବ କରି ।
ନକୁଳ ଉଦ୍ଧାର କରି ଆଣିଲାକ ତହୁଁ
ମୂର୍ଖ ସ୍ୱଭାବ ବହି ତୁ ଏଡ଼େ ଗର୍ବ ବହୁ ।
ଦ୍ରୁପଦ ରାଜାର ଜାଣୁଟିକି ଯେତେ କଥା
ଏକା ଭୀମସେନ ଦେଲା ତୋତେ ଯେ ଅବସ୍ଥା
ବିନା କାର୍ଯ୍ୟେ ଆମ୍ଭେସିନା ରକ୍ଷାକଲୁତୋତେ
ନିର୍ଲ୍ଲଜ ପ୍ରାଣକୁ ଘେନି କହୁଛୁ ତୁ କେତେ ।
କାମ୍ୟକ ବନର କଥା ମନେ ଅଛିଟିକି
ଭୀଷ୍ମ ଦ୍ରୋଣ କର୍ଣ୍ଣ ଶଲ୍ୟ ସର୍ବେ ନ ଥିଲେକି
ସେକାଳେ ସକଳେ ଛାଡ଼ି ପଳାଇଲେତୋତେ
ଆକାଶେ ବନ୍ଧନ କରିନେଲା ଚିତ୍ରରଥେ ।
ଶତ୍ରୁପଣକୁ ଛାଡ଼ିଲି ତୋର କଷ୍ଟ ଦେଖି
ଗନ୍ଧର୍ବେ ଯୁଝିଲି ମୁହିଁ ପ୍ରୀତିକୁ ଉପେକ୍ଷି ।
ତୁହି ଯେବେ ବୋଇଲୁରେ ପଶାଖେଳ କଥା
ମୂର୍ଖପଣେ ପିଲାକଥା କହୁ ତୁ ସର୍ବଥା ।
କପଟପଶା କରି ତୁ ଭିଆଇଲୁ ଜୁତ
ଅଯୋଗେ ଜିଣିଲୁ ତୁହି କରି ଦୁଷ୍ଟମିତ ।
ସେ ପଶା ଖେଳରେ ତୋହ ବୁଦ୍ଧି ଅଛିବୁଝି
ଆଜି ଦୁହେଁ ଖେଳିବା ସେ ପଶା ରଣମଝି ।
ସେ ପଶା ଖେଳରେ ହେ ଯେହୁ ପାରେ ଜିଣି
ତାର ମହିମା ଜଗତେ ହୋଇବ ବଖାଣି ।
ଜନମ କାଳରୁ ଜାଣୁ ତୁ କୂଟ କପଟ
ଭିଆଇଲୁ ଜତୁଗୃହ ଘୃତ ଛଣପଟ ।
ପୁରୋଚନକୁ ପେଶିଲୁ ଦେବାପାଇଁ ଜୁଇ
ସେ ବ୍ରାହ୍ମଣ ନାଶଗଲା ଆମ୍ଭେ ଗଲୁ ଜୀଇ ।
ପୁରୋଚନ ପଣ୍ଡା ମଲା ତୋହର ବିଶ୍ୱାସେ
ତାର ବଂଶ ନାଶଯିବ ବ୍ରହ୍ମହତ୍ୟା ଦୋଷେ ।
ବିଶ୍ୱାସଘାତକ ହୋଇ ବଞ୍ଚେ ଯେଉଁ ପ୍ରାଣୀ
ତାର ଜୀବନ କି ଜୀବଲୋକ ମଧ୍ୟେ ଗଣି ।
ଆପଣେ ତ ବଡ଼ପାପୀ ପରକୁ ଝିଙ୍ଗାସ
ଦେଖନ୍ତୁ ସମସ୍ତେ ପଶାଖେଳ ଭାଇ ଆସ ।
ଦୁର୍ଯ୍ୟୋଧନ ବୋଇଲେରେ ଶୁଣ ତୁ କିରୀଟି
ଯୁଦ୍ଧ ସଜ୍ଜରେ ପାଇବା କାହିଁ ପଶାକାଠି ।
ପଶାକାଠି ପଶାସାର ଏ ଠାବରେ ନାହିଁ
କିପରି ଖେଳିବା ପଶା ଏହି ରଣଭୂଇଁ ।

ଅର୍ଜ୍ଜୁନ ବୋଇଲେ ତୁମ୍ଭେ ଶୁଣ ମହାରାଜ
ଆମ୍ଭେ ତୁମ୍ଭେ ବିନ୍ଧାବିନ୍ଧି ହୋଇବା ନାରାଚ ।
ନାରାଚମାନ ହୋଇବ ତହୁଁ ପଶାକାଠି
ପଶାସାର ହେବ ସେନାପତି ମୁଣ୍ଡଗୋଟି ।
ଏରୂପ ପଶା ଖେଳିବା ଆହେ ଦୁର୍ଯ୍ୟୋଧନ
ହାରିବା ଜିଣିବା ଏଥେ ବୁଝିବା ରାଜନ ।
ଏ ପଶାରେ ଜିଣିଲେ ତୁ କର ରାଜ୍ୟଭୋଗ
ଯେ ହାରିବ ସେ କରିବ ସର୍ବ ପରିତ୍ୟାଗ ।
ତୋ ସମାନ ଶିର ଯେବେ ପଡ଼ିବଟି ଲୋଟି
ସେ ହାଦେ ହୋଇବ ପୁଣି ପଶାସାରଗୋଟି
ସମର କରିବା ପାଇଁ ବୋଲନ୍ତି ଅର୍ଜ୍ଜୁନ
ଶୁଣି ତାହା କୋପାନଳ ହେଲା ଦୁର୍ଯ୍ୟୋଧନ ।
ଧନୁଶରକୁ ବେଗରେ ଧରି ଧାର୍ତ୍ତରାଷ୍ଟ୍ରି
ଅର୍ଜ୍ଜୁନ ଉପରେ ଶର କେତେ କଲା ବୃଷ୍ଟି ।
ଗୁଣରେ କେତେକ ପୁଣି ବସାଇଣ ବାଣ
ଅରଜୁନ ଉପରକୁ ବିନ୍ଧେ କୁରୁରାଣ ।
ପୁଣି ବେନିଶତ କାଣ୍ଡ ଗୁଣରେ ପୁରା ।
ଆକର୍ଷଣ ବେଳୁଁ ବେଳ ମୋର କୁରୁସାଇଁ ।
ଉତ୍ତର ବୋଲେ ନାରାଚ ବକ୍ଷରେ ପଡୁଛି
କେମନ୍ତ ସହିଛୁ ତୁହି ମୋ ହେଦ କମ୍ପୁଛି ।
ଅର୍ଜ୍ଜୁନ ବୋଇଲା ରହୁ ପରକାର୍ଯ୍ୟ ବୋଲି
କେମନ୍ତେ ବଧ କରିବି ବିସର୍ଜି ରହିଲି ।
ଉତ୍ତର ବୋଲେ ତ୍ରିଗର୍ତ୍ତ ପଳାଇଣ ଗଲା
ମାନଗୋବିନ୍ଦରେ ଯାଇ ଶରଣ ପଶିଲା ।
ତାର ନିମନ୍ତେ ଅଇଲା ଯୁଦ୍ଧେ କୁରୁରାଣ
ଆମ୍ଭେ ତୋହର ଚରଣେ ପଶିଲୁ ଶରଣ ।
ଶରଣବତ୍ସଳ ନାଥ କର ତୁ କାରଣ
ନାରାଚକୁ ବିନ୍ଧି ମୋତେ ନ ଦିଅ କଷଣ ।
ଉତ୍ତର ବିକଳ ଦେଖି ପାର୍ଥ କଲା କୋପ
ଯଷ୍ଟି ପ୍ରହାରନ୍ତେ ଯେହ୍ନେ ଗର୍ଜେ କାଳସର୍ପ ।
କୋପଭର ହୋଇଣ ସେ ବୀରବର ପାର୍ଥ
ଦ୍ରୋଣ ଗୁରୁଙ୍କୁ ସୁମରି ଧନୁ ଧରି ହାତ ।
ଦ୍ରୋଣ ବୋଇଲେକ ବୃଥା ଆଶୀର୍ବାଦନୋହୁ
ଏ ପଞ୍ଚ କଟକେ ଧର୍ମଶୁତ ରାଜା ହେଉ ।
ଗୁଣ ଟଙ୍କାରିଲେ ପାର୍ଥ କେଶବ ସୁମରି
ଭୀଷ୍ମ ଦ୍ରୋଣ ଭୂରିଶ୍ରବା ପ୍ରଣିପାତ କରି ।
ମନେ ମନେ ବୀର ଧର୍ମରାଜାଙ୍କୁ ସୁମରି
ବିନ୍ଧେ ନାରାଚ ବାରୁଣ ଅସ୍ତ୍ରକୁ ସେ ଧରି ।
ଧନୁଶର ତେଜି କିବା ବିଜୁଳିକୁ ତ୍ରାସେ
କୁଳୁକୁଳା'ପୋକ ଯେହ୍ନେ ଉଡ଼ନ୍ତିଆକାଶେ
ସେହି ସ୍ୱରୂପରେ ଶୂନ୍ୟେ ନାରାଚାର ଗତି
ଦେଖିଣ ପ୍ରଶଂସା କଲେ ଭୀଷ୍ମ ମହାରଥି ।
ରୋଷଭରେ ପଞ୍ଚଶର ମାରେ କୁନ୍ତୀସୁତ
ସ୍ନେହା ଫୁଟିଣ ସାରଥି ହେଲା ମୂର୍ଚ୍ଛାଗତ ।
ପୁଣିହିଁ ଚାରି ଶରକୁ ପାର୍ଥ କଲା ଭେଦ
କୁରୁପତି ଚାରିଅଶ୍ୱ ଶର ହେଲା ଭଦେ ।
ଶତେକ ନାରାଚ ପୁଣି ବିନ୍ଧିଲେ କିରୀଟି
ଛଇଛାଡ଼େ ଦୁର୍ଯ୍ୟୋଧନ ରଥ ଗଲା ଫୁଟି ।
ରଥପିଡ଼ା ଯୋଜନେକ ଅନ୍ତରେ ପଡ଼ିଲା
କୁରୁବୀର ତେଣୁକରି ବିରଥ ହୋଇଲା ।
ଦୁର୍ଯ୍ୟୋଧନର ଅବସ୍ଥା ଦେଖି ଦୁଃଶାସନ
ଦୁର୍ଜ୍ଜୟ ଦୁର୍ବାର ପୁଣି ଦୁରାଳ ଦୁକର୍ଣ୍ଣ ।
ଏ ରୂପେ ଅନେଶ୍ୱତ ଭାଇ ଥିଲେ ପାଖେ
ସହାୟ ହୋଇ ଅର୍ଜ୍ଜୁନ ଶରବିନ୍ଧେ ଲକ୍ଷେ ।
ଶତ ସହୋଦର ରଣ କରିବାକୁ ଦେଖି
ବିନ୍ଧିଲେ ଯେ ଫାଲଗୁନି ଉପ୍ରୋଧ ଉପେକ୍ଷି ।
ଅନେଶ୍ୱତ ଭ୍ରାତାଙ୍କୁ ସେ ପଞ୍ଚାଶତ ବାଣ
ବିନ୍ଧିଲେ ସେ ଧନଞ୍ଜୟ ଗୁଣ ଆକର୍ଷିଣ ।
ହୟ ସାରଥି କାହାର ସେହ୍ନା ଗଲା ଫୁଟି
ଅସାଷ୍ଟମେ ପଡ଼ିଗଲେ ସର୍ବ ମହୀଲୋଟି ।
ଦୁର୍ଯ୍ୟୋଧନ ପୁଣି ଏକ ହସ୍ତୀରେ ଆରୋହୀ
ଅର୍ଜ୍ଜୁନ ଉପରେ ଶରବୃଷ୍ଟି କଲା ନେଇ ।
ତାହା ଦେଖି ଅରଜୁନ ପ୍ରହାରିଲେ ଶର
ଶରାଘାତେ ଭୂମିଗତ ହେଲା ହସ୍ତୀବର ।
ଦେଖି ହସ୍ତୀ ପଡ଼ିଗଲା ଯହୁଁ ଶର ଘାଏ
ପାଦଗତିରେ ପଳାଏ ତହୁଁ କୁରୁରାୟେ ।
ଅର୍ଜ୍ଜୁନ ଡକାଇ ଦୁର୍ଯ୍ୟୋଧନ କଷ୍ଟ ଦେଖି
ରହ ରହ କିମ୍ପା ଯାଉ ସମର ଉପେକ୍ଷି ।
କୂଟ ପଶାଖେଳ ପ୍ରାୟେ ମଣିଥିଲୁ ରଣ
ନିସତ ହେଲେ କି ଏଥୁ ଘେନିଯିବୁ ପ୍ରାଣ ।
ଉତ୍ତର ବୋଇଲା ଅବସର ହୋଇଅଛି
ବିନ୍ଧ ନାରାଚ ତାହାକୁ ଏବେ ବାଛି ବାଛି ।
ଅର୍ଜ୍ଜୁନ ବୋଲଇ ଧର୍ମ ନ ଜାଣୁ ବୀରାଟି
ନିସତ ଯୋଦ୍ଧାଏ ସିନା ରଣେ ଦ୍ୟନ୍ତି ପିଠି ।
ତାଙ୍କୁ ମାଇଲେ ଆପଣା ଧର୍ମେ ହୁଏ ଦୋଷୀ
ସୁସ୍ଥ ହୋଇ ପୁଣି ସେହୁ ଯୁଦ୍ଧ କରୁ ଆସି ।
ଏହାକହି ଅରଜୁନ ତାକୁ ଦେଲେ ଛାଡ଼ି
କହନ୍ତି ଶାରଳାଦାସ କୃଷ୍ଣପାଦେ ପଡ଼ି ।

—●—

## କର୍ଣ୍ଣ ଅର୍ଜ୍ଜୁନଙ୍କ ଯୁଦ୍ଧ

କହନ୍ତ ଅଗସ୍ତି ମୁନି ଆହେ ନୃପରାଣ
କର୍ଣ୍ଣ ଅର୍ଜ୍ଜୁନଙ୍କ ଯୁଦ୍ଧ ବିବରଣ ଶୁଣ ।
ଦୁର୍ଯ୍ୟୋଧନ ପଳାଇବା ଦେଖି ବୀରକର୍ଣ୍ଣ
ଲକ୍ଷେ ଯୋଦ୍ଧା ଘେନିଆଗେ ଓଗାଳେବହନ ।
ଆରେରେ ପାଣ୍ଡବ ଆଜି ଯିବୁ ତୁହି କାହିଁ
ସମସ୍ତେ ମଲେଣି ତୁହି ଏକା ଅଛୁ ଜୀଇଁ ।
ବଳେ କିମ୍ପା ଏଥେ ଆସି କାଳସର୍ପ ଚାଳୁ
ଯାର ପଣେ ବାରାନିଧି ହୋଇଯାଏ ଚଳୁ ।
ବିରାଟ ନଗରେ ଥାଇ ହୋଇଲ ଭିକ୍ଷାଷୀ
ପରକାର୍ଯ୍ୟେ ଆପଣାର ଶତ୍ରୁ ଲୋଡୁ ଆସି ।
ଅର୍ଜ୍ଜୁନ ବୋଇଲେ ତୁମ୍ଭେ ଶୁଣ ବୀରକର୍ଣ୍ଣ
ବିରାଟ ରାଜ୍ୟରେ ଆମ୍ଭେ ହୋଇଲୁ ଗୋପନ
ମାୟାରୂପ ଧରି ତାର ନଗରେ ରହିଲୁ
ରାଜାର ବଚନେ ବ୍ୟାଘ୍ର ମାଲ ବଧକଲୁ ।
ଯେଉଁ କୀଚକର ଶତସିଂହ ପରାକ୍ରମ
ଦ୍ରୌପଦୀ ନିମନ୍ତେ ତାକୁ ବଧ କଲା ଭୀମ ।
କ୍ଷଣ କ୍ଷଣକରେ କ୍ରୋଧ ବହି ବୃକୋଦର
ଶତଭ୍ରାତାଙ୍କୁ ତାହାର ପୋଡ଼ିଲେ ଅଗ୍ନିର ।
ତାହା ଶୁଣିଣ ତ୍ରିଗର୍ତ୍ତ ଗଲା ଥାଟ ଘେନି
ମୁହୂର୍ତ୍ତରେ ମାଇଲେ ସେ ତ୍ରିଗର୍ତ୍ତ ସଇନି ।
ବିରାଟକୁ ବନ୍ଧନରୁ ମୁକୁଳାଇ ଦେଲେ
ତ୍ରିଗର୍ତ୍ତର କେଶଧରି ରାଗେ ଘେନିଗଲେ ।
ଅଜାତଶତ୍ରୁ ଅଟନ୍ତି ଦେବ ଧର୍ମବଳା
ଛାଡ଼ିଦେଲେ ତ୍ରିଗର୍ତ୍ତକୁ ବେଗେ ପଳାଇଲା ।
ରାକ୍ଷସମାନେ ପଶି ଯେ ନ ପାରିଲେ ସୀମା
ବିରାଟ ରାଜ୍ୟରେ କଲୁ ଏମନ୍ତ ମହିମା ।
ଯେତେ ସୈନ୍ୟ ଘେନି ତୁମ୍ଭେ ଆସିଅଛତାହିଁ
ଜଣେହେ କେହି ନଯିବ ଏଥୁ ପ୍ରାଣପାଇ ।
ଆସିବାବେଳ ତୁମ୍ଭର ଅଟେ ସୁବିଧାନ
ଏ ସମୟେ ନାହାନ୍ତି ତ ବୀର ଭୀମସେନ ।
ଜଣେ କି ଜୀଇଣଥାନ୍ତା ତୁମ୍ଭେ ଏତେବେଳେ
ଅଷ୍ଟାଦଶ ଅକ୍ଷୌହିଣୀ ଲୋଟନ୍ତେ ସେ ତଳେ
ଅର୍ଜ୍ଜୁନର କାଟୁବାକ୍ୟ ଶୁଣି ମହାଯୋଦ୍ଧା
ଅବିଚ୍ଛିନ୍ନେ ନାରାଚକୁ ସେ ରୋଷରେ ବିନ୍ଧି
ଦେଖି ଅରଜୁନ ବୀର କରେ ପରିତାଳ
ବେଳୁବେଳ ଲାଗିଲା ସେ ଅପ୍ରମିତ ରୋଳ ।
ଶତେକ ନାରାଚ କର୍ଣ୍ଣ ବିନ୍ଧିଲାକ ଟାଣି
ପାଞ୍ଚଶର ଅରଜୁନ ପେଷି ତାହା ଶୁଣି ।
ବେନିଶତ ନାରାଚକୁ କର୍ଣ୍ଣ ପୁଣି ବିନ୍ଧି
ଦ୍ୱାଦଶ ବାଣେ ଅର୍ଜ୍ଜୁନତାକୁ ଦେଲେ ଛେଦି
ଶତେକ ନାରାଚ କୋପେ ବିନ୍ଧେ ବୀର କର୍ଣ୍ଣ
ବିଂଶବାଣେ ଛେଦିଲା ତା ବାସବ ନନ୍ଦନ ।
ପୁଣିହିଁ ଦୁଇ ସହସ୍ର ଶତ କର୍ଣ୍ଣ ପେଷି
ପଞ୍ଚଦଶ ନାରାଚରେ ପାର୍ଥ ତାହା ଧ୍ୱଂସି ।
ବୋଲେ ରହି କର୍ଣ୍ଣଦେଖ ମୋହର ସମର
ଏତେବୋଲି କୋପେ ପୁଣି ପ୍ରହାରିଲେ ଶର
ତୀକ୍ଷ୍ଣମୁନା ନାରାଚକୁ ପେଷି ମହାବଳୀ
କର୍ଣ୍ଣ ରଥ ଶତେଖଣ୍ଡ ହୋଇଗଲା ଧୂଳି ।
ଆରେକ ରଥରେ ବେଗେ ଆରୋହିଣ କର୍ଣ୍ଣ
ଅୟୁତେ ନାରାଚ ବୀର କରିଲା ସନ୍ଧାନ ।
କୋପେ ଶର ବିନ୍ଧିଲା ଯେ କୁନ୍ତୀଦେବୀ ସୁନୁ
ନାରାଚ ସହିତେ ଛେଦି ପକାଇଲା ଧନୁ ।
ଧନୁଶର ଛେଦିଦ୍ୟନ୍ତେ କର୍ଣ୍ଣ ରଥ ଛାଡ଼ି
ଖଡ଼ଗ ଘେନିଣ କରେ ରଥୁ ଡେଇଁପଡି ।
କଉତୁକରେ କି ସିଂହ ଖେଳେ ମଞ୍ଚପୁରୀ
ତେସନ ହୋଇଣ ବୀର ଗର୍ଜ୍ଜେ ଅସ୍ତ୍ରଧରି ।
ଅସିପତ୍ରେକ ଘେନିଣ ଧାଏଁ ବୀରକର୍ଣ୍ଣ
ହାବୁଡ଼ା ଶରେକ ବେଗେ ମାଇଲେ ଅର୍ଜ୍ଜୁନ
ଘାତପାଇ କର୍ଣ୍ଣବୀର ପଡ଼େ ମହୀଲୋଟି
ପାର୍ଥ ଶରାଘାତେ ସେହୁ ନ ପାରଇ ଉଠି ।
କର୍ଣ୍ଣକୁ ଛାଡ଼ି ଅର୍ଜ୍ଜୁନ ରଥ ନେଲା ବାହି
ଦେଖିଲେ କର୍ଣ୍ଣର ଯୋଦ୍ଧାମାନେ ଛନ୍ତିରହି ।
ଚୋଖାର ତୁରଗ ଚଢ଼ିଛନ୍ତି ସର୍ବବୀରେ
ନବନିଶି କୁନ୍ତମାନ ଝଲକାନ୍ତି କରେ ।
ଆରେ ଆରେ ପାର୍ଥ ବୋଲି ଓଗାଳନ୍ତି ଆସି
ଲକ୍ଷେ ଲକ୍ଷେ ନାରାଚକୁ କୋପେଦେଲେପେଷି
ଦୂରରେ ଥାଇଣ ବୀର ଦେଖିଲାକ ତାହା
ଲକ୍ଷେ ନାରାଚ ବିନ୍ଧିଲେ ସୁଭଦ୍ରାଙ୍କ ନାହା ।
ନିର୍ଘାତ ପଡ଼ନ୍ତେ ସର୍ବ ଦେହ ଗଲା ଫୁଟି
ଲକ୍ଷେ ଯୋଦ୍ଧା ଥରକରେ ଗଲେ ମହୀଲୋଟି
ରୁଧିରେ ଲେପନ ହୋଇ ଛାଡ଼ନ୍ତି ବୋବାଳି
ଯେସନେକ ସନ୍ଧ୍ୟାକାଳେ ଦିଶେ ଅଂଶୁମାଳି ।
ଗୁଣସାଗର କ୍ଷତ୍ରିୟ ଅଟନ୍ତି ବିବସ୍ୱ
ଏକା ପ୍ରହାରେ ପଡ଼ିଲେ ସୈନ୍ୟ ବେନିଲକ୍ଷ ।

କର୍ଣ୍ଣକୁ ପରାସ୍ତ କରି ବୀର ଧନଞ୍ଜୟ
ବିହାର କରନ୍ତି ତହିଁ ହୋଇଣ ନିର୍ଦ୍ଦୟ ।
ଜୟ ଜୟ ଧନଞ୍ଜୟ ଶ୍ରୀକୃଷ୍ଣଙ୍କ ସଖା
ଆଶ୍ରୟ କରିଛି ଦେବ ତୁମ୍ଭଙ୍କୁ ମୁଁ ଏକା ।
ତୁମ୍ଭ ଶ୍ରୀଚରଣେ ମୁହିଁ ପଶୁଛି ଶରଣ ।
ଶାରଳା ଦାସ କହଇ ଘେନ ନିବେଦନ ।

—●—

## ଅର୍ଜ୍ଜୁନଙ୍କ ସହିତ କୁରୁସୈନ୍ୟଙ୍କର ଗୋଳଯୁଦ୍ଧ, ମୋହନାଶର ପ୍ରୟୋଗ ଏବଂ କୁରୁସୈନ୍ୟଙ୍କର ଲାଞ୍ଛନା

ଏଥୁ ଅନନ୍ତରେ ତୁମ୍ଭେ ଶୁଣ ନୃପରାଣ
ବେଳୁବେଳ ଅର୍ଜ୍ଜୁନଙ୍କ ଯୁଦ୍ଧ ହେଲା ଟାଣ ।
ବିହରନ୍ତି ଅରଜୁନ ଥାଟର ଭିତର
ପୁଣି ଆବୋରିଲା ରାଜା ଦୁର୍ଯ୍ୟୋଧନ ବୀର ।
ଶାଲ୍ୟ ବାହ୍ଲୀକ ଯେ ଜୟଦ୍ରଥ କୃପବ୍ରହ୍ମା
ଶକୁନି ସମଦତ୍ତ ଯେ ପୁଣି ଅଶ୍ୱତ୍ଥାମା ।
ଏହି ଷଡ଼ ଯୋଦ୍ଧା ଘେନି ମାନଚକ୍ରବର୍ତ୍ତୀ
ଅର୍ଜ୍ଜୁନ ଛାମୁରେ ଆସି ମିଳିଲା ତଡ଼ତି ।
ଅମୃତ ବିବାଦେ ଯେହ୍ନେ ସିଂହକାର ସୁତ
ସେହିପରି ହୋଇ ଦିଶୁଅଛନ୍ତି ସମସ୍ତ ।
ଏକାବେଳକେ ସହସ୍ର ବାଣମାନ ଯୋଚି
କୋପମୁଖ ହୋଇକରି ବିନ୍ଧେ ସବ୍ୟସାଚୀ
ଷଡ଼ ଯୋଦ୍ଧାଙ୍କ ସମର କହିତ ନ ପାରି
ଯେସନେ ଘୋଟି ଆସଇ ସମୁଦ୍ର ଲହରୀ ।
ଅସ୍ତ୍ରେ ପ୍ରତିଅସ୍ତ୍ରେ କରି ଅର୍ଜ୍ଜୁନ ବିନ୍ଧଇ
କଉରବ ସୈନ୍ୟ ସଙ୍ଗେ ଏକା ସେ ଯୁଝଇ ।
କୋପଭରରେ ନାରାଚ ବିନ୍ଧେ ଅପ୍ରମିତ
ଲକ୍ଷ ଲକ୍ଷ କୋଟି କୋଟି ନ ଯାଇ ଗଣିତ ।
ଜ୍ୱାଳାବଳି ନାରାଚକୁ ବିନ୍ଧି ବୀର ପାର୍ଥ
ଶଲ୍ୟ କର୍ଣ୍ଣ ଆଦିଙ୍କର ଛେଦିଲା ସେ ରଥ ।
ଅଶ୍ୱତ୍ଥାମା ଯାଇ ଦ୍ରୋଣ ରଥରେ ଉଠନ୍ତି
ଭୀଷ୍ମ ରଥରେ ଡେଇଁଣ ବସେ କୁରୁପତି ।
ରାଜାକୁ କୋଳରେ ଧରି ଗଙ୍ଗାଙ୍କ ନନ୍ଦନ
ବୋଇଲେ ଆମ୍ଭର ବୋଲ ନ କଲୁ ରାଜନ
ଦୁଷ୍ଟଙ୍କ ବୋଲେ ଅଇଲୁ ତୁହି ଦଣ୍ଡ ଘେନି
ଅକାର୍ଯ୍ୟେ ସୈନ୍ୟ ସମ୍ପତ୍ତି ହରାଉ ନୃମଣୀ
ଦୁର୍ଯ୍ୟୋଧନ ବୋଇଲା ମୁଁ ଜାଣି ନ ପାରିଲି
ଛାଡ଼ ଗୋଧନ ପଲଙ୍କୁ ଏବେ ଯିବା ଚାଲି
ଭୀଷ୍ମ ବୋଇଲେ ଉଭୟ କୁଳର ସଂଗ୍ରାମ
ଯୁଝିଲେ ଆଜ ଦିଶିବ ସିନା ପରାକ୍ରମ ।
ରହିଣ ଯୁଦ୍ଧ କରିବା ସର୍ବେ ଏକ ହୋଇ
ଏକାହିଁ ବିବସ୍ତ ସିନା କେବଳ ଅଛଇ ।
ବୋଇଲେ ପାଣ୍ଡବମାନେ ହେଲେ ମହାସିଦ୍ଧା
ବନରେ ଥାଇ ପାଇଲେ ପୁଣି ବ୍ରହ୍ମବିଦ୍ୟା ।
ନିର୍ବାତ କବଚ ବଧକଲେ ସ୍ୱର୍ଗବାସେ
ବହୁତ ସମର ହେଲା ଅମରଙ୍କ ରୋଷେ ।
ହେ ଦ୍ରୋଣ ଶିଷ୍ୟ ବୋଲିଣ ଅଛକି ବିଚାରି
ଯାହା ସଙ୍ଗରେ ଈଶ୍ୱର ରଣେ ଗଲେହାରି
ଦ୍ରୋଣ ବୋଇଲେ ବୁଝିବା ତାର କ୍ଷତ୍ରିବୃତ୍ତ
କିସ କିସ ନାରାଚକୁ ହୋଇଛି ପ୍ରପାତ ।
ଅର୍ଜ୍ଜୁନ ବୋଲେ ଉତ୍ତର ଭୀଷ୍ମ ଦ୍ରୋଣେଚାହିଁ
ଦୁର୍ଯ୍ୟୋଧନ ଅଛି ଯହିଁ ରଥ ବାହା ତହିଁ
ବଡ଼ ଦୁରାପଦ ଆଜ ହୋଇବ ସମର
ନ ପୁଣି ରହି ନ ପାରୁ ତା ରଥ ଉପର ।
ଦମ୍ଭେ ବାଗ ଡୋର ଘେନିଥିବୁ ତୋର ହସ୍ତ
ମୁଁ ନାଶ କରିବି ନିଶ୍ଚେ କୌରବ ସମସ୍ତ ।
ଶୁଣିବାହେ ତରୁଙ୍ଗମ କୁମର କିରାଟୀ
ଭୀଷ୍ମ ଦ୍ରୋଣଙ୍କ ସନ୍ନିଧେ ନନ୍ଦିଘୋଷ ଭେଟି
ଯେଉଁ ରୂପେ ବନଅଗ୍ନି ବନ ଦିଏ ଚାଟି ।
କୌରବଙ୍କ ନନ୍ଦିଘୋଷ ଯେହ୍ନେ ଯାଏଘୋଟି
ଛାମୁରେ ଅର୍ଜ୍ଜୁନ ବୀର କରଇ ସମ୍ଭାଷ
ଦେଖିଣ ଭୀମେ ପାଇଲେ ମନେ ମହାରୋଷ
ଲାଘବ ଶର ଘେନିଣ ପେଷିଲେ ଫାଲଗୁନି
ଭୀଷ୍ମଙ୍କ ଚରଣେ ଥାଇ କରଇ ଦଇନୀ ।
ଗଙ୍ଗାଙ୍କ ନନ୍ଦନ ଦେଖି ଛାଡ଼ିଲେ ଉପ୍ରୋଧ
କାଳାନ୍ତକ ରୂପ ଧରି ଆରମ୍ଭିଲେ ଯୁଦ୍ଧ ।
ରାଗେ ଅର୍ଦ୍ଧଚନ୍ଦ୍ର ବାଣ ଘେନି ଗଙ୍ଗାସୁତ
ସନ୍ଧାନ କରି ପାର୍ଥକୁ ବିନ୍ଧିଲେ ତୁରିତ ।
ତ୍ରୟୋଦଶ ଶର ପୁଣି ଗୁଣରେ ବସାଇ
ଆକର୍ଷି କୋପେ ବିନ୍ଧିଲେ ଭୀଷ୍ମ ବୀର ଧାଇଁ
ଭୀଷ୍ମ ଅଟନ୍ତି ପ୍ରତିଜ୍ଞାବନ୍ତ ମହାକ୍ଷତ୍ରୀ
ବ୍ରହ୍ମାଣ୍ଡ ଜିଣି ପାରନ୍ତ ଏକା ସେହି ରଥୀ ।
ହସ୍ତବ୍ୟଗ୍ରତା ତାଙ୍କର କହି ତ ନପାରି
ପବନହୁଁ ଗତି ବେଗେ ନାରାଚ ପ୍ରହାରି ।
ବାଜିଲାକ ରଣଗୋଳ ଅତି ପ୍ରବଳରେ
ନିଦାଘ ବାଣ ଧଇଲା ଅର୍ଜ୍ଜୁନ କରରେ ।

ପେଶନ୍ତେ ଶତେକ ବ୍ୟାଘ୍ରଥିଲେ ଭୀଷ୍ମ ରଥେ
ସର୍ବେ ପଡ଼ିଲେ ଅର୍ଜ୍ଜୁନ ବୀର ଶରାଘାତେ ।
ମଳୟ ବସନ୍ତ ନାମ ଭୀଷ୍ମଙ୍କ ସାରଥି
ଅର୍ଜ୍ଜୁନର ଶରାଘାତେ ମୋହରେ ପଡ଼ନ୍ତି ।
ପୁଣି ବିନାଶେ ନାରାଚ ପାର୍ଥ ବିନ୍ଧେ ଟାଣି
ମହାବୀର ଭୀଷ୍ମ ରଥ ପକାଇଲେ ହାଣି ।
ତତକ୍ଷଣେ ଆରୋହିଲେ ଭୀଷ୍ମ ଅନ୍ୟ ରଥ
ପୁଣି ଘୋର ଯୁଦ୍ଧ ଆସି କଲେ ଉପଗତ ।
ଭୀଷ୍ମଙ୍କର ଅଭିମାନେ ଭରଦ୍ୱାଜ ଶିଷି
ପାଞ୍ଚଶତ ଯୋଦ୍ଧା ଘେନି ଓଗାଳିଲେ ଆସି
ଅଶୀ ଅର୍ବୁଦ ଯୋଦ୍ଧାଙ୍କୁ ଘେନି କୁରୁପତି
ସେ ମଧ ବେଢ଼ିଲେ ଆସି ଅର୍ଜ୍ଜୁନର କତି ।
ଦ୍ରୋଣ ବୋଇଲେ ହେ ତୁମ୍ଭେସର୍ବେରୁହରୁହ
ଅନୀତି ନ କର ବାବୁ ଯୁଦ୍ଧ ସହିଥାଅ ।
ଏକ ଲୋକସଙ୍ଗେ ବହୁଲୋକ ଯୁଦ୍ଧକଲେ ।
ଧର୍ମହାନି ହୁଅଇ ସେ ଅନ୍ୟାୟ କରିଲେ ।
କ୍ଷଣକ ସମର ତୁମ୍ଭେମାନେ ଦେଖ ରହି
ଯୋଦ୍ଧାକୁ ପ୍ରବୋଧକଲେ ଦ୍ରୋଣ ମିଷ୍ଟକହି ।
ଆର୍ଦ୍ରାବଳୀର ସମାନ ଦ୍ରୋଣ କରେଧନୁ
ପାର୍ଥ ନିକଟେ ମିଳିଲେ ଭରଦ୍ୱାଜ ସୁନୁ ।
ରଥେଥାଇ ପାର୍ଥକଲେ ଗୁରୁଙ୍କୁ ଦଇନୀ
ଦେଖି କଲ୍ୟାଣକରନ୍ତି ତାଙ୍କୁ ମହାମୁନି ।
ଅଧର ଚାପି ବୋଲନ୍ତି ଦ୍ରୋଣ ତାଙ୍କୁ କଥା
ଲୋକାଚାର କର୍ମକୁ ଯେ କରୁଛ ଅନ୍ୟଥା ।
ଆପଣା ରାଜ୍ୟକୁ ତେଜି ପଶିଲ କାନନ
ଅଜ୍ଞାତବାସ ଆମ୍ଭର ଅଛି ତିନିଦିନ ।
ଗୋଧନରପଲ ଆମ୍ଭେ ନେଉଛୁ ହସ୍ତିନା
ଆମ୍ଭେ ନେଇ ନ ପାରିଲେ ଅଟେତୋରସେନା ।
ଯଦ୍ୟପି ଦୁର୍ଗତିକାଳେ ବଞ୍ଚିଥିଲୁ ଦିନ
ପରପାଇଁ ସୋଦରରେ ହେଉଛ ବିମନ ।
ସମର ଦୁର୍ଭାରବୋଲି ଯାନ୍ତ ଏଥୁ ଘୁଞ୍ଚି
ଗୋଧନଗୁଡ଼ିଏ ପଥୁ ସୁଖେ ନ୍ୟନ୍ତୁ ବାଛି ।
ଅର୍ଜ୍ଜୁନ ବୋଇଲେ ତୁମ୍ଭେ ଅଟ ଆମ୍ଭ ଗୁରୁ
କ୍ଷତ୍ରୀୟ ବୃତ୍ତିକୁ ତାତ କିମ୍ପା ଦୋଷୀକରୁ ।
ବିରାଟରାଜା ସହିଲା ଆମ୍ଭର ଆର୍ଦ୍ଦୋଳି
କୀଚକ ମୁଳେ ମାଇଲୁ ଶତେ ମହାବଳୀ ।
ଯାହାକୁ ମାରିବା ତାତ ପୁଣ ତାକୁ ରଖି
ଶାସ୍ତ୍ରଯୋଗେ ଏସନକ ବିଚାରହିଁ ଲେଖି ।
ଏଥୁଘୁଞ୍ଚି ତୁମ୍ଭେମାନେ ଯାଅ ସୈନ୍ୟଘେନି
ଶରଣବତ୍ସଳ ବାନା ନାମ ମୋ ଫାଲଗୁନି ।
ଗୋରୁପଲଙ୍କ ନିମନ୍ତେ ପ୍ରାପ୍ତହେବ ଲାଜ
କଥାମାତ୍ରକ ରହିବ ନହୋଇବ କାର୍ଯ୍ୟ ।
ଦ୍ରୋଣ ବୋଇଲେ ତୁ ଏକା ସମରକରିଲେ
ଏ କୁରୁ ସାଗର ଜିଣି ପାରିବୁ କି ହେଳେ ।
ଅର୍ଜ୍ଜୁନ ବୋଇଲେ ଯାହା ବୋଲଏକାବୋଲି
ଏକା ଜଣକେ ସମୁଦ୍ର ମନ୍ଥିଥିଲା ବାଳୀ ।
ଦ୍ରୋଣ ବୋଲେ କୋଟିସିଂହ ପରାକ୍ରମୀବାଳି
ଲୌହ ବେନି ଗିରିଶୃଙ୍ଗ ପ୍ରାୟକରେତୋଳି ।
ତାହାକୁ କି ସମ ତୁହି ହେବୁ ଧନଞ୍ଜୟେ
ପାର୍ଥ ବୋଲେ ତା କହିଲେ କିସ ଅବାହୁଏ
ହେ ଦ୍ରୋଣ ବୋଲଇ କୁରୁସାଗର ସଇନ୍ୟ
ମୁଁ ଜାଣେ ସବୁରି ପ୍ରାଣ ମୋ ନାରାଚ ମୁନ
ବହୁତ ପ୍ରତିଜ୍ଞା ଶୁଣି କୋପେ ଦ୍ରୋଣଗୁରୁ
ଶତେ ନାରାଚ ପେଷିଲେ ପଚାରୁ ପଚାରୁ ।
ପୁଣି ଶତେଶର ଘେନି ଦ୍ରୋଣ ମହାରଥୀ
ମନ୍ତ୍ରିଣ ବିନ୍ଧନ୍ତେ ସେହୁ ଭେଦିଲା ସାରଥି
ପୁଣି କୋପରେ ପେଷଇ ଶତ ଶତଚାରି
ଚାରି ଅଶ୍ୱର ଉପରେ କୋପେଣ ପ୍ରହାରି ।
ଚାରିସହସ୍ର ବାଣକୁ ପେଶିଦେଲେ ଦ୍ରୋଣେ
ବେଗେ ନନ୍ଦିଘୋଷରଥେଭେଦେଚାରିକୋଣେ
ଅନିବାରଣ ଶରକୁ ଘେନି ଫାଲଗୁନି
ମନ୍ତ୍ରକରି ପେଷିଦେଲେ ତହୁଁ ସସ୍ତ୍ରତିନି ।
ଦ୍ରୋଣ ନାରାଚ ସମସ୍ତ ପକାଇଲେ ଛେଦି
ପୁଣି ଦ୍ରୋଣଗୁରୁ ଶତ ସହସ୍ରେକ ବିନ୍ଧି ।
ମହାଚକ୍ର କାଳଗିରି ପର୍ଶୁ ଆଦ୍ରାବଳୀ
ଏମନ୍ତ ସହସ୍ର ଶର ପେଶେ ଦ୍ରୋଣଭାଳି ।
ବିନ୍ଧନ୍ତେ ନଭେ ଅଦୃଶ୍ୟ ହେଲେ ଅଂଶୁମାଳି
ଯେଉଁ ରୂପରେ କୁହୁଡ଼ିଦିଶେ କୁମ୍ଭମାସେ
ସେହି ସଦୃଶେ ନାରାଚ ପଡ଼େ ଦଶଦିଶେ ।
ସମରେ ନିର୍ଭୟହୋଇ ପାର୍ଥ କରେ ଯୁଦ୍ଧ
ବିଚାରଇ ମନେ କିମ୍ପା କରିବି ଉପ୍ରୋଧ ।
ମସ୍ତକରେ ହାତଦେଇ କହେ ଫାଲଗୁନି
ଘୁଞ୍ଚିଯାଅ ଆହେ ଗୁରୁ ମୋହର ଦୟିନୀ ।
ବିନ୍ଧୁଅଛି ତୁମ୍ଭଅସ୍ତ୍ର ମୁହିଁ ଏତେବେଳେ
ଗୁରୁ ବ୍ରାହ୍ମଣ ବାରଣ ନଯାଇଟି ବେଳେ ।
ଦ୍ରୋଣ ବୋଇଲେ ଦେଖିବାତୋରକ୍ଷତ୍ରିବୃତ୍ତ
କିସ କିସ ନାରାଚକୁ ବିନ୍ଧିବୁ ତୁ ପାର୍ଥ ।
କ୍ଷତ୍ରିହୋଇ ଯେ ହୋଇବ ବଳହୀନ କାୟ ।
ତାହାର କିସ ବୋଲିବା ଜୀବନ ଉପାୟ ।

ଆଜହୁଁ ଶସ୍ତ୍ରକୁ ତାର ମୋର ଅଟେ କିସ
ବିଧାତା ଭିଆଣ ତୋର ଅସ୍ତ୍ରେ ମୋର ନାଶ ।
ଅର୍ଜ୍ଜୁନ ବୋଇଲେ ଗୁରୁ ଅଛଇ ପ୍ରସ୍ତାବ
ପ୍ରାଣତ୍ୟାଗ ହୋଇବାର ନୁହଇ ଏ ଠାବ ।
ଗୁରୁ ତୁମ୍ଭେ ଲୋଡୁଅଛ କାରଣ ନିମନ୍ତେ
ପରକାର୍ଯ୍ୟେ କିମ୍ବା ନାଶଯିବ ଅନିମିତ୍ତେ ।
କୁଭୂମି କୁସ୍ଥାନ ଏ ଯେ ନୁହଇ ସୁତୀର୍ଥ
ଏକମାତ୍ର ଅଛି ଏଠି ନନ୍ଦିଘୋଷ ରଥ ।
ସେ ରଥେ ସାରଥିହୋଇ ଦେବବାସୁଦେବ
କୁରୁକ୍ଷେତ୍ରେ ମହାଯୁଦ୍ଧ ଯେକାଳେ ହୋଇବ ।
ଲକ୍ଷେ ଦେଶର ତହିଁରେ ଥିବେ ଯେନରନ୍ଦ୍ରେ
ତହିଁରେ ମୃତ୍ୟୁ ଲଭିବେ ଯିବେ ଉର୍ଦ୍ଧ୍ୱପଦ ।
ଅକାରଣ ସ୍ଥାନରେ କି ମୁକ୍ତ ହେବ ଭଲେ
ସୁପୁରୁଷ ନାଶଯାନ୍ତି ସ୍ୱସ୍ଥାନ ପାଇଲେ ।
ଦ୍ରୋଣ ବୋଇଲେ ବାବୁରେତୋରମନଇଚ୍ଛା
ଅଗ୍ନିରେ ଝାସଦେବାକୁ କରୁଛୁ ତୁ ବାଞ୍ଛା
ଦ୍ରୋଣଙ୍କର ବଚନକୁ ଶୁଣି ସବ୍ୟସାଚୀ
କୋପକରିଣ ନାରାଚ ବିନ୍ଧିଲେ ଆମଞ୍ଚି ।
ନିଦାରୁଣ ବାଣଘେନି ମାରେ ଧନଞ୍ଜୟ
କାଳସର୍ପ କରି ଭେଦିଗଲା ଦ୍ରୋଣକାୟ ।
ରୁଧିରରେ ବିଲେପନ ଗୁରୁଙ୍କର ଅଙ୍ଗ
ଯେସନେକଶୋଭାଦିଶେ ପାଟର ଦେବାଙ୍ଗ ।
ଦ୍ରୋଣଙ୍କ ନିସତ ଦେଖି ତହୁଁ ରଥବାହି
ଦେଖିଲେ ସେ ଦ୍ରୋଣଙ୍କର ଅଙ୍ଗେ ଜ୍ଞାନନାହିଁ ।
ଥାଟ ଭିତରକୁ ବେଗେ ଗଲେ ସବ୍ୟସାଚୀ
ଦେଖେ ବହୁସେନା ଘେନି ଦୁର୍ଯ୍ୟୋଧନ ଅଛି ।
ଚେତି ଉଠୁଛନ୍ତି ମୋହଯିବା ଯୋଦ୍ଧାମାନେ
ଦେବଦତ୍ତ ଶଙ୍ଖ ତହୁଁ ଶୁଭେ ଯାଇ କର୍ଣ୍ଣେ ।
ଏବେ ଶୁଣ ଚଇତନ ସେ ଶଙ୍ଖ ମହିମା
ଏହିପରି ସୃଜିଛନ୍ତି ତାକୁ ଦେବ ବ୍ରହ୍ମା ।
ଶବ୍ଦ ଶୁଣି କ୍ଷତ୍ରୀମାନେ ହେଉଛନ୍ତି ମୋହ
ମୋହଗଲା ଯୋଦ୍ଧାମାନେ ପାଉଛନ୍ତି ଦେହ ।
ଏହିପ୍ରକାର ମହିମା ସେ ଶଙ୍ଖର ଗୁଣ
ମୋହଗଲା ଯୋଦ୍ଧାମାନେ ପାନ୍ତି ନିଜ ପ୍ରାଣ ।
ଭୀଷ୍ମ ଦ୍ରୋଣ କର୍ଣ୍ଣ ଶଲ୍ୟ ପୁଣି ଭୁରିଶ୍ରବା
ମୋହ ତେଜିଣ ଉଠିଲେ ସମସ୍ତ କୌରବା ।
ପୁଣି ନାରାଚ ଘେନିଣ ସମର ଆବୋରି
ବିନ୍ଧୁଛନ୍ତି ଅସ୍ତ୍ରମାନ କୋପଭର କରି ।
ଦୁର୍ଯ୍ୟୋଧନ ବୋଇଲେକ ନୁହ ଏକ ଏକ
ସମୁହେ ସମରକର ହୋଇ ଏକ ମୁଖ ।
ଧର୍ମ ଅଧର୍ମ ବୋଲିଣ ବିଚାର ନ କର
ସମସ୍ତେ ବେଢ଼ି ଏହାକୁ ବେଗେ ଆଜ ମାର
ରାଜାର ମୁଖରୁ ଏହି ପରକାର ଶୁଣି
ବେଢ଼ିଗଲେ ଯୋଦ୍ଧାମାନେ ଚନ୍ଦ୍ର ତାରାଜିଣି
ଧର୍ମଇଚ୍ଛାକରେ ପ୍ରାପ୍ତହେବା ବଡ଼ଦୁଃଖ
ଏକା ଜଣେ ସମସ୍ତଙ୍କୁ କଲାଣି ବିମୁଖ ।
ଯେସନେ ବନ ଭିତରରେ କେଶରୀ ଖେଳଇ
ସେହି ପ୍ରକାରେ ଅର୍ଜ୍ଜୁନ ସ୍ୱରୂପ ଦିଶଇ ।
ପାଞ୍ଚପରାର୍ଦ୍ଧ ରଥ ଯେ ନ' ପରାର୍ଦ୍ଧ ହସ୍ତୀ
ବତିଶ ପରାର୍ଦ୍ଧ ହୟ ବେଢ଼ି ଏକମୂର୍ତ୍ତି ।
ସେ ଏକ ଯୋଦ୍ଧାକୁ ସର୍ବେ କଲେ ଏକଦୃଷ୍ଟି
ଯାହାର ଯେତେକ ସୈନ୍ୟ କଲେ ଶରବୃଷ୍ଟି
କେ ଶତେକ ବାଣ ସେହୁ ସହସ୍ରେକ ବିନ୍ଧି
କେହୁ ଅୟୁତେ କେହୁ ଦ୍ୱିଲକ୍ଷବାଣ ସନ୍ଧି ।
ଆକାଶ ଅନ୍ଧାର ଦିଶେ ଉଲକାପାତ ମହୀ
ସାଧୁ ସାଧୁ ପାର୍ଥ ଏହା ତୋର ହୁଏ ସହି ।
ଆଷାଢ଼ରେ ମେଘ ଯେହ୍ନେ କରଇ ଗର୍ଜ୍ଜନ
ପବନୁ ବେଗେ ବିନ୍ଧନ୍ତିଯୋଦ୍ଧା ଶରମାନ ।
ଗାଣ୍ଡୀବ ଧନୁକୁ ଧରି ପାର୍ଥ ମହାବଳ
ଅସ୍ତ୍ରକୁ ଅସ୍ତ୍ରରେ କରୁଛନ୍ତି ପରିତାଳ ।
ଅର୍ଜ୍ଜୁନହିଁ ନଦିଶିଲେ ଉତ୍ତର ନେତ୍ରକୁ
ଉପରେ ଅର୍ଜ୍ଜୁନ ଡାକିଦିଅଇ ତାହାକୁ ।
ନାରାଚକୁ ବିନ୍ଧୁ ବିନ୍ଧୁ ଡାକେ ଧନଞ୍ଜୟ
ରହିଥାଅ ଉତ୍ତର ତୁ ହୋଇଣ ନିର୍ଭୟ ।
ଉତ୍ତର ବିଚାରେ ରଥଦଣ୍ଡେ ବସିଥାଇ
ଧନୁ ଘୋଷ ନଶୁଭଇ ପାର୍ଥ ରଥେ ନାହିଁ ।
ତିନିପୁର କମ୍ପେ ଦେବଦତ୍ତ ଶଙ୍ଖନାଦେ
ଯୋଦ୍ଧାଏ ସ୍ତବଧହୋନ୍ତି ତାହାର ଶବଦେ
ଉତ୍ତର ଚିନ୍ତେ ପଳାଇଗଲା ଅରଜୁନ
ପାର୍ଥ ଚିନ୍ତେ ରଥେ ନାହିଁ ବିରାଟନନ୍ଦନ ।
ଅର୍ଜ୍ଜୁନ ଶର ଯୋଦ୍ଧାଙ୍କୁ ହୁଏ ଅଗୋଚର
ଏହିମତେ ଅକଳିତ ହେଉଛି ସମର ।
କକଡ଼ା ମାସର ବୃଷ୍ଟି ପ୍ରାୟ ଶର ପଡ଼ି
ଉତ୍ତରକୁ ଅଦୃଶ୍ୟ ଯେ ହେଲେ ହୟଚାରି ।
ଅଶ୍ୱମାନେ ଅଛନ୍ତି କି ନାହିଁ ମୋରରଥେ
ବିରାଟ ସୁତ ଦରାଣ୍ଡେ ତାଙ୍କୁ ବେନି ହସ୍ତେ ।
ଉତ୍ତର କର ଲାଗିଲା ଅଶ୍ୱଙ୍କ ଉପରେ
ମହାତେଜେ ଅଶ୍ୱ ଉଡ଼ିଗଲେ ଆକାଶରେ ।
ସମର ତେଜିଣ ସେହୁ ଉଡ଼ିଲେ ଗଗନ
ଉତ୍ତରକୁ ଚାହିଁ ତହୁଁ ବୋଇଲେ ଅର୍ଜ୍ଜୁନ ।

ହେ ବିରାଟୀ ତୁହି ବଡ଼ ମନ୍ଦକୃତ୍ୟ କଲୁ
ସମର ତେଜିଣ କିମ୍ପା ଗଗନେ ଆଣିଲୁ ।
ଉତ୍ତରକୁ କୋପକରି ଅର୍ଜ୍ଜୁନ ବୋଇଲେ
ଅଧର୍ମ ହୋଇବ ସିନା ଯୁଦ୍ଧେ ପିଠି ଦେଲେ ।
ଉତ୍ତର ବୋଇଲାମୋତେ ହେଲା ଅଗୋଚର
ଧନୁନାଦ ଶଙ୍ଖନାଦ ନ ଶୁଭେ ତୋହର ।
ଅସ୍ତ୍ରକୁ ମଧ୍ୟ ପାଇଲି ନାହିଁ ଠିକ୍ କରି
ଦରାଣ୍ଡନ୍ତେ ଗଗନରେ ହେଲେ ଅଶ୍ୱଚାରି ।
ଏତେକ ବୋଲି ଚରଣ ଦୁଇରେ ପ୍ରଣମି
ନିଅନ୍ତୁ ଗୋଧନ ଯୁଦ୍ଧ ନକର ହେ ସ୍ୱାମୀ ।
ଏକା ହୋଇ କିସ ଯୁଦ୍ଧ କରିବା ହୋ ପାର୍ଥ
ମୁହିଁ ବାହି ନ ପାରିବି ଆଉ ତୋର ରଥ ।
ମୋହର ଶରୀରକୁ ତ ଶରାଘାତ ନାହିଁ
ଆଶା ବିସର୍ଜିଲେ ମୁହିଁ ଶରବୃଷ୍ଟି ଯହିଁ ।
ଅର୍ଜ୍ଜୁନ ବୋଇଲେ ତୁହି ରଥେ ବସିଥିବୁ
ତୋତେ ତହିଁ ପ୍ରମାଦରେ କିଛି ନାହିଁ ବାବୁ
ରଥ ତେଜ୍ୟାକଲେ ତୋର ହୋଇବ ମରଣ
ଉତ୍ତର ବୋଇଲେତୋର ପୋଡୁ ପୋଡୁରଣ ।
ପାର୍ଥ ବୋଲେ ବାରବର୍ଷ ଯୁଦ୍ଧମୋର ନାହିଁ
ବେଳୁବେଳ ବହୁଅସ୍ତ୍ର ବିନ୍ଧିବଇଁ ମୁହିଁ ।
ତୁ କିମ୍ପା ସମର ଦେଖି ହେଉଛୁ ବିକଳ
ଏହା ଦେଖି ଲାଗୁଅଛି ମୋତେ କୁତୁହଳ ।
ମୋହର କୁହୁକ ରଣ ସରିବା ପର୍ଯ୍ୟନ୍ତେ
ଲାଖମାତ୍ର ହୋଇ ତୁହି ବସିଥିବୁ ରଥେ ।
କଉରବ ସୈନ୍ୟ ଆମ୍ଭେ ଜିଣିବା ଏକ୍ଷଣି ।
ଗୋଧନପଲକୁ ମତ୍ସ୍ୟଦେଶେ ଯିବା ଘେନି ।
ମୁଁ ଜାଣେ ନିସତ ନିଷ୍ଠେ ହୋଇବୁ ବିରାଟୀ
ରଥ ଛାଡ଼ିଲେ ହାରିବୁ ତୋର ଦେହଗୋଟି ।
ପାଟଡୋରକୁ ଘେନିଣ ବାନ୍ଧି ତାକୁ ରଥେ
ଧାତିକାରେ ରଥ ବାହିଗଲା ବୀର ପାର୍ଥେ ।
ଗୋଳେ ସୈନ୍ୟମାନେ ଠାବ କରିଣନପାରି
ଆପଣେ ଆପଣେ ତହିଁ ହେଲେ ମରାମରି ।
ଶ୍ରୀଭୁଜେ ଗାଣ୍ଡିବ ଧନୁ ଧରି ବୀର ପାର୍ଥ
କୌରବ ଥାଟରେ କଲା ନନ୍ଦିଘୋଷ ରଥ ।
କୁରୁବଳ ଆଶ୍ଚର୍ଯ୍ୟ ସେ ହେଲେ ତାହାଦେଖି
ଥୋକାଏ ପଳାଇଗଲେ ସମର ଉପେକ୍ଷି ।
ସମରେ ସଇନ୍ୟମାନେ ନ ପାରନ୍ତି ଚଳି
କ୍ଷୁଧା ତୃଷାରେ ସମସ୍ତେ ହୁଅନ୍ତି ବିକଳି ।
ଅଶ୍ୱ ଗଜମାନେ ସର୍ବେ ହୋଇଲେ ସ୍ଥକିତ
ତାହା ଦେଖି ବିଚାରଇ ବୀରବର ପାର୍ଥ ।

ମେଘାଅସ୍ତ୍ରକୁ ନେଇଣ ବିନ୍ଧିଲେ କିରୀଟି
ଅଦଭୂତେ ଆକାଶରୁ ଜଳ ହେଲା ବୃଷ୍ଟି ।
ଗଜ ଅଶ୍ୱ ସୈନ୍ୟ ଆଦି ପିଇଲେ ସନ୍ତୋଷେ
ସାଧୁ ସାଧୁ ପାର୍ଥ ବୋଲି ବୋଲନ୍ତି ତ୍ରିଦଶେ ।
ଶୁଣ ଆହେ ଚଇତନ ଅର୍ଜ୍ଜୁନ ମହିମା
କ୍ଷତ୍ରିବର ସୁନ୍ଦର ସେ ଅଟନ୍ତି ମହାତ୍ମା ।
ସମରେ ଶକତା ସେହୁ ଅଟେ ଫାଲଗୁନି
ଭୂତ ଭବିଷ୍ୟତ ଜ୍ଞାତା ପୁଣି ଯୋଗଜ୍ଞାନୀ
ସକଳ ସୈନ୍ୟଙ୍କ ମୁଖେ ଶୁଭେ ସାଧୁଧ୍ୱନି
ସମସ୍ତର ଆୟୁ ଘେନି ବର୍ତ୍ତୁ ଫାଲଗୁନି ।
ସଇନ୍ୟ ସରବେ ଯହୁଁ ହୋଇଲେ ତୃପତି
ଯୁଦ୍ଧରେ ପଶିଲେ ପୁଣି କୁନ୍ତୀଙ୍କ ସନ୍ତତି ।
ସାଷ୍ଟାମ ହୋଇଣ ପୁଣି କୌରବ ସଇନି
କୋପେ ପାର୍ଥକୁ ବେଢ଼ିଲେ ସର୍ବ ଅସ୍ତ୍ରଘେନି
ବିନ୍ଧନ୍ତି ନାରାଚମାନ ବାରମ୍ବାର ଜାଣି
ପଡୁଅଛି ଝରଝର ମେଘୁ ଯେହ୍ନେ ପାଣି ।
ଜ୍ୱାଳାବଳି ନାମେବାଣ ଅତି ତେଜେଘୋଟି
ଯୋଦ୍ଧାକେ ବିନ୍ଧନ୍ତି ପୁଣିଧରି କୋଟିକୋଟି ।
ସ୍ୱର୍ଗ ମର୍ତ୍ତ୍ୟ ପାତାଳ ଯେ କମ୍ପେ ଶରଘାଏ
ସମୁଦ୍ର ଉଚ୍ଛୁଳଇ କି ମନ୍ଥନ ପରାୟେ ।
ଗୋଧନ ହରଣ ରଣ କଲା ଅଗୋଚର
ଇତି ଶ୍ରୀ ମହାଭାରତ ଦିବ୍ୟ ସମାଚାର ।
ମନୁଷ୍ୟ ମାତ୍ରକେ ମୁହିଁ କହି କି ସମର୍ଥ
କୃପାରୁ କରିଲେ ତେଣୁ ଶ୍ରୀ ଶାରଳା ମାତ
ଭୀଷ୍ମ ଦ୍ରୋଣ କର୍ଣ୍ଣ ଶଲ୍ୟ ଆବର ବାହ୍ଲିକ
ଶକୁନି ଭୂରିଶ୍ରବାଦି ଆଉ ଯେତେ ଲୋକ ।
ଆଗଭର ହୋଇଣ ସେ ପଛେ କଲେ ଦଣ୍ଡ
ନାରାଚ ବିନ୍ଧନ୍ତେ କମ୍ପେ ସପତ ବ୍ରହ୍ମାଣ୍ଡ
ଏକାରଥୀକୁ ବେଢ଼ିଲେ ବାରପଦ୍ମଯୋଦ୍ଧୀ
ମହାକୋପେ ଉପରୋଧ ଛାଡ଼ି ବାଣ ବିନ୍ଧି ।
ଦ୍ରୋଣ ବୋଇଲେରେ ନାଶଗଲୁ ଫାଲଗୁନି
ଆଜି ଏଥୁ କେମନ୍ତରେ ଯିବୁ ପ୍ରାଣଘେନି ।
ଅର୍ଜ୍ଜୁନ ବୋଇଲେ ଗୁରୁତୁମ୍ଭ କଥା ସତ୍ୟ
ଆଉ କଉରବେ କେହି ନ ହେବେ ଜୀବିତ ।
ଉଭୟଙ୍କ ପ୍ରତିବାକ୍ୟ ଯୁଦ୍ଧ ମହାଘୋର
ସଂଗ୍ରାମ ଭୂମି ଦିଶିଲା ଦିବସେ ଅନ୍ଧାର ।
ଏସନ ଦେଖି ତା ଦ୍ରୋଣ ପର୍ବତାସ୍ତ୍ର କଲେ
ବଜ୍ରାସ୍ତ୍ର ପେଷିଣ ପାର୍ଥ ତାହା ନିବାରିଲେ ।
କ୍ରୋଧରେ ଦ୍ରୋଣ ପେଷିଲେ ପନ୍ନଗମାର୍ଗଣ
ମହାଫଣା ଟେକି ସର୍ବେ କରନ୍ତି ଗର୍ଜ୍ଜନ ।

ଉତ୍ତର ବୋଇଲେ ସ୍ୱାମୀ ନାଗବଳ ଦେଖ
ମହାଭୟ ଲାଗେ ମୋତେ ସମ୍ଭାଳିଣ ରଖ ।
ଉତ୍ତରର ବାକ୍ୟ ଶୁଣି ପାର୍ଥ ମହାରଥୀ
ଖଗବର ନାରାଚକୁ ବିନ୍ଧିଲେ ତଡ଼ତି ।
ଗରୁଡ଼ ଅସ୍ତ୍ରର ତେଜ ବିକଶିଲା ତହୁଁ
ମୁର୍ଚ୍ଛାଗତ ହୋଇ ପଡ଼ିଗଲେ ସର୍ପ ତହୁଁ ।
ଅଶ୍ୱତ୍ଥାମା ବିନ୍ଧିଲାକ ଅଗ୍ନିଶର ଗୋଟି
କି କାଳାନଳ ବଦନି ଶୂନ୍ୟେ ଯାଇଘୋଟି
ମଞ୍ଚରେ ମେଖଳା ତାର ଆକାଶରେ ଆଖି
ପୃଥିବୀ ଭୟ ପାଇଲା ଅଗ୍ନି ଜ୍ୟୋତି ଦେଖି
ଉତ୍ତର ବୋଇଲା ସ୍ୱାମୀ ବଡ଼ାଇ ଦୁର୍ଲ୍ଲଭ
ଏବେ ସକଳ ସଂସାର ଦହନ ହୋଇବ ।
ପୁଣି ଜଳବିମ୍ବ ଶର ପେଷିଲେ କିରୀଟି
ଅଗ୍ନିପରେ ମେଘମାନେ କଲେ ଜଳବୃଷ୍ଟି ।
କଉରବ ଯୋଦ୍ଧାମାନେ ପଳାବନ୍ତି ଭାଜି
କୋପରେ ନାରାଚ ପାର୍ଥ ବିନ୍ଧେ ଗଳଗାଜି
ମନ୍ଦର ପର୍ବତ ଯେହ୍ନେ ସିନ୍ଧୁ କଲା ଗୋଳା
ସେହିରୂପେ ଦିଶଇ ଯେ ବାସବର ହଳା ।
ଯେଉଁ ଅସ୍ତ୍ର ସବୁ ବିନ୍ଧଛଇ କୁରୁରାଣ
ପ୍ରତିଅସ୍ତ୍ର କରି ତାହା ଛେଦଇ ଅର୍ଜ୍ଜୁନ ।
ଏକାଜଣକୁ ବିନ୍ଧନ୍ତି ପାଞ୍ଚଗୋଟି ଯୋଦ୍ଧା
ଏକମୁଖେ ହୋଇଣଯେ ସର୍ବେ ଶର ବିନ୍ଧି ।
ଯେତେକାଳ ପରିଯନ୍ତେ ଥିବ ବସୁମାତା
ଯାବତ ଚନ୍ଦ୍ରାର୍କେ ଥିବେ ଥିବ ଏହି କଥା ।
ନ ଦେଖିଲେ କେ ଏହା ତ ବର୍ଣ୍ଣିବାକୁ ପାରି
ଆହେ ବୁଦ୍ଧଜନେ ତୁମ୍ଭେ ଶୁଣିବା ବିଚାରି ।
ଦଣ୍ଡଭଗ୍ନ ଦେଖିଣ ସେ ସର୍ବ ସେନାପତି
ପୁଣି ଆବୋରିଲେ ଆସି ଅର୍ଜ୍ଜୁନର କତି ।
ତପତ ଶୀତାଂଶୁ ଅବତଂସ ବଜ୍ରମୁନା
ଅମୋଘ ଯେ ପଞ୍ଚଶର ପୁଣି ପଞ୍ଚମୁନା ।
କେବଣ ହିଁ ନାରାଚ ଯେ ଅଟେ ବଜ୍ରସୂଚୀ
ବିନ୍ଧନ୍ତି ସେ ନାରାଚକୁ ଦ୍ରୋଣ ମଧ୍ୟେ ବାଛି ।
ତୋମର ମୁଦୁଗର ଯେ ଅନନ୍ତ ଶକତି
ବିନ୍ଧନ୍ତେ ଆଲୁଅମୟ ଦିଶେ ବସୁମତୀ ।
ମହାପ୍ରଳୟର ପରି ସମର ହୋଇଲା
ଯୁଦ୍ଧ କରନ୍ତେ ସେ ତହିଁ ସୂର୍ଯ୍ୟଅସ୍ତ ଗଲା ।
କକ୍ଷାବନ୍ତ ଯୋଦ୍ଧାମାନେ ସେହୁ ମହାକ୍ଷତ୍ରୀ
ଜଣେ ପଳାଇଲେ ଦଶବିଂଶ ଯୁଝୁଛନ୍ତି ।
ରଜନୀ ଅମାରେ ଯହୁଁ ହେଲା ମହାଗୋଳ
ମୁଖରାବ ଶବ୍ଦ ଶୁଭେ ଅତ୍ୟନ୍ତ ଚହଳ ।

ମହାଘୋର ନିଶାକାଳେ ହେଲା ମହାରଣ
ବାରଣ ନ ଗଲା ତହିଁ ପରକି ଆପଣ ।
ଏକଇ ଅସ୍ତ୍ର ଆରେକ ନିଅନ୍ତି ଉଚ୍ଛୁଳି
କାହାର ଅସ୍ତ୍ରକୁ କେହୁ ବିନ୍ଧେ ଘେରି କରି ।
ଅନ୍ଧାର ଦେଖି ବୋଇଲା ଗାନ୍ଧାରୀର ବଳା
ସମର ଅଭିମୁଖ ରେ ଲଗା ବେଗେ ହୁଳା ।
ରଥକେ ପଞ୍ଚାଶ ପୁଣି ଗଜନେ ପଞ୍ଚାଶ
ଅଶ୍ୱଯୋଦ୍ଧା ଜଣକରେ ଲାଗେ ପଞ୍ଚଦଶ ।
ପଦାତିମାନେ ଘେନିଲେ ନିଜହସ୍ତେ ଗଦା
ଏଗାର ଯୋଜନ ଯାଏ ସବୁଦିଶେ ପଦା ।
ଉତ୍ତର ବୋଇଲା ସ୍ୱାମୀ ଯୁଦ୍ଧ ନ କରିବା
ରକ୍ତମୟ ଏ ବସୁଧା ଲାଗେମୋତେ କିବା ।
ମରନ୍ତି ସେ କଉରବେ ଲୋଟନ୍ତି ଉଡ଼ନ୍ତି
ଏକଇ ପଡ଼ନ୍ତେ ଦଶବିଂଶ ଘୋଟିଯାନ୍ତି ।
ଅର୍ଜ୍ଜୁନ ବୋଲେ ଉତ୍ତର ନ ଜାଣୁ ଏ କଥା
ସମରେ ପ୍ରବୋଧ ମୁହିଁ କରଇ ସର୍ବଥା ।
ପ୍ରାଣେ ନ ମାରି ପ୍ରବୋଧ ଏହାଙ୍କୁ ମୁଁ କଲି
ଶିରଚ୍ଛେଦନ କରଇ ପରକାର୍ଯ୍ୟ ବୋଲି ।
କିଞ୍ଚିତ ଦୋଷକୁ କିବା ଦେବା ବହୁ ଶାସ୍ତି
କ୍ଷଣକେ ମରଣ ତାଙ୍କୁ ହୋଇବ ପ୍ରାପତି ।
ତ୍ରୟୋଦଶ ବର୍ଷ ହେଲା ସମର ଯେ ନାହିଁ
ଶରଭଗ୍ନ ହେଲା ମୁହିଁ କୌରବଙ୍କୁ ଚାହିଁ ।
ପ୍ରାଣରେ ନାଶ ମୁଁ ଅବା କରିବି କେମନ୍ତେ
ସମସ୍ତେ ସୋଦର ମୋର ଅଟନ୍ତି ଯୁକତେ ।
ମୁଖ ଦେଖି ଏହାଙ୍କୁ ମୁଁ କରଇ ଉପ୍ରୋଧ
ଯେଣୁକରି ନିରାଶେ ମୁଁ ନ କରଇ ଯୁଦ୍ଧ ।
ପ୍ରତାପିଏ କୁରୁସୈନ୍ୟ ଛନ୍ତି ମତ୍ତ ହୋଇ
ଏକାକି ତାହାଙ୍କୁ କିସ କରିବଇଁ ମୁହିଁ ।
ଉତ୍ତର ବୋଇଲା ତୋର ସମର ଯେମନ୍ତ
ଛାଗଳ ମୃଗୟା ମୃଗ ହୋଇଲା ତେମନ୍ତେ ।
କୌରବେ ସୋଦର ଯେବେ ଅଟନ୍ତି ଯୁକତେ
ସମର ଆରମ୍ଭ କଲୁ ଆବର କି ଅର୍ଥେ ।
ଉପ୍ରୋଧ ବଶରେ କାହିଁ ହୋଇଅଛି କାର୍ଯ୍ୟ
ବାହୁଡ଼ି ଯାନ୍ତେ ପାଇବା ଆମ୍ଭେ ବଡ଼ ଲାଜ
ଗୁଣର ସାଗର ତୁହି କକ୍ଷା ଜଗଜେଠି
ଉପ୍ରୋଧ କରିଲୁ ଯେବେ ଚାଲ ତୁ ଲେଉଟି ।
ଉତ୍ତରଠାରୁ ଏମନ୍ତ ବଚନକୁ ଶୁଣି
ରାଗେ କରେ ଅରଜୁନ ମୋହନାସ୍ତ୍ର ଘେନି ।
ମନଭେଦି ଶର ନେଇ ବସାଇଲୁ ଧନୁ
ଏକାବେଳକେ ବିନ୍ଧନ୍ତେ ଭେଦେ ସର୍ବ ତନୁ ।

ରଥିକେ ଶତ ନାରାଚ ଯୋଦ୍ଧାକେ ପଞ୍ଚାଶ
ମୁକୁଟ ବନ୍ଧା ପନ୍ଦର ପଦାତିକ ଦଶ ।
ଭାରତେ ଭାରୋଇ ମଲ୍ଲ ମହିମା ଯା ଧନ୍ୟ
ଏକାଥରକେ ବିନ୍ଧିଲା ଏତେ ଅସ୍ତ୍ରମାନ ।
ଅର୍ଜ୍ଜୁନ ତିଆରଇ ସେ ମନଭେଦି ଶର
ଭେଦ ହୋ ନାରାଚ ତୁହି ସବୁରି ଶରୀର ।
ଏତେ ବୋଲିଣ ଅର୍ଜ୍ଜୁନ ଶର କଲା ବୃଷ୍ଟି
ସମସ୍ତଙ୍କ ଶରୀରରେ କାଣ୍ଡ ଗଲା ଫୁଟି ।
ଶତେ ଶତେ ପଡ଼େ ଯାଇ ରଥିଙ୍କ ଉପରେ
ପଞ୍ଚାଶ ପଞ୍ଚାଶ ଶର ଯୋଦ୍ଧାଙ୍କ ଶିରରେ ।
ମୁକୁଟ ବନ୍ଧା ଯୋଦ୍ଧାଙ୍କୁ ମାରେ ପଞ୍ଚଦଶ
ପଦାତି ଜଣକୁ ଶର ପେଶେ ଦଶ ଦଶ ।
ଅଷ୍ଟାଦଶ କ୍ଷୌଣୀ ପରେ ଏତେ ଶର ବୃଷ୍ଟି
ଏକାବେଳକେ ପଡ଼ିଲେ ସର୍ବେ ମହୀଲୋଟି ।
ଏଗାର ଯୋଜନସ୍ଥାନ ପଡ଼ିଲେ ସେ ମାଡ଼ି
ସମସ୍ତଙ୍କ ଶରୀରୁ କି ଆତ୍ମା ଗଲା ଛାଡ଼ି ।
ଅଶ୍ୱ ଗଜ ପଡ଼ିଲେ ଯେ ପ୍ରାଣତ୍ୟାଗ ହୋଇ
ମୋହନା ଶର ଘାତରେ ପଡ଼ିଲେକ ମହୀ ।
କୋପେ ଅପର୍ଯ୍ୟାପ୍ତ ଶର ମାରିଲେ ଅର୍ଜ୍ଜୁନ
ଅସାଷ୍ଟମେ ପଡ଼ିଛନ୍ତି କୁରୁବୀର ଗଣ ।
ରତ୍ନମଣି ମୁକୁଟ ଯେ ଶିରରେ ଶ୍ରୀଭୂଷା
ରକ୍ତ କର୍ଦ୍ଦମେ ସରବେହେଲେ ମାଟିମିଶା ।
ଚନ୍ଦନ କସ୍ତୁରୀ ଆଦି ସର୍ବ ଗନ୍ଧ ଭୋଗ
ରୁଧିରେ କର୍ଦ୍ଦମ ହେଲା ସବୁରିଙ୍କ ଅଙ୍ଗ ।
ମହାବାତରେ ଲୋଟନ୍ତି ଯେହ୍ନେ ବୃକ୍ଷପନ୍ତି
ଶରଯାଏ ସେହି ରୂପେ କୌରବ ଲୋଟନ୍ତି ।
ଉତ୍ତର ଅର୍ଜ୍ଜୁନ ପାଦତଳରେ ପ୍ରଣମି
ଦୁଃସହ ପ୍ରତିଜ୍ଞା ଆଜ କଲୁ ଦେବ ସ୍ୱାମୀ ।
ଦେବତାଙ୍କୁ ଅଗୋଚର ତୋହର ଏ କର୍ମ
ତୁହି ବୀରବର କ୍ଷତ୍ରୀମାନଙ୍କ ଉତ୍ତମ ।
ଉତ୍ତରକୁ ଚାହିଁଣ ଯେ ବୋଲେ ବୀରମଣି
ଉତ୍ତରାବଳୀ ବଚନ ଅଛୁ ଟିକି ଜାଣି ।
ପଡ଼ିଛନ୍ତି କଉରବେ ହୋଇ ଅଚେତନ
ସମସ୍ତ ସୈନ୍ୟଙ୍କ ତୁଲେ ମୋହିତ ହୋଇଣ ।
ରଥୁ ଓହ୍ଲାଇଣ ପଶ ସୈନ୍ୟଙ୍କ ଭିତର
କ୍ଷତ୍ରିଙ୍କ ଭୂଷା ମୁକୁଟ ଦେଖିଣ ଉତ୍ତର ।
ଉତ୍ତର ବୋଇଲା ମୋତେ ଲାଗୁଅଛି ଭୟ
ସମସ୍ତେ ଦିଶୁଅଛନ୍ତି ରାହୁ ତେଜ ପ୍ରାୟ ।
ଉତ୍ତମ କୁମର କର ଧରି ଫାଲଗୁନୀ
ରଥୁ ଓହ୍ଲାଇଲା କରେ ହୁଳା ଏକ ଘେନି ।
ଅର୍ଜ୍ଜୁନ ଉତ୍ତର ଦୁହେଁ ପଶିଲେକ ଥାଟେ
ପ୍ରଥମେ ପ୍ରବେଶ ଯାଇ କର୍ଣ୍ଣର ନିକଟେ ।
ବାବୁ ଆମ୍ଭ ସୋଦର ଏ ମହବଳୀ କର୍ଣ୍ଣ
ମୁଖ ଚାହିଁ ନିରୁପଇ ବୀର ଅରଜୁନ ।
ମୋର ଭ୍ରାତାହୋଇ ତୁହି କୌରବରେ ମେଳି
ପଡ଼ିଲୁ ଉତ୍ତାନଶାୟୀ ହୋଇ ତୋର ଭଳି ।
ବୈଜୟନ୍ତୀ ମାଳା ଗୋଟି ଥିଲା କର୍ଣ୍ଣ ହୃଦେ
ପାର୍ଥ ବୋଇଲେ ଉତ୍ତର ଘେନଏହା ହାଦେ
ଏକା ଭୀଷ୍ମଦେବ ହୋଇ ନାହାନ୍ତି ମୋହିତ
ଲୌକିକ କର୍ମରେ ହୋଇଅଛନ୍ତି ଅଚେତ ।
ତାହାଙ୍କ ସନ୍ନିଧେ ପୁଣି ଅଛି ଦ୍ରୋଣଗୁରୁ
ଏ ଦୁହିଁଙ୍କୁ ଛାଡ଼ି ଆଉ ଆଉ ଯେତେ ପାରୁ ।
ଏରୂପେ ଉତ୍ତର ଆଜ୍ଞାଦେଲେ ସବ୍ୟସାଚୀ
ଆଜ୍ଞାକ୍ରମେ ଅଲଙ୍କାର କାଢ଼େ ବାଛି ବାଛି ।
ଦେବାଙ୍ଗ ବସନ ପୁଣି ଅମୂଲ୍ୟ ପଦାର୍ଥ
ଘେନି ଉତ୍ତର କୁମର ଦେଖିଲାକ ରଥ ।
କର୍ଣ୍ଣର ମୁକୁଟ କାଢ଼ି ବୀର ଫାଲଗୁନି
ପଦାତି ଗୋଟିକେ ଶିରେ ବାନ୍ଧେ ନେଇପୁଣି
କର୍ଣ୍ଣର ସନ୍ନିଧେ ପଡ଼ିଅଛି ଦୁଃଶାସନ ।
ଅର୍ଜ୍ଜୁନ ଦେଖି ଚିହ୍ନିଲା ତାହାର ବଦନ ।
ଆରେ ଏ ଭୁଜେ ଧଇଲୁ କେଶ ଦ୍ରୌପଦୀର
ସଭାତଳେ ବିବସନ କଲୁରେ ପାମର ।
ମୁହିଁ ତୋର ଶିରଚ୍ଛେଦ କରିଥାନ୍ତି ରଣେ
ପରକାର୍ଯ୍ୟେ ନମାରିବି ତୋତେ ଅକାରଣେ
ମୁହିଁ ଯେବେ ବିଦାରିବି ତୋର ବକ୍ଷସ୍ଥଳ
ଭୀମସେନଙ୍କ ପ୍ରତିଜ୍ଞା ହୋଇବ ବିଫଳ ।
ଯେ ଦିନ କେଶ ଧଇଲୁ ତୁହି ଦୁଃଶାସନ
ସେହିଦିନୁ ଦ୍ରୌପଦୀଙ୍କ କେଶ ଅବନ୍ଧନ ।
ତୋ ଭୁଜକୁ ଉପାଡ଼ିଣ ଭୀମ ବୀରବର
ରୁଧିର ଦେବେ ସେ ନେଇ ପାଞ୍ଚାଳୀରଶିର
ଦୁଃଶାସନର ଶ୍ରୀଭୂଷା ମୁକୁଟାଳଙ୍କାର
ନେଇଣ ଖଞ୍ଜିଲା ପାର୍ଥ ଚଣ୍ଡାଳ ଶରୀର ।
ଚଣ୍ଡାଳ ପାଦୁକା ତାର ହୃଦେ ଦେଲା ଥୋଇ
ଦେହରେ ତିନୋଟି ଗାର କାଟେରୋଷବହି
ସମସ୍ତ ରଥୀଙ୍କ ରଥ ଆଣେ କେଶ ଧରି
ଭୂମିରେ ଶୁଆଇ ବୀର ବିବସନ କରି ।
ଦେଖେ ଶକୁନି ପଡ଼ିଛି ହୋଇଣ ଅଚେତ
ପାଶେ ପ୍ରବେଶ ହୋଇଲା ବାସବର ସୁତ ।
ଶକୁନି ବଦନ ଚାହିଁ ବୋଲେ ଫାଲଗୁନି
ବାବୁ ଉତ୍ତର ଏ ଅଟେ ମାତୁଳ ଶକୁନି ।

ଜତୁଗୃହ ଏହୁ ଯେ ଭିଆଇଲା କୁଟେ
ପୁର ନିର୍ମାଣିଲା ଗୁଆ ଘୃତ ଛଣପଟେ ।
ବିଷଲଡୁ ଖୁଆଇଲା ଭୀମ ଠାକୁରଙ୍କୁ
ନାଗ ଖାଉ ବୋଲି ପେଲିଦେଲା ସମୁଦ୍ରକୁ ।
କପଟପଶା ରଚନା ହେଲା ଯା ବୁଦ୍ଧିରେ
ସମସ୍ତ ଧନ ହରିଲା ପଣି କପଟରେ ।
ତା ଶୁଣି ଉତ୍ତର ଧାଏଁ କରେ ଖଡ୍‌ଗଘେନି
ସ୍ୱାମୀ ଏହୁ ଦୂରନ୍ତକୁ ପଳାଇବି ହାଣି ।
ଦେଖି ଅର୍ଜୁନ ଧଇଲା ଉତ୍ତର ହାତକୁ
ତୁ ବାବୁ କୋପ ନ କରି କିଞ୍ଚିତେ ଏହାକୁ ।
ମାନଗୋବିନ୍ଦ ଅଟଇ ଏହାର ବଇରୀ
ବଂଶ ନାଶଗଲା ଯାର କୋଠାଘରେ ଭରି ।
କୌଣସି ପ୍ରକାରେ ତାକୁ ନ ପାରିଲା ଜିଣି
କୂଟ ଉପାୟ ପାଞ୍ଚିଲା ମନ୍ତ୍ରୀ ଚୂଡ଼ାମଣି ।
ଆମ୍ଭର ତୁଲେ ଯତନେ କରାଅ ଅନର୍ଥ
ଦୁର୍ଯ୍ୟୋଧନ ବଂଶ ନାଶ କରିବା ନିମିତ୍ତ ।
ଆମ୍ଭଙ୍କୁ ଝିଙ୍ଗାସି ଦେଲା ଏହୁ ବହୁ ବାଗେ
ତେବେ କଉରବେ ନାଶ ହେବେ ଆମ୍ଭରାଗେ ।
ଏହାକୁ କୋପ ତୁ ହାଦେ ନ କର କିରୀଟି
ବିଚାରେ ଶକୁନି ଆମ୍ଭ କାର୍ଯ୍ୟ କରିବଟି ।
ଅର୍ଜୁନ ବାକ୍ୟେ ଉତ୍ତର ମନେ ହେଲା ଶାନ୍ତି
ଶକୁନି ଉପରୁ କୋପ ଛାଡ଼ିଲା ଝଟତି ।
ଶକୁନିକୁ ଘୋଷଡ଼ାଇ ନେଲାକ କିରୀଟୀ
ନେଇ ଶୁଆଇଲା ତାକୁ ଗର୍ଦ୍ଦଭର ପିଠି ।
ହିଆରେ ଲଦିଲା ନେଇ ଦମାଲୁ ଗୋଟିଏ
ଅଛବ ଜାତିଙ୍କ ବସ୍ତ୍ର ତାହାଙ୍କୁ ପିନ୍ଧାଏ ।
ଦୁର୍ଜ୍ଜୟ ବୋଲିଣ ଯେହୁ ଦୁଃଶାସନ ସାନ
ତାହାର କେଶ ଯାଇଣ ଧଇଲେ ଅର୍ଜୁନ ।
ସଭାତଳେ ଆମ୍ଭଙ୍କୁ ତୁ ବସାଇଲୁ ନେଇ
ଏବେ ତୋହର ପ୍ରତିଜ୍ଞା ଗଲା ଆରେ କାହିଁ ।
ସୁମର ଆରେ ଦୁର୍ଜ୍ଜୟ ତୋର ପିତାମାତା
ସୁମର ଆବର ତୋର ଯେ ଇଷ୍ଟଦେବତା ।
ସୁଦେଷ୍ଣାସୁତ ପ୍ରତିଜ୍ଞାବନ୍ତ ମହାରଥୀ
ବୋଲେ ଛେଦିବି ଯାଶିର ରହିଥାଉ କଥା ।
ଉତ୍ତର ବାକ୍ୟେ ହୋଇଲା ଇନ୍ଦ୍ରଙ୍କ ସନ୍ତତି
ଭୀମସେନ ଦେବ ଯାକୁ ବହୁତର ଶାସ୍ତି ।
ଶତଭ୍ରାତାଙ୍କୁ ମାରିବେ ତାହାର ପ୍ରତିଜ୍ଞା
ମୁଁ ତାହାଙ୍କ ବଚନ ନ କରିବି ଅବଜ୍ଞା ।
ଏତେ ବୋଲି ଛାଡ଼ିଦେଲା ଅର୍ଜୁନ ତା କେଶ
କିଛିଦିନ ବର୍ତ୍ତିଥାଅ ଅଛି ତୋ ଆୟୁଷ ।

ଦୁର୍ଯ୍ୟୋଧନ ଶତେ ଭ୍ରାତ ଅଟନ୍ତି ହେ ରଥୀ
କେଶ ଧରି ଭୂମିରେ ଶୁଆଇଲେ ସବୁନ୍ତି ।
ଉତ୍ତର କୁମର ଖଡ଼୍‌ଗ କରିଣ ପ୍ରହାର
କୋପରେ ଛେଦିଲା ଅର୍ଜୁନ କରଇ ପଦାତି
ରଥୀମାନଙ୍କୁ ଅର୍ଜୁନ କରଇ ପଦାତି
କରାଇଲେ ପଦାତିକୁ ନେଇ ରଥେ ରଥୀ ।
ବାଦ୍ୟକାରମାନଙ୍କୁ ଯେ କରି ଯୋଦ୍ଧା ପରି
ଯୋଦ୍ଧାମାନଙ୍କୁ କରାଇ ବାଦ୍ୟକାର ସରି ।
ଥାଟ ଓଲଟାଇ ହେଲା ତିନିଘଡ଼ି ରାତି
ଅର୍ଜୁନ ବିଜୟ ମାନଗୋବିନ୍ଦର କତି ।
ମାନଗୋବିନ୍ଦ ମୁକୁଟ ଉତ୍ତର ଦେଖିଣ
ଅତିଶ୍ରଦ୍ଧା ପାଇ କାଢ଼େ ମସ୍ତକୁ ଯାଇଣ ।
ପାର୍ଥ ବୋଲେ ସେ ମୁକୁଟ ଥାଉହେଉତ୍ତର
ଲକ୍ଷ୍ମୀ ବିଜେ କରନ୍ତିଟି ଏ ମୁକୁଟ ଉପର ।
କୋଟି ମାଣିକ୍ୟ ଏଥିରେ ଅଛଇ ଯେ ଲାଗି
ଯାହାକୁ ଦେଖିଲେ ଶତ୍ରୁ ହୁଏ ସ୍ଥାନ ତ୍ୟାଗୀ
ଏ ମୁକୁଟ ଭାରା ଆନ ସହି କି ପାରଇ
ମାନଗୋବିନ୍ଦ ପନ୍ନଗା ରୂପରେ ବହଇ ।
ଅର୍ଜୁନ ବଚନ ଶୁଣି ବିରାଟର ସୁତ
ତକ୍ଷଣେ ଛାଡ଼ିଲେ ଦୁର୍ଯ୍ୟୋଧନର ମୁକୁଟ ।
ଅର୍ଜୁନ ବୋଇଲେ ଦେଖି ଦୁର୍ଯ୍ୟୋଧନ ମୁଖ
କଲାକର୍ମ ସ୍ୱାମୀ ତୋତେ ଫଳିଲା ପ୍ରତ୍ୟକ୍ଷ ।
ଯେ ଯାହା କରଇ ତାହା ଅବଶ୍ୟ ଭୋଗଇ
ତୋହର କଲା କର୍ମର ଏ କୃତ୍ୟ ଅଟଇ ।
ଆପଣେ ଯାହା ଅର୍ଜିଲ ତା ଅବଶ୍ୟ ଭୁଞ୍ଜି
ନିଷ୍ଠେ ଯମରାଜା ତୋର ପୋଛିଲାଣି ପାଞ୍ଜି
ଅମୂଲ୍ୟ ମୁକୁଟ ଦୁର୍ଯ୍ୟୋଧନ ଶିରେ ଥିଲା
ଅଳାୟୁଧ ରାକ୍ଷସର ଶିରେ ତା ବାନ୍ଧିଲା ।
ତାହାର ପାଦୁକା ନେଇ ଦେଲା ରାଜା ଶିରେ
କଟାରି ଗୋଟିଏ ନେଇ ବାନ୍ଧିଲା ଗଳାରେ
କୃପ ଆଚାର୍ଯ୍ୟଙ୍କ କୋପ କଲାକ କିରୀଟି
ତାହାଙ୍କର ସାରଥିକୁ କଲା ସାତବେଣ୍ଟି ।
ଶଲ୍ୟ ସାରଥିର ମୁଣ୍ଡ କଲା ସାତଖଣ୍ଡ
ରୁଧିର ବାହାରନ୍ତେ ସେ ଦିଶିଲା ତ୍ରିପଣ୍ଡ ।
ଭୂରିଶ୍ରବା ସାରଥିର ଚିରିଲା କପାଳ
ଶ୍ରବଣ ଛେଦନ କଲା ଯେତେ ଯୋଦ୍ଧା ଭଲ ।
ମୁଖ୍ୟ ମୁଖ୍ୟ ଯୋଦ୍ଧାଙ୍କର ଛେଦିଲା ସେନାସା
ଜୟଦ୍ରଥ ଓଷ୍ଠ କାଟି କରିଲା ନିକେଷା ।
ସୋମଦତ୍ତର ଛେଦିଲା ଚରଣ ଅଙ୍ଗୁଷ୍ଠି
କର୍ଣ୍ଣ ସାରଥିର ଛେଦିଦେଲା ତଳପାଟି ।

ନଖରେ ଅଳମ୍ବୁଷର ଖୋଳେ ବାମଚକ୍ଷୁ
ବୋଲେ କଉରବେ ଆରେ ତୁମ୍ଭଙ୍କୁ କେରଖୁ
ଶତେଭ୍ରାତା ସାରଥିଙ୍କ ଛେଦିଲା ଅଙ୍ଗୁଳି
ବାହା ଚିରି କା ରୁଧିରେ ନେଇଦେଲା ବଳି ।
ବାହ୍ଲିକ ସାରଥିର ସେ ଛେଦି ବକ୍ଷସ୍ଥଳ
ଦୁଃଶା ହୃଦେ ଲମ୍ବାଇଲା ମନ୍ଦାରର ମାଳ ।
ଉତ୍ତର ବୋଲେ ବିବସ୍ତ୍ର ଅଟେ ତୋର ନାମ
ପ୍ରତ୍ୟକ୍ଷେ ଦେଖିଲି ଦେବ ତୋର ସେହିକର୍ମା ।
ଅରୁଣ ପ୍ରକାଶ ହେଲା ତୁଟିଲା ରଜନୀ
ଅଢ଼ାଇ ଗୋଧନପଲ ଚାଲ ଯିବା ଘେନି ।
ଗୋପାଳସରବେ ତାଙ୍କଗୋଗୋଷ୍ଠରେଥିଲେ
ଅନେକ ରତନ ତହୁଁ ବାଛି ଘେନିଗଲେ ।
ଅଢ଼ାଇ ଗୋରୁପଲକୁ ଗୋପାଳେ ହରଷେ
ସମସ୍ତେ ପ୍ରବେଶ ହେଲେ ବିରାଟର ଦେଶେ ।
ଏଥୁଅନ୍ତେ ରଥ ବାହେ ବିରାଟର ବାଳ
ପ୍ରବେଶ ହୋଇଲେ ଯାଇ ଶମୀବୃକ୍ଷ ତଳ ।
ଜୟ ଜୟ ରମାକାନ୍ତ ରାଜୀବ ଲୋଚନ
ସଗର୍ବେ ବହିଛ ନାମ ପତିତପାବନ ।
ଚକ୍ରଧର ଗଜପାଇଁ ଛେଦୁଅଛି ନକ୍ର
ଏ ପାପୀ ନିମନ୍ତେ ଚକ୍ର ହୋଇଲାକି ବକ୍ର ।
କେତେକେତେମହାପାପୀ ତାରିଦେଲହେଲେ
ଦୟା ଯେବେ ନ ହେଉଛି ମୋକର୍ମ ଅବଳେ ।
ଆହେ ଜଗତବନ୍ଦନ ବାରେ ଘେନାକର
ଶାରଳାଦାସର ହୃଦେ ରହି ନିରନ୍ତର ।



## ବିରାଟ କଙ୍କରାଜା ସହିତ ଯୁଦ୍ଧକୁ ଗମନ ଓ ଭୀମ କର୍ତ୍ତୃକ ବୀରବାହୁର ପତନ

ମନୁରାଜା ଅଗସ୍ତିଙ୍କୁ ପୁଣି କଲେ ପୃଚ୍ଛା
ତବ ପୁଣ୍ୟ ପୁରାଣ ମୁଁ ଶୁଣି କଲି ଇଚ୍ଛା ।
କପିଳ ଦେଶକୁ ସୈନ୍ୟ ବାହିଲେ ବିରାଟ ।
କିସ କିସ କରେ ତେଣେ ସେ ବେନି ମୁରାଟ
ମୁନି ବୋଇଲେ ପର୍ବତେ ଥିଲା ବୀରବାହୁ
ବିରାଟ ରାଜ୍ୟର ସୈନ୍ୟ ପ୍ରବେଶିଲେ ଯହୁଁ ।
ବାରତା ଶୁଣିଣ ବୀରବାହୁ ନରପତି
ଯାବଡ଼ରେ ଚଳାଇଲେ ସର୍ବ ରଥ ହସ୍ତୀ ।
ବୀରବାହୁ ସୈନ୍ୟ ଯହୁଁ ଉଠିଲେ ଗରଜି
ବିରାଟ ସୈନ୍ୟ ସମସ୍ତେ ପଳାଇଲେ ଭାଜି ।
ବୀରବାହୁ ସୈନ୍ୟମାନେ କଲେ ସର୍ବଗୋଳ
ଗୋଡ଼ାଇ ପିଟିଲେ ରାଗେ ବିରାଟର ବଳ ।
ବହୁତ ସୈନ୍ୟ ମରନ୍ତେ ମନେ ହୋଇ ରୁଷ୍ଟ
କୋନ୍ତଙ୍କ ବଦନ ଚାହିଁ ବୋଲଇ ବିରାଟ ।
ସମଦଣ୍ଡ ଭାଜିଲା ମୁଁ ହୋଇଲି ନିର୍ମାକ୍ଷୀ
ସୈନ୍ୟ ନ ରହନ୍ତି ମୋର ରଣଭଙ୍ଗ ଦେଖି ।
ମୋର ସୈନ୍ୟପଳାନ୍ତି ସେମାରନ୍ତି ଗୋଡ଼ାଇ
ଭାଜି ପଳାବନ୍ତି ଗଜ ଅଶ୍ୱ ଆଦି ହୋଇ ।
ମତ୍ସ୍ୟଗଜ କୋନ୍ତଭଟ୍ଟ ବଲ୍ଲଭ ଗ୍ରନ୍ଥିକ
ଚାହିଁ ରହିଛନ୍ତି ସର୍ବେ ହୋଇଣ ଅବାକ ।
ସୈନ୍ୟମାନେ ପଳାଇଲେ ମନେ ପାଇ ଛନ୍ନ
ବୀରବର ସୈନ୍ୟମାନେ କରନ୍ତି ନିଧନ ।
ବିରାଟ କରିଲେ କୋପ ସୈନ୍ୟ ହତ ଦେଖି
ଆଶ୍ୱାସି ଆସିଣ କୋନ୍ତେ ନ ପାରିଲେ ରଖି ।
ଆବର ଏ ସ୍ଥାନେ ଥାଇ କି କରିବା କୋନ୍ତ
ଏକ୍ଷଣି ଏ ସ୍ଥାନେ ସର୍ବେ ପ୍ରାଣେ ହେବା ହତ
ରଥ ପରିତ୍ୟାଗ କରି ବେଗେ ମତ୍ସ୍ୟସାଇଁ
ପଳାଇ ଲୋଡ଼ାଇ ରାଜା ମନ୍ତ୍ରୀ ସଙ୍ଗେ ନାହିଁ
କଠୋର ଦେଖିକରି ଯେ ଘୁଞ୍ଚିଲେ ଯୁଧିଷ୍ଠି
ରଣଭୂମିକି ସେହୁ ନ ଚାହିଁଲେ ଲେଉଟି ।
ଯାଚକେଶ୍ୱର ଯୁଧିଷ୍ଠି ଆବର ନକୁଳ
ତିନିହେଁ ପଳାଇଗଲେ ଅରଣ୍ୟ ଗହଳ ।
ବିରାଟ ପଳାଇବାର ଦେଖି ସୁପକାର
ରହ ରହ ବିରାଟ ହେ ଦେଖିବା ସମର ।
ଏମନ୍ତ ସମୟେ ଆସି ମିଳିଲେ ସଇନି
ବହୁପୁରରେ ବେଢ଼ିଲେ ପୁରେ ଶଙ୍ଖଧ୍ୱନି ।
ସମୁଦ୍ର ଉଲ୍ଲୋଳ ପ୍ରାୟ ଦିଶୁଅଛି ଥାଟ
ଦେଖିଣ ଉଚ୍ଚସ୍ୱରରେ କାନ୍ଦଇ ବିରାଟ ।
ବିଚାରି ବୋଲଇ ମୁହିଁ ଅଟେ ମହାପାପୀ
କୀଚକ ମରିଲା ଯାହା ବଂଚିଛି ଅଦ୍ୟାପି ।
ଅଥବା ମରଣ ଯେବେ ନୋହିଲାକ ମୋତେ
ଏ କଷଣୁ ପାରି ଅବା ହେବି କେଉଁ ମତେ ।
ଯୋଗୀ ନ ହୋଇଲି କିମ୍ବା ତେଜି ରାଜ୍ୟଭାର
ଆଉ କି ମୋ ରାଜ୍ୟ ସତେହୋଇବମୋହର
ଏହାର ପାପଆତ୍ମା ମୁଁ ଜାଣିଲଇଁ ହୃଦେ
ପରରାଜ୍ୟେ ଆଣି ମୋତେ ପକାଏ ପ୍ରମାଦେ ।
ମୋତେ ଏ ସମରେ ଆଜି ପକାଇବ ପେଲି
ଏହାକୁ ମାରନ୍ତା କେହି ବ୍ରହ୍ମହତ୍ୟା ବୋଲି ।

ନିଷ୍ଚୟ ମୋ ରାଜ୍ୟେ ଏହୁ ବଳାଇଲା ଆଶ
ସୁହୃଦୟପଣ କରି ପାଇଲି ଝିଙ୍ଗାସ ।
ବିରାଟବୋଲଇ ମୋତେ ଛାଡ଼ ହେ ଗୋସାଇଁ
ଗହଳ ଥାଟ ଦେଖି ମୁଁ ରହି ନ ପାରଇ ।
ଏଥିରୁ ବେଳେବ ମୋତେ ନିଅ ତୁ ଉଦ୍ଧାରି
ମତ୍ସ୍ୟଦେଶରେ ପଛେ ତୁ ହୁଅ ଅଧିକାରୀ ।
ଶୁଣ ହେ ବିରାଟ ରାଜା ବୋଲଇ ବଲ୍ଲଭ
କ୍ଷତ୍ରୀବୃତ୍ତି ଅଟେ ଏହୁ ବଡ଼ାଇ ଦୁଲ୍ଲଭ ।
ସମର ଆରମ୍ଭ କରିଅଛି ବୀରବାହୁ
ଏଥୁ ଚଳିଗଲେ ପୁଣି ବର୍ତ୍ତିବା ବା କାହୁଁ ।
ତୋତେମତେଦେଖିସୈନ୍ୟ ଦେଇଅଛିବେଢ଼ି
ଆମ୍ଭର ଥୋକାଏ ସୈନ୍ୟ ଯାଆନ୍ତୁ ବାହୁଡ଼ି ।
ଏହା ବିଚାରନ୍ତେ ଆସି ବେଢ଼ିଲେ ସଇନି
ଭୀମସେନ ରହିଅଛି ବିରାଟକୁ ଘେନି ।
ବେଗେବେଢ଼ି ଲେମୁକୁଟବନ୍ଧାଯେତେଯୋଦ୍ଧି
ମହାକୋପରେ ନାରାଚମାନଙ୍କୁ ସେ ବିନ୍ଧି ।
ଭୀମସେନ ବୋଲେ ତୁମ୍ଭେ ଶୁଣରାୟ ମତ୍ସ୍ୟ
କାହିଁକି ବିସ୍ମୟ ହେଉ ଦେଖ ତୁ ପ୍ରତ୍ୟକ୍ଷ ।
ଏହିକ୍ଷଣି ସମଦଣ୍ଡ ନିବାରିବ ହେଳେ
ମାରିବ ସକଳ ସୈନ୍ୟ ତୋର ଅଙ୍ଗଛଳେ ।
ବିନ୍ଧୁଛନ୍ତି ଯୋଦ୍ଧା ଅସ୍ତ୍ର ଆକର୍ଣ୍ଣ ପୂରାଇ
ନାରାଚ ଚୂର୍ଣ୍ଣ ହୁଅନ୍ତି ଭୀମ ଅଙ୍ଗେ ଯାଇ ।
ପର୍ବତ ଉପରେ ଯେହ୍ନେ ବରଷଇ ଜଳ
ଭୀମସେନ ଅଙ୍ଗେ ବାଜି ପଡ଼େ ଭୂମିତଳ ।
ଶର ନଭେଦିଲା ଯହୁଁ ଭୀମସେନ ଅଙ୍ଗ
ବିମୁଖରେ ଯୋଦ୍ଧାମାନେ ତହୁଁ ଦେଲେଭଙ୍ଗ ।
ବସାଭଗ୍ନ ହେଲେ ଯେହ୍ନେ ପଳାବନ୍ତି ପକ୍ଷୀ
ଭାଜିଗଲେ ସୈନ୍ୟଦଳ ହୋଇଣ ନିର୍ମାକ୍ଷୀ ।
ଅମାନୁଷ କାର୍ଯ୍ୟ ତହୁଁ କଲା ବୃକୋଦର
ଦ୍ୱାଦଶ ଯୋଜନ ଯାଏ କଲା ଛାରଖାର ।
ରଥ ଗଜ ଅଶ୍ୱ ଆଦି ପଦାତି ସଇନି
ଭାଜିଗଲେ ଯେ ଯାହାର ନିଜ ପ୍ରାଣ ଘେନି ।
ରୁଧିରରେ ବିଲେପନ ବୃକୋଦର କାୟ
ଦିଶେ ଅଷ୍ଟାଙ୍ଗ ଶରୀର ମନ୍ଦାର ପରାୟ ।
ସତେକ ପରାର୍ଦ୍ଧ ସୈନ୍ୟ ଆଣି ବୀରବାହୁ
ପାଞ୍ଚ ପରାର୍ଦ୍ଧ ଘେନିଣ ପଳାଇଲେ ସେହୁ ।
ଦନ୍ତରେ ତିରଣ ମୁଖେ ଭରନ୍ତି ଅଙ୍ଗୁଷ୍ଠି
ବାହନ ତେଜିଣ କେହୁ ଚରଣରେ ଲୋଟି ।
ନିର୍ଭୟ ନିଷ୍ଠୁର ସେହୁ ଅଟେ ନିରପେକ୍ଷ
ଶରଣ ବୋଇଲେ ମାରେ ଦ୍ୱିଗୁଣ ପ୍ରତ୍ୟକ୍ଷ ।
ରୁଦ୍ର ଅବତାର ପ୍ରାୟ ଦିଶେ ବୀର ଭୀମ
ବୀରବାହୁର ସୈନ୍ୟଙ୍କୁ ଟିକେ ନାହିଁ କ୍ଷମା ।
ଗୋଡ଼ାଇ ବୋଲଇ ଆରେ ରହ ବୀରବାହୁ
କୁଆଡ଼େ ପଳାଇଯିବୁ ତୋର ପଛେ ରାହୁ ।
ଏବେ ଲେଉଟାଇ ତୁହି ରଖାଅ ତୋ ହୃଦ
ନିସତ ହୋଇଲେ ତୋର ନ ରହିବ କାୟ
କଟାଳ ଦେଖି ସହସ୍ର ଯୋଦ୍ଧାଙ୍କର ତୁଳେ
ନବନିଶି କୁନ୍ତ ଧରି ଏକାଳେ ରହିଲେ ।
ଦେଖ ପାବନି ପାତିଲା ନେଇ ବାମଅଙ୍ଗ
ସକଳ କୁନ୍ତ ପଡ଼ିଣ ହୋଇଗଲା ଭଙ୍ଗ ।
ଅସ୍ତ୍ର ନ କାଟନ୍ତେ ବୀରେ ରହିଥିଲେ ଘୁଞ୍ଚି
ଭୀମ ବୋଇଲା ତୁମ୍ଭେ ରେ ହୋଇଲନିର୍ମାକ୍ଷୀ
କାଳଚକ୍ର ପରି ବୁଲେ ଭୀମଙ୍କର ଆଖି
ଯୋଦ୍ଧାମାନଙ୍କର ଭୟ ହେଲା ତାହା ଦେଖି
ଚନ୍ଦ୍ରକୁ ଦେଖିଣ ରାହୁ ପଡ଼େ ଯେହ୍ନେ ମାଡ଼ି
ସେହିପରି ଭୀମ ପିଟେ ଲୌହଦଣ୍ଡ କାଢ଼ି ।
ଅଶ୍ୱମାନେ ହୋଇଗଲେ ବେନି ବେନି ଖଣ୍ଡ
ଯୋଦ୍ଧାମାନଙ୍କ ଉପରେ ପଡ଼ନ୍ତେ ସେ ଦଣ୍ଡ
ନିସତ ହୋଇଣ ଦନ୍ତେ ଧରିଣ ତିରଣ
ତା ଦେଖି ଦ୍ୱିଗୁଣ ପଦେ କରେ ପ୍ରହାରଣ ।
ପଳାନ୍ତେ ଯୋଦ୍ଧାଙ୍କୁ ନେଇ ପହୁଡ଼ନ୍ତିକୋନ୍ତେ
କେହୁ ମନୁଷ୍ୟ ବର୍ତ୍ତିବ ସେହୁ ପ୍ରହାରନ୍ତେ ।
ସହସ୍ରେକ ଯୋଦ୍ଧା ହୋଇଗଲେ ଏକମୁଖ
ରଣେ ପଡ଼ିଲେ ସମସ୍ତେ ହୋଇଣ ବିମୁଖ ।
ମୁଷଳ ଏକ ଘେନିଣ ରଣେ ବୀରବାହୁ
ଭୀମ ଉପରେ ପିଟିଲା ତାକୁ ଆଣି ତହୁଁ ।
ତା ଦେଖିଣ ବୃକୋଦର ଧରେ ବାମହସ୍ତେ
ଛଡ଼ାଇଣ ଫିଙ୍ଗି ଦେଲା ତାହାକୁ ତୁରିତେ
ବୃକ୍ଷରେ ପ୍ରହାର କଲା ଏକ ପଦାଘାତ
ବୀରବାହୁ ପଡ଼ିଗଲା ହୋଇ ଭୂମିଗତ ।
ପଡ଼ନ୍ତେ ମୁଥକେ ପୁଣି ମାଇଲେକ ତୋଳି
ବୀରବାହୁ ଦେହ ବେଗେ ହୋଇଗଲା ଧୂଳି ।
ରାଜାର ପଡ଼ନ୍ତେ ସୈନ୍ୟ ଭାଜି ପଳାଇଲେ
ଥୋକେ ଦନ୍ତେକୁଟା ଦେଇ ବନରେ ପଶିଲେ
ଭୀମସେନ ବିଜେକଲେ ବିରାଟକୁ ଘେନି
ଆସିଣ ମିଳିଲେ ପାଶେ ଆପଣା ସଇନି ।
ମାଡ଼ିଣ ବସିଲା ରାଜା ସେ କଚ୍ଛି ନଗର ।
ଅନେକ ଧନ ଭଣ୍ଡାର କରିଦେଲେ ଚୂର ।
ଶ୍ୱେତ ନାମେ ବିରାଟର ଯେ କନିଷ୍ଠ ପୁତ୍ର
ତାହାକୁ କଚ୍ଛି ରାଜ୍ୟରେ ଦେଲେ ଦଣ୍ଡଛତ୍ର ।

ଜୟ ଜୟ ଜଗନ୍ନାଥ ଶରଣ ବତ୍ସଳ
ତୁମ୍ଭ ପାଦେ ରହୁ ଚିତ୍ତ ହୋଇଣ ଅଟଳ ।
ଏ ସଂସାର ମୋହମାୟା ଜାଲରେ ମୁଁ ପଡ଼ି
ତୁମ୍ଭର ଶ୍ରୀ ନାମାବଳୀ ଯାଉଅଛି ଛୁଡ଼ି ।
ପୁଣି ଏହି ଷଡ଼ରିପୁ ମୋତେ କର କକ୍ଷା
ଏହି ବିପଦରୁ ବାରେ ତାରି କର ରକ୍ଷା ।
ତୁମ୍ଭ ପାଦ ବିନା ମୋର ଅନ୍ୟେ ନାହିଁ ଆଶ
ବିରାଟ ପର୍ବେ ମାଗୁଛି ମୁଁ ଶାରଳାଦାସ ।



## ଉତ୍ତରର ଜୟ ବାର୍ତ୍ତା ଶୁଣି ବିରାଟର ଆନନ୍ଦ ଓ ଯୁଧିଷ୍ଠିରଙ୍କର ମସ୍ତକରୁ ରକ୍ତପାତ

କହନ୍ତି ଅଗିସ୍ତି ମୁନି ଆରେ ନୃପବର
ଏଥୁଅନ୍ତେ ଯାହାହେଲା ଶୁଣ ସମାଚାର ।
ରଥ ଅଶ୍ୱ ଗଜ ଛାଡ଼ି ଅଇଲେ ବହୁତ
ଏସନ ସମୟେ ବାର୍ତ୍ତା ଦେଲା ଯାଇଁ ଦୂତ ।
ସ୍ୱାମୀ ଦଣ୍ଡଭଗ୍ନ ହୋଇ ତ୍ରିଗର୍ତ୍ତ ଗମିଲା
ଦୁର୍ଯ୍ୟୋଧନ ଆଗେ ଯାଇ ସମସ୍ତ କହିଲା ।
ଶରଣପଞ୍ଜର ସେହୁ ମାନଚକ୍ରବର୍ତ୍ତୀ
ମତ୍ସ୍ୟଦେଶକୁ ଅଇଲା ରାୟ କୁରୁପତି ।
ରାଜ୍ୟେ ରାଜା ନାହିଁ ବୋଲି ବାରତାପାଇଲା
ରାଜ୍ୟେ ନ ପଶି ଗୋଧନପଲ ଘେନିଗଲା ।
ଶୁଣିକରି ବିରସ ଯେ ହୋଇଲା ବିରାଟ
ଭୀମସେନ ବୋଇଲାରେ ଲେଉଟାଅ ଥାଟ ।
ଶ୍ୱେତକୁ କକ୍ଷ ଦେଶରେ ନୃପତି କରାଇ
ବେଗେ ଆସେ ମତ୍ସ୍ୟାଧିପ ଥାଟକୁ ଚଳାଇ ।
ପବନୁ ବେଗେ ପଳାଏ ଥାଟ ଭୀମସେନ
ମୋର ଯିବାଯାଏ ଯେବେଥାଅ ଦୁର୍ଯ୍ୟୋଧନ ।
ଏତେକ ପୁଣ୍ୟ ଅଛିକି ମୋର ଏହି କର୍ମେ
ଭେଟିବି କି କଉରବେ ଆଜିର ସଂଗ୍ରାମେ ।
ନିଜଦେଶେ ପ୍ରବେଶଇ ଯାଇଣ ତଡ଼ିତ
ପୁଣି ଦେଶାଉର ବାର୍ତ୍ତା ଆସିଣ କହନ୍ତି ।
ଭୋଦେବ ମାନଗୋବିନ୍ଦ ଗୋରୁନ୍ୟନ୍ତେହେରି
ଉତ୍ତର ଗମିଲା ଶୁଣି ରଥେ ଚଢ଼ିକରି ।
ଶୁଣିଣ ବିସ୍ମୟ ଅତି ହୋଇଲା ବିରାଟ
ଉତ୍ତର ପରାକ୍ରମେ କି ଜିଣିବ ସେ ଥାଟ ।
କୋନ୍ତ ପଚାରିଲେ ତହିଁଗଲା କିଏ ସଙ୍ଗେ
ଅଥବା କାହାକୁ ଘେନିଗଲା ରଣରଙ୍ଗେ ।
ଦୂତ କହେ ନପୁଂସକ ଯେଉଁ ବୃହନ୍ନାରୀ
ତାହାକୁ ନେଲେ ସାରଥି ପଣରେ ହକାରି ।
କୋନ୍ତବୋଇଲେହୋ କିଛି ନିବିଚାର ଚିତ୍ତେ
ଉତ୍ତରକୁ ଚିନ୍ତା ନାହିଁ ବୃହନ୍ନାରୀ ଥାନ୍ତେ ।
ବଲ୍ଲଭ କଢ଼ାଏ ବାଟ ଅତି ବେଗ ବେଗ
ସମସ୍ତଙ୍କୁ ପଛକରି ଆପେ ଚାଲେ ଆଗ ।
ଭୀମ ଆସିବାର ବାର୍ତ୍ତା ଦୂତ ମୁଖୁ ଶୁଣି
ପାର୍ଥ ଚିନ୍ତେ କୁରୁବଳ ଦଳିବି ଏକ୍ଷଣି ।
ଜୀବନ୍ୟାସ ଶରଗୋଟି ପେଷିଲା କିରୀଟି
ଜୀବନ ପାଇ କୌରବେ ସମସ୍ତେ ହିଁ ଉଠି
ରଜନୀ ପ୍ରଭାତେ ଚେତା ପାଇଲେ ସକଳ
ସର୍ବେ ପାଲଟିବା ଦେଖିକଲେ ମହାଗୋଳ ।
କେ ବୋଲେ ମୁକୁଟମୋର କିମ୍ପା ଏହୁନେଲା
କେ ବୋଲଇ ମୋର ଗଳୁହାରଚୋରିକଲା ।
କେ ବୋଲଇ ମୋହର ତ ଗଦା ଧନୁ ନାହିଁ ।
ପଦାତି ହୋଇଣ ରଥୀ ବୋଲ କାହିଁପାଇଁ ।
ଭୀଷ୍ମ ବୋଇଲେ ନକଲଯେବେ ଆମ୍ଭବୋଲ
କାଳେ ଏଥେଫଳିଲା ହୋ ତାର ପ୍ରତିଫଳ ।
ଏହିମତେ ବିଡ଼ମ୍ୱନ କଲା ଫାଲଗୁନି
ପଳାଇ ଯାଅ ନିର୍ଲ୍ଲଜ ଜୀବନକୁ ଘେନି ।
ଭୀଷ୍ମଙ୍କର ବାକ୍ୟ ଶୁଣି ଶଲ୍ୟ ଯେ ବୋଇଲା
ଧର୍ମେ ସମସ୍ତଙ୍କର ହୋ ଶିର ନ ଛେଦିଲା ।
ଶକୁନି ବୋଲଇ ମରିଥିଲେ ଭଲ ହୁନ୍ତା
ମରଣୁ ଅଧିକ ହେଲା ଏହୁ ବଡ଼ କଥା ।
ଭୀଷ୍ମ ବୋଲେ ପଳାଅରେ ବେଗେ ମୃଗପଲ
ସଂପ୍ରତି ମାରିବେ ଆସି ଭୀମ ଅଷ୍ଟମଲ୍ଲ ।
ଅସମ୍ଭାଳ ଉଲଗ୍ନରେ ପଳାନ୍ତି ସଇନି
କେ ପାଦେ ପଳାଇଯାନ୍ତି ଅଶ୍ୱକୁ ନ ଘେନି ।
ଗଜ ପଳାବନ୍ତେ ମାଡ଼ି ଯାଉଛି ପଦାତି
ରକତରେ କର୍ଦ୍ଦମ ଯେ ହେଲା ବସୁମତୀ ।
ଅସମ୍ଭାଳ ହୋଇଣ ଯେ ପଳାବନ୍ତି ବଳେ
ଏଥୁଅନନ୍ତରେ ପୁଣ ଶମୀବୃକ୍ଷ ତଳେ ।
ଦାରୁକକୁ ହକାରିଣ ବୋଇଲେ ଫାଲଗୁନି
ଦ୍ୱାରକାକୁ ଯାଅ ତୁମ୍ଭେ ନନ୍ଦିଘୋଷ ଘେନି
ସମସ୍ତ ବାରତା ଯାଇ କହ ହରି ଆଗେ
ଜିଣିଲି କୌରବ ମୁହିଁ ବିଷ୍ଣୁ ଅନୁରାଗେ ।

ଚଳଇ ଦାରୁକ ନନ୍ଦିଘୋଷ ରଥ ଘେନି
ଧନୁତୂଣକୁ ବୃକ୍ଷରେ ରଖନ୍ତି ଫାଲଗୁନି ।
ସ୍ତିରୀବେଶେ ଅଳଂକୃତ ହୋଇଲେ ଅର୍ଜ୍ଜୁନ
ଗୁପତବାସ ଅଛଇ ବୋଲି ତିନିଦିନ ।
ବୀର ବେଶରେ ଭୂଷଣ ସୁଦେଷ୍ଣାର ସୁତ
ଅର୍ଜ୍ଜୁନର ପାଦପଦ୍ମେ ବିନୟ ବହୁତ ।
ରଥୀପଣେ ବସିବାକୁ ମୋର ଇଚ୍ଛା ନାହିଁ
ଶରୀର କମ୍ପଇ ମୋର ତୋର ମୁଖ ଚାହିଁ ।
ଅର୍ଜ୍ଜୁନ ବୋଇଲେ ଭ୍ରାନ୍ତି ନ କର ତୁ କିଛି
ଆବର ଅଜ୍ଞାତବାସ ତିନିଦିନ ଅଛି ।
ତହୁଁ ଉତ୍ତର ଯେ ରଥୀ ଅର୍ଜ୍ଜୁନ ସାରଥି
ଶମୀବୃକ୍ଷର ତଳରୁ ଚଳିଲେ ତଡତି ।
ଅର୍ଜ୍ଜୁନ ସମ୍ବାଦ ଘେନି ଦାରୁକ ଚଳିଲେ
ନନ୍ଦିଘୋଷ ରଥେ ବସି କୃଷ୍ଣଙ୍କୁ ଭେଟିଲେ ।
ସଂଗ୍ରାମର କଥା ସବୁ କହିଲେ ସଂକ୍ଷେପି
ଏକା ଅର୍ଜ୍ଜୁନ କୌରବ ବଳ ଗଲେବ୍ୟାପି ।
ଅଷ୍ଟାଦଶ କ୍ଷୌଣୀ ବଳ ଭୀଷ୍ମ ଦ୍ରୋଣମୂଳେ
ସମସ୍ତ ଧ୍ୱଂସିଲା ପାର୍ଥ ରଣ କୁତୂହଳେ ।
ପୁଣି କୃତ୍ୟାକୃତ୍ୟ କଲେ ତୁଳସୀବଲ୍ଲଭ
ହୃଦଗତରେ ବିସ୍ମୟ ହେଲେ ବଳଦେବ ।
ନନ୍ଦିଘୋଷକୁ ଚାହିଁଣ କଲେ ଧନ୍ୟ ଧନ୍ୟ
ଏଥିରେ ବିଜୟ କଲା ମୋହର ଅର୍ଜ୍ଜୁନ ।
ଏଥୁ ଅନନ୍ତରେ ଶୁଣ ମତ୍ସ୍ୟର ବାରତା
ବଲ୍ଲଭ ଆସେ କୌରବେ ଦେବାକୁ ଅବସ୍ଥା ।
ସମଦଣ୍ଡ ଘେନି ପଛେ ଆସଇ ବିରାଟ
ମତ୍ସ୍ୟଦେଶରେ ପ୍ରବେଶହେଲା ଯାଇ ଥାଟ ।
ଚାରଗଣ ଜଣାଇଲେ ଶୁଣ ମତ୍ସ୍ୟରାୟ
ଜଗତେ ଉଦିତ ହେଲା ତୋହର ତନୟ ।
ଅଠରକ୍ଷଉଣୀ ବଳ ସେ କୁରୁସାଗର
ତାକୁ ଜିଣିବା ସମର୍ଥ ହେଲ ତୋ କୁମର ।
ବିରାଟ ବୋଲେ ଉତ୍ତର ତୁହି ଅଟୁ ସାଧୁ
ଏକା ମନ୍ଥନ କଲୁ ତୁ ସେ ଅଗାଧସିନ୍ଧୁ ।
କୋନ୍ତବୋଲେ ବୃହନ୍ନାରୀ ସାରଥି ଯାରଥେ
ତାକୁ ଜିଣନ୍ତା କେ ଅଛି ଏ ତିନିଜଗତେ ।
ତାହା ଶୁଣିକରି କୋପ କରଇ ବିରାଟ
ଓଷ୍ଠେ ଦନ୍ତଚାପି ସେହୁ ମୁଖକରେ ପୁଷ୍ଟ ।
ଆପଣେ ଆପଣେ ରାୟହେଲା ଶାନ୍ତମୂର୍ତ୍ତି
ଦେଖିକୋନ୍ତେ ନବୋଇଲେ ତାହାକୁ ଭାରତୀ ।
ବିଜୟ ମତ୍ସ୍ୟ ନରେନ୍ଦ୍ର ଆସ୍ଥାନେ ହରଷେ
ସୈନ୍ୟବଳ ଗଲେ ଯେ ଯାହାରପୁରବାସେ ।
ରୋଷଶାଳକୁ ତୋଷରେ ଚଳିଲା ବଲ୍ଲଭ
ରାନ୍ଧଣାରେ ଲାଗିଲା ସେ ହୋଇଣ ସୁଲଭ ।
ଅଶ୍ୱଶାଳାରେ ପ୍ରବେଶ ହୋଇଲା ନକୁଳ
ଗୋଧନ ଘେନି ରହିଲେ ଯାଇଁ ତନ୍ତ୍ରୀପାଳ ।
ବିରାଟ ବୋଇଲା ଖଞ୍ଜା ହୋଇବା ପର୍ଯ୍ୟନ୍ତ
ଆସ ଆସ ପଶାପଢ଼େ ଖେଳିବା ହେକୋନ୍ତ
ଶୁଣି ସଧୀରେ କହନ୍ତି ଏହିବାକ୍ୟ ଧର୍ମେ
ପୁତ୍ର ତୋହର ଉଦିତ ହୋଇଲା ସଂଗ୍ରାମେ ।
ଉତ୍ସବ କରାଇବୁ ନା ତୋର ବେନି ଦେଶେ
ପଶା ଉଚିତ ନୁହଇ କିଞ୍ଚିତ ହରଷେ ।
ବିରାଟ ବୋଇଲା କିଛି ନଯୋଗାଇ ମୋତେ
ତୋହର ମହିମା ଧନ୍ୟ ଏ ତିନିଜଗତେ ।
ଏବେ ବେନିଦେଶମୋତେହୋଇଲାନାଭୋଗ
ସର୍ବ ସୁଲକ୍ଷଣ ପୁତ୍ରହୋନ୍ତି ଉପଯୋଗ ।
କୋଠି କାଟ ବୋଲି ରାୟ ପକାଇଲା ଖଡ଼ୀ
ପ୍ରଭୁ ଲୋକଙ୍କର ଆଜ୍ଞା କିଏ ପାରେ ଏଡ଼ି ।
ଶ୍ରୀଭୁଜରେ ଖଡ଼ି ଘେନି ଧର୍ମଙ୍କର ସୁତ
ପଶାକାଠି କଟାନ୍ତି ସେ କୋପରେ ପଣ୍ଡିତ
କୋନ୍ତଭଟ୍ଟ ପଣ୍ଡାଏ ଯେ କାଟିଲେକ କୋଠି
ବିରାଟ ପଡ଼ିଲା ଯହୁଁ ଘେନି ପଶାକାଠି ।
ବିରାଟ ଧର୍ମନନ୍ଦନ ଖେଳିଣ ବସିଲେ
ଅତ୍ୟନ୍ତ ହରଷଯୁକ୍ତ ହୋଇ କ୍ରୀଡ଼ାକଲେ ।
ଦେଶାଉର ବାରତା ଯେ କହିଲା ଆସ୍ଥାନେ
ପଳାଇଲେ ରଣେ ହାରି କଉରବମାନେ ।
ଗୋଗୋଷ୍ଠରେ ଛାଡ଼ିଦେଲା ନିଜଗୋରୁପଲ
ଅଳଙ୍କାର ନାଥ ପ୍ରାୟ ଦିଶେ ତାର ବାଳ ।
ନଗ୍ରେ ଆସିଣ ପ୍ରବେଶ ହେଲା ଚାପଧାରୀ
ମାତଳି ପରାୟେ ରଥବାହେ ବୃହନ୍ନାରୀ ।
ବିରାଟ ବୋଲଇ କୋନ୍ତସୁତ ମୋର ଧନ୍ୟ
ଏକା ହୋଇଣ ଜିଣିଲା କଉରବ ସୈନ୍ୟ ।
କୋନ୍ତବୋଲେ ବୃହନ୍ନାରୀ ସାହାଯାରଥରେ
ତାହାକୁ କେଜିଣିପାରେ ତ୍ରୈଲୋକ୍ୟଭିତରେ
ଶୁଣିଣ ବିରାଟ କୋପେ ହୋଇଲା ପ୍ରଚଣ୍ଡ
ରାଗେ ମତ୍ସ୍ୟାଧିପ ଅଙ୍ଗ ଜଳଇ ତ୍ରିପଣ୍ଡ ।
ରକ୍ତ କୁସୁମ ପରାୟେ ଦିଶେ ବେନି ନେତ୍ର
ବଦନ ଦେଖିଣ ପୁଣ ଉପ୍ରୋଧ ବହୁତ ।
ଖେଳୁଛନ୍ତି ପଶାଖେଳ ଅତି କୁତୂହଳେ
ଅନେକ ବାର ହାରିଲେ ମତ୍ସ୍ୟ ମହୀପାଳେ
ବିଜେ ଉତ୍ତରକୁମର ଭିତର କଟକ
ପୁଣି ବାରତା କହିଲା ଆସି ଦୂତ ଏକ ।

ସ୍ୱାମୀ ଉତ୍ତର ତୋହର କଉରବ ଜିଣି
ଦ୍ୱାରେ ବିଜେକଲା ଆଜି କାର୍ତ୍ତିକେୟ ଜାଣି ।
କୋନ୍ତବୋଲେ ବୃହନ୍ନାରୀ ଅଟେ ଯାରସାହା
ତ୍ରୈଲୋକ୍ୟରେ ଜିଣିବାକୁ ଅଛି କାର ବାହା ।
ସୈନ୍ୟଘେନି ବାହିଥିଲା ସେ ମାନଗୋବିନ୍ଦ
ବୃହନ୍ନାରୀ ଥିଲେ ସରି ନୁହଇ ଯେ ସ୍କନ୍ଦ ।
ପୁଣ ପୁଣ ତାହାଙ୍କର ସେ ବଚନ ଶୁଣି
ରାଗରେ ଅଙ୍ଗ କମ୍ପଇ ରମ୍ଭାପତ୍ର ଜିଣି ।
ଆହେ କୋନ୍ତଭଟ ଅଟୁ ତୁହି ବଡ଼ ଲଘୁ
ନପୁଂସକ ଛାରକୁ ତୁ ପୁଣପୁଣ ଯୋଗୁ ।
ରାତ୍ର ପ୍ରକାଶ ସମୟେ ନଚାହିଁ ଯା ମୁ ।
ଦିନକ ସୁକୃତ ନାଶଯାଇ ହୁଏ ଦୁଃଖ ।
ମୋହର ପୁତ୍ରକୁ ବଳବନ୍ତ ହିଁ ନଭାଷୁ
ନପୁଂସକ ଛାରକୁ ତୁ ପ୍ରତିଜ୍ଞା ପ୍ରକାଶୁ ।
ଅଯାତ୍ରାର ଲୋକକୁ ସେ ନେଲା ଯାତ୍ରାକାଳେ
କେହି ନଥିଲାକୁ ତାରନେଲା ଆର୍ତ୍ତବେଳେ ।
ରଥରେ ଥିଲା ସେ ଏକା ଲାଖ ମାତ୍ର ହୋଇ
ପୁତ୍ରବଳ ବିନୁ ମୋର ତାହା ଛାର ପାଇଁ ।
କୋନ୍ତବୋଇଲେ ହୋ କହୁ ତୁହିହୁଡ଼ିକରି
ସିଂହ ଶୃଗାଳ ହୋଇବ କାହିଁ ଏକସରି ।
ଯଦ୍ୟପି ସେ ନପୁଂସକ ହୋଇଲା ଅଜାତି
ବୃହନ୍ନାରୀ ଦର୍ପେ ସିନା ଜିଣେ କୁରୁପତି ।
ଯାକୁ ଭୀଷ୍ମ ଦ୍ରୋଣ କୃପ ଅଶ୍ୱଥାମା ସାହା
ଉତ୍ତର ପରାକ୍ରମେ କି ଜିଣିହୁଏ ତାହା ।
କହୁ କହୁ କୋପକଲା ନୃପ ମହାବାହୁ ।
ଅଧରକାମୋଡ଼ି ବୋଲେ ମୋତେ ଏହାକହୁ ।
କାଳଚକ୍ର ପ୍ରାୟେ ଭ୍ରମେ ଆଖି ଦୁଇଗୋଟି
ରାଗରେ ବିରାଟରାଜା ମାରେ ପଶାକାଠି ।
ଆକ୍ରୋଶି ପ୍ରହାର କୋପେକଲେ ସେ ବିରାଟ
କାଠିଯାଇଣ ବାଜିଲା କୋନ୍ତଙ୍କ ଲଲାଟ ।
କୋନ୍ତଙ୍କ କପାଳେପଡ଼ି ସେହି ପଶାକାଠି
ରୁଧିର ବାହାରହେଲା ଶିରଚର୍ମ ଫାଟି ।
ରୁଧିର ପଡ଼ିଲା ବେଗେ କପାଳରୁ ତଳି
ଆପଣା ବସ୍ତ୍ରେ ରୁଧିର ଧରିଲେ ସମ୍ଭାଳି ।
ଆହେ ଚଇତନ ଶୁଣ ଯୁଧିଷ୍ଠି ମହିମା
ଅଜାତଶତ୍ରୁ ଅଟନ୍ତି ଅକୋପୀ ମହାତ୍ମା ।
ଏକେଷ୍ଟରେ ବିରାଟକୁ ଟିକେ କୋପନାହିଁ
ହୁଡ଼ି ବିରାଟ ବୋଲିଣ ନେଲେ ପଶାବାହି ।
ଯୁଧିଷ୍ଠିର ରକ୍ତ ଯେବେ ପଡ଼ିଥାନ୍ତା ପୃଥ୍ୱୀ
ନିଶ୍ଚୟ ଶସ୍ୟ ନୁହନ୍ତା ଜାତ ବସୁମତୀ ।
ମେଘମାଳ ଜଳବୃଷ୍ଟି ନକରନ୍ତେ ଭଲେ
ମହୀ ପ୍ରଳୟ ହୁଅନ୍ତା କୋନ୍ତ କୋପ କଲେ
ବିରାଟ କୋପ କରିଣ ମାଇଲା ପଶାଏ
ପୂର୍ବର କର୍ମବିଧାନ ମେଣ୍ଟିଲା ଥୋକାଏ ।
ଯୁଧିଷ୍ଠିର କୋପେ ଯେବେ କରନ୍ତେ ଅଳପ
ମତ୍ସ୍ୟଦେଶ ମଘଦେଶ ସରନ୍ତାଟି ଦର୍ପ ।
ବୈବସ୍ୱତମନୁ ପୁଚ୍ଛାକଲେ ଅଗସ୍ତିଙ୍କି
ଏସନ ପ୍ରକାରେ କିମ୍ପା ହେଲା ଯୁଧିଷ୍ଠି କି ।
ଅଜାତଶତ୍ରୁ ଅକୋପ ସେହୁ ମହାଶୟ
ଶତ୍ରୁତା ମିତ୍ରତା ଅଟେ ତାଙ୍କ ଏକମୟ ।
ପାପମୃତ୍ୟୁ ନାହିଁ ଯେଉଁ ମହାତ୍ମାର ଅଙ୍ଗେ
ତାହାକୁ ପଶା ପ୍ରହାରକଲା ଯେଉଁ ବାଗେ ।
ଅଗସ୍ତି ବୋଇଲେ ଶୁଣ ମନୁ ମହାରଥା
କର୍ମର ଅର୍ଜିତଫଳ ଫଳିଲା ସର୍ବଥା ।
ଶତଶୃଙ୍ଗେ ଯୁଧିଷ୍ଠିର ଜନ୍ମିଲେ ଯେ କାଳେ
ଗହନବନେ ଭ୍ରମନ୍ତି ସେହୁ କାଳେକାଳେ ।
ଲାଖ ଯେ କରନ୍ତି ହସ୍ତ ସୂତ୍ରର ନିମନ୍ତେ
ଗୋଡ଼ି ଗୋଟିଏ ଗୋଟିଏ ମାରି ଅନୁବ୍ରତେ
ଦିନେ ଆକର୍ଷି ମାଇଲେ ଗୋଟି ଏକଗୋଟି
ଦୁର୍ଦ୍ଦୁର ମୁଣ୍ଡରେ ବାଜି ରକ୍ତବହେ ଫୁଟି ।
ସେହି ପ୍ରହାରରେ ନାଶହେଲା ସେ ମଣ୍ଡୁକୀ
ତାର ପ୍ରାଣ ଘେନିଗଲା ଶମନ ତହିଁକି ।
ଚିତ୍ରଗୁପ୍ତ ବୋଲେ ବହୁକାଳ ଏ ବଞ୍ଚନ୍ତା
ଯୁଧିଷ୍ଠିରଙ୍କ ପ୍ରହାରେ ହେଲା ହତଚେତା ।
ମମବୋଲେଅଦୋଷରେନେଲା ହତ୍ୟାଗୋଟି
ତାହାର ଲଲାଟେ ପଡୁ ବିରାଟର କାଠି ।
ଏହିପରି ଶାପକୁ ଯେ ଦେଲେ ନାଶକର
ତେଣୁ ପଶାକାଠି ରାଜାର କରିଲେ ପ୍ରହାର ।
ଜୟ ଜୟ ବିରଞ୍ଚି ତୁ ଦେବଙ୍କର ମୂଳ
ବିହନ୍ତାପୁରୁଷ ତୁହି ଅଟୁ ସର୍ବକାଳ ।
ଯେ ଯାହା କରଇ ତାହା ପ୍ରତ୍ୟକ୍ଷରେ ଦେଖ
ଏ ଦୁଷ୍ଟକଥାମାନ ତୁ କ୍ଷଣକେ ନିରେଖ ।
ମାତାଗର୍ଭେ ପିତାବୀର୍ଯ୍ୟେ ଉପୁଜଇ ପିଣ୍ଡ
ଧାତୁ ବଦଳାଇ ତୁ ଯେ କରୁ ସର୍ବରୁଣ୍ଡ ।
ଅଥବା ଏହୁ ପ୍ରସଙ୍ଗ ଯେହୁ କରେ ନିନ୍ଦା
ଏକାଥରକେ କାହାକୁ କରିପାରେ ବନ୍ଧା ।
ଯାବତ ତପନ ତାପନ ହୋଇବ ଶୀତଳ
ପରମବ୍ରହ୍ମକୁ ଘେନି ପଞ୍ଚ ଦାବାନଳ ।
ଚତୁର୍ଥର କର୍ମ ମୁହିଁ ଅଟେ ମନ୍ଦଭାଗୀ
ପରମ ପୁରୁଷ ଏକା ତୁ କର୍ମ ନିଯୋଗୀ ।

ସର୍ବସଂହାରଣର ନାଥ ଜଗଜ୍ଜନ ଚିନ୍ତା
ସିଦ୍ଧପୁରୁଷ ଅଭୟ ତୁହି ବରଦାତା ।
ମାୟାମୋହ ପଟଳ ତୁ ଦଇବ ରଚନ
କ୍ରୋଧ ମୋହ ରାଗ ଏହୁ ଅରକୁ ବନ୍ଧନ ।
ନମଇଁ ତୁମ୍ଭ ଚରଣେ ଆହେ ମହାବାହୁ
ଦୁରାପଦ ବିଘ୍ନ ମୋର ସର୍ବ ମେଣ୍ଟିଯାଉ ।
ବିହନ୍ତା ପୁରୁଷକୁ ମୋ ବିନୟ ଯୁକତେ
ଶୁଦ୍ରମୁନି ଶାରଳା ଯେ ଭାବେ ଅନୁବ୍ରତେ ।
ଲେଖନ ପୁରୁଷ ଆଉ ଶାହାସ୍ତ୍ର ସମାଧି
ଏହାଙ୍କର ପ୍ରସନ୍ନରେ ଏହୁ ସର୍ବସିଦ୍ଧି ।
କିଞ୍ଚିତ ପାତକ ରାଶି ଥିଲା ମୋର ପୂର୍ବେ
ଭୋଦେବ ପୁରୁଷ ତାହା ଖଣ୍ଡିଦେବୁ ଏବେ ।
କଳିକାଳ ବିକଳରେ ପାପପୁଣ୍ୟ ବେନି
ପୂର୍ବ ଦୋଷେ ଜନ୍ମ ଏବେ ନରଦେହଘେନି
ଚନ୍ଦ୍ରେ କଳଙ୍କ ଯେସନେ ବିପଦରେ ଘୋଟି
କର୍ମ ବିପାକ ତେସନେ ସହିତେ ଯୁଧିଷ୍ଠି ।
ଆପଣେ ପାପ କରିଲେ ଫଳକୁ ପ୍ରତ୍ୟକ୍ଷେ
କରିବାର କୃତ୍ୟ ସେହୁ କର୍ମବୋଲି ଇଛେ ।
ଭାବଗ୍ରାହୀ ନାଥ ସେ ଯେ କକ୍ଷା ଜଗଜ୍ଜେଠି
ବିପଦ କର୍ମ ବୋଲିଣ ସହିଲେ ଯୁଧିଷ୍ଠି ।
ଆହେ ବୁଧଜନ କାଳେ ପାତକ ନ କରି
ସହିଲେ ସେ ହୋଇ ନ ସହିଲେ ଝୁରିମରି
ଗୁପତ ଆଖ୍ୟାନ ଏ ବିରାଟ ପର୍ବ କଥା
ଶୁଣନ୍ତେ ବିପଦ କଷ୍ଟ ଖଣ୍ଡଇ ସର୍ବଥା ।
କଉଶଲ୍ୟାଙ୍କ ନନ୍ଦନ ଶ୍ରୀଧର ଯେ ନାମ
ହୃଦଗତରେ ପ୍ରକାଶେ ହେଉ ସେହି ନାମ ।
ସରସ୍ୱତୀ ଭଣ୍ଡାର ମୁଁ ପାଇଲଇଁ ବଳେ
ଶୂଦ୍ରମୂନି ଶାରଳାର ଏ ଜନ୍ମ ସଫଳେ ।

—●—

## ଉତ୍ତର ଯୁଧିଷ୍ଠିରଙ୍କୁ ସ୍ତୁତିବାଦନ ଓ ଅଭିଷେକ ନିମନ୍ତେ ଯୁଧିଷ୍ଠିର ସହଦେବଙ୍କ ସହିତ ମନ୍ତ୍ରଣା

ପଚାରନ୍ତି ବୈବସ୍ୱତ ମନୁ ନୃପବର
ହେ ଅଗସ୍ତି ଘେନାକର ବିନୟ ମୋହର ।
ପଶାକାଠି ଘାତେ କୋନ୍ତ ଲାଲଟ ଫାଟିଲା
ଅଟକାଇଲେ ସେ ରକ୍ତ ତଳେ ନ ପଡ଼ିଲା ।
ତଦପରେ କେଉଁକୃତ୍ୟ କଲେ ଯୁଧିଷ୍ଠିର
ସେହିକଥା ଶୁଣିବାକୁ ଇଚ୍ଛାବଳେ ମୋର ।
କହନ୍ତି ଅଗସ୍ତି ମୁନି ଶୁଣ ନୃପରାଣ
ଏଥୁଅନ୍ତେ ଯାହାହେଲା ସେହି ବିବରଣ ।
ରାଗରେ ପ୍ରହାର କଲେ ବିରାଟ ଯେ ରାଜା
କୋନ୍ତଦେବ ସମାଜରେ ପାଇ ବଡ଼ଲଜ୍ଜା ।
ଲାଜ ଭୟେ ସଙ୍କୋଚରେ ନ ଦେଲେ ଉତ୍ତର
ବିଧବା ଆମ୍ଭା ପରାୟ ହୋଇଲେ ସେ ଧୀର
ଉତ୍ତର ଆସିଣ ବିଜେକଲା ସିଂହଦ୍ୱାରେ
ଚାରେ ବାରତା କହିଲେ ଆସିଣ ଛାମୁରେ ।
କୋନ୍ତବୋଲେ ବୃହନ୍ନାରୀ ଏସ୍ଥାନେ ନଆସୁ
ନପୁଂସକ ବୃହନ୍ନାରୀ ନିକଟେ ନ ପଶୁ ।
ଚାରେ ଜଣାଇଲେ ଶୁଣ ସୁତ ଚୂଡ଼ାମଣି
ଏକା ଆସୁ ବୃହନ୍ନାରୀ ନଆସୁ ଏକ୍ଷଣି ।
ଆଜ୍ଞା ପ୍ରମାଣେ ଉତ୍ତର ହୋଇ ଆଗସରି
ଆସ ବୋଲି ଅର୍ଜୁନକୁ ଟାଣେ ହାତ ଧରି ।
ବୃହନ୍ନାରୀବୋଲେ ମୋତେଯେବେ ଆଜ୍ଞା ନାହିଁ
ଅକାରଣେ କଟାଳ ତୁ କରୁ କାହିଁପାଇଁ ।
ଏ ପୁଣିତ ତିନିଦିନ ହୁଏ କି ନା ତୁନି
କର ତୁ ସୁବିଧା କାର୍ଯ୍ୟ ତୋର ଇଚ୍ଛା ଘେନି
ଚଇତନ ପୁଚ୍ଛା କଲେ ଶୁଣ ଯୋଗେଶ୍ୱର
ବୃହନ୍ନାରୀକି କିମ୍ପାଇଁ ନ ନେଲେ ଭିତର ।
ଶୁଣ ତେବେ ଚଇତନ ଅଗସ୍ତି ବୋଇଲେ
ପାଣ୍ଡବ ଯେ ଶମୀବୃକ୍ଷ ତଳେ ସତ୍ୟକଲେ ।
ଭୀମାର୍ଜୁନ ନକୁଳ ଯେ ପୁଣି ସହଦେବ
ଗଙ୍ଗାଜଳେ ହସ୍ତ ଭରି ନିୟମିଲେ ସର୍ବ ।
ଅଜ୍ଞାତବାସରେ ଆମ୍ଭେ ଗୁପତରେ ଥିବା
ଅପ୍ରାଧ କଲେ ବିରାଟ ଦୋଷ ନ ଧରିବା ।
ଦ୍ରୌପଦୀ ଦେବୀଙ୍କୁ ସେହୁକରିବ ଝିଙ୍ଗାସ
ଅବଶ୍ୟ ଗୁପତେ ତାକୁ କରିବା ବିନାଶ ।
ଅଥବା ତାହାକୁ ଆମ୍ଭେ ନ ପାରିଲେ ନାଶି
ନିଶ୍ଚୟ ମରିବା ସର୍ବେ ଅନଳରେ ପଶି ।
କହନ୍ତି ଅଗସ୍ତି ଶୁଣ ଆହେ ଚଇତନ
ବିରାଟ କୋପକୁ କୋନ୍ତ ନ ଧରିଲେ ମନ ।
ଅର୍ଜୁନ ଯେବେ ଦେଖନ୍ତା ଲଲାଟ ତାଙ୍କର
କ୍ଷଣକେ ଜୀବନ ନାଶି ଦ୍ୟନ୍ତା ବିରାଟର ।
ଉତ୍ତର ପଡ଼ିଲା ଯାଇ କୋନ୍ତ ପାଦତଟେ
ତୁମ୍ଭର ପାଦ ପଡ଼ିଲା ଏ ମୋହର ରାଷ୍ଟ୍ରେ ।

କେଉଁ ଦିଗପାଳ ଏଥେ କଲା ଯାଗଭୂମି
ତେଣୁ ତୋ ଚରଣେ ଏଥେ ପଡ଼ିଲାକ ସ୍ୱାମୀ ।
ଏ ବେନି ଚରଣ ଦଶନଖ ଯେ ଅଙ୍ଗୁଷ୍ଠି
ଲାଖ ହୋଇଥିଲା ଲକ୍ଷେ ରାତ୍ର ମୁକୁଟଟି ।
ସୁସଞ୍ଚ ସୁବଳିତ ସେ ପୁଣ ଦୁଇ ଜାନୁ
ଶୁଦ୍ଧ ସ୍ଫଟିକ ପରାୟେ ବିରାଜଇ ତନୁ ।
ପରିମଳ ସୁଘଟଣ ସୁସଞ୍ଚ ତିବ୍ରଳି
ଏକାନ୍ତେ ବସିଲା ଯୋଗକାଳେ ନିଉଛାଳି ।
ରସାଣ ପତ୍ର ପରାୟ ଶୋଭାବନ ଗଛୁ
ଗଭୀର ନାଭି ତୋହରଅଟେ ଦିବ୍ୟ ଚକ୍ଷୁ ।
ଆତ୍ମ ଆକର୍ଷଣରେ ଯେ ପ୍ରଭୁ ବକ୍ଷସ୍ଥଳ
ସମସ୍ତଙ୍କ ଚିନ୍ତା ଅଛି ହୃଦୟ ମଣ୍ଡଳ ।
ମୃଣାଳ ପରାୟ ତୋର ବେନିକର ଗୋଟି
ଏକକୁ ଲେଉଟାଇଲେ ଲେଉଟାଇ ସୃଷ୍ଟି ।
ସ୍ୱାମୀ ଯୁଗ ଅନ୍ତକ ଯେ ତୋର କରତଟ
ଅଶେଷ କୋଟି ବ୍ରହ୍ମାଣ୍ଡ ଚିନ୍ତାମଣି ଅଟ ।
ସ୍ୱାମୀ ବିମ୍ବପୁଷ୍ପ ଜିଣି ଅଧର ପ୍ରକାଶି
ଦିବ୍ୟରୂପ ଧରି ସ୍ୱାମୀ ଅବତାରେ ଆସି ।
ଚୌରାଶୀ ଲକ୍ଷଣ ଜିଣିଦିଶେ ବେନି ଡ଼ୋଳା
ଜାଣିଲେ ସଦୟ ଚିତ୍ତେ କରୁ ତୁ ସଙ୍ଖୋଳା ।
ସ୍ୱାମୀ ବଚନେ ତୋହର ଆହାଲାଦ ଜିଣି
କଦାଚିତେ ଅନ୍ତର ଯେ ନୁହେଁ ଦୃଢ଼ବାଣୀ
ଅଷ୍ଟାଙ୍ଗ ଶରୀରଯାକ ନିରୀକ୍ଷେ ବିରାଟି
ଲଲାଟେ ତମ୍ବା ପରାୟେ ଦିଶେ ଘାଆଫାଟି ।
ପୁଣ ପୁଣ ଦେଖଇ ସେ ବିରାଟର ବଳା
କୋନ୍ତଙ୍କର ପଦ୍ମପାଦେ ପ୍ରଣିପାତ କଲା ।
ଉତ୍ତର ବିନୟ ଦେଖି ବିଚାରନ୍ତେ କୋନ୍ତେ
ଏହାକୁ ଅର୍ଜୁନ ସର୍ବ କହିଛି ଗୁପତେ ।
ସେହୁ ନ କହିଲେ ଏହୁ ଚିହ୍ନନ୍ତା କିପରି
ଗୁପତ ବିଷୟ ପାର୍ଥ କହିଛି ବିସ୍ତାରି ।
କୋନ୍ତେବୋଇଲେକଲ୍ୟାଣତୋତେହେଉସୁତ
ରକ୍ଷା କରିଥାନ୍ତୁ ସଦା ଦେବ ଜଗନ୍ନାଥ ।
କୁମର ଦେଖି ବିରାଟ ହରଷ ହୋଇଲା
କୋନ୍ତଙ୍କୁ ସ୍ତୁତି କରନ୍ତେ ଶରୀର କମ୍ପିଲା ।
ରାଗେ ଉତ୍ତରକୁ ବୋଲେ ତହୁଁ ଦଣ୍ଡଧାରୀ
ପିତା ବା ମଉସା କିଏ ନ ପାରିଲ ବାରି ।
ଉତ୍ସୁକ ହେଲ ତୁ ଯୁଦ୍ଧେ ଶତ୍ରୁ ଜିଣିବାକୁ
ଜ୍ୟେଷ୍ଠ କନିଷ୍ଠ ଏକତ୍ୱ ତୁହି ସବୁ ।
ଅଥବା ଏମନ୍ତ ତୋର ହୋଇଲା ମନିଷା
ପିତାକୁ ଅମାନ୍ୟ କରି ଓଳଗୁ ମଉସା ।

ଉତ୍ତର ବୋଇଲା ଶୁଣ ପିତା ମହାଶୟେ
କୋନ୍ତଙ୍କର ଲଲାଟେ କି ହୋଇଯାଏ ଘାଏ ।
ବିରାଟ ବୋଇଲା ଆରେ ଶୁଣ ତୁ ନନ୍ଦନ
ତୋହର ବାହୁବଳେ ତୁ ଆଣିଲୁ ଗୋଧନ ।
ଏ ବୋଲଇ ବୃହନ୍ନାରୀ ଅଛି ତା'ର ତୁଲେ
ତାକୁ କି ପ୍ରମାଦ ବୃହନ୍ନାରୀ ସଙ୍ଗେ ଥିଲେ ।
ସଭାପଣ୍ଡା ବୋଲି ଯାକୁ କଲି ମୁଁ ଗୌରବ
ହେଲେ ନ ଛାଡ଼ିଲୁ ଏହୁ ଭୃତ୍ୟର ସ୍ୱଭାବ ।
ଧୀର ହୋଇଣ ପ୍ରକୃତି ଲଘୁ ଅଟେ ଯାର
ବୃହନ୍ନାରୀ ପ୍ରଶଂସା ଯେ କରେ ବାରମ୍ବାର ।
ପୁଣି ବୋଲେ କେଉଁଭୟ ବୃହନ୍ନାରୀ ଥାନ୍ତେ
ଏପରି ସହିଲି ପଞ୍ଚବାର ପରିଯନ୍ତେ ।
ସହ ନ ପାରିଲି ଆଉ ତା ବଚନ ଗୋଟି
ପ୍ରହାର କରିଲି ରାଗେ ମୁଣ୍ଡ ପଶାକଠି ।
ଉତ୍ତର ବୋଇଲା ତାତ ତୋର ମନ୍ଦ ବୁଦ୍ଧି
ପାଦରେ ଫିଙ୍ଗି ଦେଲୁ ତୁ ଯେ ଅଭୟନିଧି
ଗନ୍ଧର୍ବ ଆସି କୀଚକ ଶତଭାଇ ମାରି
କୋନ୍ତ ନଥିଲେ କି ତୁହି ଥାଆନ୍ତୁ ଉବୁରି ।
ଜାଣୁ ନା ତ୍ରିଗର୍ତ୍ତ କଲା ଯୁଦ୍ଧେ ଯେତେକଥା
ସମରରେ ହାରି ତୁହି ହେଲୁ ଯେ ଅବସ୍ଥା ।
ଏହି କୋନ୍ତଭଟଙ୍କର ଆଜ୍ଞା ଅନୁସରି
ବଲ୍ଲଭ ବ୍ରାହ୍ମଣ ତୋତେ ଆଣେ ପାରିକରି ।
ବୀରବାହୁ ସମରରୁ ଉଦ୍ଧରିଲା ତୋତେ
କଲା ଉପକାର ତୋତେପାଶୋରୁ କେମନ୍ତେ
ଯୁଧିଷ୍ଠି ସମାନ ବାକୁ ତୁହି କଲୁ ସେବା
ବର୍ଷକର କଥା ଯେହ୍ନେ ପାଶୋରିଲୁ ଅବା
ଉତ୍ତର ବୋଲେ ଆସ୍ଥାନୁ ଉଠ ଏବେ ରାଏ
ପ୍ରଣିପାତ କରି ଆସି କୋନ୍ତଙ୍କର ପାଏ ।
ପୁତ୍ରର ବଚନେ ରାଜ ଚିନ୍ତେ ହୃଦଗତେ
ଏ କେଉଁ ମାହାତ୍ମ୍ୟ ଅବା ଅଛନ୍ତି ଗୁପତେ ।
ବିଚକ୍ଷଣ ପୁତ୍ର ମୋର କରେ ଯାକୁ ମାନ୍ୟ
ରକ୍ଷ ଯକ୍ଷ ହେବେ ପରା କୃଷ୍ଣର ସମାନ ।
ସମର ବିଜିତ ପୁତ୍ର ଅଟେ ବିଚକ୍ଷଣ
ସୁବିଜ୍ଞ ପୁତ୍ର ହୋଇଣ ଜାଣ ସବୁ ଗୁଣ ।
ଏତେ ବିଚାରିଣ ରାୟେ ସ୍ଥାନକଲା ତେଜ୍ୟା
ପୁତ୍ରକୁ ଘେନି ପ୍ରମାଣ କରେ ମହାରାଜା ।
କୁଶହସ୍ତ ହୋଇ କୋନ୍ତ ବାଞ୍ଛିଲେ କଲ୍ୟାଣ
ପ୍ରାପ୍ତହେଉ ଧର୍ମଲକ୍ଷ୍ମୀ ଅବଳା ହୋଇଣ ।
ଉତ୍ତର ବୋଇଲେ ସ୍ୱାମୀ ମୋତେ ରକ୍ଷାକର
ଅକୋପୀ ମହାତ୍ମା ଭକ୍ତିଘେନିମା ମୋହର ।

ବହୁତ ମଧୁର ବାକ୍ୟେ ବଦୟନ୍ତି କୋନ୍ତେ
ପରମ ସାନନ୍ଦ ଶୁଣି ହେଲେ ପିତାପୁତ୍ରେ ।
ତହିଁ ବିରାଟପୁଚ୍ଛିଲେ ଗୋଧନ ବାରତା
ସତ କରିଣ ଉତ୍ତର କହ ସବୁ କଥା ।
ସେହି ଆସନରେ କୋନ୍ତ ଅଛନ୍ତି ସେ ବସ୍ତ୍ରି
ଆଦିତ୍ୟ ଅସ୍ତ ହୁଅନ୍ତେ ପ୍ରବେଶିଲେ ନିଶି ।
ଦ୍ୱାର ନିକଟରେ ରହି ଅରଜୁନ ବୀର
କୋନ୍ତଙ୍କ ଚରଣ ତଳେ କଲା ନମସ୍କାର ।
କୋନ୍ତ ବୋଇଲେରେ ବାବୁ ମନ୍ଦକୃତ୍ୟକଲୁ
ଅଜ୍ଞାତବାସ ନସରୁ କିମ୍ପା ଯୁଦ୍ଧେ ଗଲୁ ।
ଅର୍ଜୁନ ବୋଇଲେ ଶୁଣ ଆହେ ରାଜା ଦେବ
ମୁଁ କି କହିବି ପଠାଇ ଦେଲା ସହଦେବ ।
ଯୁଧିଷ୍ଠି ବୋଇଲେ ବାବୁ ଯାଅ ଏହିକ୍ଷଣ
ଆମ୍ଭ ନିକଟକୁ ସହଦେବ ଡାକିଆଣ ।
ଚଳଇ ପାର୍ଥ କୋନ୍ତଙ୍କ ଆଜ୍ଞା ଶିରେ ଘେନି
ଗୋଗୋଷ୍ଠ ସହଦେବଙ୍କୁ ହକାରିଣ ଆଣି ।
ଅର୍ଜୁନ ବୋଇଲେ ବାବୁ ସହଦେବ ଶୁଣ
ଯୁଧିଷ୍ଠିରଙ୍କର ଆଜ୍ଞା ଆସ ଏହିକ୍ଷଣ ।
ସ୍ୱାମୀ ନିରାଧାର ବାକ୍ୟ ଶୁଣି ଧରି ଶିରେ
ଚଳଇ ସେ ମନ୍ତ୍ରୀବର ତାହାଙ୍କ ଆଜ୍ଞାରେ
ପରମ ସାନନ୍ଦ ବେଗେ ଚଳେ ମହାମନ୍ତ୍ରୀ
କୋନ୍ତକୁ ଦର୍ଶନ କଲେପାଞ୍ଚଘଡ଼ି ରାତି ।
ଆସ୍ଥାନ ସନ୍ନିଧେ ଯାଇ ଚରଣେ ପ୍ରଣମି
କିସଅର୍ଥେ ଆଜ୍ଞାଦେବା ହେଉ ଦେବସ୍ୱାମୀ
ଯୁଧିଷ୍ଠିଦେବ ତାହାକୁ ବଚନ ପ୍ରକାଶି
ବାବୁ ଅଜ୍ଞାତ ଲେଖା ହେ କେତେଦିନ ଅଛି ।
ତାହାଶୁଣି ମନ୍ତ୍ରୀବର କଲା ନିବେଦନ
ଧନୁ ଶୁକ୍ଳ ତ୍ରୟୋଦଶୀ ହେଲା ଆଗମନ ।
ବରଷକ ପୂର୍ଣ୍ଣ ହୋଇ ବଢ଼ି ତେରଦିନ
ହୋଇଗଲାଣି ଏଥର ଶୁଣହେ ରାଜନ ।
ଯୁଧିଷ୍ଠି ସହଦେବଙ୍କୁ କହିଲେ ବଚନ
ନିରଞ୍ଜନଙ୍କର ଆଜ୍ଞା ବର୍ଷେ ତେରଦିନ ।
ଅଥବା ବରଷେ ହେଲା ଆନରେ ଲେଖନ୍ତେ ।
ଆବର ସପ୍ତଦିବସ କହିଲୁ କେମନ୍ତେ ।
ସହଦେବ ମନ୍ତ୍ରୀବର ବଚନ ସମ୍ପାଦି
ସ୍ୱାମୀ କପଟ ଶକୁନି ଜାଣେ ମନ୍ଦବୁଦ୍ଧି ।
ବରଷକେ ବଢ଼ାଦେଶ ଦିବସ ଲେଖନ୍ତେ
ଅଜ୍ଞାତବରଷ ଦଶ ଦିବସ ଲେଖନ୍ତେ ।
ତାହାର ବଚନ ତୁମ୍ଭେ ନ ପାରିବ ମେଣ୍ଟି
ପୁଣି ବନବାସ ଦେବ ହେବ ବଡ଼ କଷ୍ଟି ।

ପ୍ରକାରାନ୍ତରେ ସ୍ୱାମୀ ହେ ଆମ୍ଭେ ନ କହିବା
ହାନିଲାଭ କଥା ସବୁ ବୋଲେ ସର୍ବଦେବା ।
କୋନ୍ତ ବୋଲୁ ତୁ ପଣ୍ଡିତ ଅଟୁ ମହାଜ୍ଞାତା
ସଭାରେ ଶକୁନି ଅବା ବଖାଣ କରନ୍ତା ।
ଧର୍ମ ଲଘିଂ ନ ପାରନ୍ତି ଯେ ବିବୁଧ ଲୋକ
ବାବୁ ଦ୍ୱାଦଶ ବରଷ ବନବାସ ଦୁଃଖ ।
ଭଲକଥା କହ ବାବୁ ବିଜ୍ଞ ଗୁଣଗ୍ରାହୀ
ଦୁଇଦିନ ଅନ୍ତେ ଅଭିଷେକ ହେବା ନାହିଁ ।
ସୁସ୍ଥାନ ଭୂମି ହୋଇବ ସୁସ୍ଥାନରେ ବାସ
ଏମନ୍ତ ସ୍ଥାନ ଗୋଟିଏ ଠାବ କରି ଆସ ।
ଅଭିଷେକ କରାଇ ନ ଦେବ ଧୃତରାଷ୍ଟ୍ରୀ
ଆମ୍ଭ ସମ୍ପଦ ଦେଖିଲେ ହେବ ମହାକଷ୍ଟି ।
ଅଭିଷେକ ହୋଇ ବାବୁ ଏଥୁ ଯିବା ଧାପେ
ଇନ୍ଦ୍ରପ୍ରସ୍ଥ ରାଜ୍ୟମାଡ଼ି ବସିବା ପ୍ରତାପେ ।
ଆମ୍ଭର ଧୃତରାଷ୍ଟ୍ରକୁ ନାହିଁ ଯେ ଉପ୍ରୋଧ
ଛାଡ଼ିଲି ସୁଦୟା ଏବେ ଆରମ୍ଭିବି ଯୁଦ୍ଧ ।
ସହଦେବ ବୋଲେ ଦେବ ତୁମ୍ଭକଥା ସତ୍ୟ
ଶମୀବୃକ୍ଷ ତଳେ ଅଛି ଦେବ ମହାତୀର୍ଥ ।
ମତ୍ସ୍ୟ ମଘଦେଶ ପୂର୍ବ ପଶ୍ଚିମରେ ବେନି
ମଧ୍ୟେ କଉଶିକୀ ବହେ ଉତ୍ତର ବାହିନୀ ।
ମହାକଲ୍ପୀ ଶମୀବୃକ୍ଷ ଶିଶୁ ପ୍ରାୟ ଶାଖା
ପ୍ରତ୍ୟକ୍ଷ ଅଟଇ ହରିହର ବେନିରେଖା ।
ମହାପବିତ୍ର ସ୍ଥାନ ସେ ଉତ୍ତମ ଅଟଇ
ନଗ୍ର ବେଢ଼ିଛି ଯାହାର ଦ୍ୱାଦଶ ଗୋଷ୍ଠହିଁ ।
ଦୁହାଁଳ ଦୁଇପଦ୍ମ ଯେ ଯାର ଅଟେ ଗାଈ
ବରଡ଼ ଯେ ବାରଲକ୍ଷ ଅର୍ବୁଦେକ ମାଈ ।
ପାଞ୍ଚ ଅର୍ବୁଦ ହେବ ଅଣ୍ଡିରା ଷଣ୍ଢାବସ୍ଥା
ବିହରନ୍ତି ଗୋଧନଯେ ଆପଣାର ଇଚ୍ଛା ।
ଦୁହିଁବାର ବେଳେ ଚିରେ ଭୂମିକି ପକାଇ
ସାତଘଡ଼ିଯାଏ କ୍ଷୀର ନଦୀ ଯେ ବୁହାଇ ।
ଏତେ ଗୋରୁଙ୍କର ତହିଁ ପଡ଼େ ପାଦରଜ
ଏପରି ପବିତ୍ର ହେବ ବିରାଟର ରାଜ୍ୟ ।
ସ୍ୱାମୀ ଜୀବଜନ୍ତୁ ବେଢ଼ିଛନ୍ତି କ୍ଷୀରପାନେ
ଏପରି ପବିତ୍ର ଭୂମି ନାହିଁ ଅନ୍ୟସ୍ଥାନେ ।
ଗୋମତୀ ନାମରେ ଦେବ ବହେ କ୍ଷୀରନଦୀ
ଏଭୂଇଁ ମାଡ଼ିଲେ ହେବ ବହୁ କାର୍ଯ୍ୟସିଦ୍ଧି ।
ଯୁଧିଷ୍ଠିର ବୋଇଲେ ସେ ଯେବେ ଭଲସ୍ଥାନ
କେଉଁଦିନ ହେବ ତେବେ ଅନୁକୂଳ ଦିନ ।
ଶୁଣି ସହଦେବ ଚଳେ ଚରଣେ ପ୍ରଣମି
ଏହିତ ମକର ମାସ ଶୁଦ୍ଧ ହେବ ସ୍ୱାମୀ ।

ମକର ଶୁକଳ ପକ୍ଷ ତିଥି ଯେ ଚତୁର୍ଥୀ
ଅର୍କବାରେ ରେବତୀ ନକ୍ଷତ୍ର ଅଛି ସାଥୀ ।
ତୈତିଳ ନାମେ କରଣ ଶୁଭ ନାମେ ଯୋଗ
ମକର ସଂକ୍ରାନ୍ତି ସତାଇଶ ଦିନ ଭୋଗ ।
ରାତ୍ର ଦ୍ଵାଦଶ ଦଣ୍ଡରେ ଶୁଭଲଗ୍ନ ବଳେ
ଅମୃତ ଯୋଗରେ ଦେବ ଶୁଭ ଅନୁକୂଳ ।
ସର୍ବ ସନ୍ଦେହ କହିଲା ମନ୍ତ୍ରୀ ଚୂଡ଼ାମଣି
ପରମ ସାନନ୍ଦ ହେଲେ ଯୁଧିଷ୍ଠିର ଶୁଣି ।
ଯୁଧିଷ୍ଠି ଦେବ ବୋଇଲେ ଶୁଣ ଅରଜୁନ
ଦ୍ରୌପଦୀଙ୍କୁ ଘେନିଯିବୁ ଶମୀବୃକ୍ଷ ସ୍ଥାନ ।
ସହଦେବକୁ ବୋଇଲେ ନକୁଳକୁ ନେବୁ
ରୋଷଘରୁ ଆମେ ଭୀମସେନକୁ ଡାକିବୁ ।
ଶୁଣିଣ ସାନନ୍ଦ ତହୁଁ ହେଲେ ବେନିଭ୍ରାତେ
ଯେ ଯାହାର ସ୍ଥାନକୁ ସେ ଚଳିଲେ ତୁରିତେ
ଜୟ ଜୟ ଜଗନ୍ନାଥ ଜଗତ କରତା
ଚଉଦ ଭୁବନେ ଏକା ତୁମ୍ଭେ ପଡ଼ିଦାତା ।
ଅଭୟ ପଞ୍ଜର ପ୍ରଭୁ ଭକ୍ତ ଉଦ୍ଧାରଣ
ଶୁଦ୍ରମୁନି ଶାରାଳରା ଯେ ପଶଇ ଶରଣ ।

—●—

## ଶମୀବୃକ୍ଷ ତଳେ ଯୁଧିଷ୍ଠିରଙ୍କର ଅଭିଷେକ ଓ ବଳଦେବଙ୍କର ଅପମାନ

ପ୍ରଭାହିଲା ବିଭାବତୀ ଉଦିତ ତପନ
ଏଥୁଅନ୍ତେ ଯାହାହେଲା ଶୁଣ ହେ ରାଜନ ।
କୋନ୍ତରୂପେ ବିରାଟକୁ ଖେଳାବନ୍ତି ପଶା
ସୁପକାର ରୂପେ ଭୀମସେନକୁ ମନୀଷା ।
ସ୍ତ୍ରୀ ଆରମ୍ଭ ରୂପେ ରହେ ବୀର ଧନଞ୍ଜୟ
ସ୍ଥାନ ପାଳ ରୂପେ ଅଛି ମାଦ୍ରୀର ତନୟ ।
ଗୋପାଳ ରୂପରେ ଛନ୍ତି ମନ୍ତ୍ରୀ ଚୂଡ଼ାମଣି
ସୈରିନ୍ଧ୍ରୀ ରୂପେ ଦ୍ରୌପଦୀ ବଞ୍ଚୁଅଛି ପୁଣି
ଯେଉଁ ଅଳଙ୍କାର ସବୁ ପାର୍ଥ ଆଣିଥିଲା
ଉତ୍ତରା ବାଳିକି ତାହା ସମସ୍ତ ଅର୍ପିଲା ।
ଉତ୍ତର ବିନୟୀ ସଦା ହେଲା ଯୁଧିଷ୍ଠିଙ୍କି
ଅଜ୍ଞାତବାସ ବରଷେ ତେରଦିନ ଲେଖି ।
ମକର ଶକୁଳପକ୍ଷ ଚତୁର୍ଥୀର ଦିନ
କୋନ୍ତ ବିଜେକଲେ ରୋଷଶାଳର ଭୁବନ ।
ଭୀମକୁ ଘେନିଣ ବିଜେ ହେଲେ ନିଶାକାଳେ
ପ୍ରବେଶ ଧର୍ମ ନନ୍ଦନ ଶମୀବୃକ୍ଷ ତଳେ ।
ଦିବସ ଅବସାନରେ ପାଞ୍ଚାଳୀକି ଘେନି
ଶମୀବୃକ୍ଷତଳେ ବିଜେକଲେ ଫାଲଗୁନି ।
ନକୁଳ ସହଦେବ ଯେ ହୋଇ ଏକ ସଙ୍ଗ
ଶମୀବୃକ୍ଷତଳେ ଯାଇ ବିଜେକଲେ ବେଗ ।
ଯୁଧିଷ୍ଠିର ଦେବ ବୋଲେ ଶୁଣ ଫାଲଗୁନି
କେମନ୍ତେ ବିଜେ କରିବେ ବ୍ୟାସ ମହାମୁନି
ସହଦେବ ବୋଇଲା ଯେ ଅଛନ୍ତି ନ ଜାଣି
ଋଷିମାନେ ପ୍ରବେଶିବେ ଆସି ଏହିକ୍ଷଣି ।
ସହଦେବ କହୁ କହୁ ବିଜେକଲେ ବ୍ୟାସେ
ଷାଠିଏ ସହସ୍ର ଋଷି ଘେନି ତାଙ୍କ ପାଶେ
ଲକ୍ଷେକ ବ୍ରାହ୍ମଣ ଘେନି ଧୌମ୍ୟପୁରୋହିତେ
ପଞ୍ଚାସ ସହସ୍ର ଶିଷ୍ୟ ଘେନି ବିଶ୍ଵାମିତ୍ରେ ।
ବେନିଲକ୍ଷ ଶିଷ୍ୟଘେନି ବିଜେ ମାରକଣ୍ଡେ
ଲକ୍ଷେକଶିଷ୍ୟେ ଲୋମଶ ଅଇଲେକ ଚାଣ୍ଡେ
ପାଞ୍ଚ ସସ୍ର ଶିଷ୍ୟ ସହ ବଶିଷ୍ଠ ଅଇଲେ
ଲକ୍ଷେ ବାଳଖିଲ୍ୟା ଗଲେ ଅଗସ୍ତିଙ୍କ ତୁଲେ ।
ବିଜୟ କଲେ ନାରଦ ମହାତମା ଭୋଳ
ସର୍ବଦା କଳହ ଅଟେ ଯାହାଙ୍କର ଖେଳ ।
ବାମଦେବ ଆଦିକରି ଗାର୍ଗବ ତତ୍ତ୍ଵଙ୍ଗେ
ଗଉତମ ଭରଦ୍ଵାଜ ଦୁର୍ବାସାଙ୍କ ସଙ୍ଗେ ।
ପଉଲସ୍ତ୍ୟ ପରାଶର କଣ୍ବମୟ ତନୁ
ଜଇମିନି ବାଲମୀକ ପୌଲସ୍ତ୍ୟଙ୍କ ସୁନୁ ।
ଏହାଙ୍କ ତୁଲେ ଅନେକ ମହା ମହା ଋଷି
ଶମୀବୃକ୍ଷ ତଳଦେଶେ ବିଜେ ହେଲେ ଆସି
ଦିଗପାଳେ ଜଣାଇଲେ ଯାଇଁ ଜମ୍ଭଭେଦୀ
ସୁଧର୍ମା ସଭା ଆସିଣ ହେଲା ସର୍ବ ସିଦ୍ଧ ।
ଆହୋ ଯେବଣସଭାରେତ୍ରୈଲୋକ୍ୟବସିଲେ
ଅର୍ଦ୍ଧେକ ନୁହଇଁ ପୂର୍ଣ୍ଣ ସେହି ସଭାସ୍ଥଳେ ।
ସେ ସଭା ଘେନିଣ ବିଜେ କଲେ ବିଶ୍ଵକର୍ମା
ଶମୀବୃକ୍ଷ ତଳେ ନେଇ ପାତିଲା ସୁଧର୍ମା ।
ଯେତେବେଳେ ସେସ୍ଥାନକୁଆସେ ସଭାଗୋଟି
ଅପସରାଏ ଅଇଲେ ଚଉଷଠି କୋଟି ।
ମୃଦଙ୍ଗ ତାଳ କଂସାଳ ମର୍ଦ୍ଦଳ ଅଧାଟି
ଗନ୍ଧର୍ବ ପୁରୁଷମାନେ କଳା ଚଉଷଠି ।
ମଧୁର ସାରଙ୍ଗ ଧ୍ଵନି ସପ୍ତସ୍ଵର ବେଣୀ
ଓଁକାର ତାଣ୍ଡବ ନୃତ୍ୟ ଆରମ୍ଭିଲେ ଆଣି ।
ଅଇରାବତ ପିଠିରେ ଦେବଗଣ ଘେନି
ଶମୀବୃକ୍ଷ ତଳେ ବିଜେ ହେଲେ ସସ୍ରଯୋନି
ଆବର୍ତ୍ତକ ସୟର୍ତ୍ତକ ଦ୍ରୋଣ ଯେ ପୁଷ୍କର
ମେଘମାନେ ଲାଗିଗଲେ ଶମୀବୃକ୍ଷପର ।

ରାତ୍ରେଯୋଗାଡ଼ ଘେନିଣ କୁବେର ସୁମତି
ବ୍ୟାସଙ୍କ ସନ୍ନିଧେ ଆସି ବିଜୟ ତଡ଼ତି ।
ବେଦବାକ୍ୟଦୁନ୍ଦୁଭିହେବାଜେଯେତେବେଳେ
କାମପାଳ ପୁଚ୍ଛାକଲେ କୃଷ୍ଣଙ୍କୁ କୋମଳେ ।
କାହିଁକି ଏ ବେଦବାକ୍ୟ ବଜାଇ ମହୀରେ
ଏଥିର କାରଣ କହ ମୋହର ଆଗରେ ।
ତାହା ଶୁଣି କହୁଛନ୍ତି ବ୍ରାହ୍ମଣ ଗୋସାଇଁ
ଶୁଣ ମୁଁ କହୁଛି ଦେବ ସେକଥା ବୁଝାଇ ।
ଯୁଧିଷ୍ଠିର ଅଭିଷେକ ଶମୀବୃକ୍ଷ ତଳେ
ଦିଗପାଳଙ୍କୁ ଘେନିଣ ବିଜେ ଆଖଣ୍ଡଳେ ।
ଅଭିଷେକ ଦେଖି ଆମ୍ଭେ ଯିବା କି ଧବଳି
ବ୍ରହ୍ମା ଇନ୍ଦ୍ର ସଙ୍ଗେ ଦିଗପାଳେ ଛନ୍ତି ମିଳି ।
ଧର୍ମଙ୍କ ନନ୍ଦନ ଦେବ ହେବେ ଅଭିଷେକ
ଅନେକ ଜନ୍ମର ସବୁ ଖଣ୍ଡିବା ପାତକ ।
ଯୋଗେଶ୍ୱର ପୁରୁଷ ଯେ ସଦାନନ୍ଦ ଭୋଳି
ଶୁଣି ତାଳଧ୍ୱଜ ରଥେ ବିଜେକଲେ ହଳୀ ।
ବସୁଦେବ ଶତ୍ରାଜିତ ଅକ୍ରୂର ସହିତ
ବିଜେକଲେ ମହାବୀର ଯେ ଯାହାର ରଥ ।
ଯଦୁ ଭୋଜ ବିଷ୍ଣୁବଂଶ ଆଉ ହରି ବଂଶ
ଅନ୍ଧକବଂଶ ଚୂହାଣ ଆଉ କୁରୁବଂଶ ।
ଏହାଙ୍କ ସଙ୍ଗେ ଛପନକୋଟି ମହାବୀରେ
ଆରୋହଣ କଲେ ଯାଇଁ ଯେ ଯାହା ରଥରେ ।
ରୁକ୍ମିଣୀ କାଳିନ୍ଦି ସତ୍ୟା ଆବର ତୁଳସୀ
ଜାମ୍ବବତୀ କମଳାଯେ ହେଲେ ଅଭିଳାଷି ।
ଏହାଙ୍କ ମୂଳେ ବତିଶ ସହସ୍ର ଯେ ବାଳୀ
ଗରୁଡ଼ ପିଠିରେ ବିଜେ ଘେନି ଅର୍ଘ୍ୟଥାଳୀ ।
ଲକ୍ଷେ ଷାଠିଏ ସହସ୍ର ଅଣାନବେ ପୁତ୍ର
ଏହାଙ୍କୁ ଘେନି ସୁପର୍ଣ୍ଣେ କଲେ ଜଗଭୁତ
ପବନହୁଁ ବେଗେ ଚଳେ ଦ୍ୱାରକାରୁ ଥାଟ
ରାତ୍ର ଚଉଦ ଦଣ୍ଡକେ ପାଇଲେ ସେ ଭେଟ ।
ଲାଗିଲା ଦୀପ ଦିହୁଡ଼ି ଅବିଚ୍ଛନ୍ନେ ହୁଳା
ସୂର୍ଯ୍ୟତେଜ ପ୍ରାୟ ଦିଶେ ଅତି ପରିମଳା ।
ବିଜେକଲେ ଧନଞ୍ଜୟ ବାସବଙ୍କ କୋଳେ
ପାଞ୍ଚଯୋଜନୁ ଦେଖିଲେ କୃଷ୍ଣେ କାମପାଳେ ।
ଅନେକ ସାନନ୍ଦ ହେଲେ ଦ୍ୱାରକାରବାଳୀ
ଆସ୍ଥାନକୁ ଦେଖିକରି ଦେଲେ ହୁଳହୁଳି ।
ଶମୀବୃକ୍ଷ ତଳକୁ ଯେ ଶୁଭିଲା ଶବଦ
କି ଶବଦ ଶୁଭେ ପୁଚ୍ଛାକଲେ ଆସି ସ୍କନ୍ଦ ।
ସେ ଦେବ ସଭାର ମଧ୍ୟେ ନାରଦ କହିଲେ
ଦ୍ୱାରକା ସମ୍ପଦ ଘେନି ହରି ବିଜେକଲେ ।

ରାମକୃଷ୍ଣଙ୍କୁ ଦିଶିଲା ଯୁଧିଷ୍ଠି ଆସନ
ସୁପର୍ଣ୍ଣରୁ ଉତୁରିଲେ ପ୍ରଭୁ ଜନାର୍ଦ୍ଦନ ।
ଲକ୍ଷେ ଷାଠିଏ ସହସ୍ର ଅଣାନବେ ପୁତ୍ର
ଆଲଟ ଚାମର ମାନ ଧରିଛନ୍ତି ହସ୍ତ ।
ବତିଶ ସହସ୍ର ବାଳୀ ସର୍ବେ ପାଟବଂଶୀ
ଅର୍ଘ୍ୟ ଘେନିଣ ଛାମୁରେ ଉଭାହେଲେ ଆସି
ସନ୍ନିଧିରେ ପ୍ରବେଶିଲେ ଦେବ ବନମାଳୀ
ଯୁଧିଷ୍ଠିଙ୍କ ପାଦପଦ୍ମେ କଲେ ନଉଛାଳି ।
ଆନନ୍ଦରେ କୋହକୋହ ପାର୍ଥ ପାର୍ଥବୋଲି
ଛାମୁରେ ଶ୍ରୀ ନାରାୟଣ ଶୋଇ ଗଡ଼ଘାଲି ।
ଦେଖିକରି ଯୁଧିଷ୍ଠିର ଉଠି ଧାଡିକାରେ
ଶ୍ରୀକରେ ତୋଳିଧଇଲେ କୃଷ୍ଣଙ୍କୁ କୋଳରେ
ଦିଗପାଳେ ମାନ୍ୟ କଲେ ସେହିକାଳେ ଉଠି
ଯଥା ବିଧିରେ ପୂଜିଲେ କୃଷ୍ଣ ପାଦଗୋଟି ।
ସଙ୍କର୍ଷଣଙ୍କ ପାଦରେ ଧର୍ମ କଲେ ପୂଜା
ଅନେକ ବିନୟୀତହିଁ ହେଲେ ଦେବରାଜା ।
ମୁନିଜନମାନେ ମିଳି କଲେ ବେଦଧ୍ୱନି
ଅପସରା ହୁଳହୁଳି ଦେଲେ ଅର୍ଘ୍ୟଘେନି ।
ଶ୍ରୀଜଗନ୍ନାଥଙ୍କୁ ପୁତ୍ରମାନେ ଯେ ପ୍ରଣମି
ପ୍ରତ୍ୟକ୍ଷରେ କୃଷ୍ଣ ଅନୁଗ୍ରହ ନାଥ ସ୍ୱାମୀ ।
ଉତ୍ସବ ଦେଖିବାପାଇଁ ଧାତା ବାହାରିଲେ
ବରାଳ ବାହନେ ଚଢ଼ି ମହୀକି ଅଇଲେ ।
ପାଞ୍ଚଶକୋଟି ସନ୍ନିଧେ ମିଳି ବାଳଖିଲ୍ୟା
ବେଦବର ନାଥ ବିଜେହେଲେ ଶୁଭବେଳା
ବୃଷଭ ଆରୋହୀ ବିଜେ କରିଲେ ଧୂର୍ଜ୍ଜଟି
ସଙ୍ଗତେ ଭୃକୁଟିଗଣ ଛନ୍ତି ଚୌଦକୋଟି ।
ମୟୁର ବାହନେ ବିଜେ ଦେବ ଷଡ଼ାନନେ
ଗଣପତି ବିଜେକଲେ ଇନ୍ଦୁର ବାହନେ ।
ଶିବଗଣ ସହିତରେ ଘେନି ନିଶାପତି
ଶମୀବୃକ୍ଷତଳେ ଆସି ବିଜୟ ତଡ଼ତି ।
ଦାରୁକ ବିଜୟେ ନନ୍ଦିଘୋଷ ରଥ ଘେନି
ସୁଭଦ୍ରା ଅଭିମନ୍ୟୁକୁ ବସାଇଣ ବେନି ।
ଦ୍ୱାଦଶ ଅଗ୍ନି ଆରୋପି ପାତିଲେ ଆହୁତି
ଯୋଗଲଗ୍ନକୁ ଧରିଣ ବ୍ୟାସ ମହାଯତି ।
ପରାଶର ବିଶ୍ୱାମିତ୍ର ବଶିଷ୍ଠ ଅଗସ୍ତି
ବ୍ରହ୍ମା ବରଣ କରିଲେ ମାରକଣ୍ଡ ଯତି ।
ଶ୍ରୀବିରଞ୍ଚି ନାରାୟଣ ସୁପ୍ରସନ୍ନ ହୋଇ
ଅଭିଷେକ ଅଶ୍ୱଆଣି ସାଜିଦେଲେ ନେଇ ।
ମହେନ୍ଦ୍ର ଦେବତା ଦେଲେ ଐରାବତ ହସ୍ତୀ
ଅନେକ ଅଳଙ୍କାରକୁ ମଣ୍ଡଣି କରନ୍ତି ।

କନକ ସିଂହାସନରେ ବିଜେ ଦଣ୍ଡଧାରୀ
ଦିବ୍ୟ ଅଳଙ୍କାର ବସ୍ତ୍ର ଆଭରଣ କରି ।
ଯୁଧିଷ୍ଠି ଭୀମ ଅର୍ଜ୍ଜୁନ ମାଦ୍ରୀ ଦୁଇ ସୁତ
ରତ୍ନମଣି ମୁକୁଟରେ ହୋଇଲେ ଭୂଷିତ ।
ବାହୁଟି ସୟଳ ଝୁମ୍ପା ତାଡ଼ ଜଗଦବଳା
ଶିରରେ ଶିର ଭୂଷଣ ହୃଦେ ସ୍ୱର୍ଣ୍ଣମାଳା ।
ଇନ୍ଦ୍ରଙ୍କର ଅଭିଷେକ ଯେତେ ଅଳଙ୍କାର
ସର୍ବ ପିନ୍ଧାଇଣ ଦେଲେ ଯୁଧିଷ୍ଠି ଶରୀର ।
ବାସୁଦେବ ଅଭିଷେକ ଯେତେ ଅଳଙ୍କାର
ଆଭରଣ କଲେ ନେଇ ଭୀମଙ୍କ ଶରୀର ।
କୁବେରଙ୍କ ଅଭିଷେକ ଯେତେ ଆଭରଣ
ସମସ୍ତ ମଣ୍ଡିଲେ ନେଇ ନକୁଳ ଅଙ୍ଗେଣ ।
ବିଷ୍ଣୁଙ୍କର ଯେତେ ଅଭିଷେକର ଭୂଷଣ
ପାର୍ଥ ଶରୀରେ ଭୂଷଣ କଲେ ଜନାର୍ଦ୍ଦନ ।
ଅଶ୍ୱିନୀକୁମାର ସର୍ବ ଯୋଗାଡ଼କୁ ଘେନି
ମନ୍ତ୍ରୀ ଚୂଡ଼ାମଣି ଅଙ୍ଗେ କଲେ ତା ମଣ୍ଡଣି ।
ଅନେକ ରତ୍ନାଳଙ୍କାର ଘେନି ଦେବୀ ଶଚୀ
ଦ୍ରୌପଦୀଙ୍କି ଆଭରଣ କଲେ ହୋଇ ରୁଚି ।
ଶ୍ରୀକରେ ପାରିଜାତକ ଯେଉଁ ପୁଷ୍ପମାଳ
ଯୁଧିଷ୍ଠି ଗଳେ ମଣ୍ଡନ କଲେ ଆଖଣ୍ଡଳ ।
ବୈଜୟନ୍ତୀ ମାଳା ଚନ୍ଦ୍ର କିରଣକୁ ଜିଣି
ଚନ୍ଦ୍ର ଦେବତା ଧର୍ମଙ୍କୁ ଅପଲକେ ଆଣି ।
ସ୍ୟମନ୍ତକ ମଣି ଘେନି ପ୍ରଭୁ ବଂଶୀଧାରୀ
ଯୁଧିଷ୍ଠିର ଅଙ୍ଗେ ତାହା ଆଭରଣ କରି ।
ଅମୂଲ୍ୟ ମଣି ମୁକୁଟ ଦେଲେକ ଭାସ୍କର
ତିମିର ବିଦାର ମଣି ଦେଲେ ବେଦବର ।
ଦିବ୍ୟବେଶରେ ଭୂଷଣ ହୋଇ ପଞ୍ଚଭାରେ
ବିଜୟ ପଞ୍ଚ ସୋଦର ବାସବ କୋଳରେ ।
ପାଣ୍ଡବଙ୍କ ଅଭିଷେକ କହି ଶକ୍ତିକାର
ପ୍ରତ୍ୟକ୍ଷ ଇନ୍ଦ୍ରରୂପରେ ମର୍ତ୍ତ୍ୟେ ଅବତାର ।
ପ୍ରସନ୍ନ ଅବତାର ସେ ଅଟଇ ପ୍ରତ୍ୟକ୍ଷେ
ବିଜେ ପଞ୍ଚମୂର୍ତ୍ତି ପଞ୍ଚଦେବଙ୍କୁ ସମକ୍ଷେ ।
ବହୁତ ସାନନ୍ଦ ହେଲେ ଦେଖି ବୃନ୍ଦାରକେ
ଅନେକ ଯେ ବେଦଧ୍ୱନି କଲେ ଦେବଲୋକେ ।
ଆପଣେ ଯେ ପତିହାରୀ ଅଟନ୍ତି କେଶବ
ସଭା ନିଯୁକ୍ତ କରନ୍ତି ସହସ୍ରାକ୍ଷ ଦେବ ।
ଅଭିଷେକର ଯୋଗାଡ଼ କଲେ ବିଶ୍ୱକର୍ମା
ସମସ୍ତ ଥୋଇଲେ ନେଇ ସଭାରେ ସୁଧର୍ମା ।
ପଞ୍ଚାମୃତ ପ୍ରତିମାକୁ କଲେ ଦେବରାଜ
ରୁଦ୍ରାବତାର ପ୍ରତିମା କଲେ ପୁଣ ସଜ ।

ଚକ୍ରଧର ହଳଧର ଦେବଗଣ ଯେତେ
ପର୍ଶୁରାମ ରାମ ବୌଦ୍ଧ କଳିକି ଏମନ୍ତେ ।
ବାମେ ଗୁରୁ ଡାହାଣରେ ଅଟଇ ବିଧାତା
ଆଗେ ବ୍ରହ୍ମା ପଛେ ସ୍ଥିତି ବିରଞ୍ଚି ଦେବତା ।
ଚତୁର୍ମୁଖ ଅଷ୍ଟନେତ୍ର ମରାଳ ବାହନେ
ପଞ୍ଚବିଂଶ ପ୍ରତିମାକୁ ଗଢ଼ିଲେ ଯତନେ ।
କୁବେର ମୁରତି ଅଟେ ପଞ୍ଚଇ ପ୍ରତିମ
ଅରୁଣ ଦ୍ୱାଦଶ ମହାଘଟନ ଉତ୍ତମ ।
ଆଦିତ୍ୟ ମୁରତି ରୂପେ ଦ୍ୱାଦଶ ସବିତା
ଷୋଡ଼ଶ ମୁରତି ରୂପେଚନ୍ଦ୍ର ଯେ ଦେବତା
ଅନନ୍ତ ପବନ ପୁଣି ବାୟବ ପବନ
ଯୋଗୀଙ୍କ ଯୋଗଧାରଣଅଟେ ଯେ ପବନ
କେତୁର ପବନ ପୁଣି ଯେ ଧର୍ମ ପବନ
ଧେୟ ପବନ ଜାଣ ଯେ ଧ୍ୟାନର ପବନ ।
ନଳ ପବନ ଆବର ବରୁଣ ପବନ
ତାପ ପବନ ଉର୍ଦ୍ଧ୍ୱର ବାତ ଯେ ପବନ
ଅଣଚାଶ ବାୟୁ ମୂର୍ତ୍ତି କରି ଆଭରଣ
କରତା ଶୁକ୍ଳ ପବନ ସ୍ଥାପିଲେ ବହନ ।
ବୃହସ୍ପତି ଆବର ଯେ ପୁଣି ଶନିଶ୍ଚର
ସୋମ ମଙ୍ଗଳ ବୁଧ ଯେ ପୁଣି କେତୁସାର
ପଞ୍ଚଦଶ ମୁରତି ଯେ ପୁଣି ଦୁର୍ଗାୟଣୀ
ନାରାୟଣୀ ବାସେଳୀ ଯେ ଅଷ୍ଟ ଭଦ୍ରାୟଣୀ
ଉଗ୍ରତାରା ତ୍ରିପୁରା ଯେ ଭୈରବୀ ଆବର
ପଞ୍ଚବିଂଶତି ପ୍ରତିମା ଅଛଇ ସବୁର ।
ଦ୍ୱାଦଶ ପ୍ରତିମା ହଳଧର ନୀଳାମ୍ବର
ଊନବିଂଶ ପ୍ରତିମା ଯେ ଯମ ଅବତାର ।
ଦେବତାଙ୍କର ପ୍ରତିମା ଅଷ୍ଟ ଯେ ପିତୁଳି
ଚଣ୍ଡ ବିଶ୍ୱକ୍‌ସେନ କୁଷ୍ଣ ଆଦି ପାଞ୍ଚବଳୀ ।
କାଳି କରାଳି ବେନି ଯେ ଯକ୍ଷ ଚିତ୍ରଗୁପ୍ତ
ମହିଷୀ ବାହନେ ଯମ ସଙ୍ଗେ ଘେନି ଦୂତ ।
ତାମ୍ର ପ୍ରତିମା ଲୁହାର ଦେଇ ବେନି ଆଖି
ନବଗ୍ରହର ପ୍ରତିମା ଯମଗଣ ଦେଖି ।
ପଞ୍ଚବିଂଶ ମୁରତି ଯେ ବହନ ଦେବତା
ସ୍ୱାହା ସ୍ୱଧା ଏ ରୂପେ ସେ କରିଲେ ନିର୍ମିତ ।
ଶ୍ୱେତପଦ୍ମ ମହାପଦ୍ମ ତକ୍ଷକ ତ୍ରୋଟକ
ଦ୍ୱାଦଶ ମୁରତି ଅଷ୍ଟକୁଳ ନାଗାନ୍ତକ ।
ନିପାତର ମୂଳରେ ଯେ ପନ୍ଦର ମୁରତି
ନବ ପ୍ରତିମାଯାକରେ ଗ୍ରାମର ଦେବତୀ ।
ଭୃଙ୍ଗ ସମାନେ ପୁଷ୍ପାସ୍ୟ ନଚ୍ଛୁନ ପୁରୁଷ
ଘଟଣ କରିଲେ ଏହି ପ୍ରତିମା ଦ୍ୱାଦଶ ।

ଶୁଦ୍ଧ ସୁବର୍ଣ୍ଣ କଳସ ଅଛି ଲକ୍ଷେ ଗୋଟି
ପୂରି ରହିଛନ୍ତି ତହିଁ ତୀର୍ଥଜଳ କୋଟି ।
ସୁବର୍ଣ୍ଣ ଛାଏଣି କୋଟି ପ୍ରମାଣେ ଶ୍ରୀଫଳ
ଦେବତାଙ୍କ ଆସନ ସେ ଅଟଇ ଉଜ୍ଜ୍ୱଳ ।
ବ୍ରହ୍ମା ଅବତାର ରୂପେ ସହସ୍ରେକ ଶିଳା
ଈଶ୍ୱର ରୂପରେ ପାଞ୍ଚସସ୍ର ଅନର୍ଗଳା ।
ସହସ୍ରେ କପିଳା ପୁଣି ପିଙ୍ଗଳାବତାର
ବାମନ ମୁରତି ଶିଳା ଅଟଇ ହଜାର ।
କୂର୍ମ ଅବତାର ଶିଳା ଅଟଇ ଅର୍ବୁଦ
ସହସ୍ରେକ ଶିଳା ପୁଣି ବର୍ଣ୍ଣ ତୀର୍ଥ ମୁଦ ।
ସହସ୍ରେକ ଶିଳା ଅଟେ ନାରାୟଣ ମୂର୍ତ୍ତି
ସହସ୍ରେକ ଶିଳା ନୀଳ ଲୋହିତକ ପୃଥ୍ୱୀ ।
ସହସ୍ରେକ ଶିଳା ତହିଁ ରାମଚନ୍ଦ୍ର ମୁଦ
ଅନନ୍ତ ସହସ୍ରେ ଶିଳା କପିଳା ସେ ରୁଦ୍ର ।
କର୍ମଧର୍ମକ୍ଷିତି ଆପ ମରୁତ ଆକାଶ
ଏକଇ ପ୍ରତିମା ହେଲେ ଘଟଣା ପୁରୁଷ ।
ଏକକୋଟି ରତ୍ନଦୀପ ଏକକୋଟି ରୁଖା
ଘୃତ ପୂରାଇ ନେତର ବତୀଜାଳି ଶିଖା ।
ଦଶାବତାର ଚାନ୍ଦୁଆ ଅଛଇ ଗୋଟିଏ
ଦେବତାକେ ସୁବର୍ଣ୍ଣର ଖଟୁଲି ଗୋଟିଏ ।
ଏ ବିଧିରେ ଯେତେ ଦେବ ସୁବର୍ଣ୍ଣ ଖଟୁଲି
ହୀରା ମାଣିକ୍ୟ ପୋହଳା ଅଷ୍ଟରତ୍ନେ ଝଲି ।
ସ୍ୱାହା ସ୍ୱଧା ବେନି ଉଚ୍ଚାରଣ କଲେହୋମ
ଋଷିମାନେ ଆରୋପିଣ ଆରମ୍ଭିଲେ କର୍ମ ।
ଅନେକ ସମିଧ ଘୃତ କରିଲେ ଆହୁତି
ଦ୍ୱାଦଶ କୋଟି ମନ୍ତ୍ରରେ ଦେବତା ପୂଜନ୍ତି ।
ବିଂଶ ବିଂଶଛାନ କର୍ମେ ଦିଅନ୍ତି ଆହୁତି
ଆହୁତି ପାଇଣ ଦେବେ ଲଭନ୍ତି ତୃପତି ।
ମନ୍ତ୍ରପାଠେ ଶାନ୍ତିକଲେ ବହନ ଦେବତା
ନାନାଦି ବାଦ୍ୟ ବଜାନ୍ତି ଗନ୍ଧର୍ବେ ଉନ୍ମତ୍ତା
ବାଜଇ ମଧୁର ନାଦେ ସ୍ୱର୍ଗୀୟ ଦୁନ୍ଦୁଭି
ଦିଗବିଦିଗ ଉଛୁଳେ କମ୍ପେ ପୃଥ୍ୱୀଦେବୀ ।
ପଞ୍ଚକ୍ରୋଶ ଅନ୍ତରେ ଯେ ମତ୍ସ୍ୟରାଜପୁରୀ
ତହିଁକି ବାଦ୍ୟ ନ ଶୁଭେ ମହାନ ହେରି ।
ପୁଷ୍କରକୁ ଧ୍ୟାନ କଲେ ପ୍ରଭୁ ନାରାୟଣ
ଆସନ ଆଦିକରି ଯେ ଦ୍ୱାଦଶ ଭୁବନ ।
ଗଙ୍ଗା ଦୟା ଗୋଦାବରୀ ଆଉ କୃଷ୍ଣାବେଣୀ
ହରଗଙ୍ଗ ନାଶିନୀ କେଦାର ବୈତରଣୀ ।
ସୁମତୀ ବେଦମତୀ ଯେ ପ୍ରାଚୀ ଚନ୍ଦ୍ରଭାଗା
ଭାଗୀରଥି ସରସ୍ୱତୀ ପୁଣି ଗୋପଗଙ୍ଗା ।
ମନ୍ଦାଗ୍ନୀ ଗୋମତୀ ଫଲଗୁ ପୁଣି ଶୋଣଭଦ୍ରା
କାବେରୀ ମଣିକର୍ଣ୍ଣିକା ମାନମନି ମୁଦ୍ରା ।
ଶ୍ରୀସରସ୍ୱତୀ ସଙ୍ଗମ ଭାବାନୀ ବାହିନୀ
କାମାକ୍ଷୀ କାଳିନ୍ଦୀ ମହତରୁର ସମାନୀ ।
କାଶୀ କୌଶିକ ଅନ୍ଧକ ଆବର ଗୋମତୀ
ଚିତ୍ରାଙ୍ଗୀ ଚିତ୍ରଭଦ୍ରା ଯେ ନର୍ମଦା ରେବତୀ ।
ବାଜଇ ନଦିୟା ନିର୍ମାହାରାବହୀ ଭୋଗୀ
ତାଳଗଙ୍ଗା ଜାହ୍ନବୀ ଯେ ପୁଣି ସଉଭାଗୀ ।
ଏହାଙ୍କ ସଙ୍ଗେ ଆସିଲେ କୋଟିଏକ ତୀର୍ଥ
ଘେନିଣ ପୁଷ୍କର ରାଜା ବିଜୟ ତୁରିତ ।
ମୁକୁତାର ଭାଣ୍ଡେ ଶୁଦ୍ଧ ସ୍ଫଟିକ ର ପାଣି
ଅଭିଷେକ ପୁରୁଷ ତା ଯୋଗାଇଲେ ଆଣି
ବାମ ଦକ୍ଷିଣେ ରହିଲେ ଶ୍ୱେତହସ୍ତୀ ବେନି
ମୁକୁତାର ଭାଣ୍ଡରେ ସେ ତୀର୍ଥଜଳ ଘେନି ।
ପୁଷ୍କର ସଙ୍ଗେ ଆସିଲେ ନବଲକ୍ଷ ବାଜି
ବଡ଼ ଚୋଖାର ତୁରଙ୍ଗ ରଥ ମହାତେଜି ।
ଦୁଇଚିଲ କ୍ଷେଡ଼ପରି ବାଛି ଦୁଇକତି
ବିଜେ କମଳ ଆସନେ କୃଶାନୁ ମୂରତି ।
ହୃଦଗତେ ଆଲିଙ୍ଗନ କଲେ ବାଞ୍ଛାଦେବୀ
ସାନନ୍ଦଚିତ୍ତେ ଯୁଧିଷ୍ଠି ଅଭୟକୁ ସେବି ।
ମକର ଶୁକ୍ଳ ଚଉଠି ପୁଣି ଅର୍କବାର
ରେବେତୀ ନକ୍ଷତ୍ର ଭୋଗ ଅଟେ ସେ ଦିନର ।
ତୈତିଳ ନାମେ କରଣ ଶୁଭ ନାମେଯୋଗ
ତାର ବାରବେଳାଯେ ରୋହିଣୀଘରେଭୋଗ
ଐଶାନ୍ୟେ ଯୋଗିନୀ ମହାଲକ୍ଷ୍ମୀର ମୂରତୀ
ମରାଳ ବାହନେ ତହିଁ ଚଳେ ବେଦମତି ।
ଏସନେକ ମହାଶୁଭ ଲଗନର ବେଳା
ଅଭିଷେକର ବିଧାନ ଚଳେ ଦେବମାଳା ।
ଶ୍ରୀକୃଷ୍ଣଙ୍କର ଭଣଜା ଅର୍ଜ୍ଜୁନର ସୂନୁ
ଯୁଧିଷ୍ଠିରଙ୍କର ତୁଳେ ସୁତ ଅଭିମନ୍ୟୁ ।
ଅମରଙ୍କ ବିଳାସିନୀ ଆକାଶର ବାଳି
ଲକ୍ଷେକ ସୁନ୍ଦରୀ ତହିଁ ଚାମରକୁ ଢ଼ାଳି ।
ପାଟଛତ୍ର ଲକ୍ଷେ ଲକ୍ଷେ ପଡ଼ଇ ଚାମର
ପାଞ୍ଚଲକ୍ଷ ପତାକା ଯେ ଉଡ଼େ ଆକାଶର ।
ସୁବର୍ଣ୍ଣର ଶଙ୍ଖ ତହିଁ ସ୍ଫୁରେ ଦୁଇଗୋଟି
ଚୌଷଠି କନ୍ୟା ତାଣ୍ଡବ ନୃତ୍ୟେ ତହିଁ ଖଟି
ବୀଣା ବଇଁଶୀ ମୁରଜ ତାନପୁରା ଗୁଣା
ପିନାକୀ ଗଣପତିଙ୍କ ଲାଖି ବ୍ରହ୍ମବୀଣା ।

ସୁସ୍ୱର ବାଦନ ସଞ୍ଚା ସାରଙ୍ଗୀର ଧ୍ୱନି
ହରଷରେ ଖଟନ୍ତି ନାରଦ ମହାମୁନି ।
ଲକ୍ଷଣବନ୍ତ ବ୍ରାହ୍ମଣ ଲକ୍ଷେ ଋକବେଦୀ
ଦୁଇଲକ୍ଷ ଦ୍ୱିଜ ସାମବେଦରେ ପ୍ରସିଦ୍ଧି ।
ଚାରିଲକ୍ଷ ଦ୍ୱିଜ ପୁଣି ଯର୍ଜୁର୍ବେଦଧାରୀ
ଅଥର୍ବବେଦ ବ୍ରହ୍ମାଣ୍ଡ ଛନ୍ତି ଲକ୍ଷ ଚାରି ।
ଉତ୍ତରବେଦୀୟ ଛନ୍ତି ପାଞ୍ଚ ସସ୍ର ଦ୍ୱିଜ
ଅୟୁତେକ ଦ୍ୱିଜ ଧନୁର୍ବେଦରେ ଶଉର୍ଯ୍ୟ ।
ବେନି ଅୟୁତ ବ୍ରାହ୍ମଣ ଧନୁର୍ବେଦୀ ଜାଣ
ସୁଷୁମ୍ନା ବେଦ ନବଦ୍ୱୀଜ କରେ ଗାନ ।
ଆସନ୍ତି ପାଞ୍ଚସହସ୍ର ଗାୟତ୍ରୀକୁ ଭାଷି
ପାଞ୍ଚଅୟୁତ ଆସିଲେ ଯୋଗଧ୍ୟାୟୀ ବଂଶୀ ।
ପ୍ରତ୍ୟକ୍ଷେ ଧର୍ମଦେବତା ଯେ ରାଜା ଯୁଧିଷ୍ଠି
ଦର୍ଶନାର୍ଥେ ଜଗନ୍ନାଥ ଯାହାକୁଟି ଖଟି ।
ଏ ମହୀମଣ୍ଡଳେ କୁଳ ଧ୍ୱଂସିବା ନିମନ୍ତ
ଇନ୍ଦ୍ରବାକ୍ୟ କରି ମନୁ ଅବତାର ଅନ୍ତେ ।
ତହିଁର ନିମିତ୍ତରେ ଯେ ଅଭିଷେକ ଆର
ଅମର ଘେନି ଖଟନ୍ତି ଦେବ ସୁରେଶ୍ୱର ।
ଏସନକ ଆରମ୍ଭ ପାଞ୍ଚଣ ଦେବ ହରି
ଲେଖନ୍ତେ ପାଇବି କାହୁଁ ତାହା ଅନ୍ତ କରି
ସଂକ୍ଷେପି କହିବାକୁ ତ ତୋର ନାହିଁ ହେତୁ ।
ଯାହାଙ୍କର ମହିମାରେ ହୁଏ ଏହି କ୍ରତୁ ।
ମନୁଷ୍ୟଜନ୍ମେ ଉତ୍ପତ୍ତି ମୁହିଁ ମହୀତଳେ
ଶ୍ରୀକୃଷ୍ଣର ନାମ ଭାବ ହୃଦେ ପୁଣ୍ୟବଳେ ।
ଅକ୍ଷୟଭଣ୍ଡାର ବ୍ୟୟ କଲି ଯମଙ୍କାନୁ
କୌଶଲ୍ୟା ଦେବୀ ନନ୍ଦନ ବିଜୟ କୃଶାନୁ ।
ମଙ୍ଗଳବାଦ୍ୟ ଶୁଭଇ ଅନୁକୂଳ ଘେନି
ଅଭିଷେକ କଲେ କୋଟିତୀର୍ଥ ଜଳ ଆଣି ।
ଜୟ ଜୟ ଶବଦ ଯେ ଶୁଭଇ ଆକାଶେ
ପୁଷ୍ପବୃଷ୍ଟି କଲେ ତହିଁ ସ୍ୱର୍ଗର ପୁରୁଷେ ।
ଅମୃତାହ ମେଘ ତହିଁ ହେଲା ସୁଧାବୃଷ୍ଟି
କଣୟ ବର୍ଷିଲା ଅଷ୍ଟରତ୍ନ କୋଟି କୋଟି ।
ଅନେକ ରତ୍ନପ୍ରଦୀପ ଜଳେ ଚଉକତି
ଦିଶନ୍ତି ପଣ୍ଡୁ ନନ୍ଦନ ରୁଦ୍ର ବିଷ୍ଣୁ ମୂର୍ତ୍ତି ।
କୋଦଣ୍ଡ ଅଜଗବ ଯେ ପିନାକ ଗାଣ୍ଡିମ
ବାଆନ ବାଆନ ଭାର ଗଦା ଧରି ଭୀମ ।
ଯୁଧିଷ୍ଠିର ଦେବଙ୍କର ଅଭିଷେକ ଦେଖି
ବହୁତ ପାପୀ ତରିଲେ ପାପକୁ ଉପେକ୍ଷି ।

ଅନେକ ଆନନ୍ଦ ତହିଁ ହେଲେ ବୃନ୍ଦାରକେ
ବହୁତ ମଙ୍ଗଳ ଧ୍ୱନି କଲେ ସୁରଲୋକେ ।
ସାନନ୍ଦ ପରମାନନ୍ଦ ସିଦ୍ଧ ଆଉ ଯୋଗୀ
ସଭା ସମାର୍ଜନା କଲେ ତହୁଁ ବେଗି ବେଗି ।
ବହୁତ ସାନନ୍ଦ ହେଲେ ଯଦୁବୀରଗଣ
ବୋଇଲେ ଯେ ଧନ୍ୟ ଧନ୍ୟ ଆମ୍ଭରଜୀବନ
ନାରାୟଣ ପ୍ରସାଦରେ ସର୍ବଶୁଭେ ଅଛୁଁ
ବହୁ କାଳକୁ ନିର୍ମଳ ହେଲା ବେନି ଚକ୍ଷୁ ।
ପୂର୍ବଜନ୍ମେ କରିଥିଲୁ ତପସ୍ୟା ବହୁତ
ଧର୍ମରାଜା ଅଭିଷେକ ଦେଖି ହେଲୁ ପାର୍ଥ ।
ପାଣ୍ଡବଙ୍କ ଅଭିଷେକ ମହାନନ୍ଦ ଦେଖି
ବଳରାମ ଗୋସାଇଁ ଯେ ବୁଜିଦେଲେଆଖି ।
ବିରସ ବଦନ ହୋଇ ସ୍ୱାମୀ କାମପାଳ
ବହୁତ ବିସ୍ମୟ ମନେ ହେଲେ କୋପାନଳ ।
ଭାବିଲେ ପାଣ୍ଡବଗଣ ହେଲେତ ଉଦିତ
ଜାଣିଲି ଏସବୁ ଅଟେ କୃଷ୍ଣର ଯେ କୃତ୍ୟ ।
ବଳରାମଙ୍କ ବିମନ ଭୀମସେନ ଜାଣି
କୃଷ୍ଣ ସନ୍ନିଧେ ବୋଇଲେ ଯୋଡ଼ିବେନି ପାଣି
ଦେବ ଆମ୍ଭ ସମ୍ପଦରେ ତ୍ରୈଲୋକ୍ୟ ଆନନ୍ଦ
ବଳରାମବସିଛନ୍ତି ହୋଇଣ ବିଷାଦ ।
ଲେଉଟି ଚାହିଁଲେ କୃଷ୍ଣ ବଳରାମ ମୁଖ
ଦେଖିଲେ ବଳରାମଙ୍କ ହୃଦେ ନାହିଁ ସୁଖ ।
ନାରାୟଣ ଠାରିଦେଲେ ଭୀମଙ୍କୁ ତୁରିତେ
ପୁଛ କିନା ବଳରାମ ମଉନ କି ଅର୍ଥେ ।
ନାରାୟଣଙ୍କ ବଚନେ ବୃକୋଦର ଉଠି
ବଳରାମଙ୍କ ଛାମୁରେ ଯୋଡ଼ି କର ଦୁଟି ।
ବୋଇଲେ ହେ କାମପାଳ ଧର୍ମ ଅଭିଷେକ
ଦେଖିଅନେକ ସାନନ୍ଦ ହୋଇଲେତ୍ରୈଲୋକ ।
ତୁମ୍ଭର ବଦନ କିମ୍ପା ବିରସ ହେ ଦେବ
ଅଥବା ନ ଯୋଗାଇଲା ତୁମ୍ଭଙ୍କୁ ଏ ସର୍ବ ।
ତୁମ୍ଭର କେବଳ ମନ୍ଦବୁଦ୍ଧିର ପ୍ରସାଦେ
ବେଳେବେଳେ ଦୁର୍ଯ୍ୟୋଧନପଡ଼ଇ ପ୍ରମାଦେ ।
ସ୍ୱାମୀ ତୁମ୍ଭର କେବଳ ଏହା ମନ୍ଦବୁଦ୍ଧି
ବେଳେବେଳେ ଦୁର୍ଯ୍ୟୋଧନହରେ ଆମ୍ଭସିଦ୍ଧି ।
ସ୍ୱାମୀ ତୁମ୍ଭର ହେତୁରୁ ଦେଲେ ବିଷଲଡୁ
ବାନ୍ଧିଫିଙ୍ଗି ଦେଲେମୋତେଦୁଃଖଜଳେବୁଡୁ ।
ନାଗୁଣୀଖାଉ ବୋଲିଣ ପେଲିଦେଲେଜଳେ
ତହୁଁ ପାରିହେଲି ମୁହିଁ ମୋର କର୍ମବଳେ ।
ସ୍ୱାମୀ ତୁମ୍ଭ ବୁଦ୍ଧି ବଳେ ଆହୁରି କପଟେ
ଘର ଏକ ନିର୍ମାଣିଲେ ଜଉ ଛଣପଟେ ।

ସେ ଗୃହେ ରଖିଲେ ନେଇ ଆମ୍ଭଙ୍କୁ କୌଶଳେ
ତୁମ୍ଭର ପ୍ରପଞ୍ଚ ବୁଦ୍ଧି ଜାଣିଲୁ ସେ କାଳେ ।
ପାଣ୍ଡବେ ମରନ୍ତୁ ବୋଲି ରାତିରେପୋଡ଼ିଲେ
ତହିଁରୁ ପାରି ହୋଇଲୁ ଆମ୍ଭବୁଦ୍ଧି ବଳେ ।
କପଟପଶା ଏକା ଯେ କରିଲ ଭିଆଣ
ସବୁ କୁଟବୁଦ୍ଧି ଅଟେ ତୁମ୍ଭ ବଡ଼ପଣ ।
ଘୋଷଯାତ୍ରା ବୋଲିକରି ରଚିଲେ ପ୍ରମାଦେ
ସକଳ ଅନୀତି କଲେ ତୁମ୍ଭର ପ୍ରମାଦେ ।
ତୁମ୍ଭର ହେତୁରୁ ସ୍ୱାମୀ ହେଲା ଏତେ କଷ୍ଟ
ଏବେ ବାଗେ ରାମ ତୁମ୍ଭ ନ ପୂରିଲା ପେଟ ।
ହରଷ ଛାଡ଼ି ବିରସ କିମ୍ପା ତୁମ୍ଭ ମତି
ତୁମ୍ଭର ବିଷାଦେ କିସ ହେବ ହଳପତି ।
ତୁମ୍ଭର କର୍ତ୍ତବ୍ୟ କାର୍ଯ୍ୟ ଯାହା ତୁମ୍ଭେ କଲ
କାଳେ କାମପାଳ କିଛି ନୁହଇଟି ଭଲ ।
ଦ୍ରୌପଦୀ କେଶ ଧଇଲା ଯାଇଁ ଦୁଃଶାସନ
ଅବନ୍ଧନ ଅଛି କେଶ ଅବଧି ତା ଜାଣ ।
ଦୁଃଶାସନ ରକ୍ତେ ଯେବେ ତା କେଶପଖାଳି
ତେବେ ସେ କେଶ ବନ୍ଧନ କରିବ ପାଞ୍ଚାଳି ।
ଧୃତରାଷ୍ଟ୍ର ପୁତ୍ର ଛାତି ବିଦାରିବି ଯୁଦ୍ଧେ
କେବଣ ବାଗରେ ରକ୍ଷ ହେବ ଭଣମଧେ ।
କର୍ଣ୍ଣ କୃପ ଅଶ୍ୱତ୍ଥାମା ଶଲ୍ୟ ଭୀଷ୍ମ ଦ୍ରୋଣେ
କେବଣ ବାଗେ ରଖିବି ତାଙ୍କୁ ଶଙ୍କର୍ଷଣେ ।
ଯଦ୍ୟପି ସପକ୍ଷ ହେବେ କୋଟି ବଳରାମ
ରଖି ନ ପାରିବେ ନିଶ୍ଚେ ମାରିବି ଅଧମ ।
ସ୍ୱାମୀ ଯେକାଳେ ଅର୍ଜୁନ ଚଳିଲା ଦ୍ୱାରକା
ତୁମ୍ଭର ଭଗ୍ନିକି ବଳେ ହରିଲା ସେ ଏକା ।
ସାତ ବଂଶ ଘେନି ତୁମ୍ଭେ କରିଲ ସଂଗ୍ରାମ
ଏକା ଅର୍ଜୁନକୁ ସରି ନୋହିଲେ ହେ ରାମ ।
ଖାଣ୍ଡବ ଦହନେ ଦେବ ଇନ୍ଦ୍ର ଯେ ବିବାଦୀ
ଅମର ଜିଣି ଅଗ୍ନିକୁ ଦେଲା ମହୌଷଧି ।
ନିର୍ବାତ କବଚ ବଧ କଲା ରଣେ କେବେ
ଅମରକୁ ଘେନି ପୂଜା କରିଲେ ବାସବେ ।
ସେ ଜରାସନ୍ଧ ତୁମ୍ଭଙ୍କୁ କିସ ଅବା କଲା
ଅଠରଥର ତୁମ୍ଭଙ୍କୁ ଯାଇଁ ଧାଡ଼ି ଦେଲା ।
ମହୀତଳେ ରହି ନ ପାରିଲେ ତାର ଡରେ ।
କୁଟୁମ୍ବ ଘେନି ପଶିଲ ସାଗର ଭିତରେ ।
ଜରାସନ୍ଧ ବଧକଲୁ ତୁମ୍ଭର ନିମନ୍ତେ
କିମ୍ପାଇ ଶତ୍ରୁତା ଭାବେ କରୁଛ ଏମନ୍ତେ ।

ଗୋସିଂହ ଦୈତ୍ୟ ତୁମ୍ଭଙ୍କୁ ଦେଲାଯେତେକଷ୍ଟ
ଏକା ଅର୍ଜୁନ ତାହାର ପ୍ରାଣ କଲା ନଷ୍ଟ ।
କଉରବଙ୍କୁ ପାଣ୍ଡବାସୁର ନେଲା ଧରି
ଦୁର୍ଯ୍ୟୋଧନଙ୍କୁ ରଖିଲୁ ସେ ଦାନବ ମାରି ।
ପଞ୍ଚାଳ ଦେଶର ଲାଖ ବିନ୍ଧିବାର କାଳେ
ବିବାଦୀ ହୋଇଲେ ଯାଇ କୌରବସକଳେ ।
ତହିଁ ସମସ୍ତେ ପାଇଲେ ଯେତେକ ଅବସ୍ଥା
ଲକ୍ଷେ ରାଜାଙ୍କୁ ଜିଣିଣ ରଖାଇଲୁ କଥା ।
ତହିଁ ଆପଣ ହେ ପରା ଥିଲ ବଳରାମ
ଦେଖିଛତ ସମ୍ମୁଖରେ ସେଦିନ ସଂଗ୍ରାମ ।
ଘୋଷଯାତ୍ରା କଲା ଯାଇ କାମ୍ୟକ କାନନେ
ଚିତ୍ରସେନ ବନ୍ଦୀକରି ନେଲା ଦୁର୍ଯ୍ୟୋଧନେ
ସର୍ବ କଉରବ ତହିଁ ପଳାଇଲେ ଡରେ
ଅର୍ଜୁନ ଯାଇ ବନ୍ଧନ କଲା ବିଦ୍ୟାଧରେ ।
ତ୍ରିଗର୍ତ୍ତ ଯେ ଆସିଥିଲା ସମଦଣ୍ଡ ବାହି
ମୁହିଁ ସେ ଜିଣିଲି ପରିଘାଇ ରୋଷବହି ।
ଦଣ୍ଡଭଗ୍ନ ଦେଖି କୋପ କଲା ଦୁର୍ଯ୍ୟୋଧନ
ଆସିଲା ସେ ଏକାଦଶକ୍ଷୌଣୀ ଘେନି ସୈନ୍ୟ
ଗୋଧନ ଗୋଷ୍ଠବେଢ଼ିଲା ବେଗରେସେ ଆସି
ଏକା ସହଦେବ ବଳ ପକାଇଲା ଧ୍ୱଂସି ।
ପୁଣି ବିଜେକଲା ପାର୍ଥ ଯାଇଣ ସମରେ
ଏକାରଥକେ ଜିଣିଲା ସେ କୁରୁ ସାଗରେ ।
ଶତସିଂହ ପରାକ୍ରମ କୀଚକ ଦୁର୍ବାର
ତାକୁ ବଧକରି ନାଶକଲା ମହୀଭାର ।
ପ୍ରତ୍ୟକ୍ଷରେ ଦେଖୁଅଛ ମହିମା ଆପଣ
ଦେଖୁ ଦେଖୁ ସ୍ୱାମୀ ତୁମ୍ଭେ ଦେଉଅଛଜାଣ ।
ଏମନ୍ତ ବୋଲିଣ ବଳରାମ ପାଦତଳ
ପ୍ରଣାମ କରି ପୁଛିଲା ପଣ୍ଡୁର ଦୁଲାଳ ।
ଏବେ ଦୋଷ କ୍ଷମାକରି କୋପ ଶାନ୍ତକର
ଜନମେ ଜନମେ ଆମ୍ଭେ ଶରଣ ତୁମ୍ଭର ।
ସୋଦର ଭଗ୍ନି ତୁମ୍ଭର ଅର୍ଜୁନ ଭାରିଯା
ଅଭିଷେକରେ ବସିବେ ତୁମ୍ଭର ଭଣଜା ।
କାଦମ୍ବରୀ ରସେ ଭୋଳେ କିଛି ନ ବିଚାର
ପେଟ ଥାଉଁ ସ୍ୱାମୀ ତୁମ୍ଭେ ପିଠି କୋଳକର
ଦେଖୁ ଦେଖୁ ଉପେକ୍ଷା ଯେ କରୁଛ ଅମୃତ
ସ୍ୱାଦୁ ପ୍ରାୟ ମଣି ବିଷ କର ଗର୍ଭଗତ ।
ତୁମ୍ଭେ ଦେବ କରୁଅଛ ଯାହା ମନୋବଞ୍ଛା
ଜାଣିବ କୌରବଗଣେ କେ କରିବ ରକ୍ଷା ।
କହୁ କହୁ ଭୀମ ହେଲା ରକ୍ତବର୍ଣ୍ଣ ଦୃଷ୍ଟି
ରାଗେ ବଳରାମ ଗଲେ ସେଠାବରୁ ଉଠି ।

ତାଳଧ୍ୱଜ ରଥେ ଚଢ଼ି କୋପେ ଦେବରାୟ
ଦ୍ୱାରକାପୁରକୁ ତହିଁ କରିଲେ ବିଜୟ ।
ବଳରାମ କୋପେ କେହି ନ ହୋଇଲେ ଆଗ
ଭୀମ ଝିଙ୍ଗାସରେ ହୋଇଥିଲେ ବଡ଼ ରାଗ ।
ଆହେ ଚଇତନ ଯହୁଁ ପାଇଗଲା ଗତି
ଅଗ୍ନିଙ୍କୁ ତୋଷିଣ ଦେଲେ ପୂର୍ଣ୍ଣ ଯେ ଆହୁତି ।
ଉତ୍ତରୀୟ ପଇତା ଯେ ସୁବର୍ଣ୍ଣ ଲେଖନ
ଯୁଧିଷ୍ଠିରଙ୍କ ମସ୍ତକେ ଦେଲେ ମୁନିଗଣ ।
ଆରୋଗ୍ୟ ଆଶୀର୍ବାଦକୁ ସର୍ବ କଲେ ବାଞ୍ଛା
ପଞ୍ଚ କଟକରେ ରାଜା ହୁଅ ମନ ଇଚ୍ଛା ।
ଏଥର ଭୟ ନକରି ନିବାର ଦୁଷ୍ଟାନ୍ତ
ଶତ୍ରୁମାରି ହୁଅ ଏବେ ତୁମ୍ଭେ ଏକ ଛତ୍ର ।
ପୃଥିବୀର ଭାରା ତୁମ୍ଭ ଦ୍ୱାରା ହେଉ ଲୀନ
ଅନେକ କଲ୍ୟାଣ କଲେ ଦେବ ମଘବାନ ।
ବହୁ ରତ୍ନମାଳା ପଞ୍ଚ କଣ୍ଠରେ ଲମ୍ବାଇ
ଉଠିଲେ ଯେ ବୃନ୍ଦାବନେ ରଜନୀ ପୁହାଇ ।
ଅମେରଶ୍ୱରୀ ଅପର୍ଣ୍ଣା ଦେବୀ ସରସ୍ୱତୀ
ଦ୍ରୌପଦୀର ଶିରେନେଇ ଅର୍ଘ୍ୟ ବନ୍ଦାବନ୍ତି ।
ଆମ୍ଭର ତୁଲରେ ତୁହି ଅଟୁ ମହାସତୀ
ପୃଥ୍ୱୀଭାରା ନିବାରଣେ ମର୍ତ୍ତ୍ୟରେ ଉତ୍ପତ୍ତି ।
ଭାରା ନିବାରିଣୀ ଗୋ ଆକାଶେ ତୋର ବାସ
ପୁନର୍ବାର କାଳେ ତୁହି ହୋଇବୁ ପ୍ରକାଶ ।
ଅଭିଷେକର ଯୋଗାଡ଼ ଦେଇ ଦେବସ୍ତିରୀ
ସ୍ୱାମୀଙ୍କ ତୁଲେ ବାହନେ ଗଲେ ବିଜେକରି ।
ପ୍ରବେଶ ହୋଇଲେଯାଇ ଯେଯାହା ଭୁବନେ
ବିଜୟେ ବୃନ୍ଦାରକେ ଯେ ଯାହାର ବାହନେ ।
ଐରାବତ ଆରୋହଣେ ଗଲେ ମଘବାନ
ଉଚ୍ଚୈଶ୍ରବା ସଙ୍ଗେଘେନି କରିଲେ ଗମନ ।
ବନ୍ଧୁ ବର୍ଗଙ୍କୁ ଘେନିଣ ପ୍ରଭୁ ଦେବରାଜେ
ଗରୁଡ଼େ ନନ୍ଦିଘୋଷରେ ସର୍ବେ କଲେ ବିଜେ ।
ଗୋବିନ୍ଦ ଚଳିଲେ ତହୁଁ ଅଭିଷେକ ସାରି
ଅଷ୍ଟକୁଳାନାଗେ ଗଲେ ପାତାଳ ନଗରୀ ।
ଏଥୁ ଅନନ୍ତରେ ଯହୁଁ ପାହିଲାକ ରାତି
ଶମୀ ବୃକ୍ଷତଳେ ରହିଛନ୍ତି ଷଡ଼ମୂର୍ତ୍ତି ।
ସୁଧର୍ମା ସଭାକୁ ଘେନି ଗଲେ ବିଶ୍ୱକର୍ମା
ଅଭିମନ୍ୟୁ ସୁଭଦ୍ରାଙ୍କୁ ନେଲେ ସତ୍ୟଭାମା ।
ଯୁଧିଷ୍ଠିର ବ୍ୟାସଦେବ କରିଲେକ ପୁଚ୍ଛା ।
ବିରାଟ ରାଜ୍ୟକୁ ଦେବ ଯିବାକୁ ମୋ ଇଚ୍ଛା ।
ବ୍ୟାସ ବୋଲେ ଘଟିଥିଲା ତୁମ୍ଭଙ୍କୁ ବିପଦ
ଏବେ ତୁମ୍ଭର ଆସିଣ ହୋଇଲା ସମ୍ପଦ ।
ଅଜ୍ଞାନେ ବିରାଟ ହୋଇଥିଲା ଅଭ୍ୟାଗତ
ଅଭିଷେକ ଦେଖିଣ ସେ ହୋଇବ ମୂକତ ।
ଋଷି ବ୍ରାହ୍ମଣମାନଙ୍କୁ କର ପ୍ରଣିପାତ
ଉଦଯୋଗ ପୂର୍ବେ ଆସି ହେବୁ ଉପଗତ ।
ସର୍ବଋଷିମାନେ ତହୁଁ କଲ୍ୟାଣକୁ କରି
କେହୁ କେ ତୀର୍ଥ ଆଶ୍ରମେ ଗଲେ ଏହିପରି ।
ଆହେ ବିଶ୍ୱପତି ବାରେ ଘେନ ମୋ ଆରତ
ତୁମ୍ଭେ ପରା କରିଅଛ ଗଜକୁ ମୁକତ ।
ମୃଗୁଣୀ ଡାକିଲା ପ୍ରଭୁ ବନସ୍ତରେ ଥାଇ
ତାକୁ ଉଦ୍ଧାରିଲ ପରା ଦୟାଭାବ ବହି ।
ଅନ୍ଧପୁତ୍ରେ ବଳି ଆସି ବିଧାଏ ମାଇଲା
କୋପେ ପୁଚ୍ଛୁ ସେ ଅନ୍ଧର ଚକ୍ଷୁକୁ ଦିଶିଲା
ରୁଷ୍ଟ ସନ୍ତୁଷ୍ଟ ଅଟଇ ତୁମ୍ଭର ତ ସମ
ନ ଶୁଣ କିମ୍ପାଇ ପ୍ରଭୁ ଡାକିଲେ ଅଧମ ।
ଅଜାମିଳଠାରୁ ମୁହିଁ ନୁହଇ ତ ପାପୀ ।
ଖୋଜି ଖୋଜି ପାଦପଦ୍ମ ନ ମିଳେ ଅଦ୍ୟାପି ।
ମାର ତାର ଯାହା କର ତୁମ୍ଭ ଅଭିଳାଷ
ଶେଷେ ପଦଛାୟା ମାଗେ ଏ ଶାରଳା ଦାସ ।

—●—

## ବିରାଟ ସିଂହାସନେ ଯୁଧିଷ୍ଠିରଙ୍କର ଉପବେଶନ ଶୁଣି ବିରାଟର କୋପ ଓ ଉତ୍ତର କର୍ତ୍ତୃକ ପରିଚୟ ପ୍ରଦାନ

ହେ ଅଗସ୍ତି ମହାଋଷି ଶ୍ରେଷ୍ଠ ପୂଜ୍ୟପାଦ
ଧର୍ମ ଅଭିଷେକ ଶୁଣି ଖଣ୍ଡିଲେ ଆପଦ ।
ପୁଣି କେଉଁ କାର୍ଯ୍ୟକଲେ ପଣ୍ଡୁଙ୍କ କୁମରେ
ଶୁଣିବାରେ ଅଭିଳାଷ ହୋଇଛି ମନରେ ।
ଅଗସ୍ତି ବୋଇଲେ ଶୁଣ ହେ ନୃପ ନାୟକ
ଏଥୁଅନ୍ତେ ଯାହାହେଲା କଥା କଉତୁକ ।
ଯୁଧିଷ୍ଠି ବୋଇଲେ ସହଦେବ କି କରିବା
ଅଭିଷେକୀ ହୋଇ ପୃଥ୍ୱୀ ପାଦେ ନ ଗମିବା ।
ଯାନ ବାହନ ଆମ୍ଭର ବାବୁ ନାହିଁ କିଛି
ଭୀମସେନ ବୋଲେ ଦେବ ବୁଦ୍ଧିଏ ମୋଅଛି
ସମସ୍ତେ ହେ ବିଜେକର ମୋର ସ୍କନ୍ଧଦେଶେ
ବିରାଟ ନଗ୍ରେ ପଶିବା ଆମ୍ଭେ ଯେ ପ୍ରତ୍ୟକ୍ଷେ
ଅଭିଷେକର ବିଧାନ ଥିଲା ଯେଉଁ ମତେ
ଯୁଧିଷ୍ଠି ଦ୍ରୌପଦୀ ବିଜେ ହେଲେ ଭୀମମାଥେ ।

ଯୁଧିଷ୍ଠି କୋଳେ ବସିଲେ ଦ୍ରୁପଦ ଦୁଲାଳୀ
ଦିବ୍ୟ ଅବତାର ଦେବୀ ହୋଇଲେ ପାଞ୍ଚାଳୀ
କ୍ଷୀରୋଦ ମନ୍ଥନେ ଯେହ୍ନେ ଲକ୍ଷ୍ମୀନାରାୟଣ
ଗମନ୍ତି ବୈକୁଣ୍ଠ ଖଗବର ଆରୋହିଣ ।
ଧନୁଶର ଭାରତୀ ଯେ କରେ ମନ୍ତ୍ରପୋଥି
ଭୀମସେନ ବାମଅଙ୍ଗେ ସହଦେବ ମନ୍ତ୍ରୀ ।
ନାନା ରତ୍ନରେ ଭୂଷିତ ହୋଇ ସର୍ବକାୟେ
ଦିବ୍ୟସୁନ୍ଦର ଦିଶନ୍ତି ଦିଗପାଳ ପ୍ରାୟେ ।
ମେରୁ ଆସନରେ ଯେହ୍ନେ ବ୍ରହ୍ମା ବିଷ୍ଣୁହର
ଅଷ୍ଟାଦଶ ଦେବତୁଲେ ଯଥା ବୈଶ୍ୱାନର ।
ଶରତ ଆଦିତ୍ୟ ପ୍ରାୟ ତେଜକୁ ପ୍ରକାଶି
ବେଳ ତିନିଦଣ୍ଡ ମଧ୍ୟେ ନଗରରେ ପଶି ।
ମନ୍ଦର ପର୍ବତ ଜିଣି ଭୀମ ଶୋଭାପାଏ
ପାଞ୍ଚାଳୀ ଅର୍ଜୁନରୂପ ଜଗଜନ ମୋହେ ।
ଆଗରେ ଧରିଛି ପାର୍ଥ ହସ୍ତରେ କୋଦଣ୍ଡ
ହେଲେ ଘେନିବ କି ସେହି ମେଘଦେଶଖଣ୍ଡ ।
ଦେଖିକରି ବିଷାଦିତ ହେଲେ ନଗ୍ରଜନେ
ଏସନକ ବିଧାନ ହୋଇଲେ କେସନେ
ମୁର୍ଖେ ବୋଲୁଛନ୍ତି ସଭାପଣ୍ଡା କୋନ୍ତଭଟ୍ଟ
ଦିଗପାଳେ ପରାୟେ ଏ ଦିଶୁଛନ୍ତି ଶେଷ ।
କେ ବୋଲେ କୀଚକ ହରୁଥିଲା ସୈରିନ୍ଧ୍ରୀକି
କୋନ୍ତଭଟ୍ଟ ତୁଲେ ଏହୁ ଦିଶେ ଅଭିଷେକୀ ।
କେ ବୋଲେ ଉତ୍ତରାକୁ ସେ ଶିଖାଇଲା ନୃତ୍ୟ
ନପୁଂସକ ରୂପ ଛାଡ଼ି ଦିଶେ କି ଅଦ୍ଭୁତ ।
କେ ବୋଲଇ ନାରାୟଣ କିବା ବ୍ରଜପାଣି
ଏହାଙ୍କ ଚରିତ କିଛି ନ ପାରିଲୁ ଜାଣି ।
ଏବେ ଏହାଙ୍କର ନାହିଁ ପୂର୍ବ ପରି ରୂପ
ଦିବ୍ୟଦେହ ଦିଶୁଛନ୍ତି କନ୍ଦର୍ପ ସ୍ୱରୂପ ।
କେ ବୋଲେ ରାଜା ବାଜିପାଳର କି ତେଜ
ସେହି ଗ୍ରନ୍ଥିକାର ବାଜିପାଳର କି ତେଜ ।
ଶରୀରରେ ଆଭରଣ କଣୟ ଅମୁଲ୍ୟ
ଲକ୍ଷ୍ମୀଭଣ୍ଡାର ଏଥକୁ ନୁହେଁ ସମତୁଲ ।
କେ ବୋଇଲେ ତନ୍ତ୍ରୀପାଳ ରୂପ ଏବେ ଦେଖ
କୈଳାସ୍ ତେଜିଣ ବିଜେ କିବା ତ୍ରିଅମ୍ବିକ ।
ମନ୍ତ୍ରୀ ବିଧାନରେ କରେ ଧରି ମନ୍ତ୍ର ପୋଥି
ଅଭିଷେକ ହେବା ପ୍ରାୟ ଏ ପୁଣି ଦିଶନ୍ତି ।
କେ ବୋଇଲେ ରାନ୍ଧି ଦେଉଥିଲା ଯେ ବଲ୍ଲଭ
ଦେଖ ହୋ ମହିମା ତାର ସବୁହୁଁ ଦୁର୍ଲ୍ଲଭ ।
ଏହାଙ୍କର ଚରିତକୁ ନ ପାରିଲେ ଜାଣି
ଦିଗପାଳ ପୁରୁଷ ଏ ଶୂନ୍ୟ ଚୁଡ଼ାମଣି ।

ଏକଗୋଟି ଦେହରେ ଯେ ପାଞ୍ଚଗୋଟି ଦେଖି
ଚାଲନ୍ତି କଉତୁକେ ଏ ଲଜ୍ଜାକୁ ଉପେକ୍ଷି ।
ମୁଣ୍ଡେ କାଖେ କରି ଏହୁ ପାଞ୍ଚଙ୍କୁ ବୁହଇ
ଏକକୁ ଆରେକ ପୁଣି ରୋଷଭରେ କହି ।
କେହୁ ବା ହସନ୍ତି କେହୁ କରନ୍ତି କୁରୁଳି
କେ ମଙ୍ଗଳ ଧ୍ୱନି କରି ମାରେ କରତାଳି ।
ମୁର୍ଖଲୋକବୋଲୁଛନ୍ତି କୋନ୍ତେହେଲେବାଇ
ଏମନ୍ତ ପ୍ରପଞ୍ଚ ହୋଇ ବୁଲନ୍ତି କିମ୍ପାଇ ।
ଦେଖି ବିଚାରନ୍ତି ଜ୍ଞାନୀ ଏ ତ ଭାଗ୍ୟବନ୍ତ
କେବୋଲେ ବିରାଟ କଲା ବଡ଼ ମନ୍ଦକୃତ୍ୟ ।
ଅତ୍ୟନ୍ତ ବିନୟ କରି ପେଷିଲେ ଏମନ୍ତ
କୀଚକ ମାରିଲା ରାଜ୍ୟ ହୋଇଣ ଅନାଥ ।
ଶତ୍ରୁକଳି ରାଜ୍ୟମାଡ଼ି ବସିଲେଣି ଦେଖ
ନିରୀକ୍ଷି ଚାହାନ୍ତି କେହୁ ତାହାଙ୍କର ମୁଖ ।
ସୁଲକ୍ଷଣୀ ବାଳୀ କରେ ଅର୍ଘ୍ୟଥାଳୀ ଘେନି
ଦେବ ନିଜେ ପ୍ରାୟ ବୁଝି ଦ୍ୟନ୍ତି ହୁଳଧ୍ୱନି ।
ମାହେନ୍ଦ୍ର ଯୋଗରେ ଶୁଭବେଳେ ଅନୁକୂଳ
କରି ଆସ୍ଥାନେ ବସିଲେ ପଞ୍ଚ ମହାମଲ୍ଲ ।
ସିଂହାସନେ ଧର୍ମରାଜ ବସିଲେକ ଯାଇଁ
କୋଳେ ପାଞ୍ଚକୁମାରୀ ଅଛନ୍ତି ଯେ ରହି ।
ପାବଚ୍ଛର ତଳେ ସହଦେବ ମହାମନ୍ତ୍ରୀ
ଭୁତ ଭବିଷ୍ୟ ଜାଣଇ କରେ ମନ୍ତ୍ର ପୋଥି ।
ଆବର ପାବଚ୍ଛ ତଳେ ଛନ୍ତି ଫାଲଗୁନୀ
ବାମେ କୋଦଣ୍ଡ ଡାହାଣେ ଖଡ଼ଗଅଛିଘେନି
ଆବର ପାବଚ୍ଛ ତଳେ କୁମାର ନକୁଳ
ନବନିଶି କୁନ୍ତ ଘେନିଛନ୍ତି ବାଜିପାଳ ।
ବାଉନ ବାଉନ ଭାର ଗଦା ବେନିକରେ
ଭୀମସେନ ଆବୋରିଣ ବସିଛନ୍ତି ଦ୍ୱାରେ ।
କାଳଚକ୍ର ପ୍ରାୟ ଜିଣି ବୁଲାଏ ହେ ଡ଼ୋଳା
ଯବଦେବତା ପରାୟେ ଦିଶେ ଅନର୍ଗଳା ।
ମୂର୍ତ୍ତିକି କେହି ଚାହିଁଣ ନ ପାରନ୍ତି ଡରେ
ଭୟକରି ସର୍ବ ଲୋକ ଅନାନ୍ତି ଯେ ଦ୍ୱାରେ
ଦେବାର୍ଚ୍ଚନ ନଗ୍ରେ ରାଜା ବିଜୟ ବିରାଟ
ଚାର ଜଣାଇଲେ ରାଜ୍ୟନେଲା କୋନ୍ତଭଟ୍ଟ ।
ଯେବଣ ସୈରିନ୍ଧ୍ରୀ ପାଇ କୀଚକ ମରିଲା
ଅଭିଷେକ ହୋଇ କୋନ୍ତ କୋଳରେ ବସିଲା
ଅଭିଷେକରେ ଯୋଗାଡ଼ ପାଇଲେ ସେ କାହିଁ
ଏମନ୍ତ ପ୍ରକାରେ ରତ୍ନ ମର୍ତ୍ତ୍ୟପୁରେ ନାହିଁ ।
ଦିବ୍ୟ ଅବତାର ତନ୍ତ୍ରୀପାଳ ଯେ ଗୋପାଳେ
ପୋଥି ଘେନି ଗତାଗତ ବୋଲି ପାଦତଳେ ।

ଶୁଦ୍ଧ କନକର ଦଣ୍ଡ ବୀରଛତ୍ର ଘେନି
ପାଶେ ଛିଡ଼ା ବାଜିପାଳ ବୃହନ୍ନାରୀ ବେନି ।
ହୋ ଦେବ ଦ୍ୱାର ଆବୋରି ରହିଛି ବଲ୍ଲଭ
ତ୍ରୈଲୋକ୍ୟେ ତାର ମହିମା ଅଟଇ ଦୁର୍ଲ୍ଲଭ
ତାହାର ମୁରତି ଦେଖି ନାପାରିଲୁ ଜାଣି
ଦିବ୍ୟଅଙ୍ଗ ପୁରୁଷ ସେ ସ୍ୱର୍ଗେ ଚୂଡ଼ାମଣି ।
ତଗର ମୁଖୁ ଏସନ ଶୁଣିଣ ବିରାଟ
ଅଶିପତ୍ର କରେ ଧରି ଓଷ୍ଠ କଲା ପୁଷ୍ଟ ।
ଧାମଇଁ ମତ୍ସ୍ୟ ଅଧିପ କରେ ଧରି ଖଣ୍ଡା
ଏଡ଼େକ ଦର୍ପ କିମ୍ପାଇ କଲା କୋନ୍ତପଣ୍ଡା ।
ତାହାର ମୁଣ୍ଡକୁ ଆଜି ହାଣିବି ମୁଁ ଯାଇ
କୋଳ କରିଣ ଧଇଲେ ପାଟ ମହାଦେଈ ।
ସୁଦେଷ୍ଣା ଡାକିଲେ ନାଥ ରହରହ ବୋଲି
ରାଗେ ବିରାଟ ତାହାକୁ ପକାଇଲେ ପେଲି ।
ଅନ୍ତଃପୁରରୁ ନୃପତି ହୁଅନ୍ତେ ବାହାର
ଉତ୍ତର ଡାକଇ ରୁହ ରୁହ ମତ୍ସ୍ୟେଶ୍ୱର ।
ଅନାଦି ପୁରୁଷଙ୍କୁ ତୁ ଭେଟିଲୁ ପ୍ରତ୍ୟକ୍ଷ
କୋପ ସମ୍ବରଣ କର ଆହେ ମତ୍ସ୍ୟାଧିପ ।
ପିତାର କର ଧଇଲା ଉତ୍ତର କୁମର
ବୋଇଲା ନ ଜାଣି କିମ୍ପା ହେଉଛ ଅସୁର ।
ବିରାଟ ବୋଇଲା ଆରେ ରହ ରହ ବାବୁ
ସୁଜନ ପୁରୁଷ ବୋଲି ସମର୍ପିଲୁ ସବୁ ।
ଅଦଭୂତରେ ପଶିଲେ ହୋଇ ଭୃତ୍ୟପଣେ
ସମ୍ପଦ ମାଡ଼ି ବସିଲେ ମୋର ଅକାରଣେ ।
ଅତି ଆଦରରେ ବାବୁ ପୋଷିଲି ମୁଁ ଶ୍ୱାନ
ଅନ୍ତେମୋହର ମୁଖରେଦେଲେ ସେ ଚୁମ୍ବନ ।
ଏବେ ମୁଁ ଜାଣିଲି କୋନ୍ତପଣ୍ଡା ବଡ଼ ଲଘୁ
କିମ୍ପାଇଁ ନ ସହିଲୁ ତୁ ନପୁଂସକ ରାଗୁ ।
ଅତି ରାଗରେ ମାଇଲି ମୁହିଁ ପଶାକାଠି
କିମ୍ପାଇଁ ଫାଟି ନଗଲା ତା ଲଲାଟ ପାଟି ।
କେଡ଼େ ପାମରକୁ ତୁହି ସମ୍ମାନନା କଲୁ
ଚଣ୍ଡାଳ ନନ୍ଦନେ ପ୍ରଣିପାତ କରାଇଲୁ ।
ଯେତେବେଳରୁ ମୋହର ଦେଖିଲା ନିସ୍ତେଜ
ତେଣୁ ମାଡ଼ିବସିଲା ସେହି ମୋହର ରାଜ୍ୟ ।
ଭୀଷ୍ମ ଦ୍ରୋଣ ଜିଣିବାକୁ ତୁହି ସମାରଥୀ
କେମନ୍ତେ ସହୁଛୁ ଏବେ ବଡ଼ ବଡ଼ କଥା ।
ଉତ୍ତର ବୋଇଲା ସ୍ଥିରୀ ହୋଇ ଦଣ୍ଡେ ବସ
ଶ୍ରୀଭୁଜ କୃପାଣ ଥୋଇ ସ୍ଥିରକର ଶ୍ୱାସ ।
ସାବଧାନ ହୋଇ ଧୀରେ ଶୁଣ ମୋରବାକ୍ୟ
ପ୍ରାଣ ହରାଇବାବୁ ତୋ ପ୍ରତିଜ୍ଞା ଏତେକ ।

ଶୁଣ ସାବଧାନ ହୋଇ କୋନ୍ତଙ୍କ ମହିମା
ଏ ମହୀମଣ୍ଡଳରେ ସେ ପୁରୁଷ ଉତ୍ତମା ।
ସ୍ୱାମୀ ରାଜସୂୟ ଯଜ୍ଞ ଆରୋପଣ କାଳେ
ଲକ୍ଷେ ରାଜା ଯାହାଙ୍କର ଚରଣ ସେବିଲେ ।
ତ୍ରେତାଯୁଗର ଯେ ରାଜା ଲଙ୍କା ବିଭୀଷଣ
ସେ ତାହାଙ୍କ ଚରଣରେ କଲା ପ୍ରଦକ୍ଷିଣ ।
ତ୍ରୈଲୋକ୍ୟର ଠାକୁର ଯେ ଦେବ ମଧୁହାରୀ
ତାଙ୍କଯଜ୍ଞେ ସେ ଅନନ୍ତ ନାମେ ପ୍ରତିହାରୀ ।
ଦେଖିଲୁ ତୁ ଲକ୍ଷେ ରାଜା ସମ୍ମୁଖରେ ପୁଣ
ତାଙ୍କ ପାଦ ଆରାଧନ କରେ ନାରାୟଣ ।
ପାତାଳ ପୁରରୁ ଆସିଥିଲା ନାଗରାଜା
ଯେବଣ ସ୍ୱାମୀକୁ ସେହୁ କଲା ପାଦପୂଜା ।
ପାଞ୍ଚୋତ୍ତର ଶତ ସ୍ୱର୍ଣ୍ଣ ରଥ ଘେନିଗଲୁ
ସାତକ୍ଷୌଣୀ ବଳେ ଛତ୍ରଶାଳାରେ ଭୁଞ୍ଜିଲୁ
ତିନିଦିନ ରହିଥିଲୁ ପଶ୍ଚିମ ଦୁଆରେ
କେହି ଜଣାଇ ନ ଦେଲେ ସ୍ୱାମୀଙ୍କ ଛାମୁରେ
ଭାଇ ତାଙ୍କ ଭୀମସେନ ଗଣ୍ଡେ ଦେଇ ହସ୍ତ
ତାଙ୍କ ପାଦ କରାଇଲା ତୋତେ ପ୍ରଣିପାତ ।
ଉଠ ବୋଲି ଯେଉଁ ସ୍ୱାମୀ ଚାଳିଦେଇ କର
ବସ୍ତ୍ରା ମୁଦିଗୋଟି ମାତ୍ର ଦେଖିଲୁ ନେତ୍ରର ।
ଆହେ ପିତାମହ ସୁଖେ ଖେଳିଲେ ସେ ପଶା
ସୋଦରଙ୍କୁ ରାଜ୍ୟ ଦେଇ ବନେକଲେ ବସା ।
ହେ ସ୍ୱାମୀ ଅଜାତଶତ୍ରୁ ଧରମ ଯୁଧିଷ୍ଠି
କର ଲେଉଟାନ୍ତେ ସେହୁ ଲେଉଟଇ ସୃଷ୍ଟି ।
ସେ ସ୍ୱାମୀ ଅଜ୍ଞାତବାସ ଗୋପନ ନିମନ୍ତେ
ସତ୍ୟ ପାଳିବାକୁ ନାମ ରହିଥିଲେ କୋନ୍ତେ ।
କୁନ୍ତୀ ଏହାଙ୍କର ମାତା ଏ ତାଙ୍କର ବସ୍ତ
କୋନ୍ତ ନାମକୁ ବହିଲେ ଏହି ନୁହେଁ ମିଛ ।
ପାଣ୍ଡବାସୁରକୁ ବଧ କରିଲେ ସମରେ
ପାଣ୍ଡବ ନାମ ବହିଲେ ତହୁଁ ପଞ୍ଚବୀରେ ।
ବିଷଲଡୁ ଖାଇ ପାର କଲା ସେ ପ୍ରତ୍ୟକ୍ଷେ
ନାଗୁଣୀବାଳକୁ ଯେହୁ ଜିଣିଲା ସ୍ୱଇଚ୍ଛେ ।
କଉ ଘରରୁ ଉବୁରି ଯେହୁ ନିଶାକାଳେ
କୁମ୍ଭୀର ଦୈତ୍ୟକୁ ବଧ କଲେ ସେହୁ ଜଳେ ।
ମଧୁବନରେ କିନ୍ନର ନାମେ କଉଣପ
ବିନା ଯୁଦ୍ଧରେ ହାରିଲେ ତାହାର ଯେ ଦର୍ପ
ହିଡ଼ିମ୍ବିକି ବିଭା ହେଲେ ମାରି ହିଡ଼ିମ୍ବକ
ଏକା ଚକ୍ର ନଗ୍ର ରକ୍ଷାକଲେ ମାରି ବକ ।
ଚଣ୍ଡାଳ ବଳ ଓଡ଼ାଦି ଶିବପୁର ଧ୍ୱଂସି
କୁମ୍ଭକ ନାଶି ନିରସ୍ତ୍ର ବନ ମଧ୍ୟେ ପଶି ।

ସ୍ୱାମୀ ଚାପତ ନିମନ୍ତେ ସେହୁ ସୁପକାରେ
ବ୍ୟାଘ୍ର ମାଲ ବଧକଲା କୌତୁକ ସମରେ ।
ପାଞ୍ଚାଳ କେମା ସୈରିନ୍ଧ୍ରୀ ବାକ୍ୟ ଅନୁସରି
ଶତେ କୀଚକ ମାମୁଁଙ୍କୁ ଦେଲା ଭସ୍ମ କରି ।
ତୋତେ ମୁକ୍ତ କଲା ସେହୁ ତ୍ରିଗର୍ତ୍ତ ବନ୍ଧନୁ
ସୁପକାର ରୂପେ ସେହୁ ପବନର ସୁନୁ ।
ଶୁଣ ଶୁଣ ଆହେ ପିତା କିରୀଟି ପ୍ରତିଜ୍ଞା
ପରଦୁଃଖେ ଦୁଃଖୀ ସେହୁ ଅଲଘ୍ୟଯେ ଆଜ୍ଞା ।
ଉତ୍ତର ଦିଗରେ ବିଜେକଲା ସର୍ବବିଧି
ଜିଣିଲେ ଚାଳିଶସସ୍ର ମହା ମହା ଯୋଧି ।
ଯା ନାମ ଲେଖି ପୋଛିଲେ ପ୍ରାଣକରେନଷ୍ଟ
ଯାର ସମରେ ହାରିଲା ରାଜା ଜମାଗୋଷ୍ଠ ।
ଦିଗବିଜେ କଲା ସେହୁ ଯେକାଳେ ପାତାଳେ
ଦୁର୍ବହ ପୃଥ୍ୱୀ ଧଇଲା ପୁଣି ଧନୁହୁଳେ ।
ସାନନ୍ଦ ହୋଇଲା ତହୁଁ ଦେଖି ନାଗରାଜା
ଦୁହିତା ଦେଇ ଯାହାର କଲା ପାଦପୂଜା
ପାଞ୍ଚାଳ ଦେଶରେ ସେହୁ ମହାଲାଖ ବିନ୍ଧା ।
ବ୍ରାହ୍ମଣ ରୂପେ ଜିଣିଲା ତହିଁ ସର୍ବ ଯୋଦ୍ଧା
ସ୍ୱାମୀ ବସନ୍ତ ହରନ୍ତେ ସୁଭଦ୍ରେ
ବହୁ ଯୁଦ୍ଧକରି ହାରିଗଲେ ବଳଭଦ୍ରେ ।
କୃଷ୍ଣଙ୍କର ଭୟେ ଶତଧନୁ ପଳାଇଲା
ଯାହାଙ୍କର ପାଦେ ଆସି ଶରଣ ପଶିଲା ।
ଅନେକ ସମର ପୁଣି କଲା ଜୟଭେଦୀ
ଇନ୍ଦ୍ରକୁ ଜିଣି ଅଗ୍ନିର ଭଲ କଲା ବ୍ୟାଧି ।
ନିବାତ କବଚ ଯାଇ ମାଇଲା ଆକାଶେ
ଅନେକ ପୂଜା ପାଇଲା ଅମରପୁରେ ସେ ।
କିରୀଟି ମୁକୁଟ ଇନ୍ଦ୍ର ବାନ୍ଧି ଦେଲା ଶିର
କିରୀଟି ନାମକୁ ପୁଣି ଦେଲା ପୁରନ୍ଦର ।
ହନୁମନ୍ତଙ୍କ ତୁଲରେ ହୋଇଲା ବିବାଦୀ
ଗଲେ ସାଗର ବକ୍ଷରେ ଏକବନ୍ଧ ବାନ୍ଧି ।
ଦେଖିଛୁ ରାଧାଚକ୍ରରେ ଯେ ରୂପ ମହିମା
ବକ୍ଷେ ରାଜା ତାହାର ସେ ନପାଇଲେ ସୀମା
ମେରୁ ଶୃଙ୍ଗ ବଧ କଲା ହରିହର ଛଳେ
ଶରଣ ବତ୍ସଳ ସ୍ୱାମୀ ଅଟେ ସର୍ବକାଳେ ।
ଗୋପନ ନିମନ୍ତେ ନପୁଂସକ ରୂପ ଧରି
ଉର୍ବଶୀର ଶାପକୁ ସେ ଏବେ ପାର କରି ।
ଗୋଧନ ହରଣେ ମୁହିଁ ଗଲି ତାଙ୍କୁ ଘେନି
ଦେଖିଲି ସମୁଦ୍ର ପ୍ରାୟ କୌରବ ସଇନି ।
ଭୟରେ ପଳାଇ ମୁହିଁ ରଥ ତେଜିଲଇଁ
ମୋତେ ବୋଇଲେ ସାରଥିହୋଇଥାଅ ତୁହି ।

ମୁହିଁ ସାରଥି ହୋଇଲି ନିଜେ ହେଲେ ରଥୀ
ବେଦ ଅଗୋଚର ମୁହିଁ ଦେଖିଲି ତା ମୂର୍ତ୍ତି ।
ଏକାଦଶ କ୍ଷୌଣୀବଳେ ସେହୁ ରଥୀ ଏକା
ଜିଣିଲେ ଭୀଷ୍ମ ଦ୍ରୋଣଙ୍କୁ ମନେ ନାହିଁ ଶଙ୍କା ।
ମନଭେଦୀ ନାରଚକୁ ବିନ୍ଧିଲେ ସେ ଘେନି
ତେର ଯୋଜନ ମାଡ଼ିଣ ପଡ଼ିଲେକ ସଇନୀ ।
ରଥୀ ମହାରଥୀ ସର୍ବେ ପଡ଼ିଲେ ମୋହେ
ଭୂରିଶ୍ରବା ମୁକୁଟକୁ ଆଣେ ସେହୁ କୋହେ ।
ଏକା ଯୋଦ୍ଧାଏ ଜିଣିଲା ତାର ସର୍ବସୈନ୍ୟ
ବୃହନ୍ନାରୀ ବୋଲୁ ଯାକୁ ସେ ଅଟେ ଅର୍ଜ୍ଜୁନ
ମରଣକୁ ଇଚ୍ଛା କିମ୍ପା କରୁଅଛୁ ତାତ
ବାରେ କୋପ କରୁ ନାଶିବାକୁ ତୋରଚିତ୍ତ
ମାଦ୍ରୀନନ୍ଦନ ନକୁଳ ଯାହାକୁଟି ବୋଲୁ
ରାଜସୂୟ ଯଜ୍ଞେ ତାର ମହିମା ଦେଖିଲୁ ।
ଅତି ସୁକୁମାର ଅଟେ ତାହାଙ୍କର ଅଙ୍ଗ
ଲକ୍ଷେ ରାଜା ଅଭିମୁଖେ ବୋଲଇ ଅନଙ୍ଗ ।
କୁନ୍ତମୁନେ ପୃଥ୍ୱୀ ଧରିବାକୁ ସାମରଥା
କୁମାରର ମୁଣ୍ଡେ ପାଟ ଶୂନ୍ୟେ ଅଛି ଯଥା ।
ଦକ୍ଷିଣ ଦିଗ ରାଜାଙ୍କୁ ସାଧିଲା ଯେ ହେଲେ
ଚକ୍ରପୁର ଧ୍ୱଂସ ହେଲା ଯାର ଭୁଜବଳେ ।
ନକୁଳ ମହାବୀର ଯେ ଗ୍ରନ୍ଥିକାର ରୂପେ
ଅସାଧକୁ ସାଧକଲା ମତ ମହାଦର୍ପେ ।
ସ୍ୱାମୀ ନ ଜାଣି ବୃଥାରେ କାରେକୋପକରୁ
ଜୀଉଁ ଜୀଉଁ ମରଣକୁ କିମ୍ପା ଇଚ୍ଛା କରୁ ।
ସ୍ୱାମୀ ମନ୍ତ୍ରୀ ଚୂଡ଼ାମଣି ତାହାକୁହିଁ ବୋଲ
ମନ୍ତ୍ରେ ସାଧିଲା ପୃଥୁନା ଗୋଧନର ପଲ ।
ପୂର୍ବେ ଦିଗବିଜେ କଲା ସେହୁ ଯାଗକାଳେ
ସାତ ସହସ୍ର ରାଜାଙ୍କୁ ଖଟାଏ ସେ ବଳେ ।
ଏବେ କୁରୁବଳ ଏକାଦଶ କ୍ଷୌଣୀ ମୁଳେ
ପ୍ରଥମ ସମରେ ଆସି ଗୋଧନ ବେଢ଼ିଲେ ।
ଏକା ଏ ଗୋପାଳ ରୂପେ ବହୁ ଯୁଦ୍ଧ କଲା
ଦୁର୍ଯ୍ୟୋଧନ ଦର୍ପ ଧ୍ୱଂସି ଗୋରୁ ଛଡ଼ାଇଲା ।
ଏକ ଏକଜଣ ତାର ଏସନ ମହିମା
ଦେବ ଦାନବ ଅକ୍ଷମ ଲଘିଂବାକୁ ସୀମା ।
ଅଜ୍ଞାନ ହୋଇଣ ପିତା କର୍ମ କରୁ ତୁହି
ସିଂହର ଛାମୁରେ କାହିଁ ଶୃଗାଳ ରହଇ ।
ସ୍ୱାମୀ ଅନ୍ନପୂର୍ଣ୍ଣା ଅଟେ ଦ୍ରୁପଦ ଦୁଲାଳୀ
ସୈରିନ୍ଧ୍ରୀ ରୂପରେ ସେହି ସତ୍ୟବ୍ରତ ପାଳି ।
ଏ ମହୀଭାରା ଉଶ୍ୱାସ କରିବା ନିମିତ୍ତ
ପ୍ରତ୍ୟେକ୍ଷରେ ଅନ୍ନପୂର୍ଣ୍ଣା ସ୍ତିରୀରୂପେ ଜାତ ।

କଉରବଙ୍କର କୋପେ ଦ୍ରୁପଦର ବାଳା
ମେଦିନୀ ଭାର ନିମନ୍ତେ ଯା କେଶ ମୁକୁଳା ।
କୀଚକ ଶତ ସୋଦର ଯା ନିମନ୍ତେ ମଲେ
ଗୁପତେ ରହିଲେ କେହି ଜାଣି ନପାରିଲେ ।
ଉତ୍ତର କୁମର ଯହୁଁ ଏମାନ କହିଲା
ଖଡ୍‌ଗ ପକାଇଣ ରାଜା ମୁର୍ଚ୍ଛାଗତ ହେଲା ।
କୋଳକରି ବିରାଟକୁ ଧଇଲା ଉତ୍ତର
ଜଳ ଆଣିଣ ସଞ୍ଚିଲା ମୁଖରେ ତାହାର ।
ସାଷ୍ଟାମ ହୋଇ ବସିଲା ତହୁଁ ନୃପରାଣ
କମ୍ପାଇଲା ପୁତ୍ର ମୋର ରହିଲା ଏ ପ୍ରାଣ
ମୁହିଁ ହୀନ ମୁର୍ଖ ତାକୁ ନ ପାରିଲି ଜାଣି
ଗୃହେ ରହିଲେ ଠାକୁର ପୁଣି ଠାକୁରାଣୀ ।
ଠାକୁରପଣେ ମୁଁ ବହୁ ତୁକାର ବୋଇଲି
ଆବର କପାଳେ ପଶାକାଠି ଘାତକଲି ।
ଯେତେକ ଭର୍ତ୍ସନା ତାଙ୍କୁ କରିଅଛି ମୁହିଁ
ଭୀମସେନ ଠାକୁର ତା ସହିବେ କିମ୍ପାଇଁ ।
ଜଗଜ୍ଜନନାଥ ମୋର ପୁରେ ବିଜେ କଲା ।
ସେବା କରିବାକୁ ମୋତେ ବିଧାତା ନ କଲା
କେଉଁ ବାଗରେ କୁମର ଚାହିଁବଇଁ ମୁଖ
ଏହିକ୍ଷଣି ଶିର ମୋର କାଟିବେ ପ୍ରତ୍ୟକ୍ଷ ।
ଭୀମସେନ ରହିଛନ୍ତି ଦ୍ୱାରକୁ ଆବୋରି
ତାଙ୍କକୋପକୁଡ୍ରେ ଲୋକ୍ୟାଲୋକେଥାନ୍ତିଡ଼ରି ।
ଉତ୍ତର ବୋଇଲା ତାର ନୁହଇ ଏମନ୍ତ
ଅଜାତଶତ୍ରୁ ଅଟନ୍ତି ଯୁଧିଷ୍ଠି ପଣ୍ଡିତ ।
ତାହାଙ୍କରକୋପଯେବେତତେହୋଇଥାନ୍ତା
କିଚକବଧ ବେଳେ କି ତୋ ଜୀବନ ଥାନ୍ତା ।
ତାହାଙ୍କର ଚିତ୍ତ ଯେବେ କୋପତୋତେଥିଲା ।
ତ୍ରିଗର୍ତ୍ତେଶ୍ୱର ଯେ ତୋତେବାନ୍ଧି କରିନେଲା
ତାଙ୍କ କୋପ ଥିଲେ କାହୁଁ ଆସନ୍ତୁ ବିରାଟେ
ପଶାକାଠି ମାଇଲୁ ତୁ କୋନ୍ତଙ୍କ ଲଲାଟେ ।
ଭୂମିରେ ପଡ଼ନ୍ତା ଯେବେ ତାଙ୍କ ରକ୍ତ ଫୁଟି
ତୋର ରାଜ୍ୟରେ ନୁହନ୍ତା ବାରବର୍ଷ ବୃଷ୍ଟି ।
ତାହାଙ୍କର କୋପଯେବେ ହୋଇଥାନ୍ତାତାତ
ମୋର ସଙ୍ଗେ କିମ୍ପାଇଁ ନ ଆସିଥାନ୍ତେ ପାର୍ଥ ।
ଯୁଧିଷ୍ଠି କପାଳେ ଯେବେ ଦେଖିଥାନ୍ତେ କ୍ଷତ
କ୍ଷଣେକ ସମ୍ପଦତୋର କରି ଦ୍ୟନ୍ତେ ଚ୍ୟୁତ ।
ଅପାପୀ ଅକୋପୀଯାର ଦେହେ କୋପନାହିଁ
ତାହାଙ୍କୁ ତୁ ମନେ ଭ୍ରାନ୍ତି କରୁ କାହିଁପାଇଁ ।
ପିତା ଆଗରେ ଉତ୍ତର ଏମନ୍ତ କହିଲେ
ପର୍ବତକୁ ଟେକି ନାଥ ଟେଳାରେ ମାଇଲେ ।
ପୁନରପି ବୋଲେ ତାତ ଶୁଣ ତୁମ୍ଭେ ଭଲେ
ସମୁଦ୍ର ପୋତି କି ହୁଏ ଧୂଳି ପକାଇଲେ ।
ପର୍ବତ ସମାନ ତୁଳା ପଟର ଉପରେ
ଲୁହା ନେଇ ପିଟିଲେ କି ଭଗ୍ନ ହୋଇପାରେ ।
ଭୁଜଙ୍ଗର ବଳ ଯେବେ ପ୍ରବଳ ହୁଅଇ
ସେ କି ବଞ୍ଚିପାରେତାତ ବୈନତେୟଠାଇଁ ।
ବହୁତ ସଂଖ୍ୟକ ଗଜ ଯେବେ ହୁନ୍ତି ଠୁଳ
ଏକା କେଶରୀକି ମନ ହୋଇବେ ସକଳ ।
ପୃଥିବୀ ଠାକୁର ଯେହୁ ପ୍ରଭୁ ଚକ୍ରପାଣି
ଏହାଙ୍କ ପାଦେ ପ୍ରଣମି କରନ୍ତି ସେ ଶୁଣି
ଉଠ ଉଠ ତାତ ବେଗେ ଛାଡ଼ ମନୁ ଭ୍ରାନ୍ତି
ମହତ ଦର୍ଶନେ ସିନା ପାଇ ପଦବୃତ୍ତି ।
ଆହେ ଜଗନ୍ନାଥ ଜଗଜ୍ଜନ ରକ୍ଷାକାରୀ
ବଡ଼ ଦେଉଳରେ ବସି ଶୁଣୁଛ ଗୁହାରି ।
ଦରିଦ୍ର ସୁଦାମାଠାରେ ଦୟା ପ୍ରକାଶିଲ
ଅଚଳାଚଳ ସମ୍ପଦ ତାକୁ ସମର୍ପିଲ ।
ଭକତଜନଙ୍କଠାରେ ସଦା ଦୟାକର
ଭକତ ନିମନ୍ତେ ଦୁଃଖ ପାଇଛ ଅପାର ।
ଏମନ୍ତ ଦୟାଳୁ ନାଥ ମୋର ଥାଉଁ ଥାଉଁ
ଶାରଳା ଦାସର କିସ ପ୍ରୟୋଜନ ଆଉ ।

—●—

## ବିରାଟ ଯୁଧିଷ୍ଠିରଙ୍କର ନିକଟରେ ଆନନୟ ଯୁଧିଷ୍ଠିରଙ୍କ ପୁନର୍ବାର ଅଭିଷେକ ଓ ଉତ୍ତରା କୁମାରୀର ବିବାହ ନିର୍ବନ୍ଧ

ଅଗସ୍ତି କହୁଅଛନ୍ତି ଆହେ ମନୁରାଣ
ଏଥୁଅନ୍ତେ ଯାହାହେଲା ସେହିକଥା ଶୁଣ ।
ମକର ଶୁକ୍ଳପଞ୍ଚମୀ ପୁଣି ଚନ୍ଦ୍ରବାର
ଅଶ୍ୱିନୀ ନାମେ ନକ୍ଷତ୍ର ଭୋଗ ସେଦିନର ।
ଅଶ୍ୱିନୀ ନକ୍ଷତ୍ରକୁ ଅମୃତ ଯୋଗ ଅଟେ
ଉତ୍ତରାଷାଢ଼ା ନକ୍ଷତ୍ର ବିରାଟ ଯେ ଖଟେ ।
ଅଶ୍ୱିନୀ ଉତ୍ତରାଷାଢ଼ା ବନ୍ଧୁ ଉଭୟରେ ।
ଆଉ ମୀନ ଲଗ୍ନେ ବେଳ ନଦଣ୍ଡ ମଧ୍ୟରେ ।
ସୋମଦଣ୍ଡ ଚାରି ଶନିଶ୍ଚର ଦଣ୍ଡଚାରି
ବୃହସ୍ପତିର ବେଳାରେ ଉଠେ ଦଣ୍ଡଧାରୀ ।

ଉତ୍ତର ବଚନେ ହୁଡ଼ି ମନୁ ଭ୍ରାନ୍ତିମାନ
ମାରୁ ଅବା ତାରୁ ଯାଇ କରିବି ଦର୍ଶନ ।
ବୋଲିବେ ପାଣ୍ଡବେ ବଞ୍ଚି ବିରାଟ ଭବନ
ପୁଣି ବୃକୋଦର ତାଙ୍କ ବଧିଲେ ଜୀବନ ।
ଇହଲୋକେ ଜନ୍ମି ନର ନିଶ୍ଚୟ ମରିବ
ତାଙ୍କ ହସ୍ତେ ମଲେ ମୋର ସ୍ୱର୍ଗଗତି ହେବ
ଏପରି ସୁଲଭ କିମ୍ପା ଦେବ ପରିହରି
ଏହା ବିଚାରି ଗଳାରେ ବାନ୍ଧିଲା କଟାରୀ ।
ଦନ୍ତରେ ତିରଣ ମୁଖେ ଦଶନଖ ଭରେ
ସୁଦେଷ୍ଣା ରାଣୀ ସହିତ ଉତ୍ତର କୁମରେ ।
ତ୍ରାହି ତ୍ରାହି କର ବୋଲି ଡାକେ ମତ୍ସ୍ୟାଧିପ
ଦ୍ୱାରେ ଯାଇଣ ଦେଖିଲା ଭୀମର ପ୍ରକୋପ ।
ମହାଭୟ ଉପୁଜିଲା ସେ ରୂପକୁ ଦେଖି
କାଳଚକ୍ର ପ୍ରାୟେକ ଯେ ବୁଲେ ତାର ଆଖି ।
ବିରାଟ ବୋଲେ ଉତ୍ତର ରଖ ମୋ ଜୀବନ
ନିଶ୍ଚୟ ଏହିକ୍ଷଣି ମୁଁ ବିସର୍ଜିବି ପ୍ରାଣ ।
ଶରାଧ ସୁଦେଷ୍ଣା ରାଣୀ କୁମାର ବିରାଟି
ଭୀମସେନଙ୍କ ଛାମୁରେ ବେଗେ ଯାଇ ଲୋଟି ।
ବିରାଟ ଯାଇଣ ପାଦେ କରେ ନିଉଛାଳି
ଝାଳରେ କର୍ଦ୍ଦମ ହେଲା ଲାଗି ଭୂମିଧୂଳି ।
କିଛିଦୂରେ ତିନିଜଣ ଭୂମିରେ ପ୍ରଣମି
ବୋଲନ୍ତି ଦାସର ଦୋଷ କ୍ଷମାକର ସ୍ୱାମୀ ।
ମୁହିଁ ଅଜ୍ଞାନ ପୁରୁଷ ଅଟେ ବଡ଼ ଦୋଷୀ
କୌନ୍ତଙ୍କର ସମୀପରେ ଆସ୍ଥାନରେ ବସି ।
ତୁମ୍ଭେ ଉଭାଳିଆ ସ୍ୱାମୀ ଆସ୍ଥାନରେ ତଳେ
ପୂର୍ବ ଦୋଷ ନଧରିବା ମୋର ଏତେବେଳେ ।
ଅଥବା ସମୁଦ୍ର ଯେବେ ଲଘିଂବାକ ମହୀ
ପୃଥ୍ୱୀମାତ୍ର ତାହା କେବେ ପାରିବକି ସହି ।
ସ୍ୱାମୀ ଇନ୍ଦ୍ରବୃଷ୍ଟି ଯେବେ କରିବେ ପର୍ବତେ
ସଚରାଚର ପୃଥ୍ୱୀ ଏ ବର୍ତ୍ତିବ କେମନ୍ତେ ।
ଏହାଶୁଣି ବୃକୋଦର ହରଷିତ ମୂର୍ତ୍ତି
ଦେଖି ବିରାଟ ଛାଡ଼ିଲା ତେଜି ମନୁ ଭ୍ରାନ୍ତି ।
ଭୀମସେନ ବୋଲେ ରାଜା କ୍ଷଣେ ଥାଅ ରହି
ଆଜ୍ଞା ହୋଇଲେ ଦ୍ୱାର ହୋ ଛାଡ଼ଦେବି ମୁହିଁ ।
ଅର୍ଜ୍ଜୁନ ଚାହିଁଲେ ସଭାତଳରେ ଯେ ଥାଇ
ଦେଖିଲେ ବିରାଟ ନୃପ ଦ୍ୱାରେଛନ୍ତି ରହି ।
ଅର୍ଜ୍ଜୁନ ବୋଇଲେ ଦେବ ରାଜାଅଛି ଦ୍ୱାରେ
ଭୀମ ତାକୁ ପଶିବାକୁ ନଦିଏ ଭିତରେ ।
ଯୁଧିଷ୍ଠି କହିଲେ ଯାଇ କହ ତୁ ଭୀମକୁ
ଭିତରକୁ ଛାଡ଼ିଦେଉ ରାଜ ବିରାଟକୁ ।
ଆଜ୍ଞା ପରମାଣେ ଗଲା ବୀର ଫାଲଗୁନି
ବିରାଟକୁ ସଙ୍ଗେ ଘେନି ଆସିଲା ସେକ୍ଷଣି ।
ଶ୍ରୀମୁଖ ଗୋଟିକୁ ଦେଖି ମତ୍ସ୍ୟ ମହୀପାଳେ
ପ୍ରଣିପାତ କଲା ଯାଇ ଧର୍ମ ପାଦତଳେ ।
ଧନ୍ୟ ସ୍ୱାମୀ ମୋ ଜୀବନ ପୂର୍ବ ତପବଳେ
ନିରଞ୍ଜନ ସ୍ୱାମୀକୁ ମୁଁ ଦେଖିଲଇଁ ଡ଼ୋଳେ ।
ମୋହର ରାଜ୍ୟେ ଅଛନ୍ତି ଯେତେ ପ୍ରଜାଜନ
ସାଧୁ ସାଧୁ ଧନ୍ୟ ଅଟେ ତାଙ୍କର ଜୀବନ ।
ଆପଣଙ୍କ ପାଶେ ଦୋଷ କରିଛି ମୁଁ ମନ୍ଦ
ଚିହ୍ନି ନ ପାରିଣ ମୁହିଁ ଚିନ୍ତିଲି ପ୍ରମାଦ ।
ଏହିପରି ବାକ୍ୟ ଶୁଣି ଧର୍ମଙ୍କ ନନ୍ଦନ
ବୋଇଲେ ହେ ରାଜା ଚିନ୍ତା ନକର ତୁ ମନ ।
ଅଛନ୍ତି ବହୁତ ରାଜା ଏ ମହୀ ମଣ୍ଡଳି
କେହିସହି ନ ପାରିଲେ ଆମ୍ଭର ଆର୍ଦ୍ଦୋଳି ।
ତୋରଠାରେ ଦୋଷ ଆମ୍ଭେ କରିଛୁଯୁକତେ
ତୋର ଶତ ଶଳା ନାଶ କଲୁ ଅନିମିତ୍ତେ ।
କୀଚକ ବଧ ଶୁଣିଣ ଚଳିଲେ ବଇରୀ
ଦଣ୍ଡ ଘେନିଣ ତ୍ରିଗର୍ତ୍ତ ତୋତେ ନେଲା ଧରି ।
ଏଣେ କଳିଙ୍ଗଦେଶ ରାଜା ନାମ ବୀରବାହୁ
ସଇନି ଘେନିଣ ଯୁଦ୍ଧ କଲା ଆସି ସେହୁ ।
ଭୀମସେନ ବୋଲି ମୋର ଯେଉଁ ଭାଇଗୋଟି
ବେଳେ ଅନ୍ନ ଭୁଞ୍ଜାଇ ସେ ଷାଠିଏ ପଉଟି ।
ସେହି କୋପକଲେ କେମ୍ପେ ଏହି ମହୀସ୍ଥଳୀ ।
ତୁହି ରାଜା ସହିଅଛୁ ତାହାର ଆର୍ଦ୍ଦୋଳି ।
କହିବାକୁ ଶକ୍ତି ନାହିଁ ତୋହର ମହିମା
ପ୍ରତ୍ୟକ୍ଷେ ଅଟୁ ତୁ ମୋର ପଣ୍ଡୁ ମହାତମା ।
କଲା ଉପକାରକୁ ଯେ ନ ଘେନଇ ଜନ
ସେ ପ୍ରତ୍ୟକ୍ଷେ ନର୍କେ ଯାଇ ହୁଅଇ ଯେ ଲୀନ ।
ହେ ବିରାଟଯେତେବେଳେ ଥିବି ପୃଥିବୀରେ
ତୋହର ଗୁଣକୁ ଘୋଷୁଥିବି ମୁଁ ମୁହଁରେ ।
ତୋହର ଅନ୍ନଖାଇ ମୁଁ ମହୀତଳେ ବର୍ତ୍ତି
ତୁହି ମୋତେ ସମ୍ଭାଳିଲୁ ବିରାଟ ନୃପତି ।
ତୋହର ଅନ୍ନଖାଇ ମୁଁ ହୋଇଲି ନିଷ୍କଳ
ତୋ ଅନ୍ନଖାଇ ନାଶିଲୁ କୀଚକ ଯେ ମଲ୍ଲ ।
ହେ ବିରାଟ କଂସ କେଶୀ ମୁଷ୍ଟିକ ଯାମଳ
ପ୍ରଳମ୍ବା ବକା ଅଘାଦି ଯେତେ ମହାବଳ ।

ଜାରା ନାରକା ଆବର ଶିଶୁପାଳ ଶାଲୁ
ଦନ୍ତବକ୍ର ହିଡ଼ିମ୍ବକ ଦୈତ୍ୟ ଯାହାବୋଲୁ ।
ନିବାତ ହିରଣ୍ୟ କାଳ ନେମି ମେରୁଶୂଳ
ଗୋସିଂହ ବାଣା ନିକୁମ୍ଭ କୁମ୍ଭ ମହାମଲ୍ଲ ।
ଲୌହଶୂଳ କାଳକେତୁଏମାନେ ଯା ବୋଲି
ଏହାଙ୍କଠାରୁ କୀଚକ ଅଟେ ବଡ଼ ବଳି ।
ଏମାନଙ୍କ ଭାରା ସହି ନ ପାରି ବସୁଧା
ମୁଖବାଟେ ରକ୍ତ ବହେ ହୁଏ ବଡ଼ ବାଧା ।
ମହାଭାରା ପାଇ ଆକୁଳରେ ବସୁନ୍ଧରୀ
ଦେବ ସଭାତଳେ ଯାଇ କରିଲେ ଗୁହାରି ।
ପୃଥିବୀ ବିକଳ ଦେଖି ସର୍ବ ବୃନ୍ଦାରକେ
କ୍ଷୀର ସମୁଦ୍ରେ କହିଲେ ପ୍ରଭୁଙ୍କ ପ୍ରତ୍ୟକ୍ଷେ ।
ଦେବତାମାନଙ୍କ ଛଳେ ଶ୍ରୀରାମ ଲକ୍ଷ୍ମଣ
ପୁଣି ଦ୍ୱାପରେ ଜନ୍ମିଲେ କାହ୍ନୁ ଶଙ୍କର୍ଷଣ ।
ଭୀମ ଅର୍ଜ୍ଜୁନ ନକୁଳ ମନ୍ତ୍ରୀ ସହଦେବ
ଏହାଙ୍କୁ ସଙ୍ଗେ ଆଣିଲେ ପ୍ରଭୁ ବାସୁଦେବ ।
ଏ ଷଡଜଣ ଜନ୍ମିଲେ ଆସି ମହୀତଳେ
ମହୀଭାରା ନିବାରନ୍ତି ଏହୁ ସର୍ବ କାଳେ ।
ବିରାଟେ ସର୍ବଦା ଗୋପ୍ୟ ଅଟନ୍ତି କୃଶାନୁ
ଦେବଙ୍କୁ ଏ ଅଗୋଚର ତୁ ତାକୁ ନ ଚିହ୍ନୁ ।
ପୂର୍ବେ ତୁହି ଆମ୍ଭ ଅଙ୍ଗୁ ହୋଇଅଛୁ ଜାତ
ଉପର ଜନ୍ମରେ ତୋର ନାମ ଅଟେ ଶ୍ୱେତ ।
ଧର୍ମଙ୍କର ଆଜ୍ଞା ମୋତେ ହୋଇଲା ଆକାଶେ
କୀଚକକୁ ବଧ ଯାଇ ଅଜ୍ଞାତର ବାସେ ।
ତାହାଙ୍କର ଆଜ୍ଞା ମୁହିଁ ନ କଲି ଅବଜ୍ଞା
କୀଚକ ନାଶ କରିଲୁ ଆମ୍ଭର ପ୍ରତିଜ୍ଞା ।
ଆମ୍ଭେ ତୋର ଧର୍ମପିତା ଅଟହେ ବିଚାରେ
ନକୁଳ ବୋଲେ ବିରାଟ ବସ ଆସ୍ଥାନରେ ।
ସ୍ୱାମୀ ମୁଁ ମାନବ ଏହୁ ଦେବତା ଆସ୍ଥାନ
ଏ ଆସ୍ଥାନେ ବସିବାକୁ ମୁହିଁ କି ଭାଜନ ।
ଆସ ଆସ ବୋଲି ଏବେ ନକୁଳ ବୋଇଲେ
ବଡ଼ ଭାରା ହେବ ତୁମ୍ଭେ ଛିଡ଼ା ହୋଇଥିଲେ ।
ଯୁଧିଷ୍ଠି ବୋଇଲେ ମନେ ନଧର ବିକୃତ
ଆମ୍ଭେ ପଞ୍ଚଭ୍ରାତ ତୋରେ ଘେନି ଷଡ଼ଭ୍ରାତ ।
ଏହି ମଣ୍ଡଳେ ହୋଇବୁ ହୋଇ ଅଧିପତି
ସହସ୍ରେ ରାଜା ଉପରେ ହେବୁ ନରପତି ।
ପଶ୍ଚିମ ପ୍ରାନ୍ତେ ହୋଇବୁ ତୁହି ଅଧିକାରୀ
ଆସ ଆସ ବିରାଟତୁ ଘେନମୋର ଶାଢ଼ୀ ।
ଶ୍ରୀକରେ ଶାଢ଼ୀ ଘେନିଣ ଧର୍ମଙ୍କ ତନୟେ
ପଣ୍ଡିତ ହୋଇ ବିରାଟ ଘେନିଲା ମଥାଏ ।
କୋନ୍ତବୋଇଲେ ବିରାଟ ମାଗ ଯେତେଇଚ୍ଛା
ଦେବା ଏହିକ୍ଷଣି ଯାହା ଅଟେ ମନବାଞ୍ଛା ।
ବିରାଟ ବୋଇଲେ ସ୍ୱାମୀଦେବ ଯେବେ ବର
ତେବେ ପ୍ରତ୍ୟୟ ହୋଇବ ମନକୁ ମୋହର ।
ମୋର ଉତ୍ତରା କନ୍ୟାକୁ ବରନ୍ତୁ କିରୀଟି
ଏହାକଲେ ମନୁ ମୋର ଭ୍ରାନ୍ତି ଯିବ ଫିଟି ।
ଧର୍ମ ବୋଇଲେ ପାର୍ଥରେ ସୁଭଦ୍ରା ଭାରିଯା
ତାହାର ସୋଦର ରାମକୃଷ୍ଣ ଦେବ ରାଜା ।
ଉତ୍ତରାବଳୀ ପ୍ରଦାନ କଲେ ଅର୍ଜ୍ଜୁନକୁ
ଅପ୍ରୀତି ହୋଇବ ତୋର ଶ୍ରୀରାମକୃଷ୍ଣଙ୍କୁ ।
ଏ ସମ୍ପଦ ଅରଜିଲୁ ଯେବେ ତୁ ସମ୍ଭାଳି
ତୋତେ ଯେ କୋପକରିବେ ରାମବନମାଳୀ
ଅର୍ଜ୍ଜୁନ ବୋଲେ ବିରାଟ ଏମନ୍ତ ନ କୁହ
ଆବର କଥାଏ ଏଥେ ଅଛଇ ସନ୍ଦେହ ।
ଧର୍ମେ ସେ କନ୍ୟା ଆମ୍ଭର ଅଟେ ଶିଷ୍ୟପୁତ୍ରୀ
ତାହାର ମୋହର କାହିଁ ମିଳିବ ଯୁକତି ।
ଯୁଧିଷ୍ଠି ବୋଇଲେ ଯେବେ କଲୁ ଅପ୍ରତ୍ୟୟ
ବନ୍ଧୁତ୍ୱ ହୋଇଲେ ତୋରହୋଇବ ପ୍ରତ୍ୟୟ
କୁମାରେକ ଅଛଇଁ ଯେ ଅର୍ଜ୍ଜୁନର ସୁନୁ
ରାମକୃଷ୍ଣଙ୍କ ଭଣଜା ନାମ ଅଭିମନ୍ୟୁ ।
ବରକନ୍ୟା ବୟସରେ ହେବେ ଏକାସରି
ଅଭିମନ୍ୟୁକୁ ପ୍ରଦାନ କର ତୋ କୁମାରୀ ।
ବିରାଟ ବୋଇଲେ ମୁଁ ନିସ୍ତରିଲି ନିସ୍ତରିଲି
ଏ ଦୁହିତା ପ୍ରସାଦେ ମୁଁ ମୁକତି ଲଭିଲି ।
ଆନନ୍ଦେ ଆଜ୍ଞାକରିଲେ ଯୁଧିଷ୍ଠିର ଦେବ
ବିଭାର ବିଧି ବିଧାନ କର ହେ ସମ୍ଭବ ।
ବିରାଟ ବୋଲେ ମାଗିବି ମୁହିଁ ଏକ ବର
ଅଭିଷେକ ହୋଇ ରାଜ୍ୟେ ଭ୍ରମିବ ମୋହର
ମତ୍ସ୍ୟ ମଘଦେଶ ଲୋକ ଦେଖି ଅଭିଷେକ ।
କୋଟିଏ ଜନ୍ମର ସେହୁ ହରନ୍ତୁ ପାତକ ।
ଏହା ଶୁଣି ଧର୍ମସୁତ କଲେ ସନମତ
ଅଭିଷେକର ଯୋଗାଡ଼ ହୋଇଲା ତ୍ୱରିତ ।
ଯୁଧିଷ୍ଠିର ଅଭିଷେକ ବାରତାକୁ ଶୁଣି
ମରୁତ ଦେଶର ରାଜା ବିଜେ ଥାଟ ଘେନି ।
ଶତେ ଅଶ୍ୱ ପାଞ୍ଚ ଅଇବ୍ରତ ପଲାଣିରେ
କ୍ଷଣକେ ଆକାଶେ ଗମି ପାରନ୍ତି ବଳରେ ।

ପାଣିଦ୍ରବ୍ୟ ଶତେରଥ ଘେନି ଶିବରାଜା
ଯୁଧିଷ୍ଠିରଙ୍କ ପୟରେ ଦେଇ କଲା ପୂଜା ।
ସାଧୁ ସାଧୁ ପୁଣ୍ୟ ମୋର ବୋଲେ ରାୟଶିବ
ହୃଦମଧ୍ୟେ ଲୟକଲେ ଯୁଧିଷ୍ଠିର ଦେବ ।
ପୁଣ୍ୟ ବଳରେ ମୋହର ହେଲା ପରାପତ
ଅନେକ ସାନନ୍ଦ ରାୟେ ହେଲା କୃତ୍ୟ କୃତ୍ୟ
ଶିବରାଜା ଶ୍ୱେତ ରାଜେ ଧର୍ମ କଲେ ବିଜେ
କରିଲେ ଭ୍ରମଣ ଯାଇ ମତ୍ସ୍ୟ ମଘରାଜ୍ୟେ ।
ସୁଶୀଳା କାମିନୀଗଣ କରେ ଅର୍ଘ୍ୟ ଘେନି
ଜୟ ଜୟ ଶବଦକୁ କଲେ ସୁରମୁନି ।
ଯୁଧିଷ୍ଠିର ଅଭିଷେକ ହେବାରୁ ବିଦିତ
ବହୁଦେଶରେ ବାରତା ଦେଲେ ଯାଇ ଦୂତ ।
ପାଞ୍ଚାଳ ଦେଶର ରାଜା ଦ୍ରୁପଦ ନୃପତି
ଆଣିଲେ ପଦ୍ମେକ ହସ୍ତୀ ପୁଣି ପଦ୍ମେ ରଥ ।
ଚାରିପଦ୍ମ ଯୋଦ୍ଧାରେ ଯେ ସେହୁ ଅଧିପତି
ନବକ୍ଷୌଣୀ ବଳ ଘେନି ପଞ୍ଚାଳ ନୃପତି ।
ସଙ୍ଗରେ ଘେନିଲେ ପୁଣି ପାଞ୍ଚ କୁମରଙ୍କୁ
ଆନନ୍ଦେ ବାହାର ହେଲେ କନ୍ୟାଦେଖିବାକୁ ।
ବଡ଼ ସମ୍ଭର୍ବେ ସଙ୍ଗରେ ଘେନି ରତ୍ନ କୋଷ
ଦଣ୍ଡଘେନି ପ୍ରବେଶିଲେ ମତ୍ସ୍ୟ ମଘଦେଶ ।
ନଗରେ ପ୍ରବେଶ ଆସି ହୁନ୍ତି ଦଣ୍ଡଧାରୀ
ଆସ୍ଥାନେ ବାର୍ତ୍ତା ଜଣାଇ ଚାର ଆସିକରି ।
ସ୍ୱାମୀ ପାଞ୍ଚାଳ ଦେଶର ନୃପତି ଯୁକତେ
ଧୃଷ୍ଟଦ୍ୟୁମ୍ନ ପାଞ୍ଚାଳାଦି କୁମର ସହିତେ ।
ଆସିଲେ ଜଣାଇ ଦେଖା କରାଇଲେ ଛାମୁ
ଦୂରହୁଁ ପଞ୍ଚକୁମରେ ଆସିଣ ପ୍ରଣମୁଁ ।
ହସ୍ତୀ ଉପରେ ବିଜୟ ଧର୍ମଙ୍କର ସୁତେ
କୋଳେ ଧରିଛନ୍ତି ପୁଣି ଦ୍ରୁପଦ ଦୁହିତେ ।
ପାଞ୍ଚାଳ କୁମରମାନେ ତାକୁ ଦେଖିକୋଳେ
ଆନନ୍ଦରେ ଅଶ୍ରୁଜଳ ବୁହାଇଲେ ଡୋଳେ ।
ଗଜେ ଆରୋହଣ କରି ଅର୍ଘ୍ୟଥାଳି ଘେନି
ଡାହାଣ ପାଖେ ଚଳନ୍ତି ବୀର ଯେ ପାବନି
କିରୀଟି ମୁକୁଟ ମାଥେ ହାତେ ଧରି ଧନୁ
ବାମପାଶେ ରହିଛନ୍ତି ବାସବର ସୁନୁ ।
ଗଜ ଏକ ଆରୋହିଣ କୁମର ନକୁଳ
ପଛୁଆଣି ଥାଟେ ଜଗିଛନ୍ତି ସୈନ୍ୟବଳ ।
ହସ୍ତୀଚଢ଼ି ଧନୁ ଧରି କନ୍ଧରେ ଭାରତୀ
ଭୂତ ଭବିଷ୍ୟତ କହେ ସହଦେବ ମନ୍ତ୍ରୀ ।
ବିରାଟ କୁମର ଶ୍ୱେତ ନାମେ ଯେ ନନ୍ଦନ
ପାଞ୍ଚଲକ୍ଷ ବଳ ବଳେ ଧର୍ମ ସନ୍ନିଧାନ ।
ଗଜ ଏକ ଆରୋହିଣ ବିରାଟ ଭୂପାଳ
ଚାମର କରେ ଢ଼ାଳନ୍ତି ଅଭ୍ୟନ୍ତରେ ମେଳ ।
ପାଚକେଶ୍ୱର ମନ୍ତ୍ରୀ ଯେ ପୁଣି ପୁରୋହିତେ
ଚାମରେ ଚାମରେ ସେହୁ ଧରିଛନ୍ତି ହାତେ ।
ଦୃପଦର ନନ୍ଦନ ସେ କୁମାର ଶିଖଣ୍ଡି
ଲକ୍ଷେଯୋଦ୍ଧା ଘେନିସେହୁ ଆଗରେ ପହଣ୍ଡି ।
ଶ୍ୱେତହସ୍ତୀ ଆରୋହଣ ପଞ୍ଚାଳ ଈଶ୍ୱର
କନକର ଦଣ୍ଡ ଏକ ଧରିଛନ୍ତି କର ।
ମରୁତ ଦେଶର ରାଜା ଶିବ ନରପତି
ଗଜ ଆରୋହିଣ କରେ ଧରିଛନ୍ତି ଛତ୍ରୀ ।
ଯୁଧିଷ୍ଠି ଦେବଙ୍କ ଅଭିଷେକର ସମୟେ
ଭେଟିଲା କୀଚକ ପିତା ସଙ୍କୋଚନ ରାୟେ ।
ଦନ୍ତରେ ତିରଣ ଦଶ ନଖ ଭରି ମୁଖେ
ଅଶ୍ରୁଜଳ ନୟନରୁ ବହେ ମହାଦୁଃଖେ ।
ବିରାଟକୁ ସଙ୍ଗେ ଘେନି ଭୂମିରେ ପ୍ରଣମି
ବୋଲଇ ମୋର ପ୍ରାର୍ଥନା ଘେନ ଦେବସ୍ୱାମୀ ।
ବିରାଟ ବୋଲଇ ଦେବ ଘେନ ନିବେଦନ
କୀଚକର ପିତା ଯାର ନାମ ସଙ୍କୋଚନ ।
ଦେଖି ସାନନ୍ଦ ହୋଇଲେ ଧର୍ମ ଅଧିକାରୀ
ଶ୍ରୀଭୁଜେ ସଙ୍କୋଚନକୁ ଦେଲେ ଶାଢ଼ୀଧରି ।
ବୋଇଲେଆଜ୍ଞାମୋତେଯେଦେଲେଦେବରାଏ
ପୃଥିବୀର ଭାର ହେଲେ ତୋହର ତନୟେ ।
ତାଙ୍କୁ ବଧକଲୁ ଭାରା ହରଣ ନିମନ୍ତେ
ଆଉ ଦେଇ ନପାରିବୁ ତୋତେ କଦାଚିତେ
ସଙ୍କୋଚନ ବୋଲେ ସ୍ୱାମୀ ଦୁଷ୍ଟ ନିସୁଦନ
ଅସଜ୍ଜନ ନାଶି କରେ ସଜ୍ଜନକୁ ପାଳନ ।
ଭୀମ ହସ୍ତରେ କୀଚକ ଯେଣୁ ନାଶଗଲା
ପୂର୍ବଜନ୍ମେ ଅଶ୍ୱମେଧ ଯାଗ କରିଥିଲା ।
ଅନେକ ରତନମାନ ସଙ୍କୋଚନ ଦେଇ
ପୁଣି ବହୁତ ପ୍ରଶଂସା କଲା ତାଙ୍କୁ ଚାହିଁ ।
ଏହି ପରକାରେ ମଘ ମତ୍ସ୍ୟଦେଶେ ଭୂମି
ଦେଖି ଉସତ ହୋଇଲେ ଅପରାଧି ସ୍ୱାମୀ ।
ମଘଦେଶେ ମତ୍ସ୍ୟଦେଶେ ହୋଇଲା ଉତ୍ସବ
ରାଜାଙ୍କ ମଣୋହି ବିଧି କରେ ମତ୍ସ୍ୟଦେବ ।

ସମରାଜ୍ୟ ଲୋକମାନେ ବେଢ଼ିଣ ଦେଖନ୍ତି
ବିଜେକଲେ ଧର୍ମରାଜା ବାହାର ଜଗତୀ ।
ସ୍ନାହାନ ମାଜଣା ଆଦି ସାରି ନିତ୍ୟକର୍ମ
ରାଜାଙ୍କୁ ଘେନି ମଣୋହି ବିଜେ କଲେ ଧର୍ମ
ମଣୋହି ଉତ୍ତାରେ ପୁଣି ଆଗମନ ସାରି
କର୍ପୁର ବିଡ଼ିଆ ଲାଗି ହେଲେ ବେଗକରି ।
ନମସ୍ତେ ନମସ୍ତେ ପ୍ରଭୋ ଦେବ ନାରାୟଣ
ଅଶେଷ କୋଟି ଜୀବଙ୍କ ଅଟୁ ତୁ କାରଣ ।
ବ୍ରହ୍ମାଣ୍ଡ ଅଟଇ ପ୍ରଭୁ ତୋର ଖେଳଘର
କାହାକୁ ରଖୁଛ କାରେ କରୁଛ ସଂହାର ।
କାରେ ରାଜା କାରେ ପ୍ରଜା କରି ରଙ୍ଗାଳୟେ
ସଜାଇ ରଙ୍ଗ କରାଇ ଦିବସ ଥୋକାଏ ।
କାହାକୁ ତୁ ଶାନ୍ତ କାରେ ଦୁର୍ଦ୍ଦନ୍ତ କରାଉ
ଏହି ପରକାରେ ଖେଳ ସଦା ଖେଳୁଥାଉ ।
ତୋହର ଅଶେଷ ମାୟା କେ ପାରିବ କହି
ସଂସାରସାଗରୁ ମୋତେ ବାରେ କର ତ୍ରାହି ।
ଏବେ ତୋ ଅଭୟ ପାଦେ ପଶିଣ ଶରଣ
ଶାରଳା ଦାସ ମାଗଇ ଯେ ମୋକ୍ଷ ନିର୍ବାଣ ।

—●—

## ଅଭିମନ୍ୟୁଙ୍କର ଉତ୍ତରାସହିତ ବିବାହ

କହନ୍ତି ଅଗସ୍ତି ମୁନି ଶୁଣ ମନୁରାଣ
ଅଭିମନ୍ୟୁ ଉତ୍ତାରର ଜନ୍ମ ବିବରଣ ।
ଯୁଧିଷ୍ଠି ଦେବ ବୋଇଲେ ସହଦେବେ ଚାହିଁ
ଦ୍ୱାରକାପୁରକୁ ଏବେ ଯାଅ ବେଗ ହୋଇ ।
ବିଭାର ସନ୍ଦେଶ କହି ଶ୍ରୀରାମକୃଷ୍ଣଙ୍କୁ
ସଙ୍ଗତେ ଘେନି ଆସିବୁ ତୁ ଅଭିମନ୍ୟୁକୁ ।
ସ୍ୱାମୀଙ୍କର ଆଜ୍ଞପାଇ ମନ୍ତ୍ରୀ ଚୂଡ଼ାମଣି
ଚଳେ ଦ୍ୱାରକାକୁ ଘେନିଥାଟ ଯେ ପଳାଣି ।
ସହଦେବ ପ୍ରବେଶନ୍ତେ ଯାଇଣ ଦ୍ୱାରକା
ଶ୍ରୀହରି ଦେଖିଲେ ଆସେ ସହଦେବ ଏକା ।
ବୈନତେୟ ଆରୋହିଣ ଦେବ ନାରାୟଣ
ସହଦେବଙ୍କୁ ଭେଟିଲେ ଦଣ୍ଡା ପର୍ବତେଣ ।
ପାଶେ ମିଳି ସହଦେବ ବୋଇଲେ ପ୍ରଣମି
ମତ୍ସ୍ୟଦେଶକୁ ବିଜୟ କରିବା ହେ ସ୍ୱାମୀ ।
ବିରାଟ ରାଜାର କନ୍ୟା ଉତ୍ତର କୁମାରୀ
ସହିତେ ଅଭିମନ୍ୟୁର ବିଭା ହୋଇ ବରି ।
ସେହି ପର୍ବତେ ଛାଡ଼ିଣ ଦେବ ଅଶ୍ୱଗୋଟି
ମନ୍ତ୍ରୀ ଘେନି ବିଜେକଲେ ବୈନତେୟ ପିଠି ।
କୋଳେ ଘେନି ସହଦେବ ମନ୍ତ୍ରୀ ଚୂଡ଼ାମଣି
ଦ୍ୱାରକା ପୁରେ ପ୍ରବେଶ ହେଲେ ଚକ୍ରପାଣି ।
ସଭାରେ ବିଜୟ କରିଛନ୍ତି ନଳଦେବ
ଆସ୍ଥାନ ତଳେ ପ୍ରଣାମ କଲା ସହଦେବ ।
ସମଦଣ୍ଡ ସାଜପ୍ରଭୁ ମତ୍ସ୍ୟଦେଶ ଯିବା
ବିରାଟ କନ୍ୟାକୁ ଅଭିମନ୍ୟୁ ବିଭାଦେବା ।
ବ୍ରଜଦେବ ମୌନବ୍ରତ ହେଲେ ତାହା ଶୁଣି
ଶୁଣି ବୋଇଲେ ହେ ତୁମ୍ଭେ ଶୁଣ ଚକ୍ରପାଣି ।
ବିବାହ ବିଧାନ ସବୁ ଆୟୋଜନ କରି
ସୁଭଦ୍ରା ଅଭିମନ୍ୟୁଙ୍କୁ ସଙ୍ଗେ ଯାଅ ଧରି ।
କୃଷ୍ଣଙ୍କୁ କହିଲେ ଯହୁଁ ଏହା ବଳଦେବ
ପାଦତଳେ ବାରବାର ନମେ ସହଦେବ ।
ସମଦଣ୍ଡ ସାଜ ସ୍ୱାମୀ ମତ୍ସ୍ୟଦେଶେ ଯିବା
ଗୋବିନ୍ଦ ବୋଇଲେ ତୁମ୍ଭେ ବିଜୟ କରିବା ।
ସହଦେବ ବଳରାମ ପାଦରେ ପ୍ରଣମି
ତୁମ୍ଭେ ନ ଗଲେ କ ବିଭାହେବ ଦେବସ୍ୱାମୀ ।
ମଉଭୋଳ ପୁରୁଷ ଯେ ଅଟ ମହାଯୋଗୀ
କ୍ଷଣକେ ଦୟାସାଗର କ୍ଷଣେ ମହାରାଗୀ ।
କୃଷ୍ଣଙ୍କ ବଚନେ ପୂର୍ବଦୋଷ କଲେତେଜ୍ୟା
ଦଣ୍ଡ ସାଜ ବୋଲି ଆଜ୍ଞା ଦେଲେ ଦେବରାଜା
ଯଦୁବଂଶ ଘେନି ଉଗ୍ରସେନ ନରପତି
ସାଜିଲା ସେ ସମଦଣ୍ଡ ଚୌଦକୋଟି ରଥୀ ।
ଭୋଜ ବଂଶରେ ନୃପତି ସମର୍ଥକ ଜିତ
ସାଜିଲା ସେ ସମଦଣ୍ଡ ତିନିଖର୍ବ ରଥ ।
ସୁରସେନ ନରପତି ବିଷ୍ଣୁବଂଶେ ରାଜା
ପାଞ୍ଚଖର୍ବ ରଥ୍ ଯୋଦ୍ଧା ଆଣିଲାକ ସଜ୍ଜା ।
କୁବଳୟବଂଶୀ ରାଜା ଅଟେ ବଡ଼ ଦୁଷ୍ଟ
ପାଞ୍ଚଲକ୍ଷ ରଥ୍ ଘେନି ସାଜିଲା ତା ଥାଟ ।
ଅନ୍ଧକବଂଶ ଗୋପାଳସେନ ମହାରାଜା
ପାଞ୍ଚଖର୍ବ ରଥ୍ ପୁଣି ସେହୁ କଲା ସଜ୍ଜା ।
ହଇହୟ ବଂଶ ରାଜା ଅଟଇ ଉଦ୍ଧବ
ପଦ୍ମେଯୋଦ୍ଧାଘେନିଲେ ସେ ବଢ଼ାଇ ସମ୍ଭର୍ବ ।
ଚୂହାଣ ବଂଶର ରାଜା ନାମ ଉପନନ୍ଦ
ସାଗରେ ରଥୀ ମୁକୁଟବନ୍ଧା ତିନି ବୃନ୍ଦ ।

ଏ ବିଧିରେ ରାଜାମାନେ ନିଜ ରଥ ମଣ୍ଡି
କରେ ଧରି ଛେଲ ଚକ୍ର କୃପାଣ ଭୁଷଣ୍ଡି ।
ଅଷ୍ଟରତ୍ନରେ ମଣ୍ଡିଲେ ସବୁଙ୍କର ରଥ
ଉଦେଗିରି ପ୍ରଦକ୍ଷିଣ ଯେହ୍ନେ ଛାୟାକାନ୍ତ ।
ନନ୍ଦିଘୋଷ ରଥ ଆଣି ମଣ୍ଡିଲେ ଦାରୁକ
ଉପରରେ ଶୋଭାବନ କଣୟ ଅନେକ ।
ତାଳଧ୍ୱଜ ରଥ ଆଣି ମଣ୍ଡିଲେ ସାତ୍ୟକି
ବଳରାମଦେବ ବିଜେ କରିଲେ ତହିଁକି ।
ବତିଶ ସହସ୍ର କନ୍ୟା ଅଷ୍ଟ ପାଟବଂଶୀ
ଏହାକୁ ଘେନି ବିଜୟ କଲେ କେଶୀ ଧ୍ୱଂସି ।
ଲକ୍ଷେ ଷାଠିଏ ସହସ୍ର ଅଶୀଏ ନନ୍ଦନ
ଏମାନେ ବିଜୟ କଲେ ଯେ ଯାହା ସ୍ୟନ୍ଦନ ।
ଅଭିମନ୍ୟୁ ପୁତ୍ର ଘେନି ବିଜୟେ ସୁଭଦ୍ରେ
ଏହିପରି ବିଜେକଲେ ଶ୍ରୀରାମ ଗୋବିନ୍ଦେ ।
ଯେ ଯାହା ବାହନ ଚଢ଼ି ଅସ୍ତ୍ର ଧରି କରେ
ଅନେକ ରତ୍ନାଳଙ୍କାର ଭରିଣ ଶରୀରେ ।
ଦକ୍ଷିଣରେ ସଉନନ୍ଦ ବାମରେ ଲଙ୍ଗଳ
କାଦମ୍ବରୀ ପାନେ ଯେଉଁ ସ୍ୱାମୀ ମତ୍ତଭୋଳ ।
କୋଟି କୋଟି ସଂଖ୍ୟା ସିଂହ ଯାର ପରାକ୍ରମ
ଆରୋହିଲେ ତାଳଧ୍ୱଜ ରଥ ବଳରାମ ।
ଦ୍ୱାରକାକୁ ରକ୍ଷାକଲେ ପରାଶର ଯତି
ସମଦଣ୍ଡ ଘେନି ପ୍ରଭୁ ବିଜୟ କରନ୍ତି ।
ବହୁତ ସମ୍ପଦ ଘେନି ଦେବ ହୃଷୀକେଶ
ମତ୍ସ୍ୟ ଦେଶରେ ଯାଇଣ ହୋଇଲେ ପ୍ରବେଶ ।
ବାରତା ପାଇଲେ ଯହୁଁ ରାଜନ ଯୁଧିଷ୍ଠି
ସମଦଣ୍ଡ ଘେନି ବେଗେ ଚଳିଲେ ପାଛୋଟି ।
ମଘ ମତ୍ସ୍ୟ ଯେ ମରୁତ ଦେଶର ସଇନି
ବିରାଟ ବିଜୟ କଲା ଏତେ ସୈନ୍ୟ ଘେନି ।
ଯୁଧିଷ୍ଠି ପାଦେ କେଶବ ହୋଇଲେ ପ୍ରଣମି
ଅନୁଗ୍ରହ କର ନାଥ ପ୍ରସନ୍ନ ହେ ସ୍ୱାମୀ ।
ସମଦଣ୍ଡଙ୍କୁ ଘେନିଣ ନୃପତି ପାଞ୍ଚାଳେ
ବିରାଟ ସଙ୍ଗେ ପ୍ରଣତିକଲେ କାମପାଳେ ।
ସ୍ୱାମୀ ଲଭିଲେ ପରମ ଗତି ଧର୍ମଫଳେ
ପୁଣ ପୁଣ ପ୍ରଣମଇ କୃଷ୍ଣ ପାଦତଳେ ।
କୃଷ୍ଣ ବୋଇଲେ ବିରାଟ ପୂର୍ବ ଜନ୍ମେ ତୁହି
ତପସ୍ୟା କରିଣଥିଲୁ ବହୁ କଷ୍ଟ ସହି ।
ସେହି ପୁଣ୍ୟେ ଯୁଧିଷ୍ଠିର ଠାକୁର ତୋ ପୁରେ
ବିଶ୍ରାମ କରିଲେ ଆସି ଅତି ଆଦରରେ ।
ବିଜୟ କଲେ ଆସ୍ଥାନେ ଧର୍ମ ନରପତି
ବଳରାମ ଯୁଧିଷ୍ଠିର ପାଶେ ବସିଛନ୍ତି ।
ବଳରାମ ଯୁଧିଷ୍ଠିର ଆଗେ ବିଜେ ହରି
ମସ୍ତକେ ହସ୍ତ ଦେଇଣଛନ୍ତି ଅପସରି ।
ବିରାଟ ଦ୍ରୁପଦ ଉଭା ଆସ୍ଥାନର ତଳେ
ବିରାଟ ଜଣାଏ ପଡ଼ି ରାମ ପାଦତଳେ ।
ସ୍ୱାମୀ ସେବା କରିବାକୁ ନୁହେଁ ମୁଁ ଭାଜନ
ଉତ୍ତରା ଅଭିମନ୍ୟୁଙ୍କୁ କରିବି ପ୍ରଦାନ ।
ଗୋବିନ୍ଦବୋଇଲେ ଏହା ଅଟେତୋରଭାଗ
ତାହାର ଆମ୍ଭର ପୂର୍ବୁଅଛି ଏହିଯୋଗ ।
କର ତୁ ଉତ୍ସବ ଏବେ ବିଭାର ବିଧାନେ
ଚଳଇ ବିରାଟ ତହୁଁ ଅତି ତୋଷମନେ ।
ଛାୟା ମଣ୍ଡପ ନିର୍ମାଣ କଲା ନୃପମଣି
ପାଞ୍ଚକୋଶ ଆୟତନ ସଭାକୁ ନିର୍ମାଣି ।
ସୁବର୍ଣ୍ଣର ସ୍ତମ୍ଭ ହୀରା ପତ୍ରରେ ଛାଉଣି
ଦରପଣ ପନ୍ତି ପନ୍ତି ମୁକ୍ତା ରତ୍ନମଣି ।
ପାଞ୍ଚ ଅଯୁତର ଲମ୍ବ ରଚନା କରନ୍ତି
ଶତ ଶତ ହୀରା ଚଉପାଶରେ ଖଞ୍ଜନ୍ତି ।
ମାଣିକ୍ୟ ରତ୍ନର ଶ୍ରେଣୀ ମର୍କତର କାଣ୍ଡ
କନକ ପତ୍ର ଛାଉଣି ଜିଣେ ମାରତଣ୍ଡ ।
କନକର ରୂପ ପଟ ନୀଳରତ୍ନେ ଶୋଭା
ଜଳଧର ମଧ୍ୟେ ଯେହ୍ନେ ବିଜୁଳିର ପ୍ରଭା ।
ମର୍କତ ପଦ୍ମକେଶର ପୁଣି ବଇଡୁର୍ଯ୍ୟ
ପାଖୁଡ଼ା ନୀଳ ମୁକୁତା ବେଢ଼ରେ ବିରାଜ ।
ପାଣିପାଟିଆ କୁଞ୍ଜର ଦନ୍ତେ ନିର୍ମାଣିଛି
ତହିଁ ଉପରେ ରସାଣପତ୍ର ଜଡ଼ିଅଛି ।
ଅନେକ ଭଣ୍ଡାରମାନ ବିଧ୍ୱଂସି ବିରାଟ
ବିପୁଳ ଭୁବନ ଜିଣି ଶୋଭା ଦିଶେ ଥାଟ ।
ଚାରୁ ସମ୍ଭର୍ବ ମଧରେ ଚନ୍ଦ୍ରାତପ ଗୋଟି
ଏ ବିଧିରେ ନବଲକ୍ଷ ଘର ତହିଁ ସୃଷ୍ଟି ।
ପାଣିପାଟିଆ ରତନେ କଣୟ ପିତୁଳି
ହୀରା ନୀଳା ମାଣିକ୍ୟରେ ଦିଶଇ ସେ ଝଳି ।
ଉପରରେ ସୁବର୍ଣ୍ଣର କଳସ ବସଇ
ସେ କଳସେ ଲକ୍ଷେମାଢ଼ ସୁବର୍ଣ୍ଣ ଲାଗଇ ।

କଳସ ଉପରେ ନେତ ପତାଙ୍ଗ ଗୋଟିଏ
ଦେବ ବିକାଶ ପତନ ତହିଁ ଲମ୍ବିଥାଏ ।
ଏହି ପ୍ରକାରେ ସୁସଜ୍ଜ କରଇ ବିରାଟ
ଅଳକାପୁରକୁ ଜିଣି ଦିଶଇ ମୁରାଟ ।
ତଳେ ସ୍ଫଟିକରେ ପୀଢ଼ା ମୁକୁତାର ଝରା
ଏସନ ସୁସଞ୍ଚେ ସଭା ନିର୍ଭା କଲା ତ୍ୱରା ।
ଦେଖି ପ୍ରଶଂସା କରିଲେ ଦେବ ଚକ୍ରପାଣି
ଧନ୍ୟ ତୁ ବିରାଟ ରାଜା ଅଟୁ ବୀରମଣି ।
ଚତୁର୍ଦ୍ଦିଗେ ଦୂତଗଣ ପେଷି ମତ୍ସ୍ୟପତି
ଉତ୍ତରା ବିବାହ ବୋଲି ଡ଼ଗର କହନ୍ତି ।
ନଇଷଧ ରାଜା ଅଟେ ଭୂମନ୍ୟୁ ନନ୍ଦନ
ଦଣ୍ଡସାଜି ଆସିଣ ସେ ଦେଲା ବହୁଧନ ।
କାଞ୍ଚନଦେଶର ରାଜା ନାମ ଉଦେମାଳି
ବଡ଼ାଇ ସମ୍ଭର୍ବେ ସେହୁ ଅଇଲାକ ଚଳି ।
ବ୍ରହ୍ମାପୁର ରାଜା ନାମ ଅଟଇ କେତନ ।
ଦଣ୍ଡ ଘେନିଆସେ ତୁଲେ ଲକ୍ଷେଭାର ଧନ ।
ଭାନୁପୁର ନଗ୍ରରାଜା ଅଟଇ କେଶରୀ
ସମଦଣ୍ଡ ଆଣେ ପାଣିଦ୍ରବ୍ୟ ରଥ ଚାରି ।
ମଧୁପୁର ରାଜାନାମ ଜୀମୁତ ବାହନ
ଆଣିଥିଲା ସଙ୍ଗେ ଚାରିଲକ୍ଷ ସେ ଗୋଧନ ।
ପାଣିମଣ୍ଡଳର ରାଜା ସେ ପଦ୍ମ କେଶରୀ
ଅନେକ ସମ୍ଭର୍ବେ ଆସେ ସେହି ଦଣ୍ଡଧାରୀ ।
ଦେବପୁର ନଗ୍ର ରାଜା ନାମ ପଦ୍ମବାସ
ବହୁତ ଆଣିଲା ସେହୁ ପାଣିଦ୍ରବ୍ୟ କୋଷ ।
ଚୌଳ ମଣ୍ଡଳିର ରାଜା ନାମ ହରିନାଥ
ସୈନ୍ୟତୁଲେ ଆଣେ ପାଣିଦ୍ରବ୍ୟ ସାତରଥ ।
ବିଜୟ ନଗର ରାଜା ଅଟେ ଋତୁପର୍ଣ୍ଣ
ଚାରିଶତ ଅଶ୍ୱ ସଙ୍ଗେ ଆଣିଲା ବହନ ।
ଉଜ୍ଜୟ ଦେଶର ରାଜା କଉସ୍ତୁଭସେନ
ବଡ଼ ସମ୍ଭର୍ବେ ସସୈନ୍ୟେ ଅଇଲା ରାଜନ ।
ମହୀନ୍ଦ୍ର ମଣ୍ଡଳେ ଧନାଧିପ ବୋଲି ରାଜା
ସହସ୍ରେକ ମତ୍ତହସ୍ତୀ ଘେନି କଲା ପୂଜା ।
ରଣପୁର ନଗରର ବିଖ୍ୟାତ ନୃପତି
ବଡ଼ାଇ ସମ୍ଭର୍ବେ ସେହୁ ଅଇଲା ତଡ଼ତି ।
ଜେନାବଳିପୁରେ ବିଶିକେଶନ ଯେ ରାଜା
ଲକ୍ଷେ ସୁବର୍ଣ୍ଣ ଘେନିଣ ସେହୁ କଲା ପୂଜା ।
ଯୁଧିଷ୍ଠିର ପଚାରିଲେ ଶୁଣ ଯେ ବିରାଟ
ହସ୍ତିନା ଦୂତ ପଠାଅ ଆସୁ ଧୃତରାଷ୍ଟ୍ର ।
ଭୀଷ୍ମ ଦ୍ରୋଣ ଭୂରିଶ୍ରବା ଆବର ବିଦୁର
କର୍ଣ୍ଣ ଶକୁନିର ତୁଲେ ମହା ମହା ବୀର ।
ଦୁର୍ଯ୍ୟୋଧନ ସହିତରେ ତାର ଶତେଭାଇ
ଅଣାଅ ତାହାଙ୍କୁ ବେଗେ ଦୁତଙ୍କୁ ପଠାଇ ।
ଆପଣେ ଯୁଧିଷ୍ଠି ଲେଖା ଲେଖିଲେ ଶ୍ରୀହସ୍ତେ
ଏହା ନେଇ ଦେବୁ ଧୃତରାଷ୍ଟ୍ରଙ୍କ ଅଗ୍ରତେ ।
ବଡ଼ ସମ୍ଭର୍ବେ ଆସନ୍ତୁ ଏଥେ କୁରୁପତି
ଯୋଗେ ବିଭାହେଉଛି ତାହାଙ୍କର ନାତି ।
ଯୁଧିଷ୍ଠିଙ୍କର ପତର ବିରାଟ ଅକ୍ଷତ
ଘେନି ଚଳିଗଲେ ବାମଦେବ ପୁରୋହିତ ।
ସହସ୍ରେକ ଯୋଦ୍ଧାଗଲେ ପୁରୋଧାଙ୍କ ତୁଲେ
ପାଞ୍ଚଦିନରେ ବାରୁଣାବନ୍ତ ଯାଇ ହେଲେ ।
ଗୋଧନର ହରଣରୁ ଗଲେ କୁରୁପତି
ଧୃତରାଷ୍ଟ୍ର ବେନି ଚକ୍ଷୁ ସମସ୍ତଙ୍କ ଶାସ୍ତି ।
ଇନ୍ଦ୍ରପ୍ରସ୍ଥର ବିଜୟ ଗାନ୍ଧାରୀର ସୁତ
ଅକ୍ଷତ ବେନି ପ୍ରବେଶ ହେଲେ ପୁରୋହିତ ।
ମତ୍ସ୍ୟଦେଶୁ ଆଗତ ମୁଁ ବୋଲିଣ ଜାଣଇ
ଆମ୍ଭାନେ ଆଜ୍ଞାହୋଇଲେ ଆଣସି ଘେନାଇ ।
କେଉଁ ଆଜ୍ଞା ବୋଲି ପୁଚ୍ଛାକଲେ କୁରୁ ପତି
ପତ୍ର ଅକ୍ଷୟ ଛାମୁରେ ଦେଲେନେଇ ଧାତି ।
ଧୃତରାଷ୍ଟ୍ରଙ୍କୁ ଯୁଧିଷ୍ଠିଙ୍କର ନମସ୍କାର
ସହସ୍ରେକ ପ୍ରଣିପାତ ଅଟଇ ମୋହର ।
ଉଭୟ କୁଳଶୀଳର ବାରତା ଜଣାଇ
ସର୍ବ କୁଶଳରେ ଅଛୁ ଆମ୍ଭେ ପାଞ୍ଚଭାଇ ।
ଅଭିମନ୍ୟୁର ବିବାହ ଶୁଣି ଶୁଭକଥା
ଶକୁନି କର୍ଣ୍ଣ ଦୁଃଶାର ହେଲା ମନ ବ୍ୟଥା ।
ଶୁଣିକରି ସାନନ୍ଦ ଯେ ହେଲେ ଧୃତରାଷ୍ଟ୍ର
ସଞ୍ଜୟଙ୍କୁ ଆଜ୍ଞା ଦେଲେ ବେଗେସାଜ ଥାଟ
ପାଣ୍ଡବେ ଉଦିତ ପୁଣି ଅଭିମନ୍ୟୁ ବିଭା
ସଜ ହୁଅ ଭୀଷ୍ମ ଦ୍ରୋଣ ବହନରେ ଯିବା ।
ମାନଗୋବିନ୍ଦ ବୋଇଲେ ଯାଅ ତୁମ୍ଭେ ତାତ
ଆମ୍ଭେ ଆସିଅଛୁ ଲଜ୍ଜା ପାଇଣ ବହୁତ ।
ନାସ୍ତି କରିଣ ନୃପେନ୍ଦ୍ର ପଶେ ଅନ୍ତଃପୁରେ
ହୋଇ ନ ପାରନ୍ତି ସଜ ଯୋଦ୍ଧାଏ ଆତୁରେ ।

ଧୃତରାଷ୍ଟ୍ର ଭୂରିଶ୍ରବା ସଞ୍ଜୟ ବିଦୁର
ଏମାନଙ୍କୁ ଘେନି ବେଗେ ହୋଇଲେ ବାହାର ।
କୁଞ୍ଜର ଦଶସହସ୍ର ଦଶସସ୍ର ରଥ୍
ଲକ୍ଷେକ ତୁରଙ୍ଗ ତିନି ସହସ୍ର ପଦାତି ।
ଏତେକ ସୈନ୍ୟ ଘେନିଣ ଅମ୍ବିକାର ସୁତ
ଭୀଷ୍ମ ଦ୍ରୋଣ ଘେନି ରାଜା ଚଳିଲେ ତୁରିତ ।
ଧୃତରାଷ୍ଟ୍ର ବୋଲେ କୁହ ଦୁର୍ଯ୍ୟୋଧନ ଆଗେ
କାର୍ଯ୍ୟକୁ ମାନ କରଇ କିମ୍ପା ଅନୁରାଗେ ।
ଅଜ୍ଞାନ ସମର ଅବା କଲେ ଅପରତେ
ସେହି କଥା ମନେ କରି କିମ୍ପା ପଛଘୁଞ୍ଚେ ।
ସମଦଣ୍ଡ ଘେନିକରି ଯିବାକୁ ଆରମ୍ଭେ
ଅଭିମନ୍ୟୁକୁ ବିବାହ କରାଇବା ସର୍ବେ ।
ଯଦୁବଂଶେ ଜାତ ରାମକୃଷ୍ଣଙ୍କ ଭଣଜା
ସମହଣ୍ଡ ଘେନି ଆସିଛନ୍ତି ଦେବରାଜା ।
ଚାରଗଣ ଜଣାଇଲେ ଦୁର୍ଯ୍ୟୋଧନ ଆଗେ
ନ ଶୁଣିଲା ସେ ଗୋଧନ ହରଣର ଆଗେ ।
ତେଣେ ବିରାଟ ଦେଶକୁ ଗଲେ ନୃପବର
ସାତଦିନେ ପ୍ରବେଶିଲେ ଯାଇ ମତ୍ସ୍ୟପୁର ।
ଚାର ଜଣାଇଲେ ତହୁଁ ଧର୍ମସୁତ ଆଗେ
ସମ୍ପର୍ବରେ ଧୃତରାଷ୍ଟ୍ର ଆସୁଛନ୍ତି ବେଗେ ।
ଆପଣେ ଯୁଧିଷ୍ଠି ଦେବ ଚଳିଲେ ପାଛୋଟି ।
ଭୀଷ୍ମ ଦ୍ରୋଣ ଧୃତରାଷ୍ଟ୍ର ପାଦତଳେ ଲୋଟି
ବିଦୁରଙ୍କୁ ଦେଖି ଧର୍ମ ବହୁ କଲେ ମାନ୍ୟ
ଆବର ଲୋକଙ୍କୁ ଯାଇ କଲେ ଆଲିଙ୍ଗନ ।
ଦେଖିକରି କୃତ୍ୟ କୃତ୍ୟ ହୋଇଲେ ରାଜନ
ବାବୁ ପଣ୍ଡୁ ରାଜା ଧନ୍ୟ ତୋ ଜୀବନ ଧନ୍ୟ ।
ଏତେବୋଲି ମତ୍ସ୍ୟଦେଶେ ହୋଇଲେ ପ୍ରବେଶ
ବସିଲେ ସେ ଧୃତରାଷ୍ଟ୍ର ବଳରାମ ପାଶ ।
ବିରାଟ ଧୃତରାଷ୍ଟ୍ରଙ୍କୁ ଆସି ପ୍ରଣମିଲା
ବୋଲେ ମୋ ଜୀବନ ଆଜି ସଫଳ ହୋଇଲା ।
ବିରାଟ ପୁଚ୍ଛିଲେ କୁଳ କୁଶଳ ଭାରତୀ
ବଳରାମଙ୍କୁ କହନ୍ତି ଅନ୍ଧ ନରପତି ।
ବନେ ପାଣ୍ଡବ ଲଭିଲେ ବହୁତର ଦୁଃଖ
ମୋହରଥାନ୍ତେ ସେମାନେ ହୋଇଲେ ନିରେଖ ।
ପୋତୁ ଏ ଜୀବନ ମୋର ମରଣ ନ ହେଲା
ତାଙ୍କ ଦୁଃଖ ନ ଦେଖିଣ କିମ୍ପାଇଁ ନଗଲା ।

ଭୋ ଧର୍ମ ନିରଞ୍ଜନ ହେ ମୋତେ କର ପାର
ପଣ୍ଡୁ ଅଂଶେ ଜାତ ହେଲେ ଏ ପାଞ୍ଚକୁମର ।
କୌରବ ପ୍ରଶଂସା ତାକୁ କଲେ ଅନୁରାଗେ
ଯୁଧିଷ୍ଠି ବଦନ୍ତି ଭୀଷ୍ମ ଦ୍ରୋଣଙ୍କର ଆଗେ ।
ଅନେକ କୁଶଳ ବାର୍ତ୍ତା ତାହାଙ୍କୁ ପଚାରି
ସକଳ କୁଶଳ ବୋଲି ବୋଲେ ଦଣ୍ଡଧାରୀ ।
ବନସ୍ତରେ ପାଇଥିଲେ ଯେତେ କଷ୍ଟମାନ
ପ୍ରସ୍ତାବ ବାକ୍ୟେ କହିଲେ ଧର୍ମଙ୍କ ନନ୍ଦନ ।
ଅନେକ ସାନନ୍ଦ ହେଲେ ପଣ୍ଡୁର ତନୟ
ଦେଖି କୃତ୍ୟ କୃତ୍ୟ ହେଲେ ପଣ୍ଡୁଙ୍କ ତନୟ ।
ବିନୟ ହୋଇ ପୁଚ୍ଛିଲେ ଧର୍ମଙ୍କ ନନ୍ଦନ
ଭୋପିତା ନିର୍ଦ୍ଦୟ କିମ୍ପାମୋର ଦୁର୍ଯ୍ୟୋଧନ ।
ସେ ମୋର ସୋଦରତାର କଲିକେଉଁଦୋଷ
ପୁତ୍ର ବିଭା ଶୁଣି କିମ୍ପା ନ ହେଲା ହରଷ ।
ଯୁଧିଷ୍ଠିରକୁ କହିଲେ ଶୁଣି ଧୃତରାଷ୍ଟ୍ର
ତୁହି କି ନ ଜାଣୁ ସେହୁ ଅଟେ ବଡ଼ ଦୁଷ୍ଟ ।
ଯୁଧିଷ୍ଠି ବୋଇଲେ ତାର ଦୁଷ୍ଟ ଯେବେ ହେଲେ
ସମୟରେ ନାଶ ଯାନ୍ତି ଦୁର୍ବୁଦ୍ଧି କରିଲେ ।
ମହା ମହା ଦୁଷ୍ଟମାନେ ଥିଲେ ଏହି ଭୂମି
କଂସ କେଶି ପ୍ରଳମ୍ବାଦି ଅମ୍ବା କାଳାନେମି ।
କାଳଯବନ ନାରକା ଜରାସନ୍ଧ ବୀର
ବାଣ ବ୍ରଜ ନାଭି ଦୈତ୍ୟ ପୁତନା ଆବର ।
ଏମାନେ ଦୁଷ୍ଟପଣରେ ନାଶଗଲେ ତାତ
ଦୁଷ୍ଟପଣ କଲେ ପୃଥ୍ୱୀ ନ ସହେ ବହୁତ ।
ଗୋବିନ୍ଦ ବୋଇଲେ ଧର୍ମ ଲଭି ବହୁ ଦୁଃଖ
ଧୃତରାଷ୍ଟ୍ର ଅଗ୍ରତରେ ହୁଅନ୍ତି ବିମୁଖ ।
ମାଇଲି ମୁଁ କେଶି ଆଦି ଉଗ୍ରସେନ ଚାଟ
ଏହିପରି କେତେ ଦୁଷ୍ଟ କରିଲି ମୁଁ ନଷ୍ଟ ।
ଶାନ୍ତିପନି ନାମେ ଋଷି ଅବନ୍ତୀ ନଗରେ
ବହୁତ ବାଳକ ପାଠ ପଢ଼ନ୍ତି ସେଠାରେ ।
ଆମ୍ଭେ ଦୁଇଭାଇ ଗଲୁ ପଢ଼ି ସେ ସ୍ଥାନକୁ
ବହତୁ କରିଲେ ଦୟା ଦେଖିଣ ଆମ୍ଭଙ୍କୁ ।
ପୁତ୍ରରୁ ଅଧିକ କରି ପଢ଼ାଇଲେ ସେହି
ଅନେକ ବିଦ୍ୟା ପଢ଼ିଲୁ ଆମ୍ଭେ ଦୁଇଭାଇ ।
ହେତୁମନ୍ତ ଦେଖିଣ ଯେ ପ୍ରଂଶସିବେ ଗୁରୁ
ହୃଦଗତେ ବିଚାରନ୍ତି ଆମ୍ଭର ପଢ଼ାରୁ ।

ଶ୍ରାବଣ କୃଷ୍ଣ ଚଉଠି ପୁଣି ଗୁରୁବାରେ
ହସ୍ତା ନକ୍ଷତ୍ର ଯେ ପାଞ୍ଚ ଘଡ଼ିର ବେଳରେ ।
ଶାନ୍ତିପନି ନାହାନ୍ତି ଯେ ଆପଣାର ବାସ
ଗୃହେ ତାର ବନ୍ଧୁ ଜଣେ ହୋଇଲେପ୍ରବେଶ
ଶାନ୍ତିପନି ଋଷି ଭାର୍ଯ୍ୟା ନାମେ ଅଟେ ଶ୍ରୀୟା
ସେଦିନ ଆମ୍ଭଙ୍କୁ ରାଇ ବୋଲେ ଗୁରୁପ୍ରିୟା ।
ବାବୁ ଆଜ ଜାଳ ନାହିଁ ବେଗେ ଯାଅ ବନ
ଶୁଖିଲା କାଠ ପୁଡ଼ାଏ ଆଣ ଏହିକ୍ଷଣ ।
ଶୁଣିଣ ବୋଇଲୁ ଆମ୍ଭେ ତାହାଙ୍କ ବଚନେ
କିମ୍ପା ଉପହାସ ହେବ ଜାଳର ବିହୀନେ ।
କୁଠାର ଗୋଟିଏ ଆଣି ଦିଅ ଆଗେ ମାଏ
ଏହିକ୍ଷଣି ଆଣିଦେବୁ ଜାଳେଣି ଗୁଡ଼ିଏ ।
କୁଠାର ଗୋଟିଏ ଆମ୍ଭ ହସ୍ତେ ଆଣିଦେଲେ
ଭଲକରି ଦୁଇଗୋଛା ଆଣିବ ବୋଇଲେ ।
ଗୁରୁପତ୍ନୀଙ୍କ ବଚନ ଆମ୍ଭେ ଶୁଣିକରି
ଭିତର ବଣକୁ ଗଲୁ କାଠ ଅନୁସରି ।
ବେଳ ଦୁଇପ୍ରହରରେ ପ୍ରବେଶିଲୁ ବନେ
ମେଘ ଆସି ବରଷିଲା ଗହନ ଅରଣ୍ୟେ ।
ମୁଷଳ ଧାରା ପ୍ରାୟେକ ବରଷିଲା ନୀର
କ୍ଷଣେ ବିଶ୍ରାମ ନୋହିଲା ସେଦିନ ଯାକର ।
ଆଗରେ ଦେଖିଲୁ ରହିଅଛି ବୃକ୍ଷ ଏକ
ଦୁଇଗୋଟି କ୍ରୋଟ ଅଛି ତାର ଦୁଇପାଖ ।
ଦୁଇଭାଇ ଦୁଇ କ୍ରୋଟେ ଯାଇଁ ପ୍ରବେଶିଲୁ
ଉଭୟେ କାହାକୁ କେହି ଦେଖି ନ ପାରିଲୁ ।
ମହା ବିଶାଳ ବୃକ୍ଷ ଯେ ଘୋର ତାରଶାଖା
ଘୋର ବରଷଣେ ପାଶେ ନ ଦିଶଇ ରେଖା ।
କ୍ରୋଟରେ ଥାଇଣ ରାମ ଡାକିଲେ ଆମ୍ଭଙ୍କୁ
ମୁଁ ମଧ୍ୟ ଉଚ୍ଚ ସ୍ୱରରେ ଡାକିଲି ତାହାଙ୍କୁ ।
ବାରି ବରଷଣ କରି ଗରଜନ୍ତି ମେଘ
ନ ରହଇ ବରଷଇ ଦିବାରାତ୍ର ଭାଗ ।
ଉପବାସେ ଶୀତଭୟେ ସେ କ୍ରୋଟରେ ପଶି
ବରଷୁଁ ବରଷୁ ରାତି ପାହିଲାକ ଆସି ।
ପୁଣି ରଜନୀ ପ୍ରଭାତେ ନ ରହଇ ବୃଷ୍ଟି
ଉଚ୍ଚବୃକ୍ଷ ଉପରକୁ ନ ପାରିଲୁ ଉଠି ।
ଆବର ଶୀତ ଭୋକରେ ଗୋଡ଼ହିଁ ଅଚଳ
କମ୍ପଇ ଶରୀର ଦେଢ଼ ପ୍ରହର ଯେ ବେଳ ।
ଦୁଇଭାଇ ବସି ଭାବୁଥିଲୁ ସେହି ବନେ
ଉପବାସେ ଥିବେ ଘରେ ଜାଳର ବିହୀନେ ।
କିସ ବୋଲି ବୋଲୁଥିବେ ଋଷିଙ୍କ ଭାରିଯା
କାର୍ଯ୍ୟ କରି ନ ପାରିଲୁ ହେଲା ବଡ଼ ଲଜ୍ଜା ।
ଛେଦିଲୁ ବହୁତ ଶାଳ ବୃକ୍ଷରୁ ଗୁଡ଼ିଏ
ଚିରି ଦୁଇଭାଇ ବାନ୍ଧି ଗୋଛାଏ ଗୋଛାଏ ।
ଦିନ ଉପବାସ ଆରଦିନ ଅଧବେଳା
କାଠ ଘେନିଣ ଅଇଲୁ ନ କରିଣ ହେଳା ।
ଦୁଇଗୋଛା କାଠ ଗୃହେ ପକାଇଲୁ ଆଣି
ଆମ୍ଭଙ୍କୁ ଧରିଣ ଶୋକ କଲେ ମହାମାଣୀ ।
ସେହି କାନ୍ଦନ୍ତେ ପାଇଲୁ ଆମ୍ଭେ ବହୁ ଲଜ୍ଜା ।
ବହୁତ କରି ବୋଲନ୍ତେଶୋକକଲେ ତେଜ୍ୟା
ଶ୍ରୀ ବାସୁଦେବ କହିଲେ କଥାର ପ୍ରସ୍ତାବେ ।
ଧୃତରାଷ୍ଟ୍ରଙ୍କ କଥାରେ ବୋଇଲେ ଏ ଭାବେ
ଭୀଷ୍ମ ଦ୍ରୋଣ ହାହାକାର କଲେ ତାହା ଶୁଣି
ଦୁଃଖ ସୁଖ ଏକ କାଳ ହେ ମହତ୍ତ୍ୱ ପ୍ରାଣୀ ।
ଦେହ ବହିଥିଲେ ହୁଏ ବହୁ କଥା ଜାତ
ଯେହୁ ଏହା ବିଚାରନ୍ତି ସେ ମହାପଣ୍ଡିତ ।
ଏଥୁ ଅନନ୍ତରେ ନରେ ଶୁଣ ଦିବ୍ୟରୀତି
ବିହିର ବିଧି ବିଧାନେ ଯେବଣ ଯୁକତି ।
ଯେପରି ସୁସଞ୍ଚ ସଭା ଥିଲେ ସେ ନିର୍ମାଣି
ଦେଖି ପୁଚ୍ଛାକଲେ ତାଙ୍କୁ ଦେବ ଚକ୍ରପାଣି
ଲକ୍ଷେକ ସମାବେଦୀୟ ବ୍ରାହ୍ମଣ ସମସ୍ତେ
ଅମୃତର ରସପାନ କରନ୍ତି ନିରତେ ।
ଅନେକ ଅନ୍ନ ପାଇଣ ହେଲେ ସର୍ବେ ସୁଖୀ
ଦେବତା ଭୋଳ ହୁଅନ୍ତି ଯେଉଁ ଅନ୍ନ ଦେଖି
ସ୍ନାନ ତର୍ପଣ କରିଣ ସମସ୍ତ ନୃପତି ।
ମଣୋହି ପୀଠରେ ବସି ଭୋଜନ କରନ୍ତି ।
ବାସୁଦେବ ବୋଲି ଦ୍ୱିଜ ସୂପକାର ବଂଶୀ
ଦୋହରା ପ୍ରସାଦେ ଆଣି ଅମୃତ ପରଷି ।
କ୍ଷୀର ସମୁଦ୍ର ଅଟନ୍ତି ବିରାଟ ପରିଚ୍ଛା
ଗୋରସ ପାନକରିଲେ ଯାର ଯେତେଇଚ୍ଛା
ଭୁଞ୍ଜିଣ ତୃପତ ହେଲେ ସର୍ବ ମହୀପତେ
ଯେବଣ ରାଜାରଯେତେ ଯୋଦ୍ଧା ଅମନାତ୍ୟେ
ଆଚମନାନ୍ତେ କର୍ପୂର ମିଶା ପାନ ଭୁଞ୍ଜି
ଆସି ଆସ୍ଥାନେ କୌତୁକେ ସାର୍ବହେଲେ ମଜ୍ଜି ।

ନୃତ୍ୟ ଗୀତାଦି କରନ୍ତି ବାର ବିଳାସିନୀ
ବଳଦେବଙ୍କ ସହିତ ବିଜେ ଚକ୍ରପାଣି ।
ସୁବର୍ଣ୍ଣ ମନ୍ଦିର ଏକ ବିରାଟର ଥିଲା
ତହିଁ ଜଗନ୍ନାଥଙ୍କର କୁଟୁମ୍ବ ସଞ୍ଚିଲା ।
ସମସ୍ତେ ପ୍ରଶଂସା କଲେ ଜୀବନ ତୋ ସାଧୁ
ଅନାଦି ପୁରୁଷକୁ ତୁ ପାଇଲୁ ଯେ ବନ୍ଧୁ ।
ଏ ଦୁହିତା ଗୋଟି ତୋର କୁଳ ଉଦ୍ଧାରିଣୀ
ସୋମବଂଶର ହୋଇଲା କୁଳର ମଣ୍ଡଣି ।
ବଳରାମ ବୋଇଲେ ଯେ ନୁହେଁ କି ଏକା
କଲା କର୍ମମାନ କେଭେ ନୁହଇ ଅନ୍ୟଥା ।
ବିଭାଘରର ବିଧାନେ ବସ ଏବେ ସୁଖେ
ବିରାଟ ଧ୍ୱଂସି ହେଉଛି କନ୍ୟାଙ୍କ ଉତ୍ସୁକେ ।
କୁମ୍ଭମାସ କୃଷ୍ଣପକ୍ଷ ଦଶମୀର ଦିନ
ଚନ୍ଦ୍ରବାର ହସ୍ତ ନକ୍ଷତ୍ରର ବିଦ୍ୟମାନ ।
ବାଣିଜ୍ୟ ନାମେ କରଣ ଶୁଭନାମେ ଯୋଗ
ତାରକଚନ୍ଦ୍ର ରୋହିଣୀ ଘରେ ଅଛି ଭୋଗ
ବିଭାର ଅନୁକୂଳକୁ ଧରି ପୁରୋହିତେ
ବିରାଟକୁ ବସାଇଲେ କର୍ମର ନିମନ୍ତେ ।
ବିଭାର ବାରତା ପାଇ ବ୍ୟାସ ତପୋଧନ
କରନ୍ତି ଯେ ଅନୁକୂଳ ମଙ୍ଗଳ ବିଧାନ ।
ଦେବତା ଗନ୍ଧର୍ବ ଆଦି ସର୍ବ ଦେବଗଣେ
କରନ୍ତି ଯେ ଅନୁକୂଳ ମଙ୍ଗଳ ବିଧାନେ ।
ବେନି ଲକ୍ଷ ଶିଷ୍ୟ ଘେନି ମୁନି ମାର୍କଣ୍ଡେୟ
ପ୍ରବେଶ ହୋଇଲେ ଆସି ରାଜାର ଆଳୟ ।
ଜଇମୁନି କଣ୍ଠମୁନି କପିଳ ମହର୍ଷି
ଅଭିମନ୍ୟୁ ବିଭା ଶୁଣି ପ୍ରବେଶିଲେ ଆସି ।
ଦେଖିଣ ନୃପତିମାନେ କଲେ ପାଦପୂଜା
ବସିଲେ ସଭାରେ ମୁନିମାନେ ବ୍ରହ୍ମଦ୍ୱିଜା ।
କରନ୍ତି ମଙ୍ଗଳ ସେହୁ ଯେବଣ ବିଧାନେ
ଦେବତା ଗନ୍ଧର୍ବ ପୁଣି ଯେତେକ ସଇନ୍ୟେ ।
କୁଶଳେ ଗମନ କଲେ କୁମାର କୁମାରୀ
ସମସ୍ତ କଥା ବିରାଟ ଆଜ୍ଞା ଅବଧାରୀ ।
ଲାଗିଗଲା ପରିହାସ ହାସ ଗଣ୍ଡଗୋଳ
ଅନେକ ଉତ୍ସବ ହେଲା ବହୁତ ମଣ୍ଡଳ ।
କୁଙ୍କୁମରେ ଉତ୍ସୁକ ଯେ ହୋଇଲା ବହୁତ
ଏକକୁ ଆରେକ ଧରି ଲେପୁଛନ୍ତି ଗାତ୍ର ।

ପନ୍ଦର କୋଟି ବରଷ ହଳଦୀ ସହିତ
ତିଳ ତଇଳ ସଂଯୋଗ କଲେ ମତ୍ସ୍ୟନାଥ ।
ମତ୍ସ୍ୟ ଦେଶରେ ମିଳିଲେ ଯେତେକେ ଭୁପାଳ
ସକଳେ ଯେ ବରଯାତ୍ରୀ ଅଟନ୍ତି କେବଳ ।
ରଥ କୁଞ୍ଜର ପଦାତି ଅଶ୍ୱ ଯେ ବହୁତ
ଗହଳେ ରାଜାଙ୍କ ଲୋକ ନୁହନ୍ତି ଆୟତ୍ତ ।
କୁଙ୍କୁମ ଲେପନ ହେଲେ ପୁରୁଷ ଯେ ନାରୀ
ରାଜାଙ୍କର ସୈନ୍ୟବଳ ପାତ୍ର ଆଦିକରି ।
କୁଙ୍କୁମ ତୈଳ ଅଏଁଳା କରିଣ ଲେପନ
ବେଣୀଭଦ୍ରା ନଦୀରେ ଯେ ପଶିଲେ ଯାଇଣ
ନଦୀଯାକ ସବୁହେଲା କୁଙ୍କୁମର ପ୍ରାୟେ
ସେ ଅଗାଧ ଜଳ ପାଞ୍ଚ ଯୋଜନର ଯାଏ ।
ସ୍ନାନ ସାରିଣ ଦେବାଧିଦେବ ଭାବଗ୍ରାହୀ
ବିଚିତ୍ର ମନ୍ଦିରେ ଯାଇ କରିଲେ ମଣୋହି ।
କନକର ପଲମରେ ରାଜାଙ୍କୁ ସେ ଦିଏ
ସୁପକ୍ୱ ଅନ୍ନ ରାଜାଙ୍କୁ ପରୀକ୍ଷିତ ଯାଏ ।
ପରିବେଷଣ କରନ୍ତି ସୁଦକଦୀ ବ୍ରାହ୍ମଣ
ସୁସ୍ଥାନେ ଭୁଞ୍ଜନ୍ତି ବସି ଦେବ ନାରାୟଣ ।
ଭୋଜନ ବେଳେ ସମ୍ପଦ କହିତ କି ପାରି
ଯହିଁର ନାୟକ ଆପେ ନିଜେ ଦେବ ହରି ।
ଦୁହାଁଳିଆ ଦୁଇପଦ୍ମ ଛନ୍ତି ଯାର ଗାଈ
ପାଞ୍ଚପଦ୍ମ ଭାର ଦୁଗ୍ଧ ଯାରନିତ୍ୟେହୋଇ ।
ତିନିଲକ୍ଷ ଭାର ଯାର ନିତ୍ୟ ହୁଏ ଘୃତ
ଯାହାର ଘରେ ଖାଇବା ଅଟେ ପୁରୁଷାର୍ଥ ।
ଯାହାର ଯେତେକ ଇଚ୍ଛା ଖାନ୍ତି ଅପ୍ରମିତ
ଭୋଜନ ଅନ୍ତେ ପ୍ରଶଂସା କରନ୍ତି ବହୁତ ।
ଭୋଜନ ଅନ୍ତରେ ପୁଣି ସନ୍ଧ୍ୟା ଅବକାଶ
ଯେତେଲୋକ ବସିଛନ୍ତି ଯଦୁଭୋଜ ବଂଶ ।
କଣକରେ ରତ୍ନଧାରେ ଦେଲା ଅବକାଶ
ଏମନ୍ତ ପ୍ରତିବିଧିରେ ସମସ୍ତେ ହରଷ ।
ଶତେ ରାଜାଙ୍କୁ ଭୂଷଣ ଦେଲେ ଏହିବିଧି
କିଅବା ପ୍ରତାପ ତାରେ ହେଲା ରତ୍ନନିଧି ।
କଣୟ ମଣ୍ଡପରେ ଯେ ପୀଢ଼ା ସ୍ଫଟିକର
ମୁକୁତା ଗୁଆ ତାଳ ଯେ ତହିଁର ଉପର ।
ରୂପାର ପାବଚ୍ଛ ତହିଁ କଣୟ ଛାଏଣି
କାଠରେ ଖଞ୍ଜିଲେ ନେଇ ମାଣିକ୍ୟର ମଣି ।

ସେହି ମଣ୍ଡପରେ ତଳେ ବିଜେ ବାସୁଦେବ
ଚତୁର୍ଦ୍ଦଶ ବ୍ରହ୍ମାଣ୍ଡରେ ଯେ ଦେବାଧିଦେବ ।
ଅଷ୍ଟରତ୍ନରେ ରଞ୍ଜିତ ଆସନ ଯେ ବିଧି
ତହିଁର ଉପରେ ବିଜେ କଲେ ଗୁଣନିଧି ।
ନନ୍ଦ ଉଗ୍ରସେନ ରାଜା ପୁଣି ବାସୁଦେବ
ରାମକୃଷ୍ଣ ଧୃତରାଷ୍ଟ୍ର ଯେ ପଞ୍ଚ ପାଣ୍ଡବ ।
ଦ୍ରୌପଦୀଶିଖଣ୍ଡି ଧୃତଦ୍ୟୁମ୍ନ ଭାଇ ବେନି
ପାଞ୍ଚାଳିର କୁମରକୁ ସଙ୍ଗେ ଛନ୍ତି ଘେନି ।
ଅଭିମନ୍ୟୁ ବସିଛନ୍ତି ଜଗନ୍ନାଥ କୋଳେ
ମଧରେ କରିବେ ବିଜେ ମୁନିଏ ସକଳେ ।
ପୂର୍ବମୁଖରେ ବିରାଟ ପଶ୍ଚିମେ କିରୀଟି
ସନ୍ନିଧିରେ ଅର୍ଘ୍ୟଘେନି ବିଜୟ ବିରାଟି ।
ପାଶେ ପୁରୋହିତ ଥାଇ କଲେ ବେଦଧ୍ୱନି
ଦେଶକାଳ ମହାବାକ୍ୟ ଉଚ୍ଚାରନ୍ତି ମୁନି ।
ଶଶଧର ଗୋତ୍ରୀ ପୁଣି ଅଟନ୍ତି ଅର୍ଜ୍ଜୁନ
କଉଶିକ ଗୋତ୍ରୀ ଅଟେ ବିରାଟ ରାଜନ ।
ଦୁଇକୁଳର ଗୋତ୍ରକୁ ପୁଚ୍ଛି ପୁରୋହିତ
ଦେବ ପୂଜାଦି ବରଣ ସାରିଲେ ସମସ୍ତ ।
ବିରାଟ ଅର୍ଜ୍ଜୁନ କୁଳ କରି ସମ୍ଭାଷଣ
ଉଭୟଙ୍କ ଅନୁମତେ ବୋଲନ୍ତି ବ୍ରାହ୍ମଣ ।
ବରଣ ବିଧାନମାନ ସାରିଲେ ସତ୍ୱରେ
ଅଭିମନ୍ୟୁ ବସାଇଲେ ଅର୍ଜ୍ଜୁନ କୋଳରେ ।
ସୀଉକାର ବରଣକୁ ସାରି ମହୀପତି
ଏ ମୋହର ସତ୍ୟା ସତ୍ୟ ତ୍ରିବାର ବୋଲନ୍ତି
ସକଳ ରମଣୀ କରେ ଘେନି ଅର୍ଘ୍ୟଥାଳୀ
ମଙ୍ଗଳ ଗୀତକୁ ଗାଇ ଦ୍ୟନ୍ତି ହୁଳହୁଳି ।
ନାରୀଏ ମିଶି ଗାବନ୍ତି ଦିଶଇ ତା ଶୋଭା
ଅଭିମନ୍ୟୁକୁ ଉତ୍ତରା କରାବନ୍ତି ବିଭା ।
ସୀଉକାର ବରଣକୁ ସାରି ବରକନ୍ୟା
ରାତ୍ର ଅର୍ଦ୍ଧରେ ମିଳିଲେ ସ୍ୱର୍ଗ ବାରାଙ୍ଗନା ।
ବହୁ ନୃତ୍ୟ ଗୀତ କଲେ ତହିଁ ନର ନାରୀ
ରଜନୀକି ପୁହାଇଲେ କଉତୁକ କରି ।
ପ୍ରଭାତେ ହୁଅନ୍ତେ ବିଭା ଯୋଗାଡ଼ିଆ ସଞ୍ଚା
ଋଷିମାନଙ୍କୁ ଅର୍ପିଲେ ନେଇ ଫଳଭିକ୍ଷା ।
କୃଷ୍ଣାଜିନ ଛାଲ ପୁଣି ଦେଲେକ ଆସନ
ପୁଷ୍ପ ପାଦ୍ୟ ଅର୍ଘ୍ୟ ଆଉ ଅକ୍ଷତ ଚନ୍ଦନ ।
ଲକ୍ଷେ ଲକ୍ଷେ ଚନ୍ଦନରେ କଲେ ରାଜପୂଜା
ଏହିପରି ସନମାନ କଲେ ମତ୍ସ୍ୟ ରାଜା ।
ପରମ ଆୟୁଷ ବାଞ୍ଛା ଋଷିମାନେ ବାଞ୍ଛି
ଧର୍ମ ତୋତେ ସାହାହେଉ ଶାସ୍ତ୍ରେ ଯାହାଅଛି ।
ଲକ୍ଷେକ ବ୍ରାହ୍ମଣଘେନିଣ ଧୌମ୍ୟ ପୁରୋହିତ
ବିଭା ବିଧାନେ ବସିଲେ ବିରାଟ ସହିତ ।
ସ୍ୱର୍ଣ୍ଣ ବେଦୀରେ ବସିଲେ ଯାଇ ମତ୍ସ୍ୟରାଜା
ପୁରୋହିତ ଅଭିମନ୍ୟୁ କଲେ ଦେବପୂଜା ।
ଗଣପତି ଆଦିକରି ସନକାଦି ଗଣ
ନବଗ୍ରହ ପୂଜା ଆଦି କରନ୍ତି ବରଣ ।
ପୃଥ୍ୱୀ ଆପ ତେଜ ପୁଣ ବାୟବ୍ୟ ଆକାଶ
ବିହନ୍ତା ନବଗ୍ରହ ଯେ ଆଦିତ୍ୟାଦି ଅଂଶ ।
ଦଧିବାମନ ସୁମରି କଲେ ଅନୁକୂଳ
ଶଙ୍ଖପଦ୍ମ ମହାପଦ୍ମ ଅଷ୍ଟନାଗ କୁଳ ।
ଦିଶଦିଗପାଳ ମେଘ ଶୂନ୍ୟେ ସପତମ
ପ୍ରାଣବାୟୁ ମୂଳଜ୍ଞାନ ଭୂତ ଯେ ପଞ୍ଚମ ।
ଏତେ ଦେବତାଙ୍କୁ କଲେ ବରଣ ନିୟତ
ପୂଜାରେ ବିରାଟେଶ୍ୱର ଦେଲେବହୁ ବିତ୍ତ ।
ସ୍ୱର୍ଣ୍ଣଦାନ ରତ୍ନଦାନ ମୁକ୍ତା ନୀଳମଣି
ଦୁହିତା ନିମନ୍ତେ ଏହା ଦେଲେ ନୃପମଣି ।
ବିଷ୍ଣୁ ଆଳୟେ ପୁରାଣ ଶିବେ ଗୋଦୋହନ
ଦେବୀମାନଙ୍କୁ ଶୀତଳ କରିଲେ ପ୍ରଦାନ ।
ଜୀବଘାତର ନିମନ୍ତେ ବିରାଟର ରାକା
ସୁଖ ଉପହାର କରେ ଦେବୀଙ୍କର ପୂଜା ।
ଗ୍ରହଶାନ୍ତି ନିମିତ୍ତରେ ପୂଜେ ଗ୍ରହବିପ୍ର
ରଙ୍ଗବସ୍ତ୍ର ରଙ୍ଗଫଳ ଦିଅନ୍ତି ସମସ୍ତ ।
ଶିଳାବରଣ କରିଣ ପଶିଲେ ସ୍ନାହାନେ
ଚଣ୍ଡୀ ସଂହିତା ପଢ଼ନ୍ତି ବସି ତପୋଧନେ ।
ବହୁ ରାଜା କରିଛନ୍ତି କଉତୁକେ ସଭା
ଅଳକାପୁରୀ ପରାୟେ ଦିଶଇ ଯେ ଶୋଭା ।
ଯେତେ ଇଚ୍ଛା ଅନୁରୂପେ ଦେଉଛନ୍ତି ଦାନ
ଦୁଃଖୀ ଦରିଦ୍ରଙ୍କୁ ଦେଖି ବିତରନ୍ତି ଧନ ।
କୁମ୍ଭ ଶୁକଳ ଦଶମୀ ପୁଣି ଗୁରୁବାର
ରୋହିଣୀ ନାମେ ନକ୍ଷତ୍ର ଭୋଗ ସେ ଦିନର
କୌଳବ କରଣ ଯେ ପ୍ରୀତି ନାମେ ଯୋଗ
ତାରଚନ୍ଦ୍ରେ ଯେ ରୋହିଣୀ ଘରେ କରେ ଭୋଗ ।

ସେଦିନ ଶୁକ୍ର ଅସ୍ତକୁ ରାହୁବୁଧ ବେଳ
ଅମୃତ ଯୋଗ ଲଗନ ଧଇଲେ ସକଳ ।
ବରକନ୍ୟା ଆସ୍ଥାନକୁ ନେଲେକ ବହନେ
ମଙ୍ଗଳ ଭାଷନ୍ତି ଦ୍ୱାରାବତୀ ଜନମାନେ ।
ନଗର ବାହାରେ ରହିଛନ୍ତି ଲିଙ୍ଗରାଜା
ତାଙ୍କ ପାଶେ ଶାକମ୍ଭରୀ ଅଛନ୍ତି ଗିରିଜା ।
ସେ ଦେବୀ ଆଗେ ସୁନ୍ଦରୀ ରଖି ଅର୍ଘ୍ୟସ୍ଥାଳି
ଦେବୀଙ୍କି ପ୍ରଣାମ କଲେ ରାଜାର ଦୁଲାଳୀ ।
ଅଗସ୍ତି କହନ୍ତି ତୁମ୍ଭେ ଶୁଣ ନରସାଇଁ
ଗୋସାମଣିଙ୍କି ବହୁତ ସ୍ତୁତି କଲେ ତହିଁ ।
ରାଜାସୁତାର ବହୁତ ବିନୟକୁ ଦେଖି
ପ୍ରସନ୍ନରେ ବରଦେଲେ ତାଙ୍କୁ ପିଙ୍ଗଳାକ୍ଷୀ ।
ବାଳିକା ହୋଇଣ ତୁହି କଲୁ ବହୁ ସ୍ତୁତି
ଯାଅ ତୁହି ସୋମବଂଶେ ହୁଅ ପୁତ୍ରବତୀ ।
ପ୍ରସନ୍ନରେ ବର ଯହୁଁ ଦେଲେ ଶାକମ୍ଭରୀ
ବାହୁଡ଼ିଣ ବିଜେକଲେ ଉତ୍ତରା କୁମାରୀ ।
କନ୍ୟା ବସାଏ ବିରାଟ ଆପଣାର କୋଳେ
ମୁନିଏ କରନ୍ତି ପୂଜା ନିଜ ଯୋଗବଳେ ।
ପାର୍ଥ କୋଳେ ବିସାଇଲେ ପୁତ୍ର ଅଭିମନ୍ୟୁ
ତ୍ରୈଲୋକ୍ୟ ମୋହଇ ସେହୁ ସୁଭଦ୍ରାର ସୁନୁ
ଗନ୍ଧପୁଷ୍ପ ଅକ୍ଷତ ଯେ ବହୁବିଧ ବର୍ଣ୍ଣ
ବରକନ୍ୟାଙ୍କୁ ବସାଇ ଆରମ୍ଭିଲେ କର୍ମ ।
ବେଦାଧ୍ୟୟନ କରନ୍ତି ସର୍ବ ପୁରୋହିତେ
ମଙ୍ଗଳଗାୟନ କଲେ ଯେତେ ଚଣ୍ଡପୁତ୍ରେ ।
ଯୁଧିଷ୍ଠିରଙ୍କ କୋଳରେ ବିଜେ ଫାଲଗୁନି
ଅର୍ଜ୍ଜୁନ ଅଛଇ ଅଭିମନ୍ୟୁ କୋଳେ ଘେନି ।
ସୁବିଧାନେ ବେଦବାକ୍ୟ ଉଚ୍ଚାର କରନ୍ତି
ପଶ୍ଚିମ ମୁଖରେ ବସିଛନ୍ତି ମତ୍ସ୍ୟପତି ।
ମଧ୍ୟରେ ବସିଅଛନ୍ତି ଧୌମ୍ୟ ପୁରୋହିତେ
ଉଦ୍ଧାଳକ କାମଦେବ ଗାର୍ଗବ ସହିତେ ।
ଯେବିଧିରେ ଦେଶକାଳ ବାକ୍ୟ ସେ ଉଚ୍ଚାରି
ସତ୍ୟ ସତ୍ୟ ସତ୍ୟ ବୋଲି ତିନିବାର କରି ।
ଚନ୍ଦ୍ର ଦେବତାଙ୍କ ଗୋତ୍ରୀ ଅଟେ ଫାଲଗୁନୀ
ମହାବାକ୍ୟ ଉଚ୍ଚାରନ୍ତେ ତହିଁ ବେଳ ତିନି ।
ଇଦଂ ପିତୃ ପିତାମହ ତିନୋଟି ପୁରୁଷ
ବିଚିତ୍ରବୀର୍ଯ୍ୟ ଯେ ପଣ୍ଡୁ ପାର୍ଥନାମ ଘୋଷ ।
ବିରଳ ଗୋତ୍ରୀ ଅଟଇ ମତ୍ସ୍ୟ ନୃପବର
ଦେଶକାଳ ବାକ୍ୟ ଉଚ୍ଚାରିଲେ ମୁନିବର ।
ଇନ୍ଦ୍ର ପିତୃ ପିତାମହ ଯେ ପ୍ରପିତା ମହ
ବିରାଟ ତିନିପୁରୁଷ ନାମ ତୋର କହ ।
ଦଧିବାମନାନୁକୁଳେ ଅସରଳା ସୁତା
ବାକ୍ୟେ ବରକନ୍ୟା ଗଲେଦେଲେକପଇତା
ଇଦଂ ବାକ୍ୟ ପୁଣ୍ୟବାକ୍ୟ ଅଷ୍ଟବାକ୍ୟ କରି ।
ଅଖଣ୍ଡିତ ବାକ୍ୟ ସବୁ ହୃଦପଦ୍ମେ ଧରି ।
ବରକନ୍ୟାଙ୍କର ହସ୍ତ କରାଇ ବନ୍ଧନ
ବଜାଇ ସେ ବହୁବିଧବାଦ୍ୟ ଯନ୍ତ୍ରମାନ ।
ମଙ୍ଗଳ ବାଦ୍ୟରେ କୁଶ ଘେନି ପୁରୋହିତେ
ବରର ହସ୍ତଉପରେ କନ୍ୟା କରପତ୍ରେ ।
ଡାହାଣବର୍ତ୍ତକ ଶଙ୍ଖେ ଜଳତିଳ ଭରି
କଉତୁକରେ ଦିଅଇ ମତ୍ସ୍ୟ ଦଣ୍ଡଧାରୀ ।
ସହସ୍ରେକ ଦାସୀ ପୁଣି ଲକ୍ଷେକ ଯେ ଗାଈ
ଲକ୍ଷେକ ଭାର ରତନ ଯଉତୁକ ଦେଇ ।
ବେନି ଲକ୍ଷ ଧଳା ଅଶ୍ୱ ହସ୍ତୀ ଲକ୍ଷ ଚାରି
ଆଲଟ ଛତ୍ର ଉଲାଖ ଦଣ୍ଡ ଲକ୍ଷ ଚାରି ।
ପଞ୍ଚପରାର୍ଦ୍ଧ ଦେଲା ଯେ ପଦାତି ସଇନି
ପୁଣି ପାଞ୍ଚ ପାରିଦଣ୍ଡ ନେଲା ନୃପମଣି ।
କୁମର କୁମାରୀ ଗଲେ ଏକଇ ଆସ୍ଥାନେ
ପ୍ରଣତି କଲେ ବିରାଟ ପାର୍ଥ ସନ୍ନିଧାନେ ।
ଶ୍ରୀକୃଷ୍ଣ ଯାର ମାତୁଳ ଲକ୍ଷ୍ମୀ ଯାର ମାଇଁ
ତାହାଙ୍କୁ ଯଉତୁକ ମୁଁ ଦେବି ଅବା କାହିଁ ।
ମହୀମଣ୍ଡଳେ ଠାକୁର ଯେହୁ ସୋମବଂଶୀ
ଦୁହିତା ଗୋଟିକି ଦେଇ ଶରଣ ମୁଁ ପଶି ।
ମୋର କଲା ଅପରାଧ ନ ଘେନିବ ଚିତ୍ତେ
ଦୁହିତା ଗୋଟିଏ ଦେଇ ରହିଲି ନିଶ୍ଚିନ୍ତେ ।
ଦୁହିତା ଗୋଟିଏ ଦେଇ ପଶିଲି ଶରଣ
ସମୁଦ୍ରକୁ ଆଶ୍ରାକରି ହୋଇଲି କାରଣ ।
ଅନେକ ବିନୟ ହୋଇ କହେ ମତ୍ସ୍ୟସାଇଁ
ଯୁଧିଷ୍ଠିରଙ୍କ ଚରଣେ ପ୍ରଣମିଲା ଯାଇ ।
ଯୁଧିଷ୍ଠି ଦେବ ବୋଇଲେ ଶୁଣ ମହାତମା
ତୁହିତ ଏବେ ହୋଇଲୁ ମୋର ପଞ୍ଚଆତ୍ମା ।
ଅର୍ଜ୍ଜୁନ ବଦନ ଯହୁଁ ଚାହିଁଲେ ଯୁଧିଷ୍ଠି
ତହୁଁ ବିରାଟକୁ କୋଳ କଲେ ବେଗିଉଠି ।
କନ୍ୟା କୁମରଙ୍କୁ ନେଇ ସମର୍ପିଲା ରାୟ
ପ୍ରୋହିତ ଲାଜାହୋମର କରନ୍ତି ଉପାୟ ।
ଏ ଜାତ ଅନଳ ନାମ କଲେ ସେହୁ ହତ
ସ୍ୱାହା ସ୍ୱାହା ମନ୍ତ୍ରେ କଲେ ତାହା ଉପଗତ ।

ଗବ୍ୟଘୃତ ଜାଳି ମନ୍ତ୍ର କଲେ ଆରାଧନ
ଅଗ୍ନି ଦେବତାଙ୍କ ତେଜ ହୋଇଲା ନିଉନ ।
ମାରକଣ୍ଡ ବୋଇଲେହେଧୌମ୍ୟପୁରୋହିତେ
ଅଗ୍ନିଶିଖା ନ ଉଠିଲା ଦେଖ ଯେ ସାକ୍ଷାତେ
ତୋହର ପରାୟ ବ୍ରହ୍ମା ଦେଲୁ ଯେ ଆହୁତି
ବାରି ନ ପାରିଲୁ ଅଗ୍ନି ଦେବତା ମୁରତି ।
ପୂଜିତ ଅନଳ ବୋଲେ ଯେଉଁ ବୈଶ୍ୱାନର
ତିନୋଟି ବଦନ ପାଞ୍ଚ ଲୋଚନ ତାହାର ।
ଦ୍ୱାଦଶ କପାଳ ଚଉବିଂଶ ଯେ ଚରଣ
ତିନି ଗଣ୍ଡସ୍ଥଳ ପୁଣି ଚାରି ଆବରଣ ।
ଉସ୍ତବ ନାସିକା ତାର ନବ ପଞ୍ଚ କୁକ୍ଷି
ତିନିଶତ ଆକର୍ଷଣ ସସ୍ରେ ପିଙ୍ଗଳାହୀ ।
ଏକଇ ବଦନ ତାର ଚତୁର୍ଥ ମୁରତି
ନଳ ବଦନ ଦ୍ୱାଦଶ ଅଟେ ରୂପକାନ୍ତି ।
ଚତୁର୍ଥ ଗୋଟି ଯାହାର ଦ୍ୱାଦଶଟି ଉମା
ଏକ ଚରଣେ ଯେ ତିନି ପିଠି ଉର୍ଦ୍ଧ୍ୱ ବ୍ରହ୍ମା ।
ଆହୁତିରେ ବହ୍ନି ଯେବେ ପଡ଼ିବ ଧରଣୀ
ଭିକ୍ଷୁକ ହୋଇବ ସେହି ବରକନ୍ୟା ବେନି ।
ଆହୁତି ଯେବେ ପଡ଼ିବ ଅଗ୍ନିଙ୍କର ପିଠି
କନ୍ୟାକୁ ବର କେବେତ ନ ପାରିବ ଦେଖି
ଯେବେ ଆହୁତି ପଡ଼ିବ ଅଗ୍ନିଙ୍କ ନାସିକା ।
ତାହାର ଉଦରେ ପୁତ୍ର ଉପୁଜିବ ଏକା ।
ଅଗ୍ନିଙ୍କର କର୍ଣ୍ଣେ ଯେବେ ଆହୁତି ପଡ଼ିବ
ଯେହୁ ଉପୁଜିବ ସେହୁ ବିନିଷ୍ଟ ହୋଇବ ।
ଗଣ୍ଡସ୍ଥଳ ମଧ୍ୟେ ଯେବେ ପଡ଼ିବ ଆହୁତି
ବର ଥାଉଁ ଥାଉଁ କନ୍ୟା ହେବ ସ୍ୱର୍ଗଗତି ।
ଯେବେ ଆହୁତି ପଡ଼ିବ ଅଗ୍ନିଙ୍କର ହୃଦ
ବର କନ୍ୟାଙ୍କର ହେବ ବହୁତ ସୁହୃଦ ।
ଅହ୍ୟ ସୁଲକ୍ଷଣୀ ହେବେ ପୁଣି ଭାଗ୍ୟବତୀ
ବହୁତ ଜନମ ହେବେ ସନ୍ତାନ ସନ୍ତତି ।
ଆହୁତି ପଡ଼ିବ ଯେବେ ଅଗ୍ନିଙ୍କର କନ୍ଧେ
କନ୍ୟାଟି ବିଧବା ହେବ କାମ ଅଶବଦେ ।
ବାମ ଭୁଜରେ ଯଦ୍ୟପି ପଡ଼ିବ ଆହୁତି
ପର ପୁରୁଷେ ବିଶ୍ୱାସ ସ୍ୱାମୀଙ୍କୁ ଅପ୍ରୀତି ।
ଡାହାଣ ଭୁଜରେ ଯେବେ ଆହୁତି ପଡ଼ିବ
ସୁନ୍ଦରୀ ହୋଇଲେ ମଧ୍ୟ ପୁରୁଷ ତେଜିବ ।
ଆହୁତି ପଡ଼ିବ ଯେବେ କଟିର ମେଖଳା
ଏଗାର କନ୍ୟା ଜନ୍ମିବେ କର୍ମରେ ଅବଳା ।
ଜାନୁରେ ପଡ଼ିବ ଯେବେ ପୁଣ୍ୟରେ ଆହୁତି
ବରକନ୍ୟାଙ୍କର ଜାତ ଦେବ ବଡ଼ ପ୍ରୀତି ।
ଦୁହିତା ନ ଉପୁଜିବ ନ ହେବ ତନୟ
ଅପୁତ୍ରିକେ ନାଶଯିବେ ସେ ସମ୍ପଦ ଦ୍ୱୟ ।
ପାଦରେ ପଡ଼ିବ ଯେବେ ଅଗ୍ନିଙ୍କର ଭାବ
ଦେଶ୍ୟନ୍ତର କରି ବ୍ରହ୍ମ ଦୀକ୍ଷାରେ ସମ୍ଭବ ।
ଅନେକ ପୁତ୍ରବତୀ ଯେ ହୋଇବ ସେ ବାଳୀ
ଦରିଦ୍ର ହୋଇବ ପରେ କରିବ ସେ କଳି ।
ଶୁଣି ପୁରୋଧା ବଦନ୍ତି ମୁନି ମାରକଣ୍ଡେ
ଆହୁତି ପଡ଼ିବ ଯେବେ ଅଗ୍ନିଙ୍କର ମୁଣ୍ଡେ ।
ମହାମନ୍ତ୍ର ବାକ୍ୟେ ପଢ଼େ ଯେବେ ଅଗ୍ନିତାଳ
ଭୋଗ କରିବ ସେ କନ୍ୟା ପୁତ୍ର ହେବ ବେଳ ।
ବଡ଼ାଇ ଦୁରାପଦରେ ରହିବ ସେ ବଂଶ
କନ୍ୟାକୁ ଭୋଗହୋଇଛି ମାତ୍ର ଦେଢ଼ବର୍ଷ ।
ବ୍ୟାସଦେବ କହିଲେ ଯେ ଅଗ୍ନି ଶାସ୍ତ୍ର ଖଣ୍ଡି
ବିରାଟ ଦୁହିତା ଜାଣ ହେବ ପେଟରାଣ୍ଡି ।
ମାର୍କଣ୍ଡ ବୋଇଲେ ବ୍ୟାସନୋହେ ସେ ଏମନ୍ତ
ଚଉଦ ବରଷେ ନାଶ ଯିବ ଏହା କାନ୍ତ ।
ବ୍ୟାସ ବୋଇଲେ ଏ କଥା କରିବ ଗୁପତ
ପାଣ୍ଡବଙ୍କ କୁଳ କଥା ଲାଗିବ ବହୁତ ।
ଏହି ସକଳ କଥାଏ ଋଷିଏ ଜାଣିଲେ
ଅଗ୍ନିଦେବତା ଶୀତଳ କରାଇଣ ଦେଲେ ।
ଏଥୁଅନନ୍ତରେ ବର କନ୍ୟାକୁ ଯେ ନେଲେ
ହରଷ ହୋଇଣ ପଞ୍ଚଗ୍ରାସୀ କରାଇଲେ ।
ବରକନ୍ୟା କରିଲେ ଯେ ତହୁଁ ଆଗମନ
ସୁଖବାସକୁ ଭୁଞ୍ଜିଲେ ଅର୍ଜ୍ଜୁନ ନନ୍ଦନ ।
ଅଗ୍ନି ଦେବତାଙ୍କୁ ଶାନ୍ତ କରାନ୍ତି ଶ୍ରୀବସ୍ତି
ପୁରାଣ ସଙ୍ଗତ ଏହିପରି କଥା ଅଛି ।
ବିବାହ କାର୍ଯ୍ୟ ସାରିଣ ଆହୁତି କର୍ମେଣ
କଲ୍ୟାଣ କରିଲେ ତହିଁ ସୁଜ୍ଞ ଦ୍ୱିଜଜନ ।
ବିଭାଅନ୍ତେ ବରକନ୍ୟା ଭୁଞ୍ଜି ହେଲେ ସୁସ୍ଥ
ବହୁ ସମ୍ଭାରେ ଭସାଇଦେଲେ ମତ୍ସ୍ୟନାଥ ।
ଅଚମନାନ୍ତେ କର୍ପୁର ତାମ୍ବୁଳ ଭୋଜନ
ବହୁତ ଅକ୍ଷତ ଦେଲେ ବିରାଟ ରାଜନ ।
ଉତ୍ତରାକୁ ଘେନି ରାମ କୃଷ୍ଣଙ୍କ ଭଣଜା
ଅନେକ ମଙ୍ଗଳ ମନ୍ତ୍ରେ କଲେ ମଧୁଶଯ୍ୟା ।

ଗଣିକାମାନେ ମଙ୍ଗଳ ଗାଇଲେ ଯେ ମିଳି
ଶୟନ ଗୀତା ଗାଇଣ ଦ୍ୟନ୍ତି ହୁଳହୁଳି ।
ପଡ଼ିଲାକ କବାଟ ଯେ କିଳିଲେ ଯୁବତୀ
କୁମାର କୁମାରୀ ତହିଁ ବହୁ ପ୍ରୀତି ରୀତି ।
ନାନାଦି ରହସ୍ୟରେ ଯେ ପାହିଲା ରଜନୀ
ସ୍ନାହନ କରିଲେ ତହୁଁ ବରକନ୍ୟା ବେନି ।
ବିଭା ଦୁଇଦିନେ ଦୁହେଁ ହେଲେ ବନ୍ଧାପନା ।
ପ୍ରୀତି ଉତ୍ସବେ ରହିଲେ ତହୁଁ ବରକନ୍ୟା ।
ଇନ୍ଦ୍ରାଣୀବ୍ରତ ପଢ଼ନ୍ତି ଥାଇ ପୁରୋହିତେ
ବରକନ୍ୟାଙ୍କୁ ଆରୋଗ୍ୟ କରିବା ନିମନ୍ତେ ।
ଚତୁର୍ଥ ଦିନେ ଚତୁର୍ଥୀ ଉତ୍ସବକୁ କରି
ସହସ୍ରେ ବ୍ରାହ୍ମଣ ରାଜା ବରଣରେ ବରି ।
ବହୁତ ଉତ୍ସବ ତହୁଁ ପ୍ରବେଶିଲା ରାତି
କୁମାର କୁମାରୀ ଛାୟା ମଣ୍ଡପେ ବସନ୍ତି ।
ରାତ୍ର ପ୍ରଭାତେ ହଳଦୀ ଚନ୍ଦନାଦି ବାଟି
ଏକକୁ ଆରେକ ହୋଇ ବହୁଗଲେ ଘୋଟି ।
ବେଳେବେଳେ ପରିହାସ କରନ୍ତି ବହୁତ
ଚୂନ କୁଙ୍କୁମ ମିଶାଇ ବୋଳିଲେ ଯେ ଗାତ୍ର
କୁଙ୍କୁମ ପକାଇ ବହୁ ପରିହାସ କଲେ
ଶିଖଣ୍ଡି ପରିହାସରେ ମତ୍ସ୍ୟଦେହେ ବୋଳେ
ଚନ୍ଦନ କର୍ପୂର ଧୂଳି ସଙ୍ଗରେ ମିଶାଇ
ହସ୍ତୀ ମତ୍ତ ହେଲେ ଯେହ୍ନେ ମାଟିକି ଫିଙ୍ଗଇ
ଦାଣ୍ଡରେ କର୍ଦ୍ଦମ ଯେହ୍ନେ ସେପରି ସମସ୍ତେ
ଏକ ଉଡ଼ନ୍ତି ନେଇଣ ଆରେକର ମାଥେ ।
ଚନ୍ଦନକୁ ବୋଲି ସାରି ସୁଗନ୍ଧ ଅଏଁଳ
ନଦୀରେ ପଶନ୍ତେ ଜଳ ହେଲା ମହାଗୋଳ ।
ସ୍ନାହାନ ସାରିଣ କୂଳେ ଉଭାହେଲେ ଯାଇଁ
ନୂତନ ବସନ ଆଣି ଦେଲା ମତ୍ସ୍ୟସାଇଁ ।
ଦେବବସ୍ତ୍ର ଏକବର୍ଣ୍ଣ ପାଟଳି ପତନି
ନେତର କାଛେଣି ଦେଲା ସମସ୍ତଙ୍କୁ ଆଣି ।
ଠାକୁରଠାରୁ ସେବକ ବାଦ୍ୟକାର ଯାଏ
ନୂତନ ବସନ ଆଣ ବିରାଟ ପିନ୍ଧାଏ ।
ଅନେକ ଯୋଗାଡ଼ ଆଣିଦେଲା ଯେ ଭୋଜନ
ଜଣ ଜଣକେ ଭୋଜନ ହେଲା ଭିନ୍ନ ଭିନ୍ନ ।
ବାସୁଦେବଙ୍କ ନନ୍ଦନ ଘେନି ଉଗ୍ରସେନ
ସାତବଂଶ ଯାଦବରେ ବିଜେ ଭଗବାନ ।
ବିରାଟ ଦ୍ରୁପଦରାଜା ପୁଣ ଧୃଷ୍ଟଦ୍ୟୁମ୍ନ
ସଞ୍ଜୟ ବିଦୁର ଯୁଧିଷ୍ଠିର ଭୀମାର୍ଜୁନ ।
ଏମନ୍ତ କାଳେ ସଭାରୁ ଉଠି ଅନ୍ଧରାଜ
ପ୍ରଣାମ କରି ବୋଲନ୍ତି ଆହେ ଦେବରାଜ ।
ପୂର୍ବକୃତ ପାପରୁ ମ୍ୟୋ ଫୁଟିଗଲା ଆଖି
ପୁତ୍ରଙ୍କ ବଦନ ତେଣୁ ନି ପାରିଲି ଦେଖି ।
ବହୁତ ବିନୟ ହୋଇ ଧର୍ମକୁ କହୁଛି
ଦୁର୍ଯ୍ୟୋଧନ ଦୋଷ ତୁମ୍ଭେ ନ ଧରିବ କିଛି
ମୁହିଁ ତ ଜାଣଇ ହାଦେ ଯୁଧିଷ୍ଠି ଅକୋପୀ
ଅର୍ଜୁନହିଁ ମଧ୍ୟ ଶାନ୍ତ ଭୀମ ଯେ ପ୍ରତାପୀ ।
ସମସ୍ତହୁଁ ସୁଜନ ଏ ଯୁଧିଷ୍ଠି ମହାତ୍ମା
ସେ ଦାସର ଅପରାଧ କର ତୁମ୍ଭେ କ୍ଷମା ।
ଦୁର୍ଯ୍ୟୋଧନଦୋଷଯେତେସବୁମୋତେଦେବ
ଶୁଭ ଅନୁକୂଳେ ଚାଲ ହସ୍ତିନାକୁ ଯିବ ।
ଯୁଧିଷ୍ଠି ବୋଇଲେ ଯାହା ବୋଇଲ ଆସ୍ଥାନ
ଅନୁଦ୍ରତେ ତାପ ମୋତେ ଦିଏ ଦୁର୍ଯ୍ୟୋଧନ
ତହିଁ ପ୍ରତିକାର କର୍ଣ୍ଣ ଆବର ଶକୁନି
ଉଭୟ କୁଳକୁ ନାଶ କରିଲେ ଏ ବେନି ।
ଯମ ଯାମ ମନୁଷ୍ୟ ଏ ତିନି ଏ ହେଲେ
ନାନା ବିଦ୍ୟା ରଚନ୍ତି ଏ ତିନିହେଁ ମିଶିଲେ ।
କୁରୁ ପାଣ୍ଡବ ଏକ୍ଷଣି ନୁହନ୍ତି ପ୍ରବୋଧି
ଶକୁନି କର୍ଣ୍ଣ ଯେ କରିପାରେ ଏକ ସିଦ୍ଧି ।
ଭୀମସେନ ବୋଲେ ଦେବ କହିଲି ଦୁର୍ଲ୍ଲଭ
ତୁମ୍ଭେ କି ଛାଡ଼ିବ ସହଦେବ ବାସୁଦେବ ।
ଏ କଥା ଶୁଣି ହସିଲେ ଧର୍ମ କାମପାଳ
ପଣ୍ଡିତ ବୁଦ୍ଧି କହିଲା ପବନର ବାଳ ।
ଶକୁନି ଯେତେବେଳହୁଁ ହୋଇଲାଣି ମନ୍ତ୍ରୀ
ପୃଥିବୀରେ ଦୁର୍ଯ୍ୟୋଧନ ହେଲା ଏକଛତ୍ରୀ ।
ଯେତେବେଳେ ସଖା ତାକୁ ହେଲା ଶଲ୍ୟରାଜା
ଲକ୍ଷେ ରାଜାଙ୍କର ମୁଖେ ପାଇଲା ସେ ପୂଜା
କର୍ଣ୍ଣ ଶଲ୍ୟ ଶକୁନି ଯେ ତାହାର ଜୀବନ
ଏହାଙ୍କୁ ଛାଡ଼ିବ ବୋଲି ବିଚାରୁଛି ମନ ।
ବଳରାମ ବୋଲନ୍ତି ଯେ ଶୁଣ ଧୃତରାଷ୍ଟ୍ର
ଦୁର୍ଯ୍ୟୋଧନ ଅଟଇ ହେ ତୋର ଜ୍ୟେଷ୍ଠପୁତ୍ର ।
ତୁହି ଲଘିଂ ନ ପାରିବୁ ବଚନ ତାହାର
ପାଣ୍ଡବ କିପରି ଯିବେ କେଉଁ ବୁଦ୍ଧି ତୋର ।

ଏ କଥା ତିଆରି ଯେବେ ପେଷିବୁ ସଞ୍ଜୟେ
ତେତେବେଳେ ଯିବେସିନାପାଣ୍ଡୁଙ୍କ ତନୟେ
ଏହି ପରକାରେ ଶୁଣି ଅମ୍ବିକାର ବଳା
ସମଦଣ୍ଡ ଘେନିଣ ସେ ହସ୍ତିନା ଚଳିଲା ।
ଆପଣାର ସୈନ୍ୟ ଘେନି ବିଜେ ଦେବରାଜେ
ଦ୍ୱାରକାପୁରକୁ ରାମହରି କଲେ ବିଜେ ।
ଆସିଥିଲେ ହେ ଯେବଣ ଦେଶୁଁ ରାଜାମାନେ
ସମଦଣ୍ଡ ଘେନିଗଲେ ଯେ ଯାହା ଭୁବନେ ।
ପାଞ୍ଚାଳଦେଶର ରାଜା ଦ୍ରୁପଦ ସୁମତି
ଆପଣା ପୁତ୍ରକୁ ଘେନି ଚଳିଲେ ତଡତି ।
ପାଣ୍ଡବ ରହିଲେ ହର୍ଷେ ମଘ ମତ୍ସ୍ୟଦେଶ
ବହୁତ ପୁରୁଷାର୍ଥରେ ଖଟେ ମତ୍ସ୍ୟଈଶ ।
ଯାହାଙ୍କ କୃପାବଶରୁ ପାଣ୍ଡବ ସକଳେ
ଅଜ୍ଞାତବାସରୁ ମୁକ୍ତ ହେଲେ କୁତୁହଳେ ।
ସେ ପ୍ରଭୁଙ୍କ ପାଦପଦ୍ମେ ରହୁମୋର ଧ୍ୟାନ
ଆହେ ପାଣ୍ଡବ ରକ୍ଷକ ଘେନ ନିବେଦନ ।
ଯେ କାଳେ ଅନ୍ତିମ ଦଶା ଘଟିବ ମୋହର
କିଞ୍ଚିତରେ ପଦଛାୟା ମିଳିବ ତୁମ୍ଭର ।
ଯମ ଯନ୍ତ୍ରଣା ଯେପରି ନ ପାରିବ ଦେଇ
ସର୍ବଦା ଶାରଳା ଦାସ ଏ ଭିକ୍ଷା ମାଗଇ ।



## ଧୃତରାଷ୍ଟ୍ର ଶକୁନିର କଥୋପକଥନ ଓ ଧୃତରାଷ୍ଟ୍ରର ଅପମାନ

ଶୁଣ ବୈବସ୍ୱତ ମନୁ କହନ୍ତି ଅଗସ୍ତି
ହସ୍ତିନାରେ ବିଜେ କଲା ଅନ୍ଧ ନରପତି ।
ବିଜୟ ମାନଗୋବିନ୍ଦ ଆସ୍ଥାନରେ ଯାଇ
ଧୃତରାଷ୍ଟ୍ର ବିଜେ କଲେ ବିଦୁରଙ୍କୁ ନେଇ ।
ବହୁତ ବିନୟ କରି ବୋଲେ ଧୃତରାଷ୍ଟ୍ର
ପାଣ୍ଡବଙ୍କୁ ସମ୍ଭାଳିଲା ସାଧୁ ଯେ ବିରାଟ ।
ମଘ ମତ୍ସ୍ୟ ଦେଶରେ ମୁଁ ଶୁଣିଲଇଁ ଯାହା
ବିଜେ ଅଭିଷେକ କଲେ ଆସି ଶିରୀନାହା ।
କୁବେର ଦେବତା ଆସି କଲେ ଧନ ଲାଗି
ପୁଷ୍କର ଦେବତା ଅଭିଷେକ କଲେ ଲାଗି ।
ସମଦଣ୍ଡ ଘେନିବାକୁ ମତ୍ସ୍ୟଦେଶେ ଯିବା
ପୁରୁଷାର୍ଥେ ପାଣ୍ଡବଙ୍କୁ ଘେନିଣ ଆସିବା ।
ଶକୁନିବୋଲେ ଏ ବୁଦ୍ଧି କିମ୍ପା ବୃଦ୍ଧକାଳେ
ଲୋଭମୋହ ବସଇ ଯେ ନିଶ୍ଚୟ ଶୁଣିଲେ ।
ଶକୁନି ବୋଇଲେ ଆହେ ଶୁଣ ଧୃତରାଷ୍ଟ୍ର
ଏବେ ଆସି ଜ୍ଞାନ ତୋର ହୋଇଲାଣି ଭ୍ରଷ୍ଟ ।
ସକଳ ବ୍ୟାଧିମାନଙ୍କୁ ଅଛି ମହୌଷଧି
ପ୍ରକୃତି ଅନ୍ତରେ ନରେ ନାହିଁ କିଛି ବୁଦ୍ଧି ।
କିମ୍ପାଇ ବିଧାତା ତୋର ହରିନେଲା ଚକ୍ଷୁ
ତୋହର ପ୍ରିୟଜନଙ୍କୁ ପସନ୍ଦ ତୁ ଦେଖୁ ।
ଅନ୍ଧନୟନ ଯାହର ପଙ୍ଗୁ ଅଟେ ପାଦେ
ପିଠିରେ ବହିଛି କୁଜ ଦନ୍ତ ବକ୍ର ହାଦେ ।
ଆଜନମୁଁ ବିଧିର ଯେ ଆବର କୁବଜା
କେଭେ ଶୁଭନୋହେ ଏହିମାନେ ଭଗ୍ନଭଞ୍ଜା ।
ଆସ୍ଥାନେ ଶକୁନି ଯହୁଁ କହିଲା ଏ ବାଣୀ
ସମସ୍ତେ ହସି ଉଠିଲେ ମନ୍ଦକଥା ଶୁଣି ।
ଧୃତରାଷ୍ଟ୍ର ବୋଇଲାରେ ହସିଲେଣି ସବୁ
ଶକୁନି ହସର ବାକ୍ୟ ଶୁଣିଥାଅ ବାବୁ ।
ଏ ମୋହର ବଚନ ଯେ ସର୍ବ ପୁଣ୍ୟଗ୍ରାହୀ
ପାତ୍ର ମନ୍ତ୍ରୀ ଆବର ଯେ ଶୁଣିବା ନା ଭାଇ ।
ସେ ଅଶ୍ୱଥାମା ଦେଖିବ ଆହେ କୃପାଚାର୍ଯ୍ୟ
ସବୁଙ୍କରି କଷ୍ଟ ମୁହିଁ ଶୁଣିବି ନିର୍ଲ୍ଲଜ ।
ବ୍ୟାଧିର ଅବଶେ ପଡ଼ି ନାଶହୁଏ ରୋଗୀ
ଦୁର୍ଜ୍ଜନ ବୋଲେ ପଡ଼ିଲେ ନାଶହୁଏ ଯୋଗୀ ।
ବାବୁ ସର୍ବଜ୍ଞାନୀ ତୁମେ ପରମ ପଣ୍ଡିତ
କାଳେ ଧୃତରାଷ୍ଟ୍ରଙ୍କୁ ଯେ ହେବ ପୁତ୍ରକଷ୍ଟ ।
ଆରେ ଶକୁନି ତୋ କୂଟ ବଚନ ପ୍ରମାଣେ
ପାଣ୍ଡବେ ହସ୍ତିନାପୁରେ ନ ଆସିବା ଜାଣେ ।
ତୁମ୍ଭେମାନେ ବେଳ ଥାଉଁ ନ କଲେ ଉପାୟ
ତୁମ୍ଭମାନଙ୍କୁ ପୁଚ୍ଛନ୍ତେ ଦେବ ମହାଭୟ ।
ପାଞ୍ଚଦିନ ମଧ୍ୟେ ରାଜ୍ୟେ ବସିବେ ଯେ ମାଡ଼ି
ଦେଖିବା ତାଙ୍କର ଆଗେ କେ କହିବ ବଡ଼ି ।
ବ୍ୟାସଙ୍କ ମୁଖରୁ ଏହା ଶୁଣିଅଛି ହାଦେ
କୁରୁ ସମ୍ପଦ ବୁଡ଼ିବ ତୋହର ପ୍ରସାଦେ ।
ଶକୁନି ବୋଇଲେ ତୁହୋ କୁଳକ୍ଷୟ ଅନ୍ଧ
ପାଣ୍ଡବଙ୍କୁ ଆଣି ଏବେ କରାଇବୁ ଦ୍ୱନ୍ଦ୍ୱ ।
ଧୃତରାଷ୍ଟ୍ର ବୋଇଲାରେ ସରିଲାଣି ଦିନ
ଅଳପ ଦିନେ ତୋହର ଶୁଣିବା ନିଧନ ।
କର୍ଣ୍ଣ ବୋଇଲେ ହେ ତାତ କିମ୍ପା ଏହିଗୀର
କହ ଶତ୍ରୁ ଦର୍ପ ଦୁର୍ଯ୍ୟୋଧନଙ୍କ ଆଗର ।
ଦୁର୍ଯ୍ୟୋଧନ ବୋଲେ ତାତ କିଛିହିଁ ନଜାଣ
ଏତେ କିମ୍ପାଇଁ ପାଣ୍ଡବ ପ୍ରତିଜ୍ଞା ବଖାଣ ।
ଧୃତରାଷ୍ଟ୍ର ବୋଲେ ତୁମ୍ଭେ ଯେଉଁପରି କ୍ଷତ୍ରୀ
କାମ୍ୟକ ବନରେ ଛାଡ଼ି ପଳାଇଲେ ରଥୀ ।

ଧାର୍ମିକ ବିବେକ ସେହୁ ପାଣ୍ଡବେ ମହତ
ରାଜ୍ୟ ଛଡ଼ାଇ ଆଣିଲା ଜିଣି ଚିତ୍ରରଥ ।
ମୁହିଁ ତୁମ୍ଭମାନଙ୍କର ଜାଣେ କ୍ଷତ୍ରିପଣ
ଗୋଧନ ହରଣେ କଲ ଯେଉଁପରି ରଣ ।
ଅଷ୍ଟାଦଶକ୍ଷୌଣୀ ସୈନ୍ୟ ସଙ୍ଗତରେ ଘେନି
କେତେ ଅବସ୍ଥା ନକଲା ତୁମ୍ଭଙ୍କୁ ଫାଲଗୁନି ।
ତୁମ୍ଭେ ବୋଲିକରି କଥା କହ ହେ ନିର୍ଲ୍ଲଜ
ଦିଗୁଣ ପ୍ରକାରେ କୁହ ଧିକ୍ ତୁମ୍ଭ ବୀର୍ଯ୍ୟ ।
ଚାଟୁ ପଟଳ ପ୍ରକାରେ କୁହ ଙ୍ଗଥା ଖଣ୍ଡି
ବୃଦ୍ଧ ଗୃଧ୍ରପରାୟରେ ଖାଉଅଛି ଭଣ୍ଡି ।
ସରିଲା ତୁମ୍ଭର ବଂଶ ଧୃତରାଷ୍ଟ୍ର ବୋଲେ
ବିଦୁର ସଞ୍ଜୟ ଦୁହେଁ ଆସ୍ଥାନରୁ ନେଲେ ।
ଉଚ୍ଚସ୍ୱରେ ଧୃତରାଷ୍ଟ୍ର ଯାଉଅଛି କାନ୍ଦି
ଆଜିଠାରୁ କାଳସର୍ପ ହୋଇଲା ଏ ବ୍ୟାଧି ।
ଅନ୍ଧ ବୋଲଇ ବିଦୁର କି କହିଣ ତୋତେ
ନିର୍ଲ୍ଲଜ ଆତ୍ମା ମୋହର ରହିଛି କେମନ୍ତେ ।
ବିଦୁର ବୋଇଲେ ଭ୍ରାତ ନ କହ ଏ କଥା
ବୁଝିବା ନାହିଁକି ଏହା ତଦନ୍ତେ ବାରତା ।
ଅନ୍ତଃପୁରକୁ ବିଜୟ କଲେ ଧୃତରାଷ୍ଟ୍ର
ଗାନ୍ଧାରୀ ଆଗେ କହିଲେ ପୁତ୍ରଙ୍କର କଷ୍ଟ ।
ଗାନ୍ଧାରୀ ସଂଗ୍ରାମ ହୋଇଲେ ପ୍ରୟାଗକୁ ଯିବା
ଶକୁନି ସଭାରେ ଥାଇ ବୋଲେ ବୃଦ୍ଧଲୋକେ
କୁଟୁମ୍ବ ମୋହରଜ୍ଞାନ ବୁଡ଼ାବନ୍ତି ଥୋକେ ।
ଆତ୍ମା ନ ବୁଡ଼ାନ୍ତି ସେହୁ କାଳ ପ୍ରାପ୍ତ କାଳେ
ଯେ ଯାହାମତେ ବୋଲନ୍ତି ସର୍ବଶେଷବେଳେ
ଏହି ପରକାରେ ହେଲା କଥୋପକଥନ
ସଭା ମଉଳିଲା ବିଜେହେଲେ ଦୁର୍ଯ୍ୟୋଧନ ।



## ଯୁଧିଷ୍ଠିରଙ୍କର ଇନ୍ଦ୍ରପ୍ରସ୍ଥକୁ ଯିବାର ଅନୁକୂଳ

ଏଥୁଅନନ୍ତରେ ଶୁଣ ବୈବସ୍ୱତ ମନୁ
ଆସ୍ଥାନରେ ବିଜେ କରିଛନ୍ତି ଧର୍ମ ସୁନୁ ।
ଯୁଧିଷ୍ଠି ଦେବ ପୁଚ୍ଛିଲେ ସହଦେବ ଚାହିଁ ।
କେବେ ରାଜ୍ୟ ଅନୁକୂଳ କରିବରେ ଭାଇ ।
ସହଦେବ ବୋଲେ ଦେବ କୁମ୍ଭମାସ ଅନ୍ତେ
ମଳମାସ ପ୍ରବେଶିବ ଚଇତ୍ର ହୁଅନ୍ତେ ।
ବୈଶାଖମାସରେ ଦେବ ବସନ୍ତ ଯେ ଋତୁ
ସେହି ମାସରେ ବିଜୟ କରିବ ଯେ ଏଥୁ ।
ଲେଖନ୍ତେ କହନ୍ତେ ତ୍ରିଂଶଦିନ ବହିଗଲା
ବୈଶାଖର କୃଷ୍ଣପକ୍ଷ ପ୍ରବେଶ ହୋଇଲା ।
ବୈଶାଖ କୃଷ୍ଣ ତୃତୀୟା ଦିବା ବୁଧବାର
ଅନୁରାଧା ନକ୍ଷତ୍ରକୁ ଭୋଗ ସେ ଦିନର ।
ବୁଧବାରକୁ ଅମୃତ ବାର ଦେବ ବୋଲି
ବୁଧ ଅନୁରାଧା ଦେବ ହୋଇବ ଯେ କାଲି
ମନ୍ତ୍ରୀ ବୋଲନ୍ତି ମହେନ୍ଦ୍ର ଯେ ଅଟଇ ଯୋଗ
ଏହି ଅନୁକୂଳେ ଗଲେ ରାଜ୍ୟ ହୋଏ ପ୍ରାପ୍ତ
ଗତାଗତ ସ୍ଥାନେ ବସି କରନ୍ତି ଭାଳେଣି
ଶୁଭରେ ପ୍ରବେଶ ଆସି ହୋଇଲା ରଜନୀ ।
ସୁବେଳକୁ ଘେନିଣ ଯେ ବାରିବେ ନିଃଶ୍ୱାସ
ଦଧିମୁଖ ବାନର ଯେ ହୋଇଲାକ ଦୃଶ୍ୟ
ପୂର୍ଣ୍ଣକୁମ୍ଭ ଦେଖିଲେ ଯେ ବାମନ ସୁମରି
ମେଷ ଲଗ୍ନେ ପାପଗ୍ରହ ନାହିଁ ଶୁଭ ଧରି ।
ରୂପାର ଭଣ୍ଡାର ନେଇ ଦଧିକୁ ଯୋଗାଡ଼ି
ତମ୍ଭା ନଉକାରେ ପୁଣି ମାଛ ଦେଲେ ଛାଡ଼ି
ଶ୍ରୀମୁଖରେ ଶଙ୍ଖଚିଲ ଭଦଳିଆ ପକ୍ଷୀ
ସୁମଧୁର ସ୍ୱରକଲେ ହୋଇ ବଡ଼ ଦୁଃଖୀ
ନାରିକେଳ ବୃକ୍ଷାଡାଳ ଫଳ ପୁଷ୍ପେ ଭରି
ତା ଉପରେ ନୀଳକଣ୍ଠ ଚଢ଼େ ଶୁଭକାରୀ
ଫଳିତ କଦଳୀ ବୃକ୍ଷ ପରେ ଶ୍ୱେତ କାକ
ଶୁଭ ମଙ୍ଗଳରେ ଯେହୁ ଦେଉଅଛି ଡାକ ।
ଶ୍ୱେତ ହସ୍ତୀଙ୍କୁ ମଣ୍ଡିଲେ ଆବର ବାରାସ
ଆଲଟ ଛତ୍ର ନେତ ହେ ଉଡ଼ଇ ଆକାଶ ।
ସୁବର୍ଣ୍ଣ କଳସ ଅଛି ପତାକା ଉପରେ
ସୁଶଙ୍ଖ ଧ୍ୱନି ଶୁଭଇ ମଙ୍ଗଳ ସ୍ୱରରେ ।
ସର୍ବ ଶୁଭରେ ଭାଷନ୍ତି ତହିଁ ପକ୍ଷୀ ଯେତେ
ସର୍ବ ଶୁଭ ଧାନ ପୁଣି କଲେ ପୁରୋହିତେ ।
ବେଦ ମନ୍ତ୍ର ଅଧ୍ୟୟନ କଲେ ବିଦ୍ୱଜନ
ମଙ୍ଗଳ ଶବଦ ପୁଣି ଶୁଭେ ଘନ ଘନ ।
ଦଧିବାମନ ଆବର ଲକ୍ଷ୍ମୀ ନାରାୟଣ
ଦୁର୍ଗାମାଧବ ନାମକୁ କରିଲେ ସ୍ମରଣ ।
ପୂର୍ବବନର ଉତ୍ତରରେ ଦେବୀ ମାହେଶ୍ୱରୀ
ବାୟବ୍ୟେ ଶାନ୍ତି ଚଣ୍ଡି ରୂପକୁ ଯେ ଧରି
ଜମ୍ବୁଦ୍ୱୀପ ଭ୍ରତଗଣ୍ଡେ ସୌରାଷ୍ଟ୍ର ମଣ୍ଡଳେ
ଯଜନ ଯାଜନ ଯେ ଶ୍ରୀମହୋଦଧି କୂଳେ ।
ଝଙ୍କଡ଼ ଯାହାକୁ ପୂର୍ବେ ବାରସ୍ୱତୀ ବୋଲି
ଗିରିଜାଙ୍କ ଆଜ୍ଞାରେ ମୁଁ ତହିଁ ଜନମିଲି ।
ଚିତ୍ରୋତ୍ପଳା ଅଇଶାନ୍ୟ ଭାଗେ ଯେଉଁ ମୂର୍ତ୍ତି
ବୃହଧ୍ୱଜ ଋଷି ତହିଁ ତପ କରୁଛନ୍ତି ।

ତାଙ୍କପରେ ଭେଦି ବହେ ବନ୍ଧନକ ମାତା
କନକାବତୀ ପାଟଣା ରାମଙ୍କ ସର୍ଜନ୍ତା ।
ଅଭକ୍ଷ କାମନା ମୋର ଭୁବନ ମଣ୍ଡଣି
ଶୂଦ୍ରମୁନି ଶାରଳା ପ୍ରସନ୍ନ ସିଦ୍ଧଯୋଗ୍ନୀ ।
ଏକ ଦଶଖଣ୍ଡ ସୁଧା ପରକାର ଗାଥା
ଇଦଂ ବାକ୍ୟ କହିଲି ମୁଁ ବିରାଟର କଥା ।
ଯାବତ ଧର୍ମ ତାବତ କର୍ମେ ସିନା ଲେଖା
ବିରାଟ ପର୍ବ କହିଲେ ଶାସ୍ତ୍ର କରି ଶିକ୍ଷା ।
ମୁନି ଅଂଶେ ହୋଇ ମୁହିଁ ଜନ୍ମିଲଇ ଯୋନି
ଚଣ୍ଡୀପଦ୍ମ ପାଦ ସେବି ହେଲି ଶୂଦ୍ରମୁନି ।
ଶ୍ରୀଚଣ୍ଡୀ ଶାରଳାଙ୍କର କିଞ୍ଚିତ ପ୍ରସନ୍ନେ
ସେ ଯାହା କହନ୍ତି ମୁହିଁ ଲେଖଇ ଲେଖନେ ।
ହେ ବୁଧଜନେ ମୋହର ନ ଘେନିବଦୋଷ
ଅପଣ୍ଡିତ ଅଟେ ମୁହିଁ ମୋରବୁଦ୍ଧି କିସ ।
ଅଗାଧ ସମୁଦ୍ର ଅଟେ ଭାରତ ଯେ ବୋଲି
ସାଗରେ ପଶିଣ ମଧ ଅନ୍ତ ନ ପାଇଲି ।
ମାନବ ଜନମ ଅନ୍ତ କରିବଇଁ କାହିଁ
ଶାରଳା ପ୍ରସନ୍ନେ ମହାଭାରତ ଲେଖଇ ।
ମୋତେ କିଞ୍ଚିତରେ ଦୟା କରିଲେ ମଙ୍ଗଳେ
ଲେଖନ କରିଲି ମୁହିଁ ତାଙ୍କ ବୁଦ୍ଧିବଳେ ।
ପ୍ରସନ୍ନରେ ଦେଲେ ମୋତେ ଲେଖନଗୋଟିଏ
ତାହାଘେନି ଲେଖୁଥିଲେ ଦୃଶ୍ୟମୋତେ ହୁଏ ।
ତେଣୁକରି ଲେଖନ ମୁଁ କଲି ସାର ଗ୍ରନ୍ଥ
ସମ୍ପୂର୍ଣ୍ଣ କରି ଶୁଣିଲେ ପୁତ୍ର ହୁଏ ଜାତ ।
ଆପଦ ଅପଚୟାଦି ସର୍ବ ହେବ ହାନି
ଶ୍ରୀହରି ପାଦେ ଶରଣ ଏ ଶାରଳାମୁନି ।
ବିରାଟପର୍ବ ଚରିତ ସୁଧାସାର ରସ
ଆହେ ସୁଜ୍ଞଜନ ଏହିଠାର ହେଲା ଶେଷେ ।

ଇତିଶ୍ରୀ ମହାଭାରତ ବିରାଟ ପର୍ବ

## — ସମାପ୍ତ —

# ମହାଭାରତ

## ବିଜ୍ଞାପନ

ନିମ୍ନଲିଖିତ ପୁସ୍ତକ ସବୁ ସରସ କାଗଜରେ ସୁନ୍ଦର ଛାପା ହୋଇ ବିକ୍ରୟ ନିମିତ୍ତ ଗଚ୍ଛିତ ଅଛି। କ୍ରୟ କରିବା ପାଇଁ ଆପଣଙ୍କ ନିକଟସ୍ଥ ପୁସ୍ତକ ବ୍ୟବସାୟୀଙ୍କ ସହିତ ଯୋଗାଯୋଗ କରନ୍ତୁ। ଏଥିରେ ସ୍ୱତନ୍ତ୍ର କମିଶନ ବ୍ୟବସ୍ଥା ଅଛି।

## ଅଷ୍ଟାଦଶ ପୁରାଣ

- ବ୍ରହ୍ମପୁରାଣ ସେଟ୍
- ପଦ୍ମପୁରାଣ ସେଟ୍
- ମହାବିଷ୍ଣୁ ପୁରାଣ
- ଶିବ ପୁରାଣ ସେଟ୍
- ନାରଦ ପୁରାଣ
- ମାର୍କଣ୍ଡେୟ ପୁରାଣ
- ଅଗ୍ନି ପୁରାଣ
- ଭବିଷ୍ୟ ପୁରାଣ
- ବ୍ରହ୍ମବୈବର୍ତ୍ତ ପୁରାଣ ସେଟ୍
- ଲିଙ୍ଗ ପୁରାଣ
- ବରାହ ପୁରାଣ
- ସ୍କନ୍ଦ ପୁରାଣ
- ବାମନ ପୁରାଣ
- କୂର୍ମ ପୁରାଣ
- ମତ୍ସ୍ୟ ପୁରାଣ
- ଗରୁଡ଼ ପୁରାଣ
- ବ୍ରହ୍ମାଣ୍ଡ ପୁରାଣ
- ଭାଗବତ ସେଟ୍



ପ୍ରକାଶକ-
ଧର୍ମଗ୍ରନ୍ଥ ଷ୍ଟୋର (TM)
ଅଲିଶା ବଜାର, କଟକ-୨
ଫୋନ୍ : (୦୬୭୧)୨୫୦୮୨୯୬
website : www.dharmagranthastore.com